# ଉତ୍କଳ-ଇତିହାସ



ଲେଖକ

୰ ପଣ୍ଡିତ କୃପାସିନ୍ଧୁ ମିଶ୍ର ଏମ,



ପ୍ରଥମ ସଂସ୍କରଣ

ପ୍ରକାଶକ

[illegible] ଳି ମିଶ୍ର କାର୍ଯ୍ୟାଧ୍ୟକ୍ଷ

ଜେନେରଲ ମାନେଜର, କଟକ ଟ୍ରେଡିଂ କମ୍ପାନୀ କଟକ ଓ ପୁରୀ

୧୯୨୭





—



~~ମୂଲ୍ୟ ଏକଟଙ୍କା ଚାରିଅଣା~~ ~~ମୂଲ୍ୟ [illegible]~~

# ପ୍ରକାଶକର ବକ୍ତବ୍ୟ

ଓଡ଼ିଶାର ପୂର୍ଣ୍ଣାଙ୍ଗ ଧାରାବାହିକ ଇତିହାସ ଓଡ଼ିଆରେ ଏପର୍ଯ୍ୟନ୍ତ ଲେଖା ହୋଇ ନଥିଲା । ଉଇଲିଅମ୍ ହଣ୍ଟର ପ୍ରମୁଖ ବୈଦେଶିକ ସାହେବ ଓ ବଙ୍ଗାଳି ଭଦ୍ରଲୋକ ବିଦେଶୀ ଭାଷାରେ ଓଡ଼ିଶାର ଇତିହାସ ଲେଖିଛନ୍ତି । ତାହା ପ୍ରକୃତରେ ଓଡ଼ିଆ ଜାତିର ଇତିହାସ ନୁହେଁ [illegible] ସ୍ପଷ୍ଟ କହୁଛନ୍ତି ଯେ ସେ ଓଡ଼ିଆ ଜାତିର ଇତିହାସ ଲେଖି ନାହାନ୍ତି । ଓଡ଼ିଶାର ବନପର୍ବତ, ନଦ ନଦୀର ଦୃଶ୍ୟରେ ମୁଗ୍ଧ ହୋଇ ସେ ତାହାର [illegible] ମାତ୍ର ଲେଖିଛନ୍ତି । ଉତ୍କଳ ଏକ ପୁରାତନ ରାଜ୍ୟ; ପୌରାଣିକଯୁଗରୁ [illegible] ଓ ଖ୍ୟାତ ଅଛି । ଓଡ଼ିଆ ଲୋକଙ୍କର ଅତୀତ ଇତିହାସ ମଧ୍ୟ ଗୌରବମୟ ଓ ନାନା ବିଷୟରେ ଘଟଣାପୂର୍ଣ୍ଣ । ପ୍ରାଚୀନ ଭାରତୀୟ ଶିକ୍ଷା ଓ ସଭ୍ୟତାରେ ଓଡ଼ିଆ ଓ ଓଡ଼ିଶା[illegible] ଅଛି । କିନ୍ତୁ ଅଧୁନାକ ଇତିହାସ ଲେଖକମାନେ ଓଡ଼ିଆ ଜାତିର ସେ [illegible] ଯଥାର୍ଥରେ ଅନୁଭବ କରି ନ ପାରି ଇତିହାସ ଲେଖିଥିବାରୁ ତାହା ପ୍ରକୃତରେ ଓଡ଼ିଶା ଓ ଓଡ଼ିଆର ପୂର୍ଣ୍ଣାଙ୍ଗ ଇତିହାସ ବୋଲି କୁହାଯାଇ ନ ପାରେ । ଏ ଅଭାବ ମୋଚନ କରିବା ପାଇଁ ଉତ୍କଳର ବରପୁତ୍ର କ୍ଷଣଜନ୍ମା ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ୫୦ ବର୍ଷ ପୂର୍ବେ ଲେଖନୀ ଧରିଥିଲେ । ଓଡ଼ିଶାର ଇତିହାସ ଲେଖା ଆରମ୍ଭ କରିବାର ଅଳ୍ପକାଳ ପରେ ହଠାତ୍ ତାଙ୍କର ପରଲୋକ ହେଲା । ସଂକ୍ଷେପରେ ଓଡ଼ିଶା ଇତିହାସ ବିଷୟରେ ଯାହା ସେ ସଂଗ୍ରହ କରିଥିଲେ ସେତିକ କେବଳ ପୁସ୍ତକ ଆକାରରେ ପ୍ରକାଶିତ ହୋଇଛି । ସେତେବେଳକୁ ଓଡ଼ିଶା ଇତିହାସ ଓ ପ୍ରତ୍ନତତ୍ତ୍ୱ ବିଷୟରେ ସବିଶେଷ ଅନୁସନ୍ଧାନ ହୋଇ ନ ଥିଲା । ଏହି କାରଣରୁ ଆଚାର୍ଯ୍ୟଙ୍କ ଇତିହାସ ପୂର୍ଣ୍ଣାଙ୍ଗ ନୁହେଁ ।

କୃପାସିନ୍ଧୁ ମିଶ୍ର ତାଙ୍କର ଯୁବାବସ୍ଥାରୁ ଏ ଐତିହାସିକ ବିଷୟ ଗବେଷଣା ଓ ଆଲୋଚନା କରିବାରେ ସୁଖ୍ୟାତି ଲଭିଥିଲେ । ସେ କଲେଜରେ ଛାତ୍ର ଥାଇ ଓଡ଼ିଶାର ଗଜପତି ରାଜଧାନୀ ଓ ବିଖ୍ୟାତ ଦୁର୍ଗ 'ବାରବାଟୀ' କିଲ୍ଲା ବିଷୟରେ ଯେଉଁ ପୁସ୍ତକ ପ୍ରଣୟନ କରିଥିଲେ ତାହା ଓଡ଼ିଆ ସାହିତ୍ୟରେ ଏକ ଅମୂଲ୍ୟ ସମ୍ପଦ । ଧୀରସ୍ଥିର ଭାବରେ ଚନ୍ଦ୍ରାନୁଶୀ ଗବେଷଣା ସହ ଶାସ୍ତ୍ର ଆଲୋଚନା ଓ ଯୁକ୍ତି ତର୍କ ବଳରେ ଐତିହାସିକ ତତ୍ତ୍ୱ ନିର୍ଦ୍ଧାରଣ କରିବା ପଣ୍ଡିତ କୃପାସିନ୍ଧୁଙ୍କର ଏକ ବିଶିଷ୍ଟ ଶକ୍ତି । ଉତ୍କଳର ପ୍ରାଚୀନ ଅପୂର୍ବ କୀର୍ତ୍ତି 'କୋଣାର୍କ' ବିଷୟରେ ଅନେକ ବର୍ଷର ଅଧ୍ୟୟନ ଓ ଗବେଷଣା ପରେ ସେ ଯେଉଁ ବିଶାଳ ଗ୍ରନ୍ଥ ଲେଖିଯାଇଛନ୍ତି ତାହା ଯେ କୌଣସି ଦେଶର ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତଙ୍କ ନିକଟରେ ଆଦରଣୀୟ ହେବ । ଏହି କୋଣାର୍କ ଗ୍ରନ୍ଥ କୋଣାର୍କ ଦେଉଳ ପରି ପଣ୍ଡିତ କୃପାସିନ୍ଧୁଙ୍କର ଏକ ବିଶାଳ କୀର୍ତ୍ତି । ପଣ୍ଡିତ କୃପାସିନ୍ଧୁ 'କୋଣାର୍କ' ଲେଖା ଶେଷ କରି ... ବର୍ଷ ପୂର୍ବେ ଓଡ଼ିଶାର ଇତିହାସ ଲେଖିବାକୁ ମନ ବଳାଇଥିଲେ । ଏହି ବିଷୟରେ ତାଙ୍କର ଗୁରୁଜନ ପଣ୍ଡିତ ଗୋପବନ୍ଧୁ ... ଓ ସହକର୍ମୀ ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ ଓ ଆଚାର୍ଯ୍ୟ ହରିହର ଦାସ ପ୍ରଭୃତିଙ୍କ ପ୍ରେରଣା ଏହାର ମୂଳରେ ଥିଲା । ସେ 'ଏନସାଇକ୍ଲୋପେଡ଼ିଆ ଅଫ ବ୍ରିଟାନିକା, ସ୍ମିଥ, ଏଲଫିନ୍‌ଷ୍ଟୋନ୍, ରମେଶଦତ୍ତ ପ୍ରଭୃତି ଲେଖକଙ୍କର ଭାରତ-ଇତିହାସ, ହଣ୍ଟର, ଷ୍ଟର୍ଲିଙ୍ଗ, ରାଜେନ୍ଦ୍ରଲାଲ ମିତ୍ର ପ୍ରମୁଖ ଲେଖକଙ୍କର ଓଡ଼ିଶା ଇତିହାସ, ଅଧ୍ୟାପକ ଯଦୁନାଥ ସରକାରଙ୍କର 'ଷ୍ଟଡ଼ିଜ୍ ଇନ୍ ଦି ମୋଗଲ ଏମ୍ପାୟାର', ପଦ୍ମପୁରାଣ ପ୍ରମୁଖ କେତେକ ପୁରାଣ, ଅମୀୟ ନିମାଇ ଚରିତ, ଚୈତନ୍ୟ ଚରିତାମୃତ, ବଙ୍ଗ, ଓଡ଼ିଶା, ଛୋଟନାଗପୁର, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶରେ ଥିବା ଓଡ଼ିଆ ରାଜ୍ୟର ଡିଷ୍ଟ୍ରିକ୍ଟ ଗେଜେଟିୟାର, ବଙ୍ଗ ଓ ଓଡ଼ିଶାର ରିସର୍ଚ୍ଚ ମାସିକ ପତ୍ର ଓ ଓଡ଼ିଶା ସମ୍ପର୍କୀୟ ନାନାପ୍ରକାର

ବାଙ୍ଗଲା, ଇଂରେଜ, ସଂସ୍କୃତ ଓ ଓଡ଼ିଆ ପୁସ୍ତକ, ସାହିତ୍ୟ ପତ୍ର ଓ [illegible] ଇତି
ବୃତ୍ତକୁ ପୁଙ୍ଖାନୁପୁଙ୍ଖରୂପେ ଅଧ୍ୟୟନ ଓ ଆଲୋଚନା କରି [illegible]
ଯୁଗରୁ ଆରମ୍ଭ କରି ଓଡ଼ିଶାର ଐତିହାସିକ ଘଟଣା ସବୁ ସେ ସାବଧାନତାର
ସହିତ ଟିପି ରଖୁଥିଲେ । ଗଲା ଦଶବର୍ଷ ଭିତରେ ସେ ଏ ବିଷୟରେ
ଯାହା ସଂଗ୍ରହ କରି ରଖିଛନ୍ତି ସେଥିରୁ ଅନୁମାନ ହୁଏ ଯେ ତାଙ୍କର ବିସ୍ତୃତ
ଉତ୍କଳ ଇତିହାସ ଲେଖାଯାଇ ଥିଲେ ବର୍ତ୍ତମାନ ପୁସ୍ତକର ଦ୍ୱିଗୁଣ
ଆକାର ହୋଇଥାନ୍ତା । ତାଙ୍କର ଅନେକ ବନ୍ଧୁ ବହୁକାଳ ବିଳମ୍ବ ହେବାର
ଦେଖି ଶୀଘ୍ର ଓଡ଼ିଶାର ସଂକ୍ଷିପ୍ତ ଇତିହାସ ପ୍ରକାଶ କରିବା ପାଇଁ ତାଙ୍କୁ
ପରାମର୍ଶ ଦେଇଥିଲେ । ଆମ୍ଭେମାନେ ମଧ୍ୟ ପଣ୍ଡିତ କୃପାସିନ୍ଧୁଙ୍କୁ ଏ ବିଷୟରେ
ଅନେକ ଥର ଅନୁରୋଧ କରିଅଛୁଁ । ସେ ଏହିସବୁ କାରଣରୁ ଏ ପୁସ୍ତକ
ସଂକ୍ଷେପରେ ଲେଖି ପ୍ରକାଶ କରିବା ପାଇଁ [illegible] ଯୋଗାଉଥିଲେ ।
ଛାପାଖାନାକୁ ପାଣ୍ଡୁଲିପି ଲେଖି ପଠାଇଲା ବେଳେ ସେ ଅନେକ ନୂଆ ନୂଆ
କଥା ପୁସ୍ତକରେ ଲେଖୁଥିଲେ । ୩୩୪ ପୃଷ୍ଠା ପର୍ଯ୍ୟନ୍ତ ପାଣ୍ଡୁଲିପି ପଣ୍ଡିତ
କୃପାସିନ୍ଧୁଙ୍କର ନିଜ ହାତଲେଖା । ଗତ ଫେବୃୟାରି ୧୬ ତାରିଖ ଦିନ
ତାଙ୍କର ହଠାତ୍ ପରଲୋକ ହେଲା । ତାର ତିନିଦିନ ପୂର୍ବରୁ ଜ୍ୱର
ଅବସ୍ଥାରେ ସୁଦ୍ଧା ସେ ପାଣ୍ଡୁଲିପି ଲେଖି ପଠାଉଥିଲେ । ଅବଶିଷ୍ଟ ଦଶପୃଷ୍ଠାର
ପାଣ୍ଡୁଲିପି ଲେଖିଦେବା ପାଇଁ ଆମ୍ଭେମାନେ ମାନନୀୟ ପଣ୍ଡିତ ଗୋପବନ୍ଧୁ
ଦାସଙ୍କୁ ଅନୁରୋଧ କଲୁଁ । ସେ ସ୍ୱର୍ଗୀୟ ପଣ୍ଡିତ କୃପାସିନ୍ଧୁଙ୍କ ଟିପାଖାତା
ଅନୁଯାୟୀ ସଂକ୍ଷେପରେ ବିଷୟ ସବୁ ଲେଖକଙ୍କ ରୁଚି ଓ ମତ ଅନୁଯାୟୀ
ଲେଖି ଦେଇଛନ୍ତି ।

ଦୈବ ଦୁର୍ବିପାକରୁ ଉତ୍କଳବାସୀ ପଣ୍ଡିତ କୃପାସିନ୍ଧୁଙ୍କଠାରେ ଯେ
ଆଶା ରଖିଥିଲେ, ତାହା ସବୁ ଫଳବତୀ ହୋଇ ପାରିଲାନାହିଁ । ଓଡ଼ିଶାର
ସେହି ବିଶାଳ ବିଷଦ ଇତିହାସର ଲେଖା ବାକି ରହିଲା । [illegible]
[illegible] ସ୍ୱାଧୀନତା ଇତିହାସ ମଧ୍ୟ ସେ ଓଡ଼ିଆରେ ଲେଖୁଥିଲେ । ତାହା
ଅଧା ହୋଇ ରହିଲା ।

ଉତ୍କଳ ଇତିହାସର ମୁଖବନ୍ଧ ଲେଖିବା ପ୍ରୟାସ ଆମ୍ଭମାନଙ୍କ ପକ୍ଷେ ଧୃଷ୍ଟତା । ଏପରେ ଯାହା ଲେଖାଗଲା ତାହା କେବଳ ଗ୍ରନ୍ଥକାରଙ୍କର ଗଭୀର ପରିଶୀଳନ ଓ ବିଷୟାଭିନିବେଶ ଦେଖାଇବା ଉଦ୍ଦେଶ୍ୟରେ । ଆମ୍ଭମାନଙ୍କର ତାଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସିବାର ସେତେ ସୁବିଧା ନ ଥିଲା । ତେଣୁ ତାଙ୍କ ଆଲୋଚନା ବିଷୟରେ ଯାହା ଏଠାରେ ଲେଖାଗଲା ତାହା ପୂର୍ଣ୍ଣାଙ୍ଗ ବୋଲି କୁହାଯାଇ ନପାରେ । ସେଥିଲାଗି ଏ ପୁସ୍ତକର ଭୂମିକା ଲେଖିବା ନିମନ୍ତେ ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ଅନୁରୋଧ କରିଥିଲୁ । କୃପାସିନ୍ଧୁ ବାବୁ ବାଲ୍ୟକାଳରୁ ତାଙ୍କ ସମ୍ପର୍କରେ ଆସିଥିଲେ, ତାଙ୍କ ଭାବରେ ଅନୁପ୍ରାଣିତ ହୋଇ ଜୀବନର କାର୍ଯ୍ୟ ଆରମ୍ଭ କରିଥିଲେ । ତାଙ୍କ ସାହଚର୍ଯ୍ୟ ଓ [illegible] ବିଧାନରେ ଜୀବନର କାର୍ଯ୍ୟ ସାଧନ କରୁଥିଲେ । ସୁତରାଂ ଗୋପବନ୍ଧୁ ବାବୁ ଯେ ଏ ପୁସ୍ତକର ଭୂମିକା ଲେଖିବା ବିଷୟରେ ଉପଯୁକ୍ତ ବ୍ୟକ୍ତି ବୋଲିବା ବାହୁଲ୍ୟ । ମାତ୍ର ସେ ଆମ୍ଭମାନଙ୍କ ଅନୁରୋଧ ରଖିବାକୁ ସମର୍ଥ ହେଲେନାହିଁ । ବର୍ତ୍ତମାନ ଅବସ୍ଥାରେ ଆମ୍ଭେମାନେ ତାଙ୍କଠାରେ ଅଧିକ ଜଞ୍ଜାଳ କରିବାକୁ ସାହସୀ ହେଲୁନାହିଁ । ଆମ୍ଭମାନଙ୍କ ଅନୁରୋଧର ପ୍ରତ୍ୟୁତ୍ତରରେ ସେ କହିଥିଲେ “ କୃପାସିନ୍ଧୁଙ୍କ ଲିଖିତ ଉତ୍କଳ-ଇତିହାସ ମୁଖବନ୍ଧ ଲୋଡ଼ାନାହିଁ । ଇତିହାସ ଓ ପ୍ରତ୍ନତତ୍ତ୍ୱର ଆଲୋଚନାରେ କୃପାସିନ୍ଧୁ ନିଜକାର୍ଯ୍ୟ ଓ ଗୁଣ ଯୋଗେ ସୁପରିଚିତ । ଅନ୍ୟର ସାର୍ଟିଫିକେଟ ଅନାବଶ୍ୟକ । ଏ ପୁସ୍ତକ ଲେଖିବା ପୂର୍ବରୁ ବାରବାଟୀ ଦୁର୍ଗ ଓ କୋଣାର୍କ ଲେଖି କୃପାସିନ୍ଧୁ ନିଜର ଯୋଗ୍ୟତାର ଅବିନଶ୍ୱର ସାର୍ଟିଫିକେଟ ହାସଲ କରିଛନ୍ତି । ଯେଉଁମାନେ ସେ ପୁସ୍ତକ ପଢ଼ିଛନ୍ତି କୃପାସିନ୍ଧୁଙ୍କ ଉତ୍କଳ ଇତିହାସ ପଢ଼ିବାକୁ ସେମାନେ ଆକୃଷ୍ଟ ହେବେ ଏବଂ ମୋର ବିଶ୍ୱାସ ଇତିହାସ ପଢ଼ି ଶ୍ରମ ସଫଳ ମଣିବେ । ଏ ପୁସ୍ତକ ଉତ୍କଳର କ୍ଷିପ୍ତ ଇତିହାସ ମାତ୍ର । ସୁବିଶାଳ କଳିଙ୍ଗ ସାମ୍ରାଜ୍ୟର ଗୌରବାବହ ଇତିହାସ ବିସ୍ମୃତି ଗର୍ଭରେ ଲୀନପ୍ରାପ୍ତ । ଏ ଦିଗରେ ପ୍ରତ୍ନତତ୍ତ୍ୱର ଆଲୋଚନା

ଅଧିକ ଦୂର ଅଗ୍ରସର ହୋଇନାହିଁ । ଗଲା କେତେ ବର୍ଷମଧ୍ୟରେ ବସୁ ଭଗର୍ଭରୁ ଯାହା ଉଦ୍ଧୃତ ହୋଇଅଛି କଳିଙ୍ଗ ରାଜ୍ୟର ବିଷୟ ଓ ବସ୍ତୁତ ଦୃଷ୍ଟିରେ ତାହା କିଛି ନୁହେଁ । ଏ ବିଷୟର ଆଲୋଚନାରେ କୃପାସିନ୍ଧୁ ଶେଷଜୀବନରୁ ମନ ବଳାଇଥିଲେ । ସମସ୍ତ ସୁବିଧା ଅନୁକୂଳ ହୋଇଥିଲେ, ତାଙ୍କୁ ସମ୍ପୂର୍ଣ୍ଣରୂପେ ଏ କାର୍ଯ୍ୟରେ ଲଗାଇବା ମୋର ଅଭିପ୍ରାୟ ଥିଲା । ଏ ଅଭିପ୍ରାୟକୁ ନିକଟରେ ଚରିତାର୍ଥ କରିବି ବୋଲି ଭାବିଥିଲି । ମାତ୍ର ଦୈବ ସେ ସୁଖ ସୌଭାଗ୍ୟ ଦେଲାନାହିଁ । ଭବିଷ୍ୟତରେ କୃପାସିନ୍ଧୁଙ୍କଠାରୁ ଯେ ବିଶାଳ ଇତିହାସ ମୁଁ ଆଶା ରଖୁଥିଲି ଉପସ୍ଥିତ ଗ୍ରନ୍ଥ ତାହାର ହାତବଳା କାରଣର ମାତ୍ର । ଏ କ୍ଷୁଦ୍ର ପୁସ୍ତକର ଛାପା ନ ସରୁଣୁ କୃପାସିନ୍ଧୁ ଚାଲିଗଲେ । ମୋ ଅ[illegible] ଶକ୍ତି ନାହିଁ । ଏ ଉତ୍କଳ ଇତିହାସ ଦେଖିଲେ ମୋର ଅଧିକ କୋହ ଉଠୁଛି । ତେଣୁ ଭୂମିକା ଲେଖିବାକୁ ମୁଁ ଅକ୍ଷମ, କ୍ଷମା କରିବେ" ।

ଏ ପୁସ୍ତକ ମୂଳରେ ଗ୍ରନ୍ଥକାରଙ୍କର ସଂକ୍ଷିପ୍ତ ଜୀବନୀ ଓ ଛବି ଦେବା ଆମ୍ଭମାନଙ୍କର ଇଚ୍ଛା ଥିଲା । କିନ୍ତୁ ସମୟର ସ୍ୱଳ୍ପତା ଯୋଗୁଁ ତାହା ସମ୍ଭବପର ହେଲା ନାହିଁ । ତାଙ୍କର ସହକର୍ମୀମାନଙ୍କଠାରୁ ଜୀବନର ଘଟଣାବଳୀ ବିଷୟରେ ବର୍ତ୍ତମାନ ଅବସ୍ଥାରେ ବିଶେଷ ଦାବୀ କରିବା ସଙ୍ଗତ ନୁହେ । ଗୋପବନ୍ଧୁ ବାବୁଙ୍କ ମତରେ ତାହାର ଜୀବନୀ ମୃତ୍ୟୁର ଏତେ ଅବ୍ୟବହିତ ପରେ ଲେଖାଯିବା ଉଚିତ ନୁହେ । ବିଶେଷତଃ ମାର୍ଚ୍ଚମାସ ମଧ୍ୟରେ ଗ୍ରନ୍ଥ ପ୍ରକାଶ କରିବାକୁ ଲେଖକଙ୍କର ଏକାନ୍ତ ଇଚ୍ଛା ଥିଲା । ସେ ଇଚ୍ଛା ଚରିତାର୍ଥ କରିବାକୁ ଯାଇ ଆମ୍ଭେମାନେ ଛବି ଆଦି ସଂଗ୍ରହ କରିବାକୁ ଅକ୍ଷମ ହୋଇ ଯେଥିଲାଗି ପାଠକଙ୍କ ନିକଟରେ କ୍ଷମା ଭିକ୍ଷା କରୁଅଛୁ ।

ଅତୁଳ ମିଶ୍ର କାବ୍ୟତୀର୍ଥ
ଜେନେରଲ ମାନେଜର, କଟକ ଟ୍ରେଡିଂ କମ୍ପାନୀ
କଟକ ଓ ପୁରୀ ବ୍ରାଞ୍ଚ

# ସୂଚୀ

## ପ୍ରଥମ ଭାଗ



## ଦ୍ୱିତୀୟ ଭାଗ



## ତୃତୀୟ ଭାଗ

## ଚତୁର୍ଥ ଭାଗ

# ଉତ୍କଳ-ଇତିହାସ

## ପ୍ରଥମ ଭାଗ

### ପରିଚୟ

### ପ୍ରଥମ ଅଧ୍ୟାୟ

#### ଦେଶର [illegible] ଓ ସୀମା

**କଳିଙ୍ଗ ଓ ଉତ୍କଳ**—ବର୍ତ୍ତମାନ ଯାହାକୁ ଓଡ଼ିଶା ବା ଉତ୍କଳ ବୋଲି କୁହାଯାଏ, ପ୍ରାଚୀନ କାଳରେ ଉତ୍କଳଦେଶ ସେତିକି ନ ଥିଲା । ଉତ୍ତର ଦକ୍ଷିଣ ଓ ପଶ୍ଚିମରେ ଏହି ଦେଶ ବହୁଦୂର ବ୍ୟାପିରହିଥିଲା । ଉତ୍କଳର ଅର୍ଥ ଉତ୍-କଳିଙ୍ଗ ବା ଊର୍ଦ୍ଧ୍ୱ ବା ଉତ୍ତର କଳିଙ୍ଗ । ଅତି ପ୍ରାଚୀନକାଳରେ କଳିଙ୍ଗ ନାମରେ ଗୋଟିଏ ବୃହତ୍ ରାଜ୍ୟ ବହୁ ବୈଭବ ଓ ଶ୍ରୀବୃଦ୍ଧିରେ ପୂର୍ଣ୍ଣ ହୋଇ ରହିଥିଲା । ସେହି କଳିଙ୍ଗରାଜ୍ୟ ସାଧାରଣତଃ ତିନି ଭାଗରେ ବିଭକ୍ତ ଥିଲା । ଦକ୍ଷିଣ ଭାଗଟି ଦକ୍ଷିଣ, ବା ବୃହତ୍ ବା ମୁଖ୍ୟ କଳିଙ୍ଗ, ମଧ୍ୟଭାଗଟି କଳିଙ୍ଗ ବା ମଧ୍ୟ କଳିଙ୍ଗ ଏବଂ ଉତ୍ତରାଂଶ ଉତ୍ତରକଳିଙ୍ଗ ବା ଉତ୍କଳଦେଶ ଥିଲା । ରାଜନୀତି-ସୂତ୍ରରେ ବେଳେ ବେଳେ ଏହି ତିନିଭାଗ ପରସ୍ପରଠାରୁ ପୃଥକ୍ ରହିଥିଲା । ବଂଶଧାରା ନଦୀକୂଳରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ଦେଶ ଦକ୍ଷିଣ ବା ମୁଖ୍ୟ କଳିଙ୍ଗ ବୋଲି ପରିଚିତ ହେଉଥିଲା, ଏବଂ କଳିଙ୍ଗପତ୍ତନ ବା କଳିଙ୍ଗପାଟଣା ତାହାର ରାଜଧାନୀ ଥିଲା । ଋଷିକୂଲ୍ୟାନଦୀଠାରୁ ବଂଶଧାରା ପର୍ଯ୍ୟନ୍ତ ଭୂଭାଗକୁ

ମଧ୍ୟକଳିଙ୍ଗ ବୋଲି କହୁଥିଲେ । ଏହାର ରାଜଧାନୀ ଥିଲା ସମାପ ବା ବର୍ତ୍ତମାନ ଯଉଗଡ଼ । * । ଉତ୍ତରକଳିଙ୍ଗ ବା ଉତ୍କଳ ଋଷିକୂଲ୍ୟାନଦୀ-ଠାରୁ ଆରମ୍ଭକରି ଉତ୍ତରରେ ଗଙ୍ଗାନଦୀ କୂଳପର୍ଯ୍ୟନ୍ତ, ସିଂହଭୂମି, ମେଦନୀପୁର ଓ ବାଙ୍କୁଡ଼ା ଜିଲ୍ଲାମାନଯାଏ ବ୍ୟାପି ରହିଥିଲା । ଏହି ବିଭାଗର ରାଜଧାନୀ ଥିଲା 'ଏକପ୍ରସ୍ତର' ବା ତୋଷାଳୀ; ବର୍ତ୍ତମାନ ଭୁବନେଶ୍ୱର ନିକଟବର୍ତ୍ତୀ ଖଣ୍ଡଗିରି ଓ ଧଉଳୀମଧ୍ୟବର୍ତ୍ତୀ ସ୍ଥାନ । ବେଳେବେଳେ କଳିଙ୍ଗର ଏହି ତିନି ବିଭାଗ ପ୍ରଥମରୁ ଏକଥିଲେ ମଧ୍ୟ କୌଣସି କୌଣସି ବିଜେତାଙ୍କ କବଳରେ ପଡ଼ି, ବା ଅନ୍ୟ କୌଣସି ରାଜନୈତିକ କାରଣରୁ ପରସ୍ପରଠାରୁ ପୃଥକ୍ ରହୁଥିଲା । ମାତ୍ର ସେ ପାର୍ଥକ୍ୟ ବଡ଼ ଅଳ୍ପସ୍ଥାୟୀ ଥିଲା । ଇତିହାସରେ ଏହି ସମୁଦାୟ ଭୂଖଣ୍ଡ ସାଧାରଣତଃ କଳିଙ୍ଗ ଏବଂ ବେଳେବେଳେ ତ୍ରିକଳିଙ୍ଗ ନାମରେ ପରିଚିତ ଥିଲା ।

ପୁରାଣରେ ବର୍ଣ୍ଣିତ ଅଛି, ସୁଦ୍ୟୁମ୍ନଙ୍କ ତିନିପୁତ୍ର, ଗୟା, ଉତ୍କଳ ଓ ବିନତାଶ୍ୱ ଯଥାକ୍ରମେ ବିହାର, ଉତ୍କଳ ଓ ପଶ୍ଚିମଅଞ୍ଚଳରେ ରାଜତ୍ୱ କରୁଥିଲେ । ସୁତରାଂ ଗୟା ଉତ୍କଳ ପରସ୍ପରର ସନ୍ନିକଟବର୍ତ୍ତୀ ରାଜ୍ୟ ଥିଲା । ଗୟାସୁର ଉପାଖ୍ୟାନ ଅନୁସାରେ ଗୟା ଗୟାସୁରର ମସ୍ତକ, ଏବଂ ଯାଜପୁର ତାହାର ନାଭିସ୍ଥଳ ଥିଲା । ଯେଉଁ ରାଜ୍ୟ ଗୟାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା, ଯାଜପୁର ଯେ ତାହାର ମଧ୍ୟସ୍ଥଳ ଥିଲା, ସନ୍ଦେହ ନାହିଁ । ଉକ୍ତ ପୁରାଣବଚନ ଅନୁସାରେ ଉତ୍କଳ ଅବଶ୍ୟ ତାହାର ସ୍ୱାତନ୍ତ୍ର୍ୟ କଳିଙ୍ଗଠାରୁ ପୃଥକ୍‌ଭାବରେ ବହୁକାଳ ରଖିଥିଲା । କାଳକ୍ରମେ କଳିଙ୍ଗ ପ୍ରଭାବରେ ଏହା କଳିଙ୍ଗ ସଙ୍ଗେ ମିଶିଯାଇ କଳିଙ୍ଗୋତ୍କଳ ନାମରେ ଏକ ବିରାଟ ରାଜ୍ୟରେ ପରିଣତ ହୋଇଥିଲା । ଶେଷରେ ଉତ୍କଳ ପ୍ରଭାବରେ କଳିଙ୍ଗ ନାମ ଇତିହାସରୁ ଲୁପ୍ତହେଲା, ଏବଂ ସମସ୍ତଦେଶ ଉତ୍କଳନାମରେ

* କେହି କେହି ତାହା ସମାପକୁ ବର୍ତ୍ତମାନର ଜଉଗଡ଼ା ବା ସୋମପେଣ୍ଟ ବୋଲି ଅନୁମାନ କରନ୍ତି ।

ପରିଚିତ ହେଲା । ଉତ୍କଳର ନରପତିମାନେ 'ତ୍ରିକଳିଙ୍ଗାଧିପତି' ନାମରେ ଆପଣାର ପରିଚୟ ଦେଉଥିଲେ ।

ସେହି ଉତ୍କଳ ବା କଳିଙ୍ଗରାଜ୍ୟ ଉତ୍ତରରେ ଗଙ୍ଗାନଦୀ ଓ ଗୟାଠାରୁ ଦକ୍ଷିଣରେ ଗୋଦାବରୀ ନଦୀପର୍ଯ୍ୟନ୍ତ ବିସ୍ତୃତଥିଲା । ଏହାର ପୂର୍ବରେ ବଙ୍ଗୋପସାଗର, ଏବଂ ପଶ୍ଚିମରେ ଥିଲା ଅଶ୍ମକଦେଶ ( ବା ମହାରାଷ୍ଟ୍ର ଭାଷୀ ପ୍ରଦେଶ, ) ମେଖଳ ପର୍ବତଶ୍ରେଣୀ ଓ ଅମରକଣ୍ଟକ ପର୍ବତ, ଗଣ୍ଡୱାନା-ରାଜ୍ୟ, ମେଖଳପ୍ରଦେଶ ( ବା ମଧ୍ୟପ୍ରଦେଶର ସୁରଗୁଜା, ଯଶପୁର ଉଦୟପୁର ପ୍ରଭୃତି ) । ପୂର୍ବେ ମଧ୍ୟପ୍ରଦେଶର ଛତିଶଗଡ ମଧ୍ୟରେ ଥିବା ମହାନଦୀର ଉତ୍ପତ୍ତି ସ୍ଥଳ ସିହାୱା ( ସିଂହପୁର ), ମହାନଦୀ କୂଳରେ ଥିବା ଶ୍ରୀପୁର ( ରାଜିମ ) ଓ ଶିବ ନାରାୟଣ ଆଦି ଅଞ୍ଚଳମାନ; ଏବଂ ସିଂହଭୂମି , ବାଙ୍କୁଡା ଓ ମେଦିନୀପୁର ବର୍ତ୍ତମାନ ପ୍ରାଚୀନ ତାମ୍ରଲିପ୍ତ ରାଜ୍ୟ ସହିତ କଳିଙ୍ଗ ବା ଉତ୍କଳ ଦେଶ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା ।

ଏହା ସବୁ ସେତେବେଳର କଥା କୁହା ଯାଉଛି ଇତିହାସର ସେହି ପ୍ରଥମାବସ୍ଥାରେ ଓଡ୍ର ବା ଓଡିଶା ନାମରେ କୌଣସି ଦେଶ ନ ଥିଲା । ଓଡ୍ର ଏକ ଜାତି ଥିଲେ । ସେମାନେ କଳିଙ୍ଗର ପଶ୍ଚିମ ପ୍ରାନ୍ତରେ ବାସ କରୁଥିଲେ । ସେମାନେ ଅନାର୍ଯ୍ୟ ଥିଲେ । ଆର୍ଯ୍ୟମାନଙ୍କ ମଧ୍ୟରୁ ଯେଉଁମାନେ ପ୍ରଥମେ କଳିଙ୍ଗକୁ ଆସିଥିଲେ, ସେମାନେ କଳିଙ୍ଗର ଆଦିମବାସୀ ଅନାର୍ଯ୍ୟ ଏବଂ ଦାକ୍ଷିଣାତ୍ୟର ଦ୍ରାବିଡମାନଙ୍କ ସଙ୍ଗେ ମିଶି ଆର୍ଯ୍ୟ ଦୃଷ୍ଟିରେ ପତିତ ହୋଇ ଯାଇଥିଲେ । ତେଣୁ "ମନୁସଂହିତା"ରେ ଓଡ୍ରମାନଙ୍କୁ 'ପତିତ କ୍ଷତ୍ରିୟ' ବୋଲି କୁହାଯାଇଛି । ପରେ ପୁଣି ନୂତନ ଆର୍ଯ୍ୟମାନେ ଆସି କଳିଙ୍ଗରେ ବସତି କରିବାରୁ ଓଡ୍ରମାନେ ଭିନ୍ନ ହୋଇ ଯାଇ ଗଞ୍ଜାମ ଓ ବିଶାଖପାଟଣାର ମାଳଭୂମି ଜୟପୁର, ବସ୍ତର ଓ ଅନ୍ୟାନ୍ୟ ପାର୍ବତ୍ୟ ଅଞ୍ଚଳରେ ବାସ କଲେ । ବହୁକାଳ ପରେ ସେ ସବୁ ଅଞ୍ଚଳକୁ 'ଓଡ୍ରଦେଶ'

ପ୍ରଦେଶ ବା ଓଡ୍ରଦେଶ ବୋଲି କୁହାଗଲା । ଓଡ୍ରମାନେ ସଭ୍ୟ ହେଲେ ମଧ୍ୟ କ୍ଷତ୍ରିୟ ଥିଲେ । ଯୁଦ୍ଧ ବିଦ୍ୟାଶିକ୍ଷା ସେମାନଙ୍କର ପରମ୍ପରା ବୃତ୍ତି ଥିଲା । ବର୍ତ୍ତମାନ ମଧ୍ୟ ଜୟପୁର ପ୍ରଭୃତି ଅଞ୍ଚଳରେ ପାଇକମାନଙ୍କୁ 'ଓଡ଼' ବୋଲି କହନ୍ତି । ଏହି ଓଡ୍ରମାନେ ଉତ୍କଳର ସକଳ ରାଜବଂଶର ପ୍ରଧାନ ସୈନିକ ଥିଲେ । ଗଙ୍ଗବଂଶ ରାଜତ୍ୱକାଳରେ ଏହି ଓଡ୍ରମାନେ ଉତ୍କଳ ସୈନ୍ୟଶ୍ରେଣୀଭୁକ୍ତ ଥିଲେ, ଏବଂ ସେମାନଙ୍କ ସଙ୍ଗେ ଆସି ଖୋରଧା ପ୍ରଭୃତି ଅଞ୍ଚଳରେ ବାସ କଲେ । ମୁସଲମାନମାନେ ଯେଉଁ ସୈନ୍ୟଙ୍କ ସଙ୍ଗେ ଜନଶତ ବର୍ଷ ପର୍ଯ୍ୟନ୍ତ ଯୁଦ୍ଧ କରି ଉତ୍କଳରୁ ବାରମ୍ବାର ପରାସ୍ତ ହୋଇ ଫେରୁଥିଲେ, ସେମାନେ ସାଧାରଣତଃ ଓଡ୍ର ଥିବାରୁ, ସେମାନଙ୍କ ନାମାନୁସାରେ ମୁସଲମାନମାନେ କଳିଙ୍ଗ ବା ଉତ୍କଳକୁ ଓଡ଼ିଶା ନାମ ଦେଇଥିଲେ । ଭୋଇବଂଶ ରାଜାମାନେ ଗଙ୍ଗବଂଶର ଉତ୍ତରାଧିକାରୀ ରୂପେ ଖୋରଧାରେ ରାଜତ୍ୱ ପାଇବାରୁ, ଏବଂ ଖୋରଧାରେ ଓଡ୍ର ପାଇକମାନେ ବହୁସଂଖ୍ୟାରେ ବାସ କରି ରହିଥିବାରୁ ଖୋରଧା ଅଦ୍ୟାପି ପୁରୀ ଲୋକରେ ଓଡ଼ିଶା ନାମରେ ପରିଚିତ ହୁଏ ।

ଦକ୍ଷିଣ କୋଶଳ—ଉତ୍କଳ ଇତିହାସରେ କୋଶଳ ନାମରେ ଗୋଟିଏ ରାଜ୍ୟ ଥିବାର ଦେଖାଯାଏ । କୋଶଳ କଳୁ କଳିଙ୍ଗ ବା ଉତ୍କଳ ପରି ସେତେ ପ୍ରାଚୀନ ରାଜ୍ୟ ନୁହେଁ । ବୋଧ ହୁଏ ବୁଦ୍ଧ ଦେବଙ୍କ ସମୟରେ ବା କିଛି କାଳ ପରେ କୋଶଳ ନାମରେ ଗୋଟିଏ ରାଜ୍ୟ ସ୍ଥାପିତ ହେଲା । ଏହା ପ୍ରଥମେ କଳିଙ୍ଗ ଓ ବିନ୍ଧ୍ୟ ପର୍ବତ ମଧ୍ୟରେ ଥିଲା । ପ୍ରଥମେ କାଶୀକୋଶଳ ନାମରେ ଏକ ପ୍ରଧାନ ରାଜ୍ୟ ଥିଲା । ପରେ ଏହି କୋଶଳ ରାଜ୍ୟ ସ୍ଥାପିତ ହେବାରୁ ଏହାର ନାମ 'ଦକ୍ଷିଣକୋଶଳ' ହେଲା । ଏହା ମଧ୍ୟ 'ଉତ୍କଳ କୋଶଳ' ନାମରେ ପରିଚିତ ଥିଲା । ଏହି କୋଶଳ ରାଜ୍ୟ ସହିତ କଳିଙ୍ଗ ବା ଉତ୍କଳ ରାଜାମାନଙ୍କର ସମ୍ପର୍କ

ସମ୍ବନ୍ଧ ଥିଲା । ପରେ ଯଥାସ୍ଥାନରେ ତାହା କୁହାଯିବ । ଏହି କୋଶଳର ରାଜଧାନୀ ପ୍ରଥମେ ଓ୍ୱାଦାନଦୀ କୂଳରେ ଶ୍ରାବସ୍ତୀରେ ଥିଲା । କାଳକ୍ରମେ କୋଶଳରାଜ୍ୟ ଦକ୍ଷିଣକୁ ଘୁଞ୍ଚିଆସି ବର୍ତ୍ତମାନ ଛତିଶଗଡ଼ରେ ପରିଣତ ହେଲା ; ଏବଂ ମହାନଦୀ କୂଳସ୍ଥ ଶ୍ରୀପୁର (ରାଜିମ) ଏହାର ରାଜଧାନୀ ହେଲା । ଏହି କୋଶଳ ରାଜ୍ୟ ମଧ୍ୟରେ ବର୍ତ୍ତମାନ ଛତିଶଗଡ଼ର ରାଏପୁର, ବିଲାସପୁର ପ୍ରଭୃତି ଜିଲ୍ଲା ଥିଲା; ଏବଂ ଇବ, ମଣ୍ଡ, ହେସ୍ଦୋ, ଦାଣ୍ଡା, ଇସ୍ରା ଓ ଶିବନାଥ ପ୍ରଭୃତି ମହାନଦୀର ଉପନଦୀମାନ ପ୍ରବାହିତ ହେଉଥିଲା । ଖ୍ରୀଷ୍ଟ ୭ମ ଶତାବ୍ଦୀରେ କୋଶଳରାଜାମାନେ ଉତ୍କଳ ରାଜସିଂହାସନରେ ବସିଲେ ଏବଂ କାଳକ୍ରମେ କୋଶଳ ନାମକ ସ୍ୱତନ୍ତ୍ର ରାଜ୍ୟ ଆଉ ରହି ନଥିଲା ।

ସୀମା—ଏହି ବିଶାଳ ଉତ୍କଳରାଜ୍ୟ ଛୋଟ ଛୋଟ ହୋଇ ବର୍ତ୍ତମାନ ଓଡ଼ିଶାରେ ପରିଣତ ହେଲା ତାହା ପ୍ରସଙ୍ଗ କ୍ରମେ ଲେଖାଯିବ । ବର୍ତ୍ତମାନ ଓଡ଼ିଶାର ସୀମା ଉତ୍ତରରେ ସୁବର୍ଣ୍ଣରେଖାନଦୀ, ମେଦିନୀପୁର ଓ ଧଳଭୂମି; ପଶ୍ଚିମରେ ସିଂହଭୂମି ଓ ମଧ୍ୟପ୍ରଦେଶ; ଦକ୍ଷିଣରେ ଗଞ୍ଜାମ ଜିଲ୍ଲା; ଏବଂ ପୂର୍ବରେ ବଙ୍ଗୋପସାଗର । ଏହାର କ୍ଷେତ୍ରଫଳ ପ୍ରାୟ ୪୦୦୫୦ ବର୍ଗମାଇଲ ଏବଂ ଲୋକସଂଖ୍ୟା ୮୨୨୬୦୪୫ ।

ପ୍ରାକୃତିକ ବିବରଣ—ଉତ୍କଳରେ ସାଧାରଣତଃ ତିନୋଟି ପ୍ରାକୃତିକ ବିଭାଗ ଥିଲା ପରି ଜଣାପଡେ । ଗୋଟିଏ ଗଡ଼ଜାତ ବା ମାଳଭୂମି, ତତ୍ପରେ ସମତଳଭୂମି ଏବଂ ଶେଷରେ ନିମ୍ନଭୂମି । ଗଡ଼ଜାତ ବା ମାଳଭୂମି ବନ ପର୍ବତରେ ପୂର୍ଣ୍ଣ । ଉତ୍କଳର ସକଳ ନଦୀ ବନ ପର୍ବତମାନଙ୍କରୁ ବାହାରି ସେହିମାନଙ୍କର ପଙ୍କ ବୋହିଆଣି ସମତଳ ଅଞ୍ଚଳ ସୃଷ୍ଟି କରିଛି । ଏହି ସମତଳ ଅଞ୍ଚଳ ବିଶେଷ ଉର୍ବର ଓ ଶସ୍ୟଶାଳୀ । ସମୁଦ୍ର ଉପକୂଳ ନିମ୍ନଭୂମି କେବଳ ବାଲି ଓ ସ୍ଥାନେ ସ୍ଥାନେ ବାଲୁଆଜମି । ବର୍ତ୍ତମାନ ଏହି ବନ ପର୍ବତମୟ ଦେଶକୁ ଗଡ଼ଜାତ ଏବଂ ସମତଳ ଓ ନିମ୍ନଭୂମିକୁ ମୋଗଲବନ୍ଦୀ ବୋଲି ମୁସଲମାନ ରାଜତ୍ୱ କାଳରୁ କୁହା ଯାଉଛି ।

ପ୍ରାକୃତିକ ଦୃଶ୍ୟ ହିସାବରେ ଉତ୍କଳ ଯେପରି ପୃଥିବୀର ସାରସ୍ୱରୂପ । ପୃଥିବୀରେ ଯେତେ ବିଚିତ୍ର ରକମ ଦୃଶ୍ୟାବଳୀ ଦେଖାଯାଏ, ସେ ସବୁ ଉତ୍କଳ ମଧ୍ୟରେ ଅଳ୍ପାଧିକ ପରିମାଣରେ ଅଛି । ଉଚ୍ଚ ଓ ଦୀର୍ଘ ପର୍ବତଶ୍ରେଣୀ, ବିସ୍ତୃତ ଓ ସୁଦୀର୍ଘ ନଦୀ, ନିବିଡ଼ ଅରଣ୍ୟ, ବିଶାଳ ପ୍ରାନ୍ତର, ଭୀଷଣ ପ୍ରପାତ, ସୁରମ୍ୟ ଉପଦ୍ୱୀପ, ହ୍ରଦ, ଉଷ୍ଣପ୍ରସ୍ରବଣ ପ୍ରଭୃତି ସକଳ ଦୃଶ୍ୟ ଏହି ଉତ୍କଳ ମଧ୍ୟରେ ଅଛି । ଉତ୍କଳ ଗିରି ବନ ନଦୀରେ ବିଶେଷରେ ପୂର୍ଣ୍ଣ ଥିବାରୁ ଏହି ବୈଦେଶିକମାନଙ୍କ ପ୍ରତି ସହଜଗମ୍ୟ ନଥିଲା । ସୁତରାଂ, ବିଦେଶୀ ଓ ବିଜାତୀୟ ଆକ୍ରମଣରୁ ଏହା ବହୁକାଳ ପର୍ଯ୍ୟନ୍ତ ମୁକ୍ତ ଥିଲା । ଭାରତର ଅନ୍ୟାନ୍ୟ ପ୍ରଦେଶମାନ ମୁସଲମାନ କବଳରେ ପଡ଼ି ସ୍ୱାଧୀନତା ଓ ସଭ୍ୟତାର ସ୍ୱାତନ୍ତ୍ର୍ୟ ହରାଇ ଥିଲେ ସୁଦ୍ଧା, ଉତ୍କଳ ପ୍ରାକୃତିକ ପରୀକ୍ଷା ଓ ପ୍ରାଚୀର ମଧ୍ୟରେ ରହି ସେହି ସ୍ୱାଧୀନତା ଓ ସଭ୍ୟତାକୁ ବହୁକାଳ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରଖି ପାରିଥିଲା । ଭାରତୀୟ କଳା, ଶିଳ୍ପ, ସାହିତ୍ୟ ଉତ୍କଳ ମଧ୍ୟରେ ବିଶୁଦ୍ଧ ଅବସ୍ଥାରେ ଏବେ ମଧ୍ୟ ରହିଛି । ଏହି ସମ୍ବନ୍ଧରେ ଯେଉଁମାନେ ପ୍ରାଚୀନ ତତ୍ତ୍ୱ ଖୋଜ ବାହାର କରିବାକୁ ବସନ୍ତି, ସେମାନେ ଉତ୍କଳର ମନ୍ଦିର ଓ ସାହିତ୍ୟରୁ ଯଥେଷ୍ଟ ଦୃଷ୍ଟାନ୍ତ ପାଆନ୍ତି । ପୁଣି ପ୍ରକୃତିର ବିଭବରେ ଉତ୍କଳ କିଛି ହୀନ ନଥିଲା । ହୀରା, ପଥର କୋଇଲା, ସୁନା ଓ ଲୁହାଖଣି ଉତ୍କଳର ନାନା ସ୍ଥାନରେ ପୂର୍ଣ୍ଣ ଥିଲା । ପ୍ରକୃତି ସଂପଦରେ ଚିରଶାନ୍ତି ଭୋଗକରି ଉତ୍କଳବାସୀ ଭାରତ ସଭ୍ୟତାକୁ ଯେପରି ସ୍ୱତନ୍ତ୍ର ଭାବରେ ବଢାଇ ପାରି ଥିଲେ, ଭାରତବର୍ଷ ମଧ୍ୟରେ ଅନ୍ୟତ୍ର ତାହା ବିରଳ ।



# ଦ୍ୱିତୀୟ ଅଧ୍ୟାୟ

## ଅଧିବାସୀ

ଅନାର୍ଯ୍ୟ ଜାତି—ଆର୍ଯ୍ୟମାନେ ଆସିବା ପୂର୍ବରୁ ଉତ୍କଳ ବା କଳିଙ୍ଗ ଅନାର୍ଯ୍ୟ ଜାତିମାନଙ୍କର ବାସଭୂମି ଥିଲା । ଆର୍ଯ୍ୟମାନେ ଏ ଦେଶକୁ ଆସିବାରେ ଅନାର୍ଯ୍ୟମାନଙ୍କୁ ମାଳ ଜଙ୍ଗଲକୁ ଘଉଡ଼େଇ ନିଜେ ଉର୍ବର ସମତଳ କ୍ଷେତ୍ରମାନ ଅଧିକାର କଲେ । କେତେକ ଅନାର୍ଯ୍ୟ ଆର୍ଯ୍ୟମାନଙ୍କର ଅଧୀନତା ସ୍ୱୀକାର କରି ଭୃତ୍ୟ ରୂପେ ଆର୍ଯ୍ୟମାନଙ୍କ ସଙ୍ଗେ ବାସ କଲେ । ଅଧିକାଂଶ ଅନାର୍ଯ୍ୟ ଆର୍ଯ୍ୟ ଅଧୀନତା ସ୍ୱୀକାର ନକରି ବର୍ତ୍ତମାନ ଗଡ଼ଜାତ ଅଞ୍ଚଳର ବନ ପର୍ବତରେ ନିରାପଦରେ ରହିବା ଶ୍ରେୟ ମଣିଲେ । ଯେଉଁମାନେ ଆର୍ଯ୍ୟମାନଙ୍କର ଅଧୀନତା ସ୍ୱୀକାର କଲେ, ସେମାନଙ୍କ ମଧ୍ୟରେ କଣ୍ଡରା, କଦଳ, ଡମ, ଚମାର, ପାଣ, ବାଉରି, ଖଇରା, ଘୁସୁରିଆ, ଭୂୟାଁ, ମେହେନ୍ତର, ଶବର ପ୍ରଭୃତି ପ୍ରଧାନ । ଏମାନେ ଆର୍ଯ୍ୟ ସହବାସରେ ରହି କ୍ରମେ ଆର୍ଯ୍ୟସଭ୍ୟତା ଗ୍ରହଣ କଲେ । ହିନ୍ଦୁ ଦେବଦେବୀଙ୍କଠାରେ ଏମାନଙ୍କର ବିଶ୍ୱାସ ଓ ଭକ୍ତି ଥାଏ, ଏବଂ ହିନ୍ଦୁ ଆଦର୍ଶରେ ଏମାନଙ୍କ ସାମାଜିକ ଓ ପାରିବାରିକ ଜୀବନ ଗଢା । ପୌରହିତ୍ୟ ପ୍ରଥା ଏମାନଙ୍କ ମଧ୍ୟରେ ଅଛି; ଏପରି କି ମେହେନ୍ତର ପ୍ରଭୃତି ଜାତିମାନେ ଆପଣା ମଧ୍ୟରେ କେତେକଙ୍କୁ ବ୍ରାହ୍ମଣ ବୋଲି ଧରି ସେମାନଙ୍କୁ ପଇତା ପିନ୍ଧାଇ ପୁରୋହିତ କାର୍ଯ୍ୟ କରାନ୍ତି । ପାଣ କଣ୍ଡରା ପ୍ରଭୃତି ନିଜ ଜାତିର ବୈଷ୍ଣବଙ୍କ ମଧ୍ୟରୁ କାହାରି କାହାରି ଦ୍ୱାରା ପୁରୋହିତ କାର୍ଯ୍ୟ କରାନ୍ତି । ଜଗନ୍ନାଥ ମନ୍ଦି-ରରେ ଏମାନେ ପଶି ନପାରିଲେ ସୁଦ୍ଧା ଏମାନେ ଜଗନ୍ନାଥ ଓ ଅନ୍ୟାନ୍ୟ ଦେବଦେବୀଙ୍କୁ ଭକ୍ତି କରନ୍ତି । ଏମାନଙ୍କର ଜଗନ୍ନାଥଦର୍ଶନର ସୁବିଧା ସକାଶେ 'ପତିତପାବନ' ମୂର୍ତ୍ତି ପୁରୀ ମନ୍ଦିରର ସିଂହଦ୍ୱାରରେ ସ୍ଥାପିତ ହୋଇ

ଅଛନ୍ତି । ନିକେ ଜଗନ୍ନାଥ ରଥଯାତ୍ରା ଓ ସ୍ନାନଯାତ୍ରା ବେଳେ ଏମାନଙ୍କୁ ଦର୍ଶନର ସୁବିଧା ଦିଅନ୍ତି । ପାଣମାନେ ଏମାନଙ୍କ ମଧ୍ୟରେ ନିକୃଷ୍ଟ ଶ୍ରେଣୀ । ଏପରିକି କନ୍ଧମାନେ ପାଣମାନଙ୍କୁ ମେହେନ୍ତର କାମରେ ଲଗାନ୍ତି । ନରବଳି ଦେଉଥିବା ସମୟରେ କନ୍ଧମାନେ ପାଣ ପିଲାଟିଏ କିଣିଆଣି ନରବଳି ଦେଉଥିଲେ । ସମୁଦ୍ର କୂଳରେ ଯେଉଁ କେଉଟ ବା କୈବର୍ତ୍ତମାନେ ବାସ କରନ୍ତି ସେମାନଙ୍କୁ ମଧ୍ୟ ଆର୍ଯ୍ୟମାନେ 'ମ୍ଲେଚ୍ଛ' ବୋଲି କହନ୍ତି ; ଏବଂ ସେମାନେ ପ୍ରାଚୀନ ଅଧିବାସୀ ଥିଲେ । ମାତ୍ର କାଳକ୍ରମେ ଅନ୍ୟାନ୍ୟ ଅନାର୍ଯ୍ୟଙ୍କ ମଧ୍ୟରେ କେଉଟ ଓ ନୋଳିଆମାନେ ଉନ୍ନତ ହୋଇ ଥିଲେ ।

ଆର୍ଯ୍ୟମାନଙ୍କ ପ୍ରଭାବରେ ଯେଉଁ ଅନାର୍ଯ୍ୟମାନେ ପାହାଡ଼ ଜଙ୍ଗଲରେ ଯାଇ ବାସକଲେ ସେମାନଙ୍କ ମଧ୍ୟରେ କୋଲ୍ହ, କନ୍ଧ, ସାନ୍ତାଳ, ଭୂୟାଁ, ଜୁଆଙ୍ଗ ଓ ମୁଣ୍ଡା ପ୍ରଭୃତି ଜାତିମାନେ ପ୍ରଧାନ । ଏମାନେ ଅତିମ ଅବସ୍ଥାରେ ଉଲଗ୍ନ ହୋଇ ରହୁଥିଲେ; କ୍ରମେ କ୍ରମେ ଆର୍ଯ୍ୟ ପ୍ରଭାବରେ ଲୁଗାପିନ୍ଧା ଶିଖିଲେ । ଏବେ ମଧ୍ୟ କେନ୍ଦୁଝର, ଢେଙ୍କାନାଳ ଓ ହିନ୍ଦୋଳ ପ୍ରଭୃତି ଗଡ଼ଜାତ ଅଞ୍ଚଳରେ ଜୁଆଙ୍ଗମାନେ ଲୁଗା ବ୍ୟବହାର କରି ନାହାନ୍ତି । ଜଙ୍ଗଲର ଚେରମୂଳ ଓ ଫଳ ଏବଂ ଶିକାର ମାଂସ ଅନେକ ଜାତିଙ୍କର ପ୍ରଧାନ ଖାଦ୍ୟ । ସାନ୍ତାଳ, କନ୍ଧ ଓ ଭୂୟାଁ ପ୍ରଭୃତି କେତେ ଜାତି କେତେକାଳ ହେଲା କୃଷି କରୁଛନ୍ତି । ହିନ୍ଦୁ ଦେବଦେବୀଙ୍କଠାରେ ଏମାନଙ୍କର ସେତେ ଆସ୍ଥା ଓ ଭକ୍ତି ନଥାଏ । କାଳକ୍ରମେ ସେ ଆସ୍ଥା ସେମାନଙ୍କ ମଧ୍ୟରେ ଜନ୍ମୁଛି । କେତେକ ହିନ୍ଦୁପର୍ବ ମଧ୍ୟ କୌଣସି କୌଣସି ଜାତି ଆରମ୍ଭ କରିଛନ୍ତି । ଅଳ୍ପକାଳ ପୂର୍ବ ପର୍ଯ୍ୟନ୍ତ ସେମାନେ ନରବଳି ଦେଉଥିଲେ । ଏବେ ଇଂରେଜ ରାଜତ୍ୱରେ ସେ ପ୍ରଥା ବନ୍ଦ କରାଯାଇଛି । ରାଜ୍ୟର ରାଜାଙ୍କଠାରେ ଏମାନଙ୍କର ପୂର୍ଣ୍ଣ ଭକ୍ତି ଥାଏ । କେନ୍ଦୁଝରରେ ଏପରି ପ୍ରଥା ଅଛି ଯେ ଅଭିଷେକ ବେଳେ ନୂତନ ରାଜା ଜଣେ ବୃଦ୍ଧ ଭୂୟାଁ କୋଳରେ ବସି ଅଭିଷିକ୍ତ ହୁଅନ୍ତି । ଏମାନେ ବଡ଼

ସତ୍ୟନିଷ୍ଠ, ପାପ ଓ ମିଥ୍ୟା ପ୍ରତି ବଡ଼ ଅସନ୍ତୁଷ୍ଟ । ଏବେ କିନ୍ତୁ ସଭ୍ୟତାର ସଂପର୍କରେ ଆସି କେହି କେହି ମିଥ୍ୟା କହିବାକୁ ଶିଖିଲେଣି । ସମାଜ-ବନ୍ଧନ ଏମାନଙ୍କ ମଧ୍ୟରେ ବଡ଼ କଠିନ; ଏବଂ ଛୋଟ ବଡ଼ ସବୁ ଦୋଷ ପାଇଁ ମୁଣ୍ଡକାଟ ଏମାନଙ୍କର ସହଜ ଓ ସାଧାରଣ ଶାସ୍ତି । କୌଣସି ଅନ୍ୟାୟ ବିରୁଦ୍ଧରେ ମେଳ କରିବା ଏମାନଙ୍କ ପକ୍ଷେ ବଡ଼ ସହଜ । ଏମାନଙ୍କର ଅତିଥି ସତ୍କାର ଅତି ବିଚକ୍ଷଣ । କୌଣସି ଗ୍ରାମରେ ଯେ କେହି ଅତିଥି ପହଞ୍ଚିଲେ ତାହାର ସେବା ନିମନ୍ତେ ସମୁଦାୟ ଗ୍ରାମବାସୀ ବ୍ୟାକୁଳ ! ତୀର, ବର୍ଚ୍ଛା ଏମାନଙ୍କର ପ୍ରଧାନ ଆୟୁଧ । ଜୀବଜନ୍ତୁ ଶିକାରରେ ଏମାନଙ୍କର ପରମ ପ୍ରୀତି ।

ଓଡ୍ରଜାତି—ଉତ୍କଳରେ ପ୍ରଥମ ଆର୍ଯ୍ୟବସତି ଓଡ୍ରଜାତିଙ୍କ ଦ୍ୱାରା ଆରମ୍ଭ ହୋଇଥିଲା । ଓଡ୍ରମାନେ ମନୁସଂହିତାରେ 'ପତିତ କ୍ଷତ୍ରିୟ' ବୋଲି କୁହା-ଯାଇଛନ୍ତି, ଏବଂ ପୌଣ୍ଡ୍ର ଓ ଦ୍ରାବିଡ଼ ଜାତିଙ୍କ ସଙ୍ଗେ ସମାନ କରାଯାଇଛନ୍ତି । ଋକ୍‌ବେଦରେ କଳିଙ୍ଗର ପରିଚୟ ମିଳେ, ମାତ୍ର ଓଡ୍ରନାମ ମିଳେନାହିଁ । ଋକବେଦ ବେଳକୁ ଓଡ୍ରଜାତି କଳିଙ୍ଗରେ ନଥିଲେ । ରାମାୟଣରେ କିନ୍ତୁ ଓଡ୍ର କଳିଙ୍ଗ ଓ ଉତ୍କଳ ଏହି ତିନିନାମ ଦେଖାଯାଏ । ତେବେ ରାମାୟଣ ପୂର୍ବରୁ ଓଡ୍ରଜାତି କଳିଙ୍ଗରେ ବାସକର ଥିଲେ । ଓଡ୍ରମାନେ ଆର୍ଯ୍ୟକ୍ଷତ୍ରିୟ ଥିଲେ ; ମାତ୍ର କଳିଙ୍ଗର ଅଧମ ଅନାର୍ଯ୍ୟମାନଙ୍କ ସଙ୍ଗେ ବହୁକାଳ ରହିବାରୁ ; ଏବଂ ପୌଣ୍ଡ୍ର ଓ ଦ୍ରାବିଡ଼ମାନଙ୍କ ସଂପର୍କରେ ଆସିଥିବାରୁ ସେମାନଙ୍କର ଆର୍ଯ୍ୟଧର୍ମ ଓ ସଭ୍ୟତା ବହୁପରିମାଣରେ ମିଶ୍ରିତ ହୋଇଯାଇଥିଲା । ତେଣୁ ମନୁ ସେମାନଙ୍କୁ ସଂସ୍କାରହୀନ ପତିତ କ୍ଷତ୍ରିୟ ବୋଲି କହନ୍ତି । ଓଡ୍ରମାନେ କ୍ଷତ୍ରିୟ ଏବଂ ଯୁଦ୍ଧବିଦ୍ୟାରେ ବିଶେଷ ନିପୁଣ ଥିଲେ । ସେମାନେ କଳିଙ୍ଗରେ ପଶିବା ମାତ୍ରେ ଅନାର୍ଯ୍ୟମାନଙ୍କୁ ପରାସ୍ତକରି ଜଙ୍ଗଲ ପର୍ବତ ଅଞ୍ଚଳକୁ ତଡ଼ିଦେଲେ, ଏବଂ ନିଜେ ଉର୍ବର ସମତଳ ଭୂମିରେ ବାସକଲେ । ଓଡ୍ରମାନେ କୃଷିବିଧାନରେ ବିଶେଷ ନିପୁଣ ଥିଲେ ।

ଅଦ୍ୟାବଧି ମଧ୍ୟ ସେମାନଙ୍କର ବଂଶଧରମାନେ ଏ ଦେଶରେ ପ୍ରଧାନ ଶ୍ରେଣୀ । ସ୍ୱାଧୀନ ଉତ୍କଳରେ ଓଡ୍ରମାନେ ସୈନ୍ୟଶ୍ରେଣୀଭୁକ୍ତ ଥିଲେ; ଏବଂ ମୁସଲମାନମାନଙ୍କ ସଙ୍ଗେ ଏମାନେ ପ୍ରଧାନତଃ ଯୁଦ୍ଧ କରୁଥିବାରୁ, ଏମାନଙ୍କ ନାମାନୁସାରେ ମୁସଲମାନମାନେ ଏ ଦେଶକୁ 'ଓଡ଼ିଶା' ନାମ ଦେଇଥିଲେ । ଓଡ୍ରମାନେ ଏଦେଶରେ ବସତି କରିବାର ବହୁକାଳ ପରେ ଅନ୍ୟ ଏକଦଳ ଆର୍ଯ୍ୟ ବସତି କରିବାକୁ ଆସିଲେ । ସେମାନେ ପତିତ ଓଡ୍ର-ମାନଙ୍କୁ ଦୂର ଜଙ୍ଗଲ ଓ ପାର୍ବତ୍ୟ ପ୍ରଦେଶକୁ ତଡ଼ିଦେଇ ଉର୍ବର କ୍ଷେତ୍ରରେ ବସତି କଲେ । ଓଡ୍ରମାନେ ଏହିରୂପେ ବିତାଡ଼ିତ ହୋଇ ପଶ୍ଚିମାଞ୍ଚଳରେ ବସତି କଲେ । ଆଧୁନିକ ଜୟପୁର, ବସ୍ତର ଓ ସମ୍ବଲପୁର ଅଞ୍ଚଳ ଓଡ୍ର ବସତି ହେଲା । ଏହି ଅଞ୍ଚଳ 'ଓଡ୍ରଦେଶ' ବୋଲି ମହାଭାରତ ଯୁଗରେ ପରିଚିତ ହେଲା । ଓଡ୍ରରାଜା ପାଣ୍ଡବମାନଙ୍କୁ ହାତୀଦାନ୍ତ ଉପହାର ଦେଇଥିବାର ମହାଭାରତରେ ଲେଖା ଅଛି । ଏହି ଓଡ୍ରମାନେ କୃଷି ଓ ଯୁଦ୍ଧକୁ ପ୍ରଧାନ ଜୀବିକା ଧରିଥିଲେ । ପରେ ଗଙ୍ଗବଂଶୀୟ ରାଜାମାନେ ସମଗ୍ର କଳିଙ୍ଗର ରାଜା ହେବାରୁ ସେମାନଙ୍କର ଓଡ୍ରସୈନ୍ୟମାନେ ଉତ୍କଳକୁ ଆସିଲେ, ଏବଂ ଭୋଇ-ବଂଶୀୟ ରାଜାମାନଙ୍କ ସମୟରେ ରାଜଧାନୀ ଖୋର୍ଦ୍ଧାରେ ସ୍ଥାପିତ ହେବାରୁ, ସେମାନେ ଖୋର୍ଦ୍ଧାରେ ବସତି କଲେ । ବର୍ତ୍ତମାନ ମଧ୍ୟ ଓଡ୍ର ଜାତି ଜୟପୁର ଓ ଗଞ୍ଜାମରେ ଅଛନ୍ତି ।

**ଆର୍ଯ୍ୟଆଗମନ**— ଓଡ୍ରମାନେ ଏ ଦେଶରେ ବହୁକାଳ ରହିବାପରେ ପୁଣି ଏକ ଦଳ ଆର୍ଯ୍ୟ ଏ ଦେଶରେ ବସତି କଲେ । କେବେ ଯେ ଏମାନେ ଏ ଦେଶକୁ ଆସିଲେ ଠିକ୍ କୁହା ଯାଇ ନପାରେ । ତେବେ ମହାଭାରତ ପୂର୍ବରୁ କଳିଙ୍ଗରେ ଶୁଦ୍ଧ ଆର୍ଯ୍ୟମାନେ ବସତି କରିଥିଲେ ସନ୍ଦେହ ନାହିଁ । ମହାଭାରତ ଯୁଦ୍ଧକୁ ଖ୍ରୀଷ୍ଟପୂର୍ବ ଦୁଇହଜାର ବର୍ଷ ଧରିଲେ, ଖ୍ରୀଷ୍ଟପୂର୍ବ ୬୦୦୦ ବର୍ଷ ପୂର୍ବରୁ କଳିଙ୍ଗ ବଙ୍ଗ ଆର୍ଯ୍ୟବସତିରେ ପରିଣତ ହୋଇ-ଥିଲା । ବୁଦ୍ଧଦେବଙ୍କର ଗୃହୀ ଶିଷ୍ୟଙ୍କ ମଧ୍ୟରେ ତପୁସା ଓ ଭଲ୍ଲିକ ପ୍ରଥମେ

ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସେମାନେ ଉତ୍କଳବାସୀ ବଣିକ ଥିଲେ । ସେମାନେ ୫୦୦ ଶଗଡ଼ରେ ବଣିକ ପଦାର୍ଥ ବୋଝାଇ କରି ବାଣିଜ୍ୟ ଉଦ୍ଦେଶ୍ୟରେ ମଧ୍ୟଦେଶକୁ ଯାଉଥିଲେ । ବାଟରେ ବୋଧଗୟାରେ ବୁଦ୍ଧଦେବଙ୍କୁ ଦେଖି ସେଠାରେ ସେମାନେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ସେମାନେ ବଣିକ ଆର୍ଯ୍ୟ ଥିଲେ । ତତ୍ପରେ ଅଶୋକଙ୍କ ବିଜୟ ସଙ୍ଗେ ସଙ୍ଗେ ଆର୍ଯମାନେ ଉତ୍ତରାଞ୍ଚଳରୁ ବହୁତ ଆସିଥିଲେ; ଏବଂ ବୌଦ୍ଧ ପ୍ରଚାରକମାନେ ଏ ଦେଶରେ ବୌଦ୍ଧଧର୍ମ ପ୍ରଚାର କରୁଥିଲେ । ଏହି ସବୁ ଆର୍ଯ୍ୟମାନେ ଏ ଦେଶରେ ଓଡ୍ର, ଦ୍ରାବିଡ ଓ ଅନାର୍ଯମାନଙ୍କ ସଙ୍ଗେ ରହି ଅଗ୍ରର ସେପରି ସ୍ୱତନ୍ତ୍ର ରଖିପାରି ନ ଥିଲେ । ତହୁଁ ପରେ ଖ୍ରୀଷ୍ଟ ୭ମ ଶତାବ୍ଦି ଶେଷକୁ ଯଯାତିଙ୍କ ସମୟରେ ଯଜ୍ଞାଦି ବ୍ରାହ୍ମଣ କ୍ରିୟା କରିବା ନିମନ୍ତେ କାନ୍ୟକୁବ୍ଜରୁ ବିଶୁଦ୍ଧ ଆର୍ଯ ବ୍ରାହ୍ମଣମାନେ ଅଣାହୋଇ ଏ ଦେଶରେ 'ଶ୍ରୋତ୍ରୀୟ' ବ୍ରାହ୍ମଣ ହୋଇ ବାସକଲେ ।

କାଳକ୍ରମେ ଉତ୍କଳ ବ୍ରାହ୍ମଣମାନେ ବାସସ୍ଥାନ ଅନୁସାରେ ଦୁଇ ପ୍ରଧାନ ବିଭାଗରେ ବିଭକ୍ତ ହେଲେ । ଯେଉଁମାନେ ଯାଜପୁର ନିକଟରେ ବାସକଲେ, ସେମାନେ 'ଯାଜପୁରଶ୍ରେଣୀୟ'; ଏବଂ ଯେଉଁମାନେ ଯାଜପୁରରୁ ଆସି ଦକ୍ଷିଣାଞ୍ଚଳରେ ବସତି କଲେ, ସେମାନେ 'ଦକ୍ଷିଣଶ୍ରେଣୀୟ' ବ୍ରାହ୍ମଣ ବୋଲି ପରିଚିତ ହେଲେ । ଏହି ଦୁଇ ବିଭାଗ ପୁଣି ପ୍ରତ୍ୟେକେ ଶ୍ରୋତ୍ରୀୟ ବା ବୈଦିକ ଏବଂ ଅଶ୍ରୋତ୍ରୀୟ ବା ଅବୈଦିକ ନାମକ ବିଭାଗରେ ବିଭକ୍ତ ହେଲେ । ଶ୍ରୋତ୍ରୀୟ ଶ୍ରେଣୀ ଶାସନୀ ବ୍ରାହ୍ମଣ; ରାଜାମାନଙ୍କ ଦାନଜମି ଦ୍ୱାରା ଏମାନେ ଜୀବିକା ନିର୍ବାହ କରନ୍ତି । ଅଶ୍ରୋତ୍ରୀୟ ବ୍ରାହ୍ମଣମାନେ ପୁଣି ତିନି ଶ୍ରେଣୀରେ ବିଭକ୍ତ—(୧) ସାରୁଆ ବା ପନିଅରୀ ବ୍ରାହ୍ମଣ; ସେମାନେ ସାରୁ ଓ ଅନ୍ୟାନ୍ୟ ପରିବା ପରି ଗୃଷକରି ଜୀବିକାର୍ଜ୍ଜନ କରନ୍ତି; (୨) ପଣ୍ଡା ପୂଜାରୀ ପୁଅରି ବା ଦେଉଳିଆ ବ୍ରାହ୍ମଣ, ଦେବସେବା ସେମାନଙ୍କର ପ୍ରଧାନ କାର୍ଯ୍ୟ; ଏବଂ (୩) ମଟିଆ ବ୍ରାହ୍ମଣ, ସେମାନେ ନିକୃଷ୍ଟ ବ୍ରାହ୍ମଣ । ଶ୍ରୋତ୍ରୀୟ-

ମାନେ ଉପରୋକ୍ତ ତିନଶ୍ରେଣୀ ବ୍ରାହ୍ମଣଙ୍କ ସଙ୍ଗେ ବୈବାହିକ ସମ୍ବନ୍ଧ କରନ୍ତି ନାହିଁ । ବୁଦ୍ଧଦେବଙ୍କ ପୂର୍ବରୁ ଯେଉଁ ଆର୍ଯ୍ୟ ବ୍ରାହ୍ମଣମାନେ ଉତ୍କଳରେ ବସତି କରିଥିଲେ, ସେମାନେ ବର୍ତ୍ତମାନ 'ମାସ୍ତାନ' ବା 'ବଳରାମ ଗୋଣୀ' ବ୍ରାହ୍ମଣ । ଉପରୋକ୍ତ ଅଶ୍ରୋତ୍ରୀୟ ବ୍ରାହ୍ମଣମାନେ ମଧ୍ୟ ଏହି ମାସ୍ତାନ ବ୍ରାହ୍ମଣ-ମାନଙ୍କ ସଙ୍ଗେ ବୈବାହିକ ସମ୍ବନ୍ଧ ସ୍ଥାପନ କରନ୍ତି ନାହିଁ । ଏମାନେ ଲଙ୍ଗଳ ଧରି ଚାଷ କରନ୍ତି । ସମ୍ବଲପୁରଅଞ୍ଚଳରେ ଏହି ଶ୍ରେଣୀର ବ୍ରାହ୍ମଣମାନଙ୍କୁ ଅରଣ୍ୟକ ବ୍ରାହ୍ମଣ କହନ୍ତି ।

ପୁଣ୍ୟଭୂମି—ଇତିହାସର ପ୍ରଥମ ଅବସ୍ଥାରେ ଉତ୍କଳ ଓ କଳଙ୍ଗ ସେପରି ପବିତ୍ର ଦେଶ ନଥିଲା । କେବଳ ଅନାର୍ଯ୍ୟମାନଙ୍କର ଦେଶ ଥିବାରୁ ଏହା ଅପବିତ୍ର ହୋଇଥିଲା । ଏପରିକି ଓଡ୍ରମାନେ ଆର୍ଯ୍ୟ ଜାତି ଥିଲେ ସୁଦ୍ଧା ଏ ଦେଶରେ ଅନାର୍ଯ୍ୟ ସହବାସରେ ବହୁଦିନ ରହିଯିବାରୁ, ସେମାନେ ମଧ୍ୟ 'ପତିତ' ବୋଲି ଗଣ୍ୟ ହେଲେ । କାଳକ୍ରମେ ଆର୍ଯ୍ୟମାନେ ଏ ଦେଶକୁ ଅଧିକ ସଂଖ୍ୟାରେ ଆସି ବସତି କଲେ । ଆର୍ଯ୍ୟ ସଭ୍ୟତା ଦେଶରେ ବ୍ୟାପିଲା, ଉତ୍କଳ ପବିତ୍ର ଦେଶ ବୋଲି ଗଣ୍ୟ ହେଲା । ହିନ୍ଦୁମାନଙ୍କର ଦେବାଧିଦେବ ସ୍ୱୟଂ ଜଗନ୍ନାଥଙ୍କ ଯୋଗେ ଉତ୍କଳ ଭାରତର ପୁଣ୍ୟଭୂମି ରୂପରେ ପୂଜା ପାଇଲା । ହିନ୍ଦୁ ରାଜ୍ୟର ଚାରିଧାମମଧ୍ୟରୁ ପୁରୀ ସର୍ବଶ୍ରେଷ୍ଠ ଧାମ । ଭୁବନେଶ୍ୱର ମଧ୍ୟ ହିନ୍ଦୁମାନଙ୍କର, ଏବଂ ତାହାପୂର୍ବରୁ ଜୈନମାନଙ୍କର, ପ୍ରଧାନ ଧର୍ମପୀଠ । ଚାରି ଧର୍ମକ୍ଷେତ୍ର ମଧ୍ୟରୁ ପୁରୀ 'ଚକ୍ରତୀର୍ଥ', ଭୁବନେଶ୍ୱର 'ଶଙ୍ଖକ୍ଷେତ୍ର', କୋଣାର୍କ 'ପଦ୍ମକ୍ଷେତ୍ର' ଏବଂ ଯାଜପୁର 'ଗଦାକ୍ଷେତ୍ର' ନାମରେ ପ୍ରସିଦ୍ଧ । ଉତ୍କଳର ପବିତ୍ରତା ଯୋଗୁଁ ଭାରତର ପ୍ରଧାନ ପ୍ରଧାନ ଧର୍ମସମ୍ପ୍ରଦାୟମାନେ ପୁରୀକୁ ପରମ ଆଶ୍ରୟସ୍ଥଳୀ କରିଛନ୍ତି । ଶ୍ରୀ ଶଙ୍କରାଚାର୍ଯ୍ୟ ଶ୍ରୀରାମାନୁଜ ପ୍ରଭୃତି ସିଦ୍ଧସାଧକମାନଙ୍କର ପୀଠ ପୁରୀରେ ଅଛି । ଶ୍ରୀକୃଷ୍ଣଚୈତନ୍ୟ ହରିନାଥ ପ୍ରଭୃତି ମହାପୁରୁଷମାନେ ଶ୍ରୀକ୍ଷେତ୍ରକୁ ଆପଣାର ପ୍ରଧାନ ଲୀଳାସ୍ଥଳ କରିଥିଲେ । ଏହିମାନଙ୍କ ବାଦ୍ କେତେ ସିଦ୍ଧତପା ଯୋଗୀଋଷି ଉତ୍କଳଭୂମିରେ

ଆଶ୍ରୟ ନେଇ ଏହାକୁ ପରମ ପବିତ୍ର ଭାବି ଯାଇଅଛନ୍ତି । କୋଣାର୍କକ୍ଷେତ୍ର ପୂର୍ବେ 'ମୈତ୍ରେୟବନ' ନାମରେ ଖ୍ୟାତ ଥିଲା । ଶ୍ରୀକୃଷ୍ଣଙ୍କର ପୁତ୍ର ଶାମ୍ବ ସେହିଠାରେ ସୂର୍ଯ୍ୟ ଦେବଙ୍କୁ ଧ୍ୟାନ କରି କୁଷ୍ଠରୋଗରୁ ମୁକ୍ତହୋଇଥିଲେ; ଏବଂ ସେହିଠାରେ ମିତ୍ରାଦିତ୍ୟାଦି ସୂର୍ଯ୍ୟ ଦେବଙ୍କୁ ସ୍ଥାପନକରି କ୍ଷେତ୍ର ସୃଷ୍ଟିକରିଥିଲେ । ସେ ଯେଉଁ ଚନ୍ଦ୍ରଭାଗା ନଦୀରେ ସ୍ନାନକରି ମୁକ୍ତ ପାଇଥିଲେ, ତାହା ପୋତି ହୋଇ ପଡ଼ିଲାଣି, ତଥାପି ଯେଉଁ ଖଣ୍ଡ ଅବଶିଷ୍ଟ ଅଛି ଅଦ୍ୟାପି ତାହା ତୀର୍ଥ ଆକାରରେ ରହିଛି । ଉତ୍କଳମଧ୍ୟରେ ଏସବୁ କ୍ଷେତ୍ର ବାଦ୍ , ଏକାମ୍ର କାନନ, ବିରଜା କ୍ଷେତ୍ର ବା ଯାଜପୁର, ବୈତରଣୀ, ଚନ୍ଦ୍ରୋପଳା, ପ୍ରାଚୀ ପ୍ରଭୃତି ପବିତ୍ର କ୍ଷେତ୍ର ଓ ତୀର୍ଥରୂପେ ସମଗ୍ର ଭାରତରେ ଆଦର ପାଉଛି । ମହାଭାରତ, ବ୍ରହ୍ମପୁରାଣ, ସ୍କନ୍ଦପୁରାଣ, ପଦ୍ମପୁରାଣ ପ୍ରଭୃତି ଉତ୍କଳକୁ ଭାରତର ପ୍ରଧାନ ପୁଣ୍ୟଦେଶ ବୋଲି ଗଣନା କରି ଅଛନ୍ତି ।



# ଦ୍ୱିତୀୟ ଭାଗ

# କଳିଙ୍ଗ

---

## ପ୍ରଥମ ଅଧ୍ୟାୟ

### ପୌରାଣିକ ଯୁଗ

ଦେଶର ପ୍ରାଚୀନତ୍ୱ — କଳିଙ୍ଗ ବା ଉତ୍କଳ ଭାରତବର୍ଷ ଗୋଟିଏ ଅତି ପ୍ରାଚୀନ ଦେଶ । ଆର୍ଯ୍ୟମାନଙ୍କର ଆଦିମଗ୍ରନ୍ଥ ଋକ୍ ବେଦରେ କଳିଙ୍ଗ ଦେଶର ନାମ ଅଛି । ରାମାୟଣରେ କଳିଙ୍ଗ ଓ ଉତ୍କଳ ଦେଶର ନାମ ଦେଖାଯାଏ । ରାମଚନ୍ଦ୍ର ବନଗମନ କାଳରେ ଉତ୍କଳଦେଶ ବାଟ ଦେଇ ଗୋଦାବରୀ ତୀରବର୍ତ୍ତୀ ପଞ୍ଚବଟୀକୁ ଯାଇଥିଲେ । ଉତ୍କଳର ନାନାସ୍ଥାନରେ ଦେବଦେବୀ ଓ ତୀର୍ଥମାନଙ୍କରେ ରାମଚନ୍ଦ୍ର ଉପାସନା ଓ ସ୍ନାନ କରିଥିବାର ଅଦ୍ୟାପି ପ୍ରବାଦ ରହିଅଛି । ରାମାୟଣର ଦଣ୍ଡକାରଣ୍ୟ ଉତ୍କଳଦେଶରୁ ଆରମ୍ଭ ହୋଇ ଦାକ୍ଷିଣାତ୍ୟ ଅଞ୍ଚଳକୁ ବ୍ୟାପିଥିଲା । ରଘୁଙ୍କର ଦିଗ୍ୱିଜୟ କାଳରେ ଉତ୍କଳ ଓ କଳିଙ୍ଗ ବାଟ ଦେଇ ରଘୁ ଦାକ୍ଷିଣାତ୍ୟ ଅଞ୍ଚଳକୁ ଯାତ୍ରା କରିଥିଲେ । ମହାଭାରତରେ କଳିଙ୍ଗ ଉତ୍କଳ ଓ ଓଡ୍ର ଏ ତିନିଦେଶର ନାମ ଲେଖାଅଛି । ଋକ୍‌ବେଦ ଖ୍ରୀଷ୍ଟପୂର୍ବ ୪୦୦୦ ବର୍ଷ ପୂର୍ବେ ଲେଖା ଯାଇଥିବାର ପଣ୍ଡିତମାନେ ସାଧାରଣତଃ କହନ୍ତି । ସୁତରାଂ କଳିଙ୍ଗ ଅନ୍ତତଃ ୬୦୦୦ ବର୍ଷ ପୂର୍ବରୁ ଭାରତର ଅନ୍ୟାନ୍ୟ ଦେଶ ମଧ୍ୟରେ ଆପଣାର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିଥିଲା । ରାମାୟଣ କାଳରୁ ଖ୍ରୀଷ୍ଟ ଜନ୍ମର ତିନିହଜାର ବର୍ଷ ପୂର୍ବରୁ କଳିଙ୍ଗରୁ ଉତ୍କଳ ଦେଶର ସୃଷ୍ଟି ହୋଇଥିଲା । ଓଡ୍ରଦେଶ

ମହାଭାରତ ପୂର୍ବରୁ ସ୍ଥାପିତ ହୋଇଥିଲା । ମୂଳତଃ ଭାରତର ପ୍ରାଚୀନତମ ଦେଶମାନଙ୍କ ମଧ୍ୟରେ କଳିଙ୍ଗ ଓ ଉତ୍କଳ ପୁରାଣ ମତମାରେ ବଡ଼ ସ୍ଥାନ ନ ଥିଲା ।

ମହାଭାରତ ଯୁଦ୍ଧ—ମହାଭାରତର କୁରୁ ପାଣ୍ଡବଙ୍କ ଯୁଦ୍ଧରେ କଳିଙ୍ଗ ସେନା କୌରବ ପକ୍ଷରେ ଯୁଦ୍ଧ କରିଥିଲେ । ଭାରତବର୍ଷର ପ୍ରାୟ ପ୍ରତ୍ୟେକ ଦେଶର ରାଜାମାନେ ସେହି ମହାସମରରେ ନିଜ ନିଜର ପରାକ୍ରମ ଦେଖାଇ ଥିଲେ । କଳିଙ୍ଗ ରାଜା ଶ୍ରୁତାୟୁ ବା ଶ୍ରୁତାୟୁଧ ଆପଣାର ବୀରପୁତ୍ର ଭାନୁମାନ କେତୁମାନ ଏବଂ ଶୁକ୍ରଦେବକୁ ସଙ୍ଗେ ଘେନି ସସୈନ୍ୟରେ ଭୀମଙ୍କ ସଙ୍ଗେ ଯୁଦ୍ଧ କରିଥିଲେ । କଳିଙ୍ଗରୁ ୬୦ ହଜାର ରଥ, ଏବଂ ପର୍ବତ ସମାନ ହାତୀ ୧୦ ହଜାର ଯାଇ ଯୁଦ୍ଧ କରିଥିଲେ । ଯେଉଁ ସପ୍ତରଥୀ ମାନେ ସୈନ୍ୟଙ୍କ ଆଗେ ଆଗେ ରହି ଯୁଦ୍ଧ କରୁଥିଲେ କଳିଙ୍ଗ ରାଜା ସେମାନଙ୍କର ଅଗ୍ରଗାମୀ ଥିଲେ ।

ଧୃଷ୍ଟଦ୍ୟୁମ୍ନଙ୍କୁ ଦ୍ରୋଣଙ୍କ ହସ୍ତରୁ ରକ୍ଷା କରିବା ପାଇଁ ଭୀମ ହଠାତ୍ ଦ୍ରୋଣଙ୍କୁ ପାଦବାଣ ମାରିଲେ । ଦ୍ରୋଣଙ୍କର ପ୍ରାଣ ଆଶଙ୍କା ଦେଖି କଳିଙ୍ଗ ରାଜା ସସୈନ୍ୟରେ ଭୀମଙ୍କ ଆଡ଼କୁ ଧାଇଁଲେ । କଳିଙ୍ଗ ରାଜା ଓ ଭୀମଙ୍କ ମଧ୍ୟରେ 'ଲୋମହର୍ଷଣ ସଂଗ୍ରାମ' ହେଲା; ଏବଂ ସେହି ସଂଗ୍ରାମ 'ଜଗତକ୍ଷୟକର' ବୋଲି ବୋଧ ହେଉଥିଲା । ଭୀମ ଚେଦି ସୈନ୍ୟଙ୍କ ସାହାଯ୍ୟରେ କଳିଙ୍ଗ ବିରୁଦ୍ଧରେ ଯୁଦ୍ଧ କରୁଥିଲେ । କଳିଙ୍ଗ ରାଜପୁତ୍ର କେତୁମାନ ଆପଣାର ନିଷାଦ ସୈନ୍ୟଙ୍କୁ ଘେନି ଚେଦି ସୈନ୍ୟଙ୍କୁ ଆକ୍ରମଣ କଲେ । ଚେଦିମାନେ ପରାସ୍ତ ହୋଇ ଭୀମଙ୍କୁ ଛାଡ଼ି ପଳାଇ ଗଲେ । ଭୀମ କାତର ହେଲେ ନାହିଁ । ଯେ କେତେକ ସୈନ୍ୟ ରହିଥିଲେ, ସେମାନଙ୍କୁ ଧରି ସେ କଳିଙ୍ଗ ବାହିନୀଙ୍କ ଉପରେ ଶସ୍ତ୍ରଶର ବୃଷ୍ଟି କଲେ । କଳିଙ୍ଗ ରାଜା ଶ୍ରୁତାୟୁ ଓ ପୁତ୍ର ଶୁକ୍ରଦେବ ମଧ୍ୟ ଭୀମଉପର ବାଣ ବର୍ଷଣ କଲେ । ଶୁକ୍ରଦେବଙ୍କ ଶରଆଘାତରେ ଭୀମଙ୍କ ଅଶ୍ୱମାନେ ମରିଗଲେ । ଭୀମ ରଥରୁ

ଓହ୍ଲାଇପଡ଼ି ଗଦାଧର ଯୁଦ୍ଧକଲେ । ଗଦାପ୍ରହାରରେ ଶୁକ୍ରଦେବ ଓ ତାଙ୍କ ସାରଥି ପ୍ରାଣ ହରାଇଲେ । ରାଜା ଶତ୍ରୁତାପ୍ୟୁ ପୁତ୍ରବଧ ଦେଖି କ୍ରୋଧରେ ଭୀମଙ୍କ ଗୃହଅଡେ ରଥ ଚଳାଇଦେଲେ । ଭୀମ ବ୍ୟାକୁଳ ହୋଇ ଗଦା ଛାଡ଼ି ତରବାରୀରେ ଯୁଦ୍ଧକଲେ । କଳିଙ୍ଗ ଶରବର୍ଷଣ ସମ୍ଭାଳ ନ ପାରି ଭୀମ ବୃଷଭଚର୍ମରେ ଦେହ ଘୋଡାଇ ରଖିଥିଲେ । ଶତ୍ରୁତାପ୍ୟୁ 'ଅଶୀତିଷଷ୍ଠପଦ୍ମଶ' ଏକ ଶର ଏବଂ ତାପରେ 'ଚତୁର୍ଦ୍ଦଶ ତୋମର' ନାମକ ଅନ୍ୟଶର ପ୍ରୟୋଗ-କଲେ । ଭୀମ ସେ ସବୁ ଖଣ୍ଡାରେ ବାରଣ କଲେ ।

ଏହି ସମୟରେ ଭାନୁମାନ ଅଗ୍ରସର ହେଉଥିବାର ଦେଖି ଭୀମ ତାଙ୍କ ସଙ୍ଗେ ଯୁଦ୍ଧକଲେ । ଭାନୁମାନଙ୍କ ଶରବୃଷ୍ଟି ଏବଂ ଭୀଷଣ ଗର୍ଜନରେ ଭୀମ ପ୍ରଥମେ ଭୟ କରିଗଲେ । ମାତ୍ର ପୁଣି ସାହସ ବାନ୍ଧି ତରବାରୀ ହାତରେ ଧରି ଭୀମ ଭାନୁମାନଙ୍କ ହାତୀଉପରକୁ ଉଠିଗଲେ । ଭାନୁମାନ ଓ ତାହାଙ୍କ ହାତୀ ଭୀମର ତରବାରୀରେ ପ୍ରାଣ ହରାଇଲେ । ଏତେବେଳକୁ ଉଭୟପକ୍ଷ ସୈନ୍ୟଙ୍କର ମୃତଦେହ ପର୍ବତପରି ଜମା ହୋଇଗଲା । ଶତ୍ରୁତାପ୍ୟୁ ପୁତ୍ର ମରିବାର ଦେଖି ରାଗରେ ଅଧୀର ହୋଇ ୯ଟି ତୀକ୍ଷ୍ଣଶର ମାରିଲେ । ସେ ବାଣରେ ଭୀମ ଅଧୀର ହୋଇ ପଡିବାର ଦେଖି ସାରଥି ଅଶୋକ ଭୀମଙ୍କୁ ଆଉ ଗୋଟିଏ ରଥ ଆଣିଦେଲେ । ଘୋର ବାଣବର୍ଷଣ ହେଲା । ଶେଷରେ ରାଜା ଶତ୍ରୁତାପ୍ୟୁ, ତାହାଙ୍କର ଦୁଇ ଚକ୍ରରକ୍ଷକ ସତ୍ୟ ଓ ସତ୍ୟଦେବ ଏବଂ ନିଜେ କେତୁମାନ ବାଣ ବିଦ୍ଧହୋଇ ପ୍ରାଣ ହରାଇଲେ । ଆପଣାର ରାଜା ଓ ରାଜପୁତ୍ରମାନଙ୍କର ମୃତ୍ୟୁରେ କାତର ନ ହୋଇ କଳିଙ୍ଗ-ବାହିନୀ ପ୍ରାଣପଣେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ । ସେମାନଙ୍କ ଆକ୍ରମଣରେ ଭୀମ ଅଧୀର ହୋଇ ପୁଣି ଥରେ ରଥରୁ ଓହ୍ଲାଇ ପଡିଲେ ଏବଂ ଗଦା ପ୍ରହାରରେ ଦୁଇ ହଜାର ସାତ ଶହ କଳିଙ୍ଗ ସୈନ୍ୟ ମାରିଦେଲେ । ବହୁସଂଖ୍ୟକ ଅଶ୍ୱ ଓ ଗଜ ସୈନ୍ୟମଧ୍ୟ ମରି ପଡିଲେ । ଅବଶିଷ୍ଟ କଳିଙ୍ଗ ସୈନ୍ୟ ତଥାପି ଭୀମଙ୍କୁ ଏପରି ବୟୁଙ୍କର ଭାବରେ ଆକ୍ରମଣ କଲେ

ଯେ ଧୃଷ୍ଟଦ୍ୟୁମ୍ନ ତାଙ୍କୁ ରକ୍ଷା କରିବା ନିମନ୍ତେ ଧାଇଁ ଆସିଲେ । ସେହି ଦୁଇ ବୀରଙ୍କୁ କଳିଙ୍ଗ ବାଣବର୍ଷଣ କରିବାରେ ଅସମର୍ଥ ଦେଖି ଶେଷରେ ସାତ୍ୟକି ମଧ ଆସି ସେମାନଙ୍କୁ ସାହାଯ୍ୟ କଲେ । ଏହି ତିନି ମହାରଥିଙ୍କ ସଙ୍ଗେ ଯୁଦ୍ଧରେ ପଡ଼ି ଅସଂଖ୍ୟ କଳିଙ୍ଗ ସେନା ନିହତ ହେଲେ । କଳିଙ୍ଗ ସୈନ୍ୟଙ୍କ ପରାଜୟ ପରେ ଭୀମ ଯୁଦ୍ଧରୁ କ୍ଷାନ୍ତହୋଇ ଫେରିଲେ । ତାହାଙ୍କୁ ତୁଷ୍ଟ କରିବା ନିମନ୍ତେ ସାତ୍ୟକି ତାଙ୍କ ବୀରତ୍ୱର ବହୁତ ପ୍ରଶଂସା କରିଥିଲେ ।

ସଭ୍ୟତା—ଉପରୋକ୍ତ ଯୁଦ୍ଧ ବର୍ଣ୍ଣନା ଉତ୍କଳର ସଭ୍ୟତା ଉନ୍ନତ ଥିବାର ପରିଚୟ ଦିଏ । କଳିଙ୍ଗ ରାଜବଂଶ ଆର୍ଯ୍ୟ ଥିଲେ । ତାହାଙ୍କ ସୈନ୍ୟଙ୍କ ମଧ୍ୟରେ କେତେକ ନିଷାଦ ବା ଶବର ଅନାର୍ଯ୍ୟ ଥିଲେ ମଧ ଆର୍ଯ୍ୟମାନଙ୍କ ସଙ୍ଗେ ରହି ଆର୍ଯ୍ୟସଭ୍ୟତାରେ ଉନ୍ନତ ହୋଇଥିଲେ । ରାଜାଙ୍କ ମୃତ୍ୟୁରେ ସୈନ୍ୟମାନେ ଭୟରେ ଛତ୍ରଭଙ୍ଗ ନ ହୋଇ ଭୀମଙ୍କ ସଦୃଶ ବୀରକୁ କାତର କରି ପକାଇଥିଲେ । ସେମାନଙ୍କର ଯୁଦ୍ଧକୌଶଳ ପ୍ରଶଂସନୀୟ ଥିଲା । ମହାଭାରତଠାରୁ ବୌଦ୍ଧଜାତକ ପର୍ଯ୍ୟନ୍ତ ପ୍ରାଚୀନ ଗ୍ରନ୍ଥମାନଙ୍କରେ କଳିଙ୍ଗ କଥା ଯେତେ ଲେଖାଯାଇଛି ସେଥିରୁ ବୋଧହୁଏ କଳିଙ୍ଗ ଉନ୍ନତ ଦେଶ ଥିଲା । ନିକେ କୁରୁରାଜା ଦୁର୍ଯ୍ୟୋଧନ କଳିଙ୍ଗ ରାଜକନ୍ୟା ଚିତ୍ରାଙ୍ଗଦାଙ୍କୁ ବିବାହ କରିଥିଲେ । ଭାରତରେ ଆର୍ଯ୍ୟ ବସତି ପୂର୍ବରୁ ଦାକ୍ଷିଣାତ୍ୟରେ ଦ୍ରାବିଡ଼ମାନଙ୍କ ମଧ୍ୟରେ ଗ୍ରାମ ଗଠନ ଓ ଗ୍ରାମୀୟ ଜୀବନ ବଡ଼ ଉନ୍ନତ ହୋଇଥିଲା । କଳିଙ୍ଗବାସୀ ଅଧିକ ଆର୍ଯ୍ୟମାନେ ନିଜର ଆର୍ଯ୍ୟ ସଭ୍ୟତା ସଙ୍ଗେ ଦ୍ରାବିଡ଼ ସଭ୍ୟତା ମିଳାଇ ଉନ୍ନତ କରି ପାରିଥିଲେ । ପ୍ରଥମେ ଆର୍ଯ୍ୟ ଗ୍ରନ୍ଥମାନଙ୍କରେ କଳିଙ୍ଗ ଆର୍ଯ୍ୟମାନେ ପତିତ ବୋଲି କୁହା ଯାଉଥିଲେ । ମାତ୍ର ଦୁର୍ଯ୍ୟୋଧନଙ୍କ ସମୟକୁ କଳିଙ୍ଗ ଆଉ ସେତେ ପତିତ ଦେଶ ନଥିଲା । ପରେ ପୁଣି ଆର୍ଯ୍ୟମାନେ ଅଧିକସଂଖ୍ୟାରେ ବସତି କଲେ; କଳିଙ୍ଗ କ୍ରମେ ପବିତ୍ର ଦେଶ ବୋଲି ଧରାଗଲା ।

ବାଣିଜ୍ୟ—ବାଣିଜ୍ୟ ସଭ୍ୟତାର ମାନଦଣ୍ଡ । ଏଥିରୁ ଦେଶର ସାହସ, ବୁଦ୍ଧି, କୌଶଳ ଓ ରୁଚି କେତେ ଉନ୍ନତ ତାହା ଜଣା ପଡ଼େ । କଳିଙ୍ଗ ବାଣିଜ୍ୟରେ ମହାଭାରତ ଯୁଗଠାରୁ ପ୍ରସିଦ୍ଧି ପାଇଥିଲା । ମହାଭାରତର ସଭାପର୍ବରେ ବର୍ଣ୍ଣନା ଅଛି , ଓଡ୍ରରାଜା ପାଣ୍ଡବମାନଙ୍କୁ ହାତୀ ଦାନ୍ତ ଜିନିଷମାନ ଉପହାର ଦେଇଥିଲେ । ହାତୀ ଧରିବା ଓ ହାତୀ ବ୍ୟବସାୟ କରିବା ଏବଂ ହାତୀ ଦାନ୍ତର ଶିଳ୍ପ କାର୍ଯ୍ୟ ଉତ୍କଳବାସୀଙ୍କୁ ମହାଭାରତ ଓ ତାହା ପୂର୍ବରୁ ଜଣାଥିଲା । ଦାକ୍ଷିଣାତ୍ୟର ଦ୍ରାବିଡ଼ମାନେ ଅତି ପ୍ରାଚୀନ କାଳରେ ଜଳ ସ୍ଥଳ ବାଣିଜ୍ୟରେ ପ୍ରସିଦ୍ଧି ଲାଭ କରିଥିଲେ । କଳିଙ୍ଗବାସୀ ଦ୍ରାବିଡ଼ ସମ୍ପର୍କରେ ଆସି ଉଭୟ ବାଣିଜ୍ୟରେ ଧୁରୀଣ ହୋଇଥିଲେ । ବୁଦ୍ଧଦେବ ବୋଧଗୟାରେ 'ବୁଦ୍ଧି' ପାଇବା ପରେ ତାହାଙ୍କ ପ୍ରଥମ ସଂସାର-ଶିଷ୍ୟ ତପୁସା ଓ ଭାଲ୍ଲିକ ଉତ୍କଳବାସୀ ବଣିକ ଥିଲେ । ସେମାନେ ୫୦୦ ଗାଡ଼ି ବଣିଜ ପଦାର୍ଥ ନେଇ ସୁଦୂର ମଧ୍ୟଦେଶକୁ ବାଣିଜ୍ୟ ଉଦ୍ଦେଶ୍ୟରେ ଯାଉଥିଲେ । ଉତ୍କଳର ନଦୀମାନ ପ୍ରଧାନ ବାଣିଜ୍ୟ-ପଥରୂପେ ବ୍ୟବହୃତ ହେଉ ଥିଲା । ସାମୁଦ୍ରିକ ବାଣିଜ୍ୟ ସମ୍ବନ୍ଧରେ ପରେ କୁହାଯିବ । ବର୍ତ୍ତମାନ ଏତିକି କୁହାଯାଇପାରେ ଯେ ଖ୍ରୀଷ୍ଟପୂର୍ବ ୩ୟ ଓ ୪ର୍ଥ ଶତାବ୍ଦୀରେ ଉତ୍କଳବାସୀ ଯେତେ ବଡ଼ ବଡ଼ ଜାହାଜମାନ ସାଗର ବକ୍ଷରେ ଭସାଇ ବାଣିଜ୍ୟ କରୁଥିବାର ବର୍ଣ୍ଣନା ଅଛି, ତାହାର ବହୁକାଳ ପୂର୍ବରୁ ଅନ୍ତତଃ ବୁଦ୍ଧଦେବଙ୍କ ପୂର୍ବରୁ ସାଗର ବାଣିଜ୍ୟରେ ଉତ୍କଳୀୟମାନେ ପ୍ରବୀଣ ଥିଲେ ।



# ଦ୍ୱିତୀୟ ଅଧ୍ୟାୟ



ନନ୍ଦଙ୍କ ପୂର୍ବବର୍ତ୍ତୀ ରାଜବଂଶ— ପୁରାଣମାନଙ୍କରେ ଲେଖାଅଛି ମହାଭାରତ ସମୟରୁ ନନ୍ଦରାଜତ୍ୱ ପର୍ଯ୍ୟନ୍ତ କଳିଙ୍ଗରେ ୩୨ ଜଣ ରାଜା ରାଜତ୍ୱ କରିଥିଲେ । ସେହି ରାଜବଂଶଙ୍କୁ 'ଐର' ବୋଲି କୁହାଯାଇଅଛି । ଉଦୟଗିରିର ହାତୀଗୁମ୍ଫା ଖୋଦିତ ଲିପିରେ ଲେଖାଅଛି ଚେତୁଭଦ୍ର ନାମରେ ସେହି ଐରବଂଶରେ ଜଣେ ରାଜା ଥିଲେ । କେହି କେହି ସେହି ଚେତୁଭଦ୍ରଙ୍କୁ ଶ୍ରୁତାୟୁଙ୍କ ପୁତ୍ର କେତୁମାନ ବୋଲି କହନ୍ତି । ମାତ୍ର କେତୁମାନ ମହାଭାରତ ଯୁଦ୍ଧରେ ପ୍ରାଣତ୍ୟାଗ କରିଥିଲେ ; ସୁତରାଂ ସେ ରାଜା ହୋଇପାରି ନ ଥିଲେ । ଶ୍ରୁତାୟୁଙ୍କ ପୂର୍ବ ବା ପରବର୍ତ୍ତୀ କେହି ରାଜା କେତୁଭଦ୍ର ନାମରେ ରାଜା ହୋଇ ଥିଲେ । ଖାରବେଳ ରାଜା ହେବାପରେ ସେହି କେତୁଭଦ୍ରଙ୍କର ବଜ୍ରର ପୂଜା କରୁଥିଲେ । କେତୁଭଦ୍ରଙ୍କ ବଂଶ ଆର୍ଯ୍ୟ ଥିଲେ ଏବଂ ମହାଭାରତ ପୂର୍ବରୁ ଆର୍ଯ୍ୟ ରାଜବଂଶର ରାଜତ୍ୱ ଉତ୍କଳ ବା କଳିଙ୍ଗରେ ଚାଲିଥିଲା ।

ନନ୍ଦବଂଶ—ଉଦୟଗିରିର ହାତୀଗୁମ୍ଫାରେ ଲେଖାଅଛି ନନ୍ଦବଂଶର ପ୍ରଥମ ରାଜା ମହାପଦ୍ମନନ୍ଦ ବା ନନ୍ଦବର୍ଦ୍ଧନ କଳିଙ୍ଗ ଜୟକରି ନନ୍ଦ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ । କଳିଙ୍ଗରେ ନନ୍ଦରାଜତ୍ୱ ନନ୍ଦବଂଶର ଶେଷ ରାଜାଙ୍କ ପର୍ଯ୍ୟନ୍ତ ଚାଲିଥିଲା । ନନ୍ଦରାଜାଙ୍କର ରାଜଧାନୀ ପାଟଳୀପୁତ୍ର ଥିଲା । ନନ୍ଦବଂଶରେ ନବେ ନନ୍ଦବର୍ଦ୍ଧନ ଓ ତାଙ୍କର ୮ ପୁତ୍ର ଏପରି ୯ ଜଣ

ରାଜା ରାଜତ୍ୱ କରୁଥିଲେ । ଶେଷ ନନ୍ଦରାଜା ମହାପଦ୍ମ ନନ୍ଦଙ୍କ ରାଜତ୍ୱ କାଳରେ ଗ୍ରୀସର ରାଜା ମହାବୀର ଅଲେକଜାଣ୍ଡ୍ରାର ଭାରତ ଆକ୍ରମଣ କରିଥିଲେ । ( ଖ୍ରୀ, ପୂ ୩୨୬ଅବ୍ଦ ) ଅଲେକଜାଣ୍ଡ୍ରାର ମଗଧ ପର୍ଯ୍ୟନ୍ତ ଆସି ପାରି ନ ଥିଲେ । ସେହି ଶେଷ ମହାପଦ୍ମ ନନ୍ଦ "ପ୍ରାସି" ବା ପ୍ରାଚୀ ଏବଂ 'ଗଙ୍ଗ ରାଇଡ଼' ବା ଓଡ୍ର ଦେଶର ରାଜା ଥିବାର ଲେଖାଅଛି । ନନ୍ଦଙ୍କ ପରେ ୩୨୨ ଅବ୍ଦରେ ମୌର୍ଯ୍ୟ ବଂଶ ମଗଧରେ ରାଜତ୍ୱ କଲେ । ମୌର୍ଯ୍ୟ ବଂଶର ପ୍ରତିଷ୍ଠାତା ଚନ୍ଦ୍ରଗୁପ୍ତ ମନ୍ତ୍ରୀ ଚାଣକ୍ୟଙ୍କ ମନ୍ତ୍ରଣା ବଳରେ ଶେଷ ନନ୍ଦରାଜା ମହାପଦ୍ମ ନନ୍ଦଙ୍କୁ ନାଶ କରି ମଗଧରେ ମୌର୍ଯ୍ୟବଂଶର ରାଜତ୍ୱ ପ୍ରତିଷ୍ଠା କଲେ । ସେହି ଚନ୍ଦ୍ରଗୁପ୍ତ ସମସ୍ତ ଆର୍ଯ୍ୟାବର୍ତ୍ତ ନିଜ ସାମ୍ରାଜ୍ୟଭୁକ୍ତ କରିଥିଲେ । ସେ ଭାରତର ପ୍ରଥମ ସମ୍ରାଟ ବୋଲି ଇତିହାସରେ ସମ୍ମାନ ପାଆନ୍ତି । ତାହାଙ୍କ ରାଜସଭାରେ ମେଗାସ୍ଥିନିସ ବୋଲି ଜଣେ ଗ୍ରୀକ୍ ଦୂତ ଓ ପଣ୍ଡିତ ଥିଲେ । ପ୍ରାଚୀନ ଭାରତର ସାମାଜିକ ଓ ରାଜନୈତିକ ଅବସ୍ଥା ବିଷୟରେ ସେ ବହୁତ କଥା ଲେଖିଥିଲେ । ସେ କହନ୍ତି ସେତେବେଳେ କଳିଙ୍ଗ ସ୍ୱାଧୀନ ଦେଶ ଥିଲା । କଳିଙ୍ଗ ନନ୍ଦ ଅଧିକାରରେ ଆସିଥିଲେ ସୁଦ୍ଧା ନନ୍ଦ ରାଜତ୍ୱ ମଧ୍ୟରେ ଦୁର୍ବଳ ହୋଇ ପଡି ନ ଥିଲା । ଶେଷ ନନ୍ଦରାଜାଙ୍କ ଦୁର୍ବଳ ଦେଖି ଅଲେକଜାଣ୍ଡ୍ରାରଙ୍କ ଦ୍ୱାରା ସେ ପରାସ୍ତ ହେବା ଏବଂ ମୌର୍ଯ୍ୟ ବଂଶର ପ୍ରତିଷ୍ଠା ହେବା ଦେଖି କଳିଙ୍ଗ ପୁନର୍ବାର ସ୍ୱାଧୀନତା ଘୋଷଣା କରିଥିଲା ।

ନନ୍ଦରାଜତ୍ୱ—ନନ୍ଦମାନେ ପ୍ରଜାପାଳକ ଓ ଧର୍ମପରାୟଣ ରାଜା ଥିଲେ । ସେମାନେ ବ୍ରାହ୍ମଣ ଧର୍ମାବଲମ୍ବୀ ଥିଲେ । ବ୍ରାହ୍ମଣଧର୍ମର ଶାସ୍ତ୍ରମାନଙ୍କ ଅନୁସାରେ ପ୍ରଜା ପାଳନ ଓ ଦେଶ ଶାସନ କରୁଥିଲେ । ହାତୀ ଗୁମ୍ଫାରେ ଲେଖା ଅଛି ପ୍ରଥମ ନନ୍ଦ ନନ୍ଦବର୍ଦ୍ଧନ କଳିଙ୍ଗ ରାଜଧାନୀଠାରୁ ଗୋଟିଏ କେନାଲ ଖୋଳାଇଥିଲେ । 'ତୋଷାଲୀ' ନନ୍ଦ ରାଜତ୍ୱରେ କଳିଙ୍ଗର ରାଜଧାନୀ ଥିଲା । ତୋଷାଳୀ କାଳକ୍ରମେ ପରିବର୍ତ୍ତିତ ହୋଇ ବର୍ତ୍ତମାନ ଧଉଳୀ ଶବ୍ଦ ହୋଇଅଛି ବୋଲି ପଣ୍ଡିତମାନେ କହନ୍ତି । ସୁତରାଂ କଳିଙ୍ଗ ରାଜଧାନୀ ତୋଷାଳୀ

ବର୍ତ୍ତମାନ ଖଣ୍ଡଗିରି, ଉଦୟଗିରି, ଭୁବନେଶ୍ୱର ଓ ଧଉଳି ପର୍ବତ ମଧ୍ୟରେ ବ୍ୟାପି ରହିଥିଲା । କେହି କେହି ଅନୁମାନ କରନ୍ତି ନନ୍ଦବର୍ଦ୍ଧନ ରାଜଧାନୀ ନିକଟରେ ଯେଉଁ କେନାଲ ଖୋଲାଇଥିଲେ ତାହା ବର୍ତ୍ତମାନ ଦୟାନଦୀ ହୋଇଥିବ । କୃଷିର ଉପକାର ଓ ବାଣିଜ୍ୟର ସୁବିଧା ନିମନ୍ତେ ସେହି କେନାଲଟି ଖୋଲା ହୋଇଥିଲା । ସେତେବେଳେ ସମୁଦ୍ରବାଣିଜ୍ୟ ବିଶେଷ ଚାଲୁଥିଲା; ମାତ୍ର ରାଜଧାନୀ ତୋଷାଳୀ ସମୁଦ୍ରକୂଳରୁ ଦୂରରେ ଥିଲା । କୋଣାର୍କ ପୁରୀ ଓ ଚିଲିକା ସେତେବେଳେ ପ୍ରଧାନ ବନ୍ଦର ଥିଲା । ସେହି ବନ୍ଦର-ମାନଙ୍କ ସଙ୍ଗେ ରାଜଧାନୀର ଜଳପଥର ସୁବିଧା ନିମନ୍ତେ କେନାଲଟି ଖୋଲା ହୋଇଥିଲା । ନନ୍ଦମାନଙ୍କର ଲୋକହିତ ଇଚ୍ଛା ସେଥିରୁ ବୁଝାପଡ଼େ ।

ଧର୍ମ—ନନ୍ଦ ରାଜାମାନେ ବ୍ରାହ୍ମଣଧର୍ମାବଲମ୍ବୀ ଥିଲେ । ମାତ୍ର ନନ୍ଦଙ୍କ ପୂର୍ବରୁ କଳିଙ୍ଗରେ ଜୈନଧର୍ମ ପ୍ରବେଶ କରିଥିଲା । ନନ୍ଦଙ୍କ ପୂର୍ବରୁ କଳିଙ୍ଗ ରାଜଧାନୀରେ ଖଣ୍ଡଗିରି ପର୍ବତରେ ବହୁତ ଜୈନ ସନ୍ୟାସୀ ଥିଲେ ଏବଂ ଜୈନ ବିଗ୍ରହ ମଧ୍ୟ ବହୁତ ଥିଲା । ନନ୍ଦବର୍ଦ୍ଧନ ସେଥିମଧ୍ୟରୁ ପ୍ରଥମ ଜିନ ଋଷଭଦେବଙ୍କ ପ୍ରତିମୂର୍ତ୍ତିମାନ ଆପଣାର ରାଜ୍ୟ ମଗଧକୁ ନେଇ ଯାଇଥିଲେ । ଜୈନଧର୍ମ ସମ୍ବନ୍ଧରେ ପରବର୍ତ୍ତୀ ଅଧ୍ୟାୟରେ ବିଶେଷ ବିବରଣ ଦିଆଯିବ । ନନ୍ଦମାନେ ବ୍ରାହ୍ମଣ ଧର୍ମାବଲମ୍ବୀ ଥିଲେ ମଧ୍ୟ ଜୈନଧର୍ମ ପ୍ରତି ଅବଜ୍ଞା ଦେଖାଉ ନ ଥିଲେ; ବରଂ ଜୈନ ଧର୍ମ ପ୍ରତି ଆସ୍ଥା ରଖିଥିଲେ ଏବଂ ନିଜ ରାଜଧାନୀର ଭୂଷଣ ସ୍ୱରୂପ ଉତ୍କଳରୁ ଜୈନ ମୂର୍ତ୍ତିମାନ ନେଇ ସ୍ଥାପନ କରିଥିଲେ ।



# ତୃତୀୟ ଅଧ୍ୟାୟ

## ଜୈନ ଓ ମୌର୍ଯ୍ୟ ରାଜତ୍ୱ

### ଖ୍ରୀ, ପୂ ୩୨୨--୨୨୦ ଅବ୍ଦ

ଜୈନ ରାଜଗଣ—ଏ ପୂର୍ବ ଅଧ୍ୟାୟରେ କୁହାଯାଇଛି ନନ୍ଦବଂଶର ଶେଷ ରାଜାଙ୍କୁ ଦୁର୍ବଳ ଦେଖି ଏବଂ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ତାହାଙ୍କୁ ମାରି ମଗଧ ସିଂହାସନ ଅଧିକାର କରିବାର ସୁବିଧା ଦେଖି, କଳିଙ୍ଗ ପୁନର୍ବାର ସ୍ୱାଧୀନ ହୋଇବସିଲା । ସେହି ସ୍ୱାଧୀନତା ବର୍ଦ୍ଧିତଠାରୁ କଳିଙ୍ଗରେ ଯେଉଁ ରାଜବଂଶ ରାଜତ୍ୱ କଲେ ତାହା ହାତୀ ଗୁମ୍ଫା ଖୋଦିତ ଲିପିରେ ଦ୍ୱିତୀୟ ରାଜବଂଶ ବୋଲି କଥିତ ହୋଇଅଛି । ନନ୍ଦମାନଙ୍କର ପୂର୍ବବର୍ତ୍ତୀ ରାଜଗଣ ପ୍ରଥମ ରାଜବଂଶ ନାମରେ ପରିଚିତ । ସେହି ୨ୟ ରାଜବଂଶରେ କଏ କଏ ରାଜା ଥିଲେ ଏବଂ ସେମାନେ କି କି କାର୍ଯ୍ୟ କରିଥିଲେ ତାହା ଏବେ ସୁଦ୍ଧା ଜଣାଯାଇନାହିଁ । ତେବେ ଏତିକି ଜଣାଯାଏ ଯେ ଏହି ରାଜବଂଶକୁ ଐର ବୋଲି କହନ୍ତି । ସେମାନେ ଆର୍ଯ୍ୟ ଥିଲେ । ସେମାନେ ମୌର୍ଯ୍ୟ ଅଧିକାର ପୂର୍ବରୁ ସ୍ୱାଧୀନଭାବରେ କଳିଙ୍ଗରେ ରାଜତ୍ୱ କରୁଥିଲେ । ସେମାନେ ପୁଣି 'ବେଦଧର୍ମ ବିନାଶକାଃ' ବେଦଧର୍ମର ବିରୋଧୀ ଥିଲେ । ମୌର୍ଯ୍ୟ ଅଧିକାର ପୂର୍ବରୁ କଳିଙ୍ଗରେ ବୌଦ୍ଧଧର୍ମ ପ୍ରବେଶ କରି ନ ଥିଲା । ସୁତରାଂ ସେ ବେଦବିରୋଧୀ ରାଜାମାନେ ଜୈନ ଥିଲେ । ସେମାନଙ୍କ ରାଜତ୍ୱ କାଳରେ ଜୈନ ଧର୍ମ ପ୍ରସାର ଉତ୍କଳରେ ବିଶେଷ ହୋଇଥିଲା । ସେହି ରାଜାମାନଙ୍କର ରାଜଧାନୀ ତୋଶାଳୀ ମଧ୍ୟ ଥିଲା ।

ଅଶୋକ——ମୌର୍ଯ୍ୟବଂଶର ତୃତୀୟ ଓ ସର୍ବ ପ୍ରସିଦ୍ଧ ସମ୍ରାଟ ଅଶୋକ ଖ୍ରୀଷ୍ଟପୂର୍ବ ୨୭୯ ଅବ୍ଦରୁ ୨୩୨ ଅବ୍ଦ ପର୍ଯ୍ୟନ୍ତ ମଗଧର ସମ୍ରାଟ ହୋଇଥିଲେ । ପ୍ରଥମ ଅବସ୍ଥାରେ ଅଶୋକ ବଡ଼ ନିର୍ଦ୍ଦୟ ଥିବାରୁ ତାହାଙ୍କର ନାମ 'ଚଣ୍ଡାଶୋକ' ଥିଲା । ସିଂହାସନ ପାଇବାର ୪ବର୍ଷ ପରେ ତାହାଙ୍କର ଅଭିଷେକ ହୋଇଥିଲା । ତାହାଙ୍କର ସିଂହାସନ ପାଇବାର ୧୩ବର୍ଷ ପରେ ଏବଂ ରାଜତ୍ୱର ନବମ ବର୍ଷରେ ଅର୍ଥାତ ଖ୍ରୀଷ୍ଟପୂର୍ବ ୨୬୨ ଅବ୍ଦରେ ଅଶୋକ କଳିଙ୍ଗ ଆକ୍ରମଣ କଲେ । ତାହାଙ୍କ ପିତାମହ ଚନ୍ଦ୍ରଗୁପ୍ତ କେବଳ କଳିଙ୍ଗ ଓ ଉତ୍କଳ ଛଡ଼ା ସମସ୍ତ ଆର୍ଯ୍ୟାବର୍ତ୍ତ ମୌର୍ଯ୍ୟସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ । ମାତ୍ର କଳିଙ୍ଗ କେବଳ ସ୍ୱାଧୀନ ଦେଶ ଥିଲା । କଳିଙ୍ଗବାସୀ ବିଶେଷ ପ୍ରବଳ ଓ ପରାକ୍ରାନ୍ତ ଯୋଦ୍ଧା ଥିଲେ । ଅଶୋକ ସମସ୍ତ ଭାରତବର୍ଷର ପ୍ରବଳ ସମ୍ରାଟ ଥାଇ ସୁଦ୍ଧା ସେ କଳିଙ୍ଗବାସିକୁ ଜିଣିବା ପାଇଁ ଯେପରି ଭୀଷଣ ଯୁଦ୍ଧ କରିଥିଲେ ସେଥିରେ କଳିଙ୍ଗର ପରାକ୍ରମ ଓ ଯୁଦ୍ଧକୌଶଳ ବେଶ ଜଣାପଡ଼େ । ଅଶୋକ ଆପଣାର ଅନୁଶାସନରେ କହିଛନ୍ତି, ସେହି ଯୁଦ୍ଧରେ କଳିଙ୍ଗବାସୀ ଏକ ଲକ୍ଷ ସୈନ୍ୟ ବନ୍ଦୀ ହୋଇଥିଲେ; ଏକ ଲକ୍ଷ ପଞ୍ଚାଶ ହଜାର ସୈନ୍ୟ ଆହତ ଏବଂ ଏହାର ବହୁଗୁଣରେ ସୈନ୍ୟ ହତ ହୋଇଥିଲେ । କଳିଙ୍ଗବାସୀ ଏତେ ସାହସରେ ଯୁଦ୍ଧକରି ଏତେ ସଂଖ୍ୟାରେ ଆପଣାର ସ୍ୱାଧୀନତା ରକ୍ଷାନିମନ୍ତେ ପ୍ରାଣ ଦାନ କରିଥିଲେ ଯେ ଅଶୋକ ନିର୍ଦ୍ଦୟ ଥିଲେ ସୁଦ୍ଧା ସେହିପରି ଦୃଶ୍ୟ ଦେଖି ପ୍ରାଣରେ ବଡ଼ କଷ୍ଟ ପାଇଥିଲେ । କଳିଙ୍ଗ ଯୁଦ୍ଧ ଅଶୋକଙ୍କ ଜୀବନ ପରିବର୍ତ୍ତନର ପ୍ରଧାନ କାରଣ । କେବଳ ଅଶୋକଙ୍କ ଜୀବନରେ ନୁହେଁ, ସ୍ୱାଧୀନତା ରକ୍ଷା ନିମନ୍ତେ କଳିଙ୍ଗର ଅକାତର ପ୍ରାଣଦାନ ପୃଥିବୀର ଇତିହାସରେ ପ୍ରସିଦ୍ଧ ହୋଇଅଛି । ସେହି ଯୁଦ୍ଧ ପରେ ଅଶୋକଙ୍କ ମନରୁ ଯୁଦ୍ଧ ପ୍ରବୃତ୍ତି ଛାଡ଼ିଲା; ଅହିଂସା ତାହାଙ୍କର ପରମ ଧର୍ମ ଓ ପ୍ରଧାନ ବଳ ହେଲା । କଳିଙ୍ଗ ରକ୍ତପାତରେ ବ୍ୟଥିତ ହୋଇ ସେ ଉପଗୁପ୍ତ ନାମକ ଜଣେ ବୌଦ୍ଧସନ୍ନ୍ୟାସୀଙ୍କଠାରୁ

ବୁଦ୍ଧଦେବଙ୍କର ଅହିଂସା ଧର୍ମ ଗ୍ରହଣ କଲେ । ସେହି ଘଟଣା ପରେ ସେ ଚଣ୍ଡାଶୋକ ପରିବର୍ତ୍ତେ ଧର୍ମାଶୋକ ଓ ପ୍ରିୟଦର୍ଶୀ ସମ୍ରାଟ ନାମରେ ଖ୍ୟାତ ହେଲେ ।

ଅଶୋକଙ୍କର ରାଜତ୍ୱ—ବୌଦ୍ଧଧର୍ମରେ ଦୀକ୍ଷିତ ହେବାପରେ ଅଶୋକ ବଡ଼ ଦୟାଳୁ, ଉଦାର ଓ ଧାର୍ମିକ ସମ୍ରାଟ ହେଲେ । ତାଙ୍କ ପୂର୍ବରୁ ବୌଦ୍ଧଧର୍ମ କେବଳ ବାସ୍ତୁ ମଧ୍ୟରେ ଆବଦ୍ଧ ରହିଥିଲା, ମାତ୍ର ତାହାଙ୍କର ଅସାଧାରଣ ପ୍ରତିଭା, ଉତ୍ସାହ ଓ କ୍ଷମତା ବଳରେ ସେ ତାହାକୁ ପୃଥିବୀ-ବ୍ୟାପି ଧର୍ମ କରିଥିଲେ । ଧର୍ମପ୍ରଚାରକ ନିଯୁକ୍ତ କରି ଭାରତର ନାନାସ୍ଥାନରେ ଏବଂ ସମଗ୍ର ଏସିଆ ମହାଦେଶ ଏବଂ ଉତ୍ତର ଅଫ୍ରିକାରେ ଅଶୋକ ବୌଦ୍ଧଧର୍ମ ପ୍ରଚାର କରାଇଲେ ଏବଂ ବୌଦ୍ଧ ପଣ୍ଡିତମାନଙ୍କର ସଭା କରି ବୌଦ୍ଧଧର୍ମ ଦଳିତ ବଦ୍ଧବନ୍ଧ ହେଲା । ବୁଦ୍ଧଦେବ ବୌଦ୍ଧ ଧର୍ମ ଧର୍ମ-ପ୍ରତିଷ୍ଠା ମାତ୍ର କରିଥିଲେ, ମାତ୍ର ଅଶୋକ ସେ ଧର୍ମରେ ପ୍ରାଣ ଦେଇ ସମଗ୍ର ପୃଥିବୀରେ ତାହାର ପ୍ରଭାବ ଓ ପ୍ରତିଷ୍ଠା କରାଇଥିଲେ । ତାହାଙ୍କୁ ବୌଦ୍ଧ ଧର୍ମର ଦ୍ୱିତୀୟ ପ୍ରତିଷ୍ଠାତା ବୋଲି କହିଲେ ଚଳେ । ବାସ୍ତବିକ ଯେଉଁ ମହାପୁରୁଷମାନେ ଯୁଗେ ଯୁଗେ ନବ ଧର୍ମ ସ୍ଥାପନ କରି ମାନବ ଜାତିର ଉଦ୍ଧାର ସାଧନ କରିଯାଇ ଅଛନ୍ତି, ପ୍ରିୟଦର୍ଶୀ ଅଶୋକ ପୃଥିବୀର ଇତିହାସରେ ସେହି ମହାପୁରୁଷମାନଙ୍କ ସଙ୍ଗେ ସମାନ ଗୌରବ ପାଇଅଛନ୍ତି ।

ବିପୁଳ ସାମ୍ରାଜ୍ୟ ମଧ୍ୟରେ ପ୍ରଜାମାନଙ୍କର ଧର୍ମଜ୍ଞାନ ବଢାଇବା ନିମନ୍ତେ ସେ ସ୍ଥାନେ ସ୍ଥାନେ ପାହାଡ଼ ଓ ସ୍ତମ୍ଭଦେହରେ ଧର୍ମଅନୁଶାସନମାନ ଖୋଳାଇ ଥିଲେ ଏବଂ ପୁରୋହିତ ଓ ଶାସନକର୍ତ୍ତା ନିଯୁକ୍ତକରି ପ୍ରଜାମାନଙ୍କୁ ଧର୍ମଜ୍ଞାନ ଶିକ୍ଷା ଦେଉଥିଲେ । କଳିଙ୍ଗ ଅଧିକାର କରି ଶାସନର ସୁବିଧା ନିମନ୍ତେ କଳିଙ୍ଗକୁ ଉତ୍ତର କଳିଙ୍ଗ ବା ଉତ୍କଳ ଏବଂ ଦକ୍ଷିଣ କଳିଙ୍ଗ ଏହି

ଦୁଇଭାଗରେ ବିଭକ୍ତ କରିଥିଲେ । ତୋଷାଳୀ ଉତ୍କଳର ରାଜଧାନୀ ଏବଂ ଯଉଗଡ଼ ( * ) ବା ସମାପ ଦକ୍ଷିଣ କଳିଙ୍ଗର ରାଜଧାନୀ ଥିଲା । ଉଭୟ ରାଜଧାନୀରେ ଦୁଇଜଣ ସ୍ୱତନ୍ତ୍ର ଶାସନକର୍ତ୍ତା ଥିଲେ । ଏହି ଦୁଇ ରାଜଧାନୀରେ ମଧ୍ୟ ପ୍ରଜାଙ୍କ ଧର୍ମଭାବ ବଢାଇବା ନିମନ୍ତେ ଅଶୋକଙ୍କ ଅନୁଶାସନ ଖୋଳାଯାଇଥିଲା । ଧଉଲିପର୍ବତରେ ଅଶୋକଙ୍କ ଏକାଦଶ ଆଜ୍ଞା ଖୋଳାଯାଇ ଅଦ୍ୟାପି ରହିଛି ( ‡ ) ଅଶୋକ ଏତେ ଭୀଷଣ ଯୁଦ୍ଧ ପରେ

---

* କେବଳ ଯଉରେ ଗଡର ପାଚୀରି ତିଆରି ହୋଇଥିବାରୁ ନାମ ଯଉଗଡ ହୋଇ ଥିଲା ।

‡ ଏକାଦଶ ଆଜ୍ଞା ଯଥା—

(୧) ଜୀବହିଂସା ନିଷେଧ ;

(୨) ମନୁଷ୍ୟ ଓ ପଶୁମାନଙ୍କ ନିମନ୍ତେ ଔଷଧ ଓ ଚିକିତ୍ସା ବ୍ୟବସ୍ଥା, ରାସ୍ତା ପାଖରେ ଗଛ ପୋତିବା;

(୩) ପ୍ରତି ପାଞ୍ଚ ବର୍ଷରେ ବୌଦ୍ଧଧର୍ମର ପ୍ରଧାନ ନୀତିମାନ ପ୍ରଚାର କରିବା ଯଥା—ପିତାମାତାଙ୍କୁ ଭକ୍ତି, ସାଇବନ୍ଧୁ ପଡ଼ୋଶୀଙ୍କ ପ୍ରତି ସ୍ନେହ, ଜୀବେ ଦୟା, ମିତାଚାର, ମନବାକ୍ୟର ସଂଯମ, ଇତ୍ୟାଦି ;

(୪) ପୂର୍ବ ଅବସ୍ଥା ସଙ୍ଗେ ବର୍ତ୍ତମାନ ରାଜନୀତିରେ ଦେଶର ଉନ୍ନତିର ତୁଳନା ;

(୫) ଦେଶୀୟ ଓ ବିଦେଶୀୟ ( ବଶୀଭୂତ ଓ ସ୍ୱାଧୀନ ) ରାଜା ଓ ପ୍ରଜାମାନଙ୍କୁ ଧର୍ମ ଉପଦେଶ ଦେଇ ଦକ୍ଷିତ କରିବାପାଇଁ ଉପଦେଶ ବା ପ୍ରଚାରକ ନିଯୁକ୍ତ କରିବା ;

(୬) ପ୍ରଜାମାନଙ୍କ ଆଚାର ବ୍ୟବହାର ଓ ଧର୍ମ ଜୀବନ ତଦନ୍ତ କରିବାପାଇଁ ଚର ନିଯୁକ୍ତି କରିବା ;

(୭) ଭିନ୍ନ ଭିନ୍ନ ଧର୍ମ ପ୍ରତି ମମତା ଓ ଉଦାରତା ଦେଖାଇବା ।

(୮) ପୂର୍ବର ପ୍ରଚଳିତ 'ବିହାର ଯାତ୍ରା ( ଶିକାର ) ପରିବର୍ତ୍ତେ ଧର୍ମଯାତ୍ରା । କରିବା ଯଥା ସାଧୁସଙ୍ଗ, ଧନଦାନ, ଗୁରୁଭକ୍ତି, ଇତ୍ୟାଦି ।

(୯) ଧର୍ମ ଆଚରଣ ପ୍ରକୃତସୁଖଦାୟକ ଏବଂ ପରଜନ୍ମରେ ସ୍ୱର୍ଗ ସୁଖଦାୟକ ଏହା ପ୍ରଚାରକରିବା;

(୧୦) ଲୌକିକ ସୁଖ, ଯଶ ଅନିତ୍ୟ, ସେଥିରେ ଅନାସ୍ଥା କରି ସ୍ୱର୍ଗୀୟ ସୁଖ ପ୍ରତି ପବିତ୍ର ଓ ଉଚ୍ଚ ବୋଧରେ ଆଗ୍ରହ କରିବା ;

(୧୧) ଧର୍ମ ଉପଦେଶ ଦେବା ପ୍ରକୃତ ଉପକାର କାର୍ଯ୍ୟ ଏବଂ ତାହା ସର୍ବଗୁଣରେ ଶ୍ରେଷ୍ଠ ।

କଳିଙ୍ଗର ସବୁଅଞ୍ଚଳ ଅଧିକାର କରିପାରି ନ ଥିଲେ । ତାହାଙ୍କ ଅନୁଶାସନରେ ସେହି ସ୍ୱାଧୀନ ରାଜ୍ୟମାନଙ୍କର ରାଜା ଓ ପ୍ରଜାମାନଙ୍କୁ ସେହି ଧର୍ମଜ୍ଞାନ ଗ୍ରହଣ ଓ ପ୍ରଚାର ନିମନ୍ତେ ଆହ୍ୱାନ କରିଥିଲେ । କଳିଙ୍ଗର ସେହି ପର୍ବତ-ଖୋଦିତ ଲିପିପରେ ତାମ୍ରଲିପ୍ତରେ ଅଶୋକ ଗୋଟିଏ ସ୍ତମ୍ଭ ନିର୍ମାଣକରି ଧର୍ମଅନୁଶାସନ ମଧ୍ୟ ତହିଁରେ ଖୋଳାଇଥିଲେ ।

ପ୍ରଜାଙ୍କ ସୁବିଧା ନିମନ୍ତେ କଳିଙ୍ଗରେ ଅଶୋକ ପଥ, ଘାଟ ତିଆରି ଓ କୂଅ ପୋଖରୀ ସ୍ଥାନେ ସ୍ଥାନେ ଖୋଳାଇ ଥିଲେ । ଚିକିତ୍ସା ନିମନ୍ତେ ମନୁଷ୍ୟ ଓ ଗୋରୁ ପ୍ରଭୃତି ପଶୁଙ୍କ ନିମନ୍ତେ ଚିକିତ୍ସାଳୟ ବସାଇଥିଲେ । ପଥରେ ସ୍ଥାନେ ସ୍ଥାନେ ଯାତ୍ରୀମାନଙ୍କ ସୁବିଧା ନିମନ୍ତେ ସିଆରି ଏବଂ ଦୁଇ ପାଖରେ ଗଛଧାଡି ବସାଇ ଥିଲେ । ସ୍ଥୂଳତଃ ଧର୍ମପରାୟଣ ଓ ପ୍ରଜାହିତାକାଙ୍କ୍ଷୀ ସମ୍ରାଟ ଅଶୋକଙ୍କ ପରି ଦ୍ୱିତୀୟ ରାଜତ୍ୱ କରିନାହାନ୍ତି ।

ମୌର୍ଯ୍ୟଶାସନର ଅବସାନ—୩୭ ବର୍ଷ ରାଜତ୍ୱ କରି ଅଶୋକ ଖ୍ରୀଷ୍ଟପୂର୍ବ ୨୩୨ ଅବ୍ଦରେ ପ୍ରାଣତ୍ୟାଗ କଲେ । ତାହାଙ୍କର ପରବର୍ତ୍ତୀ ସମ୍ରାଟ ବିଶେଷ ପରାକ୍ରମୀ ଓ ବିଚକ୍ଷଣ ନ ଥିବାରୁ ମୌର୍ଯ୍ୟ ସାମ୍ରାଜ୍ୟ ଖଣ୍ଡ ବିଖଣ୍ଡ ହୋଇଗଲା । ଯେଉଁ ରାଜାମାନେ ମୌର୍ଯ୍ୟସାମ୍ରାଜ୍ୟ ମଧ୍ୟରେ ଅଧୀନ ରାଜା ଥିଲେ, ସେମାନେ ସ୍ୱାଧୀନ ହୋଇ ବସିଲେ । ପୁଷ୍ୟମିତ୍ର ବା ବୃହସ୍ପତିମିତ୍ର ଶେଷ ମୌର୍ଯ୍ୟସମ୍ରାଟଙ୍କର ମନ୍ତ୍ରୀ ଥିଲେ । ବୃହଦ୍ରଥଙ୍କୁ ନିତାନ୍ତ ଦୁର୍ବଳ ଦେଖି ଏବଂ ମୌର୍ଯ୍ୟସାମ୍ରାଜ୍ୟ ଲୋପପାଇବାର ଆଶଙ୍କା କରି ପୁଷ୍ପମିତ୍ର ବୃହଦ୍ରଥଙ୍କୁ ବଧ କଲେ ଏବଂ ନିଜେ ମୌର୍ଯ୍ୟ ସିଂହାସନ ଅଧିକାର କଲେ । ତାହାଙ୍କଠାରୁ ମଗଧରେ ମିତ୍ରବଂଶର ରାଜତ୍ୱ ଆରମ୍ଭ ହେଲା । ପୁଷ୍ପ ମିତ୍ର ସମଗ୍ର ଆର୍ଯ୍ୟାବର୍ତ୍ତ ପୁଣି ଥରେ ଜୟକରି ମିତ୍ର ସାମ୍ରାଜ୍ୟ ବିସ୍ତାର କଲେ । ଆପଣାକୁ ରାଜଚକ୍ରବର୍ତ୍ତୀ କରିବା ନିମନ୍ତେ ସେ 'ଅଶ୍ୱମେଧ' ଯଜ୍ଞ କରିଥିଲେ ଏବଂ ସମଗ୍ର ଆର୍ଯ୍ୟାବର୍ତ୍ତରେ ଏକେଶ୍ୱର ସମ୍ରାଟ ହୋଇଥିଲେ । ପୁଷ୍ପ ମିତ୍ର ବ୍ରାହ୍ମଣ ଥିଲେ; ସୁତରାଂ ମିତ୍ର ବଂଶର ଶାସନରେ ବୌଦ୍ଧଧର୍ମ ପରିବର୍ତ୍ତରେ ବ୍ରାହ୍ମଣ-ଧର୍ମ ପୁଣି ପ୍ରସାର ପାଇଲା ।



# ଚତୁର୍ଥ ଅଧ୍ୟାୟ

## ଚୈତ୍ରବଂଶ

### ଖ୍ରୀଷ୍ଟ ପୂର୍ବ ୨୨୦ ଠାରୁ ଖ୍ରୀଷ୍ଟ ପ୍ରଥମ ଶତାବ୍ଦି

ଚୈତ୍ର ବଂଶ—ଅଶୋକ କଳିଙ୍ଗ ଅଧିକାର କରିବାରୁ କଳିଙ୍ଗର ସ୍ୱାଧୀନ ଐର ରାଜବଂଶ ଅଶୋକଙ୍କ ଅଧୀନତା ସ୍ୱୀକାର କରି ନ ଥିଲେ । ସେମାନେ କଳିଙ୍ଗ ଛାଡ଼ି କୋଶଳା ବା ଦକ୍ଷିଣ କୋଶଳ ରାଜ୍ୟରେ ସ୍ୱାଧୀନ ଭାବରେ ରାଜତ୍ୱ କରୁଥିଲେ । ଅଶୋକଙ୍କ ମୃତ୍ୟୁର ୧୭ବର୍ଷ ପରେ ଅର୍ଥାତ୍ ଖ୍ରୀଷ୍ଟ ପୂର୍ବ ୨୨୦ଅବ୍ଦରେ ମୌର୍ଯ୍ୟ ସମ୍ରାଟଙ୍କୁ ହୀନବଳ ଦେଖି ଚୈତ୍ର ଐର ନାମକ ଏକ ରାଜା କୋଶଳରୁ ଆସି କଳିଙ୍ଗକୁ ପୁଣି ସ୍ୱାଧୀନ କଲେ । ତାହାଙ୍କ ନାମାନୁସାରେ ତାହାଙ୍କ ପ୍ରତିଷ୍ଠିତ କଳିଙ୍ଗ ରାଜ ବଂଶ ଚୈତ୍ର ବା ଚେତ ବଂଶ ନାମରେ ପରିଚିତ । ସେହି ଚୈତ୍ରବଂଶ କଳିଙ୍ଗର ତୃତୀୟ ରାଜ-ବଂଶ । ପୁରାଣ ଅନୁସାରେ ସୂର୍ଯ୍ୟବଂଶର ମନୁଙ୍କ ମଧ୍ୟରେ ସ୍ୱାରୋଚିଷ-ନାମରେ ଜଣେ ରାଜା ଥିଲେ । ଚୈତ୍ର ଐର ତାହାଙ୍କ ବଂଶଧର ଥିଲେ । କଳିଙ୍ଗର ତିନି ରାଜବଂଶ ଐର ଉପାଧି ଧରିଥିଲେ; ସେହି ତିନି ବଂଶ ଏକ ବଂଶ ଥିଲେ ଅଥବା ପୃଥକ ବଂଶର ଥାଇ ଅନାର୍ଯ୍ୟ ରାଜାମାନଙ୍କଠାରୁ ଆପଣା ଆପଣାର ପାର୍ଥକ୍ୟ ଦେଖାଇବା ନିମନ୍ତେ ଆର୍ଯ୍ୟ ବା ଐର ଉପାଧି ଧରିଥିଲେ । ଚୈତ୍ରରାଜା କୋଶଳାରୁ ରାଜଧାନୀ ଉଠାଇଆଣି ଭୁବନେଶ୍ୱରର ଖଣ୍ଡଗିରି ନିକଟରେ "ଏକ ପ୍ରସ୍ତର' ନାମକ ସ୍ଥାନରେ ରାଜଧାନୀ ସ୍ଥାପନ କଲେ । ପୂର୍ବେ କୁହାଯାଇଛି ନନ୍ଦରାଜାଙ୍କ ରାଜତ୍ୱ କାଳରୁ ମୌର୍ଯ୍ୟ ଶାସନ ଶେଷ ପର୍ଯ୍ୟନ୍ତ ତୋଷାଳୀ କଳିଙ୍ଗର ରାଜଧାନୀ ଥିଲା । ସେହି

ତୋଷାଳୀ ମଧ୍ୟ "ଏକ ପ୍ରସ୍ତର." ଥିବାର ପ୍ରାଚୀନ ଲେଖାମାନ ଅଛି । ଚନ୍ଦ୍ର ଗୁପ୍ତଙ୍କ ଗ୍ରୀକଦୂତ ମେଗାସ୍ଥିନସ ତାହାକୁ 'ପାର୍ଥଲୀ' ବୋଲି ଲେଖିଥିଲେ । ସୁତରାଂ ନନ୍ଦରାଜତ୍ୱ କାଳରୁ ଚୈତ୍ରବଂଶ ଶେଷ ପର୍ଯ୍ୟନ୍ତ କଳିଙ୍ଗ ରାଜଧାନୀ ଧଉଳି ଓ ଖଣ୍ଡଗିରି ମଧ୍ୟବର୍ତ୍ତୀ ତୋଷାଳୀରେ ଥିଲା । ହାତୀଗୁମ୍ଫା ଖୋଦିତ ଲିପିରେ ଏହାକୁ ମଧ୍ୟ 'ପୃଥୁଦକଦର୍ଭ' ନଗରୀ ବୋଲି କୁହାଯାଇଛି । ଅର୍ଥାତ୍ ଏହି ରାଜଧାନୀରେ ପ୍ରଚୁର ଜଳ ଓ ଦୁବ ଥିଲା । ସୁତରାଂ ପଣ୍ଡିତମାନେ କହନ୍ତି ତୋଷାଳୀ ନଗରରେ ପୁଷ୍କରଣୀ ଓ ମୟୂଦାନ ବା ଆଧୁନିକ ପାର୍କ ସ୍ଥାନେ ସ୍ଥାନେ ତିଆରି କରାଯାଇ ଥିଲା । ତାହା ରାଜଧାନୀର ସୌନ୍ଦର୍ଯ୍ୟ ବଢାଇ ଥିବ ଏବଂ ସକଳ ସନ୍ଧ୍ୟାରେ ଜନାକୀର୍ଣ୍ଣ ନଗର ମଧ୍ୟରେ ନଗରବାସୀଙ୍କୁ ଆରାମ ଦେଉଥିବ ।

ଚୈତ୍ର କଳିଙ୍ଗ ସିଂହାସନ ଅଧିରୋହଣ କରିବା ଦିନଠାରୁ କୋଶଳା ଆଉ ସ୍ୱତନ୍ତ୍ର ରାଜ୍ୟ ହୋଇ ରହିଲା ନାହିଁ । ତାହା କଳିଙ୍ଗର ଅନ୍ତର୍ଭୁକ୍ତ ହୋଇ ଗଲା । କୋଶଳା ତୋଷାଳୀ ( ବା କଳିଙ୍ଗ ) ଓ ମୋଷଳ ସମସ୍ତେ ଏକ ରାଜ୍ୟ ହୋଇ କଳିଙ୍ଗ ନାମରେ ପରିଚିତ ହେଲେ । କାରଣ ଖାରବେଳଙ୍କ ଦେଶ ବିଜୟରେ କୋଶଳାର ନାମ ପଡ଼ି ନାହିଁ । ଅଥଚ କୋଶଳାର ପଶ୍ଚିମରେ ଥିବା ମୋଷଳ ବା ମୂଷିକ ରାଜ୍ୟ ଖାରବେଳ ଜୟ କରିବାର ବର୍ଣ୍ଣନା କରା ଯାଇଛି । କୋଶଳ ବା କୋଶଳାବାସୀ, ତୋଷଲା ବା ତୋଷାଳୀବାସୀ ଏବଂ ମୋଶଲ ମୂଷିକ ଦେଶବାସୀ ନାଟ୍ୟ ଶାସ୍ତ୍ରରେ କଳିଙ୍ଗବାସୀ ବୋଲି ଲେଖା ଯାଇଛି ।

ଚୈତ୍ର ବଂଶୀୟ ରାଜାମାନେ ଜୈନଧର୍ମାବଲମ୍ବୀ ଥିଲେ, ଏବଂ ସେମାନେ ବିଶେଷ ଧାର୍ମିକ ରାଜା ଥିଲେ ବୋଲି "ରାଜର୍ଷି' ପଦ ପାଇଥିଲେ । ଏହି ବଂଶରେ ୪ଜଣ ରାଜା ରାଜତ୍ୱ କରିଥିଲେ । "ମେଘ ବାହନ" ବା "ମହା ମେଘ ବାହନ" ସେମାନଙ୍କର ଉପାଧି ମଧ୍ୟ ଥିଲା ।

ଯୁବରାଜ—ଚେଦିବଂଶର ରାଜାମାନଙ୍କ ମଧ୍ୟରେ ଖାରବେଳ ସର୍ବଶ୍ରେଷ୍ଠ ପରାକ୍ରାନ୍ତ ରାଜା ଥିଲେ । ବଂଶ ପରମ୍ପରା ଅନୁସାରେ ଖାରବେଳ ମଧ୍ୟ 'ଐର ମହାମେଘ ବାହନ' ଉପାଧି ପାଇଥିଲେ । ଚୈତ୍ର କଳିଙ୍ଗ ସ୍ୱାଧୀନ କରିବାର ୨୩ବର୍ଷ ପରେ (ଖ୍ରୀଷ୍ଟ ପୂର୍ବ ୧୯୭ଅବ୍ଦରେ) ଖାରବେଳ ଜନ୍ମ ହୋଇଥିଲେ । ୧୫ବର୍ଷ ପର୍ଯ୍ୟନ୍ତ ତାହାଙ୍କ ବାଲ୍ୟ ଜୀବନ କେବଳ କ୍ରୀଡ଼ା ଓ ବ୍ୟସନରେ କଟିଥିଲା । ବୟସ ୧୬ବର୍ଷ ବେଳେ ଖ୍ରୀଷ୍ଟପୂର୍ବ ୧୮୨ ଅବ୍ଦରେ ତାହାଙ୍କର ଯୁବରାଜ-ଅଭିଷେକ ହେଲା । ବୋଧ ହୁଏ ତାଙ୍କ ପିତା ବୃଦ୍ଧାବସ୍ଥା ଯୋଗୁଁ କିମ୍ବା ରୋଗ ହେତୁ ରାଜ କାର୍ଯ୍ୟ ଚଳାଇବାକୁ ଅକ୍ଷମ ଥିଲେ । ତେଣୁ ଖାରବେଳ ଯୁବରାଜରୂପେ ଅଭିଷିକ୍ତ ହୋଇ ସକଳ କାର୍ଯ୍ୟ ଚଳାଉଥିଲେ । ଯୁବରାଜ ହେବା ପରେ ତାହାଙ୍କୁ ରାଜଧର୍ମ ଶିକ୍ଷା ଆରମ୍ଭ ହେଲା । ସକଳ ଶାସ୍ତ୍ର ବିଦ୍ୟାରେ ସେ ୨୪ବର୍ଷ ବେଳେ ପୂର୍ଣ୍ଣ ହୋଇଥିଲେ । ଜ୍ଞାନ ଓ ଧର୍ମରେ ସେ ପ୍ରବୀଣ ହୋଇଥିଲେ ।

ରାଜ୍ୟାଭିଷେକ—୨୪ ବର୍ଷ ବୟସରେ ଖ୍ରୀଷ୍ଟପୂର୍ବ ୧୭୩ଅବ୍ଦରେ ଖାରବେଳ ପିତାଙ୍କ ମୃତ୍ୟୁ ପରେ କଳିଙ୍ଗ ସିଂହାସନରେ ଅଭିଷିକ୍ତ ହେଲେ । ବଂଶାନୁକ୍ରମେ ସେ ଜୈନ ଥିଲେ ମଧ୍ୟ ଆର୍ଯ୍ୟାବର୍ତ୍ତର ତତ୍କାଳୀନ ରୀତିଅନୁସାରେ ବ୍ରାହ୍ମଣ ଧର୍ମ ବିଧାନରେ ତାହାଙ୍କର ଅଭିଷେକ ହୋଇଥିଲା । ଖାରବେଳ ଯେଉଁ ବର୍ଷ ରାଜା ହେଲେ ସେହିବର୍ଷ ମଧ୍ୟରେ ଭୀଷଣ ତୋଫାନ ହେଲା; ରାଜଧାନୀ ତୋଷାଳୀ ନଗରର ବାହାର ପାଚେରି ଓ ଦ୍ୱାର ଭାଙ୍ଗି ଯାଇଥିଲା । ଖାରବେଳ ସବୁ ତିଆର କରାଇଦେଲେ ।

ଦେଶ ବିଜୟ—ଉଦୟଗିରିର ହାତୀଗୁମ୍ଫାରେ ଗୋଟିଏ ଦୀର୍ଘ ଖୋଦିତ ଲିପି ପାଲିଭାଷାରେ ଲେଖାଅଛି । ତହିଁରେ ଖାରବେଳଙ୍କ ରାଜତ୍ୱର ପ୍ରଥମ

୧୩ବର୍ଷର ଘଟଣା ବର୍ଣ୍ଣନା କରାଯାଇଛି । ସେଥିରୁ ଜଣାଯାଏ ରାଜତ୍ୱର ୧ମ ବର୍ଷରେ ଖାରବେଳ ରାଜଧାନୀର ମରାମତି କାମ ଶେଷକରି ୨ୟ ବର୍ଷଠାରୁ ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ଦେଶଜୟ କରିବା ନିମନ୍ତେ ଯୁଦ୍ଧ ଅଭିଯାନରେ ବାହାରିଲେ ।

ମୂଷିକ ଦେଶ ବିଜୟ—କୋଶଳ ବା ଦକ୍ଷିଣ କୋଶଳର ପଶ୍ଚିମରେ ମୂଷିକ ନାମରେ ଏକ ଦେଶ ଥିଲା । କୋଶଳ କଳିଙ୍ଗକୁ ଲାଗି ଉତ୍ତର-ପଶ୍ଚିମ ଦିଗରେ ଅର୍ଥାତ୍ ବର୍ତ୍ତମାନ କଳାହାଣ୍ଡି, ସମ୍ବଲପୁର ପ୍ରଭୃତି ନେଇ ବ୍ୟାପିଥିଲା । ବର୍ତ୍ତମାନ ଘୁମସର ପ୍ରଭୃତି ନେଇ ଗଞ୍ଜାମଜିଲାର ପଶ୍ଚିମକୁ ଗଞ୍ଜ-ବଂଶୀୟ କାଶ୍ୟପ କ୍ଷତ୍ରିୟମାନଙ୍କର ରାଜ୍ୟ ଥିଲା । ମୂଷିକରାଜା ସେହି କାଶ୍ୟପ କ୍ଷତ୍ରିୟମାନଙ୍କ ରାଜ୍ୟ ବାରମ୍ବାର ଆକ୍ରମଣ କରି ବହୁ ଅତ୍ୟାଚାର କରୁଥିଲେ । କାଶ୍ୟପ ଦେଶ କଳିଙ୍ଗର ଅନ୍ତର୍ଗତ ରାଜ୍ୟ ଥିବାରୁ ଖାରବେଳ କାଶ୍ୟପ-ମାନଙ୍କୁ ରକ୍ଷା କରିବା ନିମନ୍ତେ ମୂଷିକଦେଶ ଆକ୍ରମଣ କଲେ । ଏହି ଅଭିଯାନରେ ସେ ଅନ୍ଧ୍ର ଦେଶବାଟେ ଯାତ୍ରା କରିଥିଲେ । ଅନ୍ଧ୍ରରାଜା ଶାତକର୍ଣ୍ଣି ଖାରବେଳଙ୍କର ଗତିରୋଧ କଲେ । ଶାତକର୍ଣ୍ଣି ସସୈନ୍ୟରେ ପରାସ୍ତହୋଇ ଖାରବେଳଙ୍କୁ ପଥ ଛାଡିଦେଲେ । ଖାରବେଳ ମୂଷିକ ରାଜଧାନୀ ଆକ୍ରମଣ କରି ମୂଷିକମାନଙ୍କୁ ପରାସ୍ତକଲେ । ସମଗ୍ର ମୂଷିକରାଜ୍ୟ କଳିଙ୍ଗର ଅନ୍ତର୍ଭୁକ୍ତ ହେଲା (ଖ୍ରୀଷ୍ଟପୂର୍ବ ୧୭୧ ଅବ୍ଦ)

ଭୋଜକ ଓ ରାଷ୍ଟ୍ରିକ ରାଜ୍ୟ ଆକ୍ରମଣ--ରାଜତ୍ୱର ଚତୁର୍ଥ ବର୍ଷରେ ଖ୍ରୀଷ୍ଟପୂର୍ବ ୧୭୦ ଅବ୍ଦରେ ଖାରବେଳ ରାଷ୍ଟ୍ରିକ ଓ ଭୋଜକ ରାଜ୍ୟମାନଙ୍କ ବିରୁଦ୍ଧରେ ଯୁଦ୍ଧ ଯାତ୍ରା କଲେ । ଏ ରାଜ୍ୟ ଦୁଇଟି ଅନ୍ଧ୍ର ଦେଶ ପାଖରେ ପଶ୍ଚିମ ଓ ଉତ୍ତର ପଶ୍ଚିମରେ ଥିଲା । ବର୍ତ୍ତମାନ ମହାରାଷ୍ଟ୍ର ଦେଶ ରାଷ୍ଟ୍ରିକ ରାଜ୍ୟ ଏବଂ ବେରାର ଭୋଜକ ରାଜ୍ୟ ଥିବାର ଅନୁମାନ କରାଯାଏ । ଏହି ରାଜାମାନେ ଖାରବେଳଙ୍କ ବିରୁଦ୍ଧରେ ଅନ୍ଧ୍ରରାଜା ଶାତକର୍ଣ୍ଣିଙ୍କୁ ସାହାଯ୍ୟ ଦେଇଥିଲେ । ସୁତରାଂ ଅନ୍ଧ୍ର ଏବଂ ମୂଷିକ ମାନଙ୍କୁ ଦମନ କରିବା ପରେ

ଖାରବେଳ ରାଷ୍ଟ୍ରିକ ଓ ଭୋଜକ ରାଜ୍ୟ ଆକ୍ରମଣ କଲେ । ଶେଷରେ ସେମାନେ ପରାସ୍ତ ହେଲେ । ଦୂରତା ବଶତଃ ଖାରବେଳ ଉକ୍ତ ରାଜ୍ୟ ଦୁଇଟି ଅଧିକାର ନ କରି କେବଳ ସେହି ରାଜାମାନଙ୍କୁ କଳିଙ୍ଗର ଅଧୀନ କରାଇଲେ । ରାଜାମାନେ ଖାରବେଳଙ୍କୁ ଅପଣାର ରାଜାଧିରାଜ ବୋଲି ସ୍ୱୀକାର ଓ ସମ୍ମାନ କଲେ । ଖାରବେଳ ସେମାନଙ୍କର ଛତ୍ର ଓ ଭୃଙ୍ଗାର ନଷ୍ଟକରି ଦେଇଥିବାର କଥିତ ଅଛି । ଅର୍ଥାତ୍ ସେମାନେ ଆଉ ସ୍ୱାଧୀନ ରାଜା ନରହି ଖାରବେଳଙ୍କର ଅଧୀନସ୍ଥ ରାଜାହୋଇ ରହିଲେ ।

ମଗଧ ଆକ୍ରମଣ—ଦକ୍ଷିଣ ଓ ପଶ୍ଚିମରେ ଅପଣାର ପ୍ରଭୁତ୍ୱ ବିସ୍ତାରକରି ଖାରବେଳ ଉତ୍ତର ଭାରତରେ କଳିଙ୍ଗ ପ୍ରଭାବ ବଢ଼ାଇବାରେ ଲାଗିଲେ । ପୂର୍ବେ (୧୯ପୃଷ୍ଠା) ଲେଖାଯାଇଛି ପ୍ରଥମ ନନ୍ଦରାଜା କଳିଙ୍ଗ ଅଧିକାର କରିବା ପରେ ପ୍ରଥମଜିନ ଋଷଭ ଦେବଙ୍କ ବିଗ୍ରହ ଓ ଅନ୍ୟାନ୍ୟ ଜୈନ-ମୂର୍ତ୍ତିମାନ ଖଣ୍ଡଗିରିରୁ ନେଇଯାଇ ଅପଣାର ରାଜଧାନୀ ରାଜଗୃହରେ ରଖାଇଥିଲେ । ଖାରବେଳ ଜୈନ; ସୁତରାଂ ଜୈନମୂର୍ତ୍ତିମାନ ଫେରାଇଆଣି ଖଣ୍ଡଗିରିରେ ଯଥାସ୍ଥାନରେ ରଖିବା ଖାରବେଳଙ୍କର ଉଦ୍ଦେଶ୍ୟ ଥିଲା । ରାଜତ୍ୱର ଅଷ୍ଟମ ବର୍ଷରେ ଖ୍ରୀଷ୍ଟପୂର୍ବ ୧୭୫ଅବ୍ଦରେ ଖାରବେଳ ମଗଧଅଭିମୁଖେ ଯାତ୍ରାକଲେ । ରାଜଗୃହ ଅବରୋଧ କରିବା ତାହାଙ୍କର ଲକ୍ଷ୍ୟ ଥିଲା । ଗୟାରୁ ପାଟଳୀପୁତ୍ର ପର୍ଯ୍ୟନ୍ତ ଏକ ରାଜପଥ ଥିଲା । ତାହାର ପାଖରେ ବଡ଼ବର ବା ଗୋରଥଗିରି ଥିଲା । ଖାରବେଳ ଝାଡ଼ଖଣ୍ଡ ନାଗପୁର ମଧ୍ୟଦେଇ ସେହି ଗୋରଥଗିରି ଆକ୍ରମଣ କଲେ । ବର୍ତ୍ତମାନ ଜାହାନଗଞ୍ଜ ଯାହାକୁ କହନ୍ତି ସେହିଠାରେ ଗୋରଥଗିରି ଗୋଟିଏ ପ୍ରସିଦ୍ଧ ଦୁର୍ଗ ଥିଲା । ଦକ୍ଷିଣଦିଗରୁ ରାଜଧାନୀ ପାଟଳୀପୁତ୍ରର ସୁରକ୍ଷଣ ନିମନ୍ତେ ତାହା ନିର୍ମିତ ହୋଇଥିଲା । ସେତେବେଳେ ପୁଷ୍ପମିତ୍ର ବା ବୃହସ୍ପତିମିତ୍ର ପାଟଳୀପୁତ୍ରରେ ମଗଧସାମ୍ରାଜ୍ୟର ସମ୍ରାଟ ଥିଲେ । ଏବେ ବିଶାଳ ମଗଧ ସାମ୍ରାଜ୍ୟର ବଳ; ତଥାପି ପୁଣି ପୁଷ୍ପମିତ୍ର

ଜଣେ ବଡ ପରାକ୍ରମୀ ସମ୍ରାଟ୍ । ଅଶ୍ୱମେଧ ଯଜ୍ଞ କରି ସେ ସମଗ୍ର ଆର୍ଯ୍ୟାବର୍ତ୍ତରେ ଆପଣାକୁ ରାଜଚକ୍ରବର୍ତ୍ତୀ କରିଥିଲେ । ଗ୍ରୀକ ସମ୍ରାଟ ଡମେଟ୍ରିଅସ ଏବଂ ମେନାଣ୍ଡରମାନଙ୍କୁ ପରାସ୍ତ କରି ପୁଷ୍ୟମିତ୍ର ଗ୍ରୀକମାନଙ୍କୁ ଆର୍ଯ୍ୟାବର୍ତ୍ତ ମଧ୍ୟରୁ ବହିଷ୍କୃତ କରିଦେଇ ଥିଲେ । ଏହିରୂପେ ପ୍ରତାପୀ ସମ୍ରାଟ ପୁଷ୍ୟମିତ୍ରଙ୍କ ସଙ୍ଗେ ଯୁଦ୍ଧ କରିବା ବଡ ସହଜ ବ୍ୟାପାର ନ ଥିଲା । ମାତ୍ର ଖାରବେଳ ସାହସ ଅଦମ୍ୟ ଥିଲା । ସେ ଗୋରଥଗିରି ଅବରୋଧ କରିବାର ଜାଣି ପୁଷ୍ୟମିତ୍ର ପାଟଳିପୁତ୍ର ଛାଡି ମଥୁରାରେ ଯୁଦ୍ଧ ସଜ୍ଜା କରି ଖାରବେଳଙ୍କୁ ଅପେକ୍ଷା କରି ରହିଲେ । ମାତ୍ର ଖାରବେଳ ଗୋରଥ ଗିରିଠାରୁ କଳିଙ୍ଗ ଫେରି ଆସିଲେ ।

ଭାରତରେ ରାଜଚକ୍ରବର୍ତ୍ତୀ ହେବା ନିମନ୍ତେ ଖାରବେଳଙ୍କର ଅଦମ୍ୟ ଅଭିଳାଷ ଥିଲା । ମାତ୍ର ମଗଧ ସମ୍ରାଟ ପୁଷ୍ୟମିତ୍ରଙ୍କୁ ପରାସ୍ତ ନ କଲେ ସେତେବେଳେ କେହି ରାଜଚକ୍ରବର୍ତ୍ତୀ ହୋଇ ନ ପାରନ୍ତି । ସେହି ଉଦ୍ଦେଶ୍ୟରେ ଖାରବେଳ ବିରାଟ ରଣ ସଜ୍ଜା କରି ସମଗ୍ର ଆର୍ଯ୍ୟାବର୍ତ୍ତରେ ଆପଣାର ପ୍ରଭୁତ୍ୱ ସ୍ଥାପନ କରିବା ଉଦ୍ଦେଶ୍ୟରେ ରାଜତ୍ୱର ଦ୍ୱାଦଶ ବର୍ଷରେ (ଖ୍ରୀଷ୍ଟପୂର୍ବ ୧୬୧ ଅବ୍ଦ) ଯୁଦ୍ଧ ଅଭିଯାନରେ ବାହାରିଲେ । ଦଶମବର୍ଷରେ ମଧ୍ୟ ସେ ଭାରତବର୍ଷ ଜୟକରିବା ନିମନ୍ତେ ସସୈନ୍ୟରେ ବାହାରି ଥିଲେ । ମାତ୍ର ଦ୍ୱାଦଶ ବର୍ଷର ଯାତ୍ରା ସର୍ବପ୍ରଧାନ । ପ୍ରଥମ ବାର ପରି ସେ ଏହି ଅଭିଯାନରେ ଛୋଟନାଗପୁର ବାଟେ ନ ଯାଇ ବୋଧହୁଏ ମହାନଦୀ ବାଟେ ଉତ୍ତରପଶ୍ଚିମ ଦିଗରେ ଯାତ୍ରାକଲେ । ପ୍ରଥମେ ମଗଧକୁ ନ ଯାଇ ଖାରବେଳ 'ଉତ୍ତରାପଥ' ଉତ୍ତରପଶ୍ଚିମ ସୀମାନ୍ତ ରାଜ୍ୟମାନ ଆକ୍ରମଣ କଲେ । ସେ ପାଟଳିପୁତ୍ରକୁ ଆସିବା ପର୍ଯ୍ୟନ୍ତ ଗଙ୍ଗା ନଦୀ ପାରିହୋଇ ନ ଥିବାର ଅନୁମାନ ହୁଏ । ଖାରବେଳ ମଧ୍ୟ ଭାରତ ଦେଇ ପଞ୍ଜାବ ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ ଉତ୍ତରାପଥରେ ରାଜା ଓ ପ୍ରଜାମାନେ ଖାରବେଳଙ୍କ ଆକ୍ରମଣରେ ଘୋର ଆତଙ୍କ ପାଇଥିଲେ ଏବଂ କୌଣସି ରାଜା ତାହାଙ୍କ ଗତିରୋଧ କରି ପାରି ନ

ଥିଲେ । ଉତ୍ତରାପଥରୁ ଖାରବେଳ ମଗଧ ଅଭିମୁଖେ ଅଗ୍ରସର ହେଲେ । ପଥରେ ଗଙ୍ଗାନଦୀ ପାର ହୋଇ ହିମାଳୟ ପର୍ବତ ତଳେ ତଳେ ଆସି ଗଙ୍ଗାର ଉତ୍ତର କୂଳରେ ମଗଧରାଜଧାନୀ ପାଟଳୀପୁତ୍ର ନିକଟରେ ପହଞ୍ଚିଲେ । ପାଟଳୀପୁତ୍ର ନିକଟରେ ହାତୀମାନଙ୍କ ସାହାଯ୍ୟରେ ଗଙ୍ଗା ପାରହୋଇ ଖାରବେଳ ପ୍ରବଳ ପ୍ରତାପ ସମ୍ରାଟ ପୁଷ୍ୟମିତ୍ରଙ୍କୁ ରାଜଧାନୀରେ ଅବରୋଧ କଲେ । କଳିଙ୍ଗ ବାହିନୀଙ୍କ ପରାକ୍ରମ ଓ ଭୀଷଣ ଯୁଦ୍ଧରେ କେବଳ ପାଟଳୀପୁତ୍ର ନୁହେଁ, ସମସ୍ତ ମଗଧ ଭୟରେ କାତର ହେଲା । ମଗଧ ଭାରତର ସର୍ବପ୍ରଧାନ ଓ କ୍ଷମତାଶାଳୀ ରାଜ୍ୟ । ମଗଧ ଇତିହାସରେ କୌଣସି ଶତ୍ରୁ କେବେ ମଗଧ ଆକ୍ରମଣ କରି ନ ଥିଲେ, ରାଜଧାନୀ ଅବରୋଧ କରିବା ତ ଦୂରର କଥା । ଖାରବେଳଙ୍କ ଆକ୍ରମଣ ମଗଧ ଇତିହାସରେ ନୂତନ କଥା । ସୁତରାଂ ମଗଧବାସୀ ଏଥିରେ ବିଶେଷ ଭୟ ପାଇଥିବା ସ୍ୱାଭାବିକ । ଖାରବେଳ ପୁଷ୍ୟମିତ୍ରଙ୍କୁ ପରାସ୍ତ କରି ପାଟଳୀପୁତ୍ର ଜୟ କଲେ, ଏବଂ ଅଙ୍ଗ ଓ ମଗଧର ବିପୁଳ ଧନ ହସ୍ତଗତ କଲେ । ନନ୍ଦରାଜାମାନେ ଉତ୍କଳରୁ ଯେଉଁ ଜୈନ ପ୍ରତିମୂର୍ତ୍ତିମାନ ନେଇଯାଇଥିଲେ, ଖାରବେଳ ସେ ସବୁ ଧରି ନିଜ ରାଜଧାନୀକୁ ଫେରି ଆସିଲେ । ପୁଷ୍ୟମିତ୍ରଙ୍କ ପରାଜୟ ପରେ ମଗଧ ପରିବର୍ତ୍ତିରେ କଳିଙ୍ଗ ସାମ୍ରାଜ୍ୟ ଭାରତବର୍ଷ ମଧ୍ୟରେ ଆଧିପତ୍ୟ ବିସ୍ତାର କଲା । ବର୍ଷକ ମଧ୍ୟରେ ଖାରବେଳ ସମଗ୍ର ଆର୍ଯ୍ୟାବର୍ତ୍ତ ଜୟକରି ପଞ୍ଜାବଠାରୁ ହିମାଳୟ ତଳେ ତଳେ ଆସି ମଗଧ ଲୁଣ୍ଠନ କରି ପୁଣି ରାଜଧାନୀକୁ ଫେରି ଆସିଲେ । ଏହି ଅଦମ୍ୟ ଶକ୍ତି ଓ ସାହସ ନିମନ୍ତେ ଖାରବେଳଙ୍କୁ ନେପୋଲିୟନଙ୍କ ସଙ୍ଗେ ତୁଳନା କରାଯାଏ ।

ମଗଧର ପରାଜୟ ପରେ ଖାରବେଳ ଭାରତବର୍ଷରେ ଏକମାତ୍ର ରାଜଚକ୍ରବର୍ତ୍ତୀ ହେଲେ । ସୁତରାଂ ଆଉ ସେ ଦେଶ ବିଜୟରେ ବାହାରି ନ ଥିଲେ । କେବଳ ସେହି ବର୍ଷ ଦାକ୍ଷିଣାତ୍ୟର ପାଣ୍ଡ୍ୟଦେଶର ରାଜାଙ୍କର ବହୁତ ହସ୍ତୀବାହାକ ଉପଢୌକନମାନେ ଅଧିକାର କରିଥିଲେ ।

ବହୁସଂଖ୍ୟାରେ ମୂଲ୍ୟବାନ ମଣିରତ୍ନ, ଅଶ୍ୱ, ହସ୍ତୀ ଓ ମନୁଷ୍ୟ ପାଣ୍ଡ୍ୟ ରାଜାଙ୍କଠାରୁ ଖାରବେଳ ଉପହାର ପାଇଥିଲେ । ଏହିରୂପେ ଉତ୍ତର ଓ ଦକ୍ଷିଣ ଭାରତରେ ଖାରବେଳଙ୍କ କ୍ଷମତା ସମସ୍ତ ରାଜାମାନେ ସ୍ୱୀକାର କରି ନେଇଥିଲେ ।

ଦାନ ଧର୍ମ ଓ ଦେଶହିତକର କାର୍ଯ୍ୟ—ଖାରବେଳ କେବଳ ଯୁଦ୍ଧପ୍ରିୟ ଓ କ୍ଷମତାଭିଳାଷୀ ରାଜଚକ୍ରବର୍ତ୍ତୀ ନ ଥିଲେ । ନାନା ଦେଶହିତକର କାର୍ଯ୍ୟ ଓ ଦାନ ଧର୍ମରେ ତାହାଙ୍କର ଗୌରବମୟ ଜୀବନ ଅଧିକ ମହନୀୟ ହୋଇଥିଲା । ଧର୍ମମତରେ ସେ ଜୈନ ଥିଲେ ସତ, ମାତ୍ର ବୈଦିକ ଧର୍ମ ଅନୁସାରେ ତାହାଙ୍କର ଯୁବରାଜାଭିଷେକ ଓ ମହାରାଜାଭିଷେକ ହୋଇଥିଲା । ଏଥିରୁ ଜଣାଯାଏ ଯେ ଶାସନରେ ସେ ଆପଣାର ସ୍ୱାଧୀନ ମତ ପ୍ରତିଷ୍ଠା ନ କରି ପ୍ରଜାରଞ୍ଜନ ନିମନ୍ତେ ଶାସ୍ତ୍ରର ବିଧି ଅନୁସାରେ ଶାସନ କାର୍ଯ୍ୟ ଚଳାଉଥିଲେ, ଏବଂ ଜୈନ ଥିଲେ ହେଁ ଅନ୍ୟ ଧର୍ମପ୍ରତି ଅନାସ୍ଥା ବା ଅଭକ୍ତି ଦେଖାଉ ନ ଥିଲେ ।

ରାଜତ୍ୱର ପ୍ରଥମବର୍ଷରେ ସେ ଜୀର୍ଣ୍ଣ ରାଜଧାନୀ ମରାମତି କରାଇ କୃଷି ଓ ଜଳପାନର ସୁବିଧା ନିମନ୍ତେ ଜଳାଶୟମାନ ଖୋଳାଇଥିଲେ ଏବଂ ପ୍ରମୋଦଉଦ୍ୟାନ ନିର୍ମାଣ କରାଇଥିଲେ । ମୂଷିକରାଜ୍ୟ ଜୟ ପରେ ଫେରିଆସି ସେ ଆପଣା ରାଜଧାନୀରେ ବିଜୟ ଉତ୍ସବ କରାଇଥିଲେ । ନିଜେ ଗାନ୍ଧର୍ବ ବା ସଙ୍ଗୀତବିଦ୍ୟାରେ ପାରଦର୍ଶୀ ଥିଲେ; ନାଚ ଅଭିନୟ ସଙ୍ଗୀତ ଭୋଜନାଦିରେ ସମସ୍ତ ରାଜଧାନୀବାସିଙ୍କ ସହ ଆମୋଦ ଉତ୍ସବ କରିଥିଲେ । ରାଜତ୍ୱର ଚତୁର୍ଥ ବର୍ଷରେ ରଷ୍ଟ୍ରିକ ବା ରାଷ୍ଟ୍ରକୂଟରାଜ୍ୟ ଜୟପୂର୍ବରୁ 'ବିଦ୍ୟାଧରବାସ' ନାମରେ କେତେକ ଧର୍ମମନ୍ଦିର ବା ମଠ ନିର୍ମାଣ କରାଇଥିଲେ । ୩୦୦ ବର୍ଷ ପୂର୍ବେ ନନ୍ଦ ରାଜାମାନେ ରାଜଧାନୀ ନିକଟରେ ଗୋଟିଏ କେନାଲ ଖୋଳାଇ ଥିଲେ (୨୦ ପୃଷ୍ଠା ); ମାତ୍ର ସେ କେନାଲ ସେମାନେ ଖୋଳାଇ ରାଜଧାନୀ ପର୍ଯ୍ୟନ୍ତ ଆଣି ପାରି ନ ଥିଲେ । ଖାରବେଳ 'ତନସୁଲିୟ' ନାମକ ସ୍ଥଳଠାରୁ

ସେ କେନାଲ ବଢାଇ ରାଜଧାନୀ ପର୍ଯ୍ୟନ୍ତ ଖୋଳାଇ ଆଣିଲେ । ତାହାଦ୍ୱାରା ବାଣିଜ୍ୟ ଓ କୃଷିର ବିଶେଷ ସୁବିଧା ହୋଇଥିଲା । ରାଜତ୍ୱର ଷଷ୍ଠ ବର୍ଷରେ 'ପୌର' ଓ 'ଜାନପଦ' (ସହର ଓ ମଫସଲ) ବଣିକ ଓ ଶିଳ୍ପ ବ୍ୟବସାୟୀମାନଙ୍କୁ ବାଣିଜ୍ୟ ସୁବିଧା ଦାନକରି ସେମାନଙ୍କର ଧନ୍ୟବାଦର ପାତ୍ର ହୋଇଥିଲେ । ସାତ ବର୍ଷରେ ସେ ବିବାହ କରିଥିଲେ ଏବଂ ନବମ ବର୍ଷରେ ବିପୁଳ ଧନ-ସମ୍ପତ୍ତି ବ୍ରାହ୍ମଣମାନଙ୍କୁ ଦାନ କରିଥିଲେ । ଡାଳ ପତ୍ର ଥାଇ ଗୋଟିଏ ସୁନାର କଳ୍ପବୃକ୍ଷ ଏବଂ ତାହା ସହିତ ହାତୀ ଘୋଡ଼ା ରଥ ମହନ୍ତ ଓ ବାହକ ସହ ବ୍ରାହ୍ମଣମାନଙ୍କୁ ଦାନ କରାଯାଇଥିଲା । ବ୍ରାହ୍ମଣମାନଙ୍କୁ ଭୂରି ଭୋଜନ ମଧ୍ୟ ଦିଆଯାଇଥିଲା । ଯେଉଁମାନେ ଦାନ ଗ୍ରହଣ କଲେ, ସେମାନଙ୍କୁ ଘର ଦ୍ୱାର ଜମିବାଡ଼ି ଦେଇ ରଖାଇ ଦିଆଯାଇଥିଲା । ଏହିସବୁ ଦାନ ଉତ୍ସବ ରାଜଗୃହ ବିଜୟ ଉପଲକ୍ଷରେ କରାଯାଇ ଥିଲା; ଏବଂ ଉକ୍ତ ବିଜୟର ସ୍ମାରକ ସ୍ୱରୂପ 'ମହା-ବିଜୟ ପ୍ରାସାଦ' ନାମରେ ଏକ ରାଜଭବନ ଅଠତିଶଲକ୍ଷମୁଦ୍ରା ବ୍ୟୟରେ ପ୍ରାଚୀ ନଦୀକୂଳରେ ନିର୍ମାଣ କରାଯାଇଥିଲା । ୧୦ମ ବର୍ଷରେ 'ଭାରତବର୍ଷ' ବିଜୟରୁ ଫେରିଆସି ଖାରବେଳ କଳିଙ୍ଗର ପ୍ରଥମ ରାଜବଂଶୀୟ କେତୁଭଦ୍ରଙ୍କ ଉପାସନା ନିମନ୍ତେ ଏକ ବିଗ୍ରହ ପ୍ରତିଷ୍ଠା କରାଇଥିଲେ, ଏବଂ ସେହି ବିଗ୍ରହ ପୂଜା ଉପଲକ୍ଷରେ ଗୋଟିଏ ଯାତ୍ରା ମଧ୍ୟ ଆରମ୍ଭ କରିଥିଲେ । କଳିଙ୍ଗର ପ୍ରାଚୀନ ରାଜାମାନେ ସେହିପରି କେତୁଭଦ୍ରଙ୍କର ବିଗ୍ରହପୂଜା କରିଆସୁଥିବାରୁ, ଖାରବେଳ ଜୈନ ଥିଲେ ସୁଦ୍ଧା, ପ୍ରାଚୀନ ପ୍ରଥା ପ୍ରତି ଆସ୍ଥା ରଖି ତାହାର ଉଦ୍ଧାର ନିମନ୍ତେ ଏହି ଶୁଭଯାତ୍ରା ଅନୁଷ୍ଠାନ କରିଥିଲେ । ଖାରବେଳଙ୍କ ପରମ୍ପରା ପ୍ରତି ଏହିରୂପ ଆସ୍ଥା ଦେଖି ଦେଶବାସୀ ବଡ଼ ସନ୍ତୁଷ୍ଟ ହୋଇଥିବାର ଲେଖାଅଛି । ଦ୍ୱାଦଶ ବର୍ଷରେ ଉତ୍ତରାପଥ ଓ ମଗଧ ବିଜୟ ଉପଲକ୍ଷରେ, ଏବଂ ପାଣ୍ଡ୍ୟରାଜାଙ୍କଠାରୁ ଯେ ବିପୁଳ ଧନରତ୍ନ ପାଇଥିଲେ ତାହାର ରକ୍ଷଣ ନିମନ୍ତେ ରାଜଧାନୀରେ ବହୁତ ଅଟ୍ଟାଳିକାମାନ ନିର୍ମାଣ କରାଇଥିଲେ । ସେହି ଅଟ୍ଟାଳିକାମାନ ନାନା କାରୁକାର୍ଯ୍ୟରେ ମଣ୍ଡିତ ଥିବାର ବର୍ଣ୍ଣନା ଅଛି ।

ସମଗ୍ର ଭାରତରେ ଉତ୍ତରାପଥଠାରୁ ପାଣ୍ଡ୍ୟରାଜ୍ୟ ପର୍ଯ୍ୟନ୍ତ, ହିମାଳୟ ପାଦ-ଦେଶରୁ କୁମାରୀକା ଅନ୍ତରୀପ ପର୍ଯ୍ୟନ୍ତ ସର୍ବତ୍ର ଖାରବେଳଙ୍କର ପ୍ରଭୁତ୍ୱ ସ୍ଥାପିତ ହେଲା; ଏବଂ ସେ ଚକ୍ରାଧିରାଜ ହୋଇଥିଲେ । ଏଥିରେ ତାହାଙ୍କର ଉଚ୍ଚ ଅଭିଳାଷ ଯଥେଷ୍ଟ ପରିମାଣରେ ପରିତୃପ୍ତ ହୋଇଥିଲା । ସୁତରାଂ ଦ୍ୱାଦଶ ବର୍ଷ ପରେ ଆଉ ଯୁଦ୍ଧ ବିଗ୍ରହରେ ଲିପ୍ତ ନ ହୋଇ ଖାରବେଳ କ୍ରମେ ଏକପ୍ରକାର ସନ୍ୟାସଧର୍ମ ଗ୍ରହଣକଲେ । ଉଦୟଗିରିରେ ସେ ଅର୍ହତ ବା ଜୈନମାନଙ୍କ ନିମନ୍ତେ ମନ୍ଦିରମାନ ନିର୍ମାଣ କରିଦେଲେ ଏବଂ ନିଜର ଈଶ୍ୱରଚନ୍ଦ୍ରାର ସୁବିଧା ସକାଶେ ସେହିଠାରେ ଏକ ଅଟ୍ଟାଳିକା ମଧ୍ୟ ନିର୍ମାଣ କରିଥିଲେ *। ହାତି ଗୁମ୍ଫା ମଧ୍ୟ ତାହାଙ୍କର କାର୍ଯ୍ୟ । ଏହିସବୁ ଧର୍ମକାର୍ଯ୍ୟ ଏବଂ ତାହାଙ୍କର ସନ୍ୟାସ ଜୀବନ ଗ୍ରହଣ ଲାଗି ସେ କ୍ଷେମ ଶାନ୍ତରାଜା ଭିକ୍ଷୁରାଜା ଓ ଧର୍ମରାଜା ନାମରେ ଖ୍ୟାତ ହୋଇଥିଲେ ।

ଚୈତବଂଶର ଅବସାନ— ହାତିଗୁମ୍ଫା ଲିପିରେ ଖାରବେଳଙ୍କ ରାଜତ୍ୱର ୧୨ ବର୍ଷର ଘଟଣା ବର୍ଣ୍ଣନା କରା ଯାଇଛି । ସେତେବେଳକୁ ତାହାଙ୍କ ବୟସ ୩୬ ବର୍ଷ ମାତ୍ର ହୋଇଥିଲା । ତାହାପରେ ସେ ଜୀବନର ଅବଶିଷ୍ଟକାଳ କି କି କାର୍ଯ୍ୟ କରିଥିଲେ, କିଛି ଜଣାଯାଏ ନାହିଁ । ଅବଶ୍ୟ ସେ ଭିକ୍ଷୁରାଜା ଓ ଧର୍ମରାଜା ହୋଇଥିଲେ । କେବଳ ଶାନ୍ତିରେ କେତେକ ବର୍ଷ ନାନା ହିତ କର କାର୍ଯ୍ୟକରି ଦେଶପାଳନ କରିଥିଲେ; ଏବଂ ଶେଷଜୀବନ ଭିକ୍ଷୁବେଶରେ ଉଦୟଗିରିର ରାଣୀହଂସପୁରରେ କଟାଇଥିଲେ । ତାହାଙ୍କ ପ୍ରତାପରେ କଳିଙ୍ଗ ବହୁଦୂର ବିସ୍ତୃତହୋଇ ଭାରତ ମଧ୍ୟରେ ଏକମାତ୍ର ଶକ୍ତିଶାଳୀ ରାଜ୍ୟ ହୋଇ ଉଠିଥିଲା । ଉତ୍ତରରେ ଗଙ୍ଗାନଦୀ ଓ ବିହାର; ପଶ୍ଚିମରେ ବେରାର, ଚଣ୍ଡବାନା ରାଜ୍ୟ ଓ ମହାରାଷ୍ଟ୍ରଦେଶ ଏବଂ ଦକ୍ଷିଣରେ ପାଣ୍ଡ୍ୟରାଜ୍ୟ ପର୍ଯ୍ୟନ୍ତ କଳିଙ୍ଗ ସୀମା ବ୍ୟାପିଥିଲା । ପୁଣି ଏହି ସୀମାନ୍ତବର୍ତ୍ତୀ ରାଜାମାନେ କଳିଙ୍ଗର ଅନ୍ତର୍ଭୁକ୍ତ ନ ହୋଇ ଥିଲେ ସୁଦ୍ଧା ଖାରବେଳଙ୍କ ଏକାଧିପତ୍ୟ ସ୍ୱୀକାର କରି

*—ଉଦୟଗିରିର ରାଣୀହଂସପୁର ବୋଧହୁଏ ସେହି ଅଟ୍ଟାଳିକା ହେବ ।

ସମ୍ମାନ ଦେଖାଉଥିଲେ । ଖାରବେଳଙ୍କ ରାଜତ୍ୱ କଳିଙ୍ଗ ଇତିହାସର ପ୍ରଧାନ ଗୌରବମୟ କାଳ ।

ଖାରବେଳଙ୍କ ପରେ ଚୈତ୍ରବଂଶର କେଉଁ କେଉଁ ରାଜା ସେହି ସୁବିଶାଳ କଳିଙ୍ଗ ରାଜ୍ୟର ଅଧିପତି ହେଲେ ଏପର୍ଯ୍ୟନ୍ତ ଜଣାପଡ଼ି ନାହିଁ । ଗଣ୍ଡଗିରିର ଗୋଟିଏ ଲିପିରୁ ଜଣାଯାଏ, କୁଦେପଶିରି ନାମରେ ଖାରବେଳଙ୍କ ଉତ୍ତରାଧିକାରୀ ଜଣେ 'ମହାମେଘବାହନ' ଉପାଧି ଧରି ରାଜତ୍ୱ କରିଥିଲେ । ମାର୍କଣ୍ଡେୟ ପୁରାଣର 'ଚଣ୍ଡୀମାହାତ୍ମ୍ୟରୁ' ଜଣାଯାଏ ଯେ ଚୈତ୍ରବଂଶର ଶେଷରାଜା ସୁରଥ ଥିଲେ ଏବଂ ସେ ରାଜ୍ୟରୁ ଜଣେ ବଣିକ ଦସ୍ୟୁ ଦ୍ୱାରା ବିତାଡ଼ିତ ହୋଇଥିଲେ । ଅନ୍ଧ୍ରମାନେ ସେତେବେଳେ ବଡ଼ ପ୍ରବଳ ହୋଇ ଉଠିଥିଲେ ଏବଂ ସେମାନେ ମଧ୍ୟ ସ୍ଥଳ ଓ ଜଳ ବାଣିଜ୍ୟରେ ଦକ୍ଷ ଥିଲେ । କାଳକ୍ରମେ ସେହି 'ଶାତବାହନ' ବା ଅନ୍ଧ୍ରମାନେ ଦାକ୍ଷିଣାତ୍ୟର ଚୈତ୍ରଲରାଜ୍ୟ ଧ୍ୱଂସ କରି କଳିଙ୍ଗ ଆକ୍ରମଣ କରିଥିଲେ । ଖାରବେଳଙ୍କ ରାଜତ୍ୱକାଳରୁ ସେମାନେ କଳିଙ୍ଗର ଶତ୍ରୁ ଥିଲେ । ସୁରଥଙ୍କ ବେଳେ ସେମାନେ ଦାକ୍ଷିଣାତ୍ୟ ମଧ୍ୟରେ ଥିବା କଳିଙ୍ଗର ବୈଦେଶିକ ରାଜ୍ୟମାନ ଅଧିକାର କରିନେଲେ । ସୁରଥ ବାଧ୍ୟହୋଇ 'ସ୍ୱଦେଶ' ବା କେବଳ କଳିଙ୍ଗର ରାଜା ହୋଇ ରହିଲେ । ପରେ ପୁଣି ଅନ୍ଧ୍ରମାନେ କଳିଙ୍ଗ ମଧ୍ୟ ଅଧିକାର କଲେ, ଏବଂ ସୁରଥ ସ୍ୱଦେଶରୁ ବିତାଡ଼ିତ ହୋଇ ଅରଣ୍ୟ ମଧ୍ୟରେ "ମେଧମହର୍ଷିଙ୍କ" ଆଶ୍ରମରେ ଆଶ୍ରୟ ନେଲେ । ସୁରଥଙ୍କ ନିର୍ବାସନ ପରେ ଚୈତ୍ରବଂଶର ରାଜତ୍ୱ କଳିଙ୍ଗରୁ ଲୋପ ପାଇଲା । ସୁରଥ ଚୈତ୍ରବଂଶର ନବମ ଓ ଶେଷରାଜା ଥିଲେ । ଖ୍ରୀଷ୍ଟ ପ୍ରଥମ ଶତାବ୍ଦିର ଶେଷକୁ ଚୈତ୍ରବଂଶ ଲୋପପାଇ କଳିଙ୍ଗ ଅନ୍ଧ୍ର ଅଧିକାରରେ ଆସିଲା । ରକ୍ତବାହୁର ଉତ୍କଳ ଆକ୍ରମଣର ଯେ ପ୍ରବାଦ ଅଛି, ତାହା ବୋଧହୁଏ କେହି ଅନ୍ଧ୍ର ଆକ୍ରମଣକାରୀକୁ ଲକ୍ଷ୍ୟ କରି ଯାଇଛି ।



# ପଞ୍ଚମ ଅଧ୍ୟାୟ

## କଳିଙ୍ଗର ରାଜନୈତିକ ଅବସ୍ଥା

### ଖ୍ରୀଷ୍ଟ ୧ମରୁ ୫ମ ଶତାବ୍ଦି

ଅନ୍ଧ୍ର ଅଧିକାର—ଚୈତ୍ରବଂଶର ଲୋପଠାରୁ କେଶରୀ ବଂଶର ରାଜତ୍ୱ ପର୍ଯ୍ୟନ୍ତ ଉତ୍କଳ ଇତିହାସର ରାଜନୈତିକ ଘଟଣା ବିଶେଷ ଜଣାପଡ଼ି ନାହିଁ । ଏପରିକି ଭାରତ ଇତିହାସରେ ମଧ୍ୟ ପ୍ରାୟ ଏହି ସମୟ ଅଜ୍ଞାତ ସମୟ ବୋଲି ଧରାଯାଏ । ଉତ୍କଳ ଇତିହାସର ଏହା ସେହିପରି ଅଜ୍ଞାତ ସମୟ । ତେବେ ଚୈତ୍ରବଂଶ ପରେ ଶତାଧିକ ବର୍ଷ କଳିଙ୍ଗ ଅନ୍ଧ୍ର ଅଧିକାରରେ ଥିଲା, ସନ୍ଦେହ ନାହିଁ । ଅନ୍ଧ୍ର ବଂଶ ସେ ସମୟରେ ଭାରତରେ ବଡ଼ ପ୍ରବଳ ହୋଇ ଉଠିଥିଲେ । ୨୨୫ ଖ୍ରୀଷ୍ଟାବ୍ଦରେ ଅନ୍ଧ୍ର ବଂଶର ଲୋପହେଲା । ଅନ୍ଧ୍ର ଦେଶରେ ପ୍ରସିଦ୍ଧ ବୌଦ୍ଧ ସନ୍ନ୍ୟାସୀ ନାଗାର୍ଜ୍ଜୁନ ଅନ୍ଧ୍ର-ରାଜଧାନୀରେ ଥିଲେ । ଅନ୍ଧ୍ର ରାଜତ୍ୱ ବେଳେ ନାଗାର୍ଜ୍ଜୁନ ଉତ୍କଳରେ ବୌଦ୍ଧ ଧର୍ମ ପ୍ରଚାର କରିବାକୁ ଆସି ରାଜା ଏବଂ ଏକ ହଜାର ପ୍ରଜାଙ୍କୁ ଦୀକ୍ଷିତ କରାଇଥିଲେ ।

ଜଗନ୍ନାଥମନ୍ଦିରର 'ମାଦଳାପାଞ୍ଜି'ରେ ଲେଖାଅଛି, ଏହି ସମୟରେ ରକ୍ତବାହୁ ନାମରେ ଜଣେ ଜଳଦସ୍ୟୁ ସମୁଦ୍ର ବାଟେ ଆସି ଉତ୍କଳ ଆକ୍ରମଣ କରିଥିଲେ; ଏବଂ ଜଗନ୍ନାଥଙ୍କୁ ବହୁ ପୀଡ଼ା ଦେଇଥିଲେ । ସେ ଜଣେ ଯବନ ରାଜା ଥିଲେ; ଏବଂ ତାଙ୍କ ବଂଶୀୟ ରାଜାମାନେ ଉତ୍କଳରେ ୧୪୬ବର୍ଷ ରାଜତ୍ୱ କରିଥିଲେ । ଏଥିରୁ ବୋଧହୁଏ ରକ୍ତ ବାହୁ ଅନ୍ଧ୍ରଦେଶର ସେନାପତି ବା ରାଜା ଥିଲେ । ଏବେ ସେମାନେ ଦ୍ରାବିଡ଼, ସେଥିରେ ପୁଣି ବୌଦ୍ଧ;

ସୁତରାଂ ଉତ୍କଳୀୟ ଆର୍ଯ୍ୟମାନେ ତାହାଙ୍କୁ ଯବନ ରାଜା ବୋଲି ଲେଖିଛନ୍ତି ।

ଦନ୍ତପୁର ନାମରେ କଳିଙ୍ଗର ଏକ ରାଜଧାନୀ ଥିଲା । ବ୍ରହ୍ମଦତ୍ତ ତହିଁରେ ରାଜା ଥିଲେ । ବୁଦ୍ଧଦେବଙ୍କ ଦାନ୍ତ ସେଠାରେ ପୂଜା ପାଉଥିଲା । ବ୍ରହ୍ମଦତ୍ତଙ୍କ ବଂଶରେ ଶେଷ କାଳକୁ ଗୁହଶିବ ରାଜା ହେଲେ । ସେହିବେଳେ ପାଣ୍ଡୁ ନାମକ ଜଣେ ସମ୍ରାଟ ପାଟଳୀପୁତ୍ରରେ ଥିଲେ । ମାତ୍ର ଏହି ଗୁହଶିବ ବା ବ୍ରହ୍ମଦତ୍ତ କିଏ, ପାଣ୍ଡୁ ବା କିଏ ଏବଂ ବୁଦ୍ଧଦେବଙ୍କ ଦାନ୍ତର ଉପାଖ୍ୟାନ କେତେଦୂର ସତ୍ୟ, ତାହା ଏପର୍ଯ୍ୟନ୍ତ ସ୍ଥିର ହୋଇ ନାହିଁ ।

ଏହି ସମୟରେ କୌଣସି କୌଣସି ଉତ୍କଳ ରାଜା ଦୂରଦେଶ ଜୟ କରିଥିଲେ । ଖ୍ରୀଷ୍ଟ ତୃତୀୟ ଶତାବ୍ଦିରେ ଜାଲେରୁଦ୍ର ନାମରେ ଜଣେ ଉତ୍କଳ ରାଜା ବଙ୍ଗଦେଶରେ ଚନ୍ଦ୍ରବଂଶୀୟ ରାଜା ସୁଷଚନ୍ଦ୍ରଙ୍କୁ ପରାସ୍ତ କରି ତାଙ୍କ ରାଜ୍ୟର କେତେକାଂଶ ଅଧିକାର କରିଥିଲେ । ତତ୍ପରେ ନାଗେଶ ନାମକ ଆଉ ଜଣେ ଉତ୍କଳ ରାଜା ବଙ୍ଗରାଜା କର୍ମଚନ୍ଦ୍ରଙ୍କୁ ପରାସ୍ତ କରି ତାଙ୍କୁ ଆପଣାର ଅଧୀନସ୍ଥ ରାଜା କରି ରଖିଥିଲେ । ସେହି ନାଗେଶ ଯଜରୁଦ୍ର ରାଜାଙ୍କ ପୁତ୍ର ଥିଲେ; ଏବଂ ନାଗକେଶ ନାମରେ ତାଙ୍କର ଜଣେ ମନ୍ତ୍ରୀ ଥିଲେ । ମାତ୍ର ଏ ରାଜାମାନେ କେଉଁ ବଂଶର ଥିଲେ, ଏମାନେ ଉତ୍କଳର ରାଜା କି ସାମନ୍ତ ରାଜା ଥିଲେ, ନିଶ୍ଚୟ କରି କହି ହୁଏ ନାହିଁ ।

ଗୁପ୍ତସାମ୍ରାଜ୍ୟ—ଅନ୍ଧ୍ର ସମ୍ରାଜ୍ୟର ପତନ ପରେ ଉତ୍କଳ କେତେକାଳ ସ୍ୱାଧୀନ ରହି ପୁଣି ଗୁପ୍ତ ସାମ୍ରାଜ୍ୟର ଅଧୀନରେ ରହିଲା । ଗୁପ୍ତ ସାମ୍ରାଜ୍ୟର ସର୍ବ ପ୍ରଧାନ ସମ୍ରାଟ ଦିଗ୍‌ବିଜୟୀ ସମୁଦ୍ର ଗୁପ୍ତ ଖ୍ରୀଷ୍ଟାବ୍ଦ ୩୩୦ଠାରୁ ୩୭୫ ପର୍ଯ୍ୟନ୍ତ ସମ୍ରାଟ ହୋଇଥିଲେ । ସେ ଗୁପ୍ତ ସାମ୍ରାଜ୍ୟ ବହୁଦୂର ବଢାଇଥିଲେ । ଖ୍ରୀଷ୍ଟ ୩୪୭ରୁ ୩୫୦ ଅବ୍ଦ ମଧ୍ୟରେ ସେ ଦାକ୍ଷିଣାତ୍ୟ ବିଜୟରେ ଯାତ୍ରା

କରିଥିଲେ । ମଗଧରୁ ସେ ଛୋଟନାଗପୁର ବାଟେ ଆସି ପ୍ରଥମେ କୋଶଳ ଆକ୍ରମଣ କଲେ । କୋଶଳ ରାଜା ମହେନ୍ଦ୍ର ପରାସ୍ତ ହେଲେ । କୋଶଳରୁ ସେ ଦକ୍ଷିଣକୁ ଅଗ୍ରସର ହୋଇ କଳିଙ୍ଗ ରାଜାଙ୍କୁ ପରାସ୍ତ କଲେ, ଏବଂ ସେଠାରୁ ଗଞ୍ଜାମ ଜିଲ୍ଲା ବାଟେ ଅନ୍ଧ୍ରଦେଶ ଜୟ କରିବାକୁ ଗଲେ । ମାତ୍ର ସମୁଦ୍ରଗୁପ୍ତ ଯେଉଁ ଦେଶ ଜୟ କରିଥିଲେ, ସେ ସମସ୍ତ ଗୁପ୍ତସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇ ନ ଥିଲା । କୋଶଳ, କଳିଙ୍ଗ ଓ ଦାକ୍ଷିଣାତ୍ୟର ରାଜ୍ୟମାନ ସାକ୍ଷାତରେ ଗୁପ୍ତ ସାମ୍ରାଜ୍ୟ ମଧ୍ୟରେ ରହି ନ ଥିଲା । ତେବେ କଳିଙ୍ଗ ଓ ଅନ୍ୟାନ୍ୟ ବିଜିତ ରାଜ୍ୟମାନ ଗୁପ୍ତସାମ୍ରାଜ୍ୟର ଅଧୀନତା ସ୍ୱୀକାର କରି କରଦ ରାଜ୍ୟ ସ୍ୱରୂପ ଥିବାର ଅନୁମାନ ହୁଏ । କେଶରୀବଂଶର ରାଜତ୍ୱ ପର୍ଯ୍ୟନ୍ତ କଳିଙ୍ଗ ସେହିପରି କରଦରାଜ୍ୟ ରୂପେ ଗୁପ୍ତ ସାମ୍ରାଜ୍ୟର ଅଧୀନସ୍ଥ ରାଜ୍ୟହୋଇ ରହିଥିଲା ।

କୋଶଳ—ଏଥିପୂର୍ବରୁ କୁହାଯାଇଅଛି ଉତ୍କଳର ପଶ୍ଚିମରେ କୋଶଳ ନାମକ ଏକ ରାଜ୍ୟ ଥିଲା । ମୌର୍ଯ୍ୟ ଅଧିକାର ପରେ କଳିଙ୍ଗ ରାଜାମାନେ କୋଶଳରେ ଆଶ୍ରୟ ନେଇଥିଲେ । କୋଶଳ ରାଜବଂଶ ମହାମେଘବାହନ ଉପାଧି ଧରିଥିଲେ । ଚୈତବଂଶର ରାଜାମାନେ ସେହି କୋଶଳରୁ ଆସିଥିବାରୁ ଖାରବେଳ ପ୍ରଭୃତିଙ୍କର 'ମହାମେଘବାହନ' ଉପାଧି ମଧ୍ୟ ରହିଥିଲା ।

କୋଶଳ ରାଜ୍ୟ ବର୍ତ୍ତମାନ ସମ୍ବଲପୁର କଳାହାଣ୍ଡି ବସ୍ତର ରାୟପୁର ପ୍ରଭୃତି ନେଇ ଗଠିତ ହୋଇଥିଲା । ଏହାର ନାମ ଦକ୍ଷିଣ କୋଶଳ ଥିଲା, ଏବଂ କାଶୀ ଓ ଅଯୋଧ୍ୟା ନେଇ ଉତ୍ତର କୋଶଳ ଗଠିତ ହୋଇଥିଲା । କୋଶଳର ରାଜଧାନୀ ଓ୍ୱାଦା ନଦୀକୂଳରେ ବର୍ତ୍ତମାନ ମଧ୍ୟପ୍ରଦେଶ ମଧ୍ୟରେ ଥିଲା । କାଳକ୍ରମେ କୋଶଳ ରାଜାମାନେ ମଧ୍ୟଭାରତର ବାକାଟକ ନାମକ ଜାତି ଦ୍ୱାରା ବାରମ୍ବାର ପ୍ରପୀଡ଼ିତ ହୋଇ ଓ୍ୱାଦାନଦୀକୂଳରୁ ଘୁଞ୍ଚି ଆସି ମହାନଦୀ କୂଳସ୍ଥ ଶ୍ରୀପୁରରେ ରାଜଧାନୀ କଲେ । କୋଶଳ ସେହି ସମୟରୁ ଛତିଶଗଡ଼ ନାମରେ ପରିଣତ ହେଲା । ସେହି

କୋଶଳରେ ସୋମବଂଶୀ ଗୁପ୍ତବଂଶ ନାମରେ ଏକ ବଂଶ ରାଜତ୍ୱ କରୁଥିଲେ । ଉତ୍କଳର କେଶରୀ ବଂଶର ସେମାନେ ପୂର୍ବପୁରୁଷ ଥିଲେ । କେଶରୀ ବଂଶର ସ୍ଥାପନ ପୂର୍ବରୁ ୧୬ଜଣ ଗୁପ୍ତରାଜା କୋଶଳରେ ରାଜତ୍ୱ କରଥିଲେ ଏବଂ ଉଦ୍ୟୋତ ସେହି ଗୁପ୍ତବଂଶ ସ୍ଥାପନ କରିଥିଲେ । ଉକ୍ତ ବଂଶର ଦ୍ୱାଦଶ ରାଜା ଶିବ ଗୁପ୍ତଙ୍କ ପୁତ୍ର ଜନ୍ମେଜୟ ମହାଭବ ଗୁପ୍ତ ଉତ୍କଳ ଜୟକରି ରାଜା ହେଲେ, ଏବଂ "ତ୍ରିକଳିଙ୍ଗାଧିପତି" ବୋଲି ଆପଣାର ପରିଚୟ ଦେଲେ । କୋଶଳଗୁପ୍ତମାନେ ଉତ୍କଳର ରାଜା ହେବା ପରେ କୋଶଳ ରାଜ୍ୟ ଚେଦୀ ରାଜ୍ୟର କାଳଚୁରୀ ରାଜାମାନଙ୍କର ଅଧୀନସ୍ଥ ହେଲା । କାଳଚୁରୀ ରାଜାମାନେ ଜବଲପୁର ନିକଟରେ ଥିବା ତ୍ରିପୁରୀରେ ରାଜଧାନୀ କଲେ । ସେମାନଙ୍କର ହେହୟ ନାମରେ ଅଉ ଏକ ଶାଖା ବିଲାସପୁର ମଧ୍ୟରେ ଥିବା ରତ୍ନପୁରରେ ରାଜତ୍ୱ କଲେ । ଏହିରୂପେ କୋଶଳ ରାଜନୈତିକ ସତ୍ତା ଲୋପ ପାଇ ତାହା କଳିଙ୍ଗରୁ କେତେକ କାଳ ପୃଥକ ରହିଲା । ମାତ୍ର ପ୍ରଥମରୁ କୋଶଳ କଳିଙ୍ଗର ଅନ୍ତର୍ଗତ ଥିଲା; ଏବଂ କେତେବେଳେ ପୃଥକ୍ ରହି ଥିଲେ ମଧ୍ୟ, କୋଶଳବାସୀ ଯେ ଉତ୍କଳୀୟ ଥିଲେ ଓ ଉତ୍କଳ ସଙ୍ଗେ ତାହାର ଘନିଷ୍ଠ ସମ୍ବନ୍ଧ ଥିଲା କହିବା ବାହୁଲ୍ୟ ମାତ୍ର ।

କୋଙ୍ଗଦ—ଚେଦିବଂଶର ଅବସାନ ପରେ କଳିଙ୍ଗ ଭିନ୍ନ ଭିନ୍ନ ରାଜ୍ୟରେ ବିଭକ୍ତ ହୋଇ ଥିବାର ଜଣାଯାଏ । ସେଥି ମଧ୍ୟରୁ ଉପରେ ଯେଉଁ କୋଶଳ ରାଜ୍ୟ କଥା କୁହାଗଲା ତାହା ଏକ ରାଜ୍ୟ । କୋଙ୍ଗଦ ରାଜ୍ୟ ତହିଁ ମଧ୍ୟରୁ ଅନ୍ୟତମ । ପୂର୍ବରୁ କୁହାଯାଇଛି, କଳିଙ୍ଗ ତିନିଭାଗରେ ବିଭକ୍ତ ଥାଇ ତ୍ରିକଳିଙ୍ଗ ବୋଲି କୁହା ଯାଉଥିଲା । ଉତ୍ତରଭାଗ ଉତ୍କଳ, ଦକ୍ଷିଣଭାଗ ଦକ୍ଷିଣ କଳିଙ୍ଗ, ବା ଗଙ୍ଗାରାଢ଼ୀ କଳିଙ୍ଗ ଏବଂ ମଧ୍ୟଭାଗ ମଧ୍ୟ କଳିଙ୍ଗ । ମୌର୍ଯ୍ୟ ଓ ଚେଦିବଂଶ ଶାସନରେ ଏହି ତ୍ରିକଳିଙ୍ଗ କୋଶଳ ରାଜ୍ୟକୁ ନେଇ ଏକ ରାଜ୍ୟ ଥିଲା ।

ମାତ୍ର ପରବର୍ତ୍ତୀ କାଳରେ ସବୁ ପୃଥକ୍ ପୃଥକ୍ ଦେଶ ହୋଇଗଲା । ସେମାନଙ୍କ ମଧ୍ୟରୁ ମଧ୍ୟକଳିଙ୍ଗ କୋଙ୍ଗଦରାଜ୍ୟରେ ପରିଣତ ହେଲା ।

ଅଧୁନାର ବାଣପୁର, ଖଲ୍ଲିକୋଟ, ଆଠଗଡ଼, ରଣପୁର, ନୂଆଗଡ଼, ଦଶପଲ୍ଲା ପ୍ରଭୃତି ନେଇ କୋଙ୍ଗଦରାଜ୍ୟ ଥିଲା । ଏହାର ରାଜଧାନୀ ସାଲିମା ନଦୀକୂଳରେ ଥିଲା । ବୋଧହୁଏ ଅଧୁନାର ବାଣପୁର ସେହି ରାଜଧାନୀ ଥିଲା । କାରଣ "ସାଲିଆ" ନଦୀ ବାଣପୁର ମଧ୍ୟ ଦେଇ ଚାଲିଯାଇଅଛି । କୋଙ୍ଗଦବାସୀ ବିଶେଷ ସାହସୀ ଓ ପରାକ୍ରମୀ ଥିଲେ । ଖ୍ରୀଷ୍ଟ ସପ୍ତମଶତାବ୍ଦି ପର୍ଯ୍ୟନ୍ତ ଶୈଳୋଦ୍ଭବ ବଂଶର ରାଜାମାନେ କୋଙ୍ଗଦରେ ରାଜତ୍ୱ କରୁଥିଲେ । ସେହି ବଂଶର ମାଧବ ବର୍ମା ନାମରେ ଏକ ରାଜା ବଡ଼ ପ୍ରବଳ ହୋଇଥିଲେ । ୬୨୦ ଖ୍ରୀଷ୍ଟାବ୍ଦରେ ସେ ଏକ ରାଜସୂୟଯଜ୍ଞ କରିଥିବାର ବର୍ଣ୍ଣନା ଅଛି । ସେହି ଶୈଳୋଦ୍ଭବ ବଂଶପରେ କରବଂଶୀୟ ରାଜାମାନେ କୋଙ୍ଗଦରେ ରାଜତ୍ୱ କରିଥିଲେ । କୋଙ୍ଗଦରାଜ୍ୟ କେତେଦିନ ଯେ ସ୍ୱାଧୀନ ରହିଥିଲା ତାହା ଠିକ ଜାଣି ହୁଏ ନାହିଁ । ବୋଧହୁଏ ଖ୍ରୀଷ୍ଟ ସପ୍ତମ ବା ଅଷ୍ଟମ ଶତାବ୍ଦି ପରେ କୋଙ୍ଗଦ ପୁନର୍ବାର ଉତ୍କଳର ଅନ୍ତର୍ଗତ ହୋଇ ରହିଲା ।

ତାମ୍ରଲିପ୍ତ—ବର୍ତ୍ତମାନ ମେଦିନୀପୁର ଜିଲ୍ଲା ନେଇ ତାମ୍ରଲିପ୍ତ ରାଜ୍ୟ ଗଠିତ ହୋଇଥିଲା । ତାମ୍ରଲିପ୍ତ ଏହି ରାଜ୍ୟର ରାଜଧାନୀ ଥିଲା । ଅତି ପ୍ରାଚୀନ କାଳରୁ, ଏପରିକି ଅଶୋକଙ୍କ କାଳରୁ, ମୟୂରଭଞ୍ଜର "ମୟୂରଧ୍ୱଜ" ବଂଶୀୟ ରାଜାମାନେ ଏଠାରେ ରାଜତ୍ୱ କରୁଥିଲେ । ଏହି ବଂଶରେ ୩୨ ଜଣ ରାଜା ରାଜତ୍ୱ କରିଥିଲେ । ତାମ୍ରଲିପ୍ତ ଉତ୍କଳ ବା କଳିଙ୍ଗର ଅନ୍ତର୍ଭୁକ୍ତ ଥିଲା । ଅଶୋକ କଳିଙ୍ଗ ଅଧିକାର କରିବା ପରେ ତାମ୍ରଲିପ୍ତରେ ୨୦୦ ଫୁଟ ଉଚ୍ଚରେ ଏକ ସ୍ତମ୍ଭ ନିର୍ମାଣ କରି ଧର୍ମଶିକ୍ଷା ଖୋଲାଇ ପ୍ରଚାର କରିଥିଲେ । ତାମ୍ରଲିପ୍ତ ବା ତମଲୁକ ଅତି ପ୍ରାଚୀନ କାଳରୁ ଉତ୍କଳର ଏକ ପ୍ରଧାନ ସହର ଥିଲା; ଏବଂ ଦେଶ ବିଦେଶରୁ ବହୁ ବଣିକ ଓ ଧନରତ୍ନ ଆସି ଏଠାରେ

ଭାରବାର ହେଉଥିଲା । ବୌଦ୍ଧଯୁଗ ପରେ ଖ୍ରୀଷ୍ଟ ସପ୍ତମଶତାବ୍ଦିରେ କୈବର୍ତ୍ତ ବଂଶ ଉତ୍କଳ ଉପକୂଳରୁ ଆସି ସେଠାରେ ଆଧିପତ୍ୟ କଲେ । ମୟୂରଧ୍ୱଜ ବଂଶ ଲୋପ ପାଇଲା; ଏବଂ କୈବର୍ତ୍ତ ବଂଶର ରାଜତ୍ୱ ଆରମ୍ଭ ହେଲା । ପ୍ରଥମ କୈବର୍ତ୍ତ ରାଜା କାଳଭୂୟା ସିଂହାସନ ଅଧିକାର କରି ଗୃହଗତ କୈବର୍ତ୍ତ ବଂଶ ତାମ୍ରଲିପ୍ତରେ ସ୍ଥାପନ କଲେ । କାଳକ୍ରମେ କୈବର୍ତ୍ତବଂଶ ବଢ଼ି ଅଠ ପ୍ରକାର ବଂଶ ହୋଇଗଲା । ତାମ୍ରଲିପ୍ତ କେତେବେଳେ ଉତ୍କଳଠାରୁ ସ୍ୱାଧୀନ ହୋଇ ରହୁଥିଲା ବା ଉତ୍କଳର ଅନ୍ତର୍ଗତ କରଦରାଜ୍ୟମାନଙ୍କ ପରି ଥିଲା ଠିକ କହିହେଉ ନାହିଁ । ତେବେ ଅଶୋକଙ୍କ କାଳରୁ ଆରମ୍ଭ କରି ମେଦନୀପୁର ଜିଲ୍ଲା ଉତ୍କଳରୁ ବିଚ୍ଛିନ୍ନ ହେବା ପର୍ଯ୍ୟନ୍ତ ଏହା ଉତ୍କଳର ଅନ୍ତର୍ଗତ ରାଜ୍ୟ ଥିବାର ଜଣାଯାଏ ।



## ଷଷ୍ଠ ଅଧ୍ୟାୟ

### ଦେଶର ଅବସ୍ଥା

ଉନ୍ନତ ଅବସ୍ଥା—ନନ୍ଦ ଅଧିକାର କାଳରୁ କେଶରୀ ରାଜତ୍ୱ ପର୍ଯ୍ୟନ୍ତ ସେହି ହଜାର ବର୍ଷ ମଧ୍ୟରେ ଦେଶର ଅବସ୍ଥାସମ୍ବନ୍ଧରେ ଭେଟେଭେଟ ପ୍ରମାଣ ମିଳେ । ଅବଶ୍ୟ କେଶରୀ ରାଜତ୍ୱ ପୂର୍ବରୁ ପ୍ରାୟ ଶ୍ୱଶତ ବର୍ଷ ମଧ୍ୟରେ ରାଜାମାନଙ୍କର ରାଜତ୍ୱ ସମ୍ବନ୍ଧରେ ସେତେ କିଛି ଜଣାନାହିଁ । ମାତ୍ର ରାଜାମାନଙ୍କର ଜୀବନ ଦେଶର ପ୍ରକୃତ ଇତିହାସ ନୁହେଁ । ଦେଶବାସିଙ୍କ ଜୀବନର ବିଷୟାବଳୀ ଦେଶର ପ୍ରକୃତ ଇତିହାସ । ଶିଳାଲିପି, ଶିଳାଶିଳ୍ପ ପ୍ରାଚୀନ ଗ୍ରନ୍ଥାବଳୀ, ବୈଦେଶିକ ଲେଖକମାନଙ୍କର ବର୍ଣ୍ଣନା ଓ କିମ୍ବଦନ୍ତୀ ସାହାଯ୍ୟରେ ଏହି ସହସ୍ର ବର୍ଷ ମଧ୍ୟରେ ଉତ୍କଳବାସିଙ୍କର ଅବସ୍ଥା କିପରି ଉନ୍ନତ ହୋଇଥିଲା, ଜଣାପଡ଼େ । ସେ ସବୁରୁ ଜଣାଯାଏ, ଉତ୍କଳବାସୀ ସୁସଭ୍ୟ ଥିଲେ, ଶିଳ୍ପବାଣିଜ୍ୟରେ ବହୁତ ଉନ୍ନତି କରିଥିଲେ, ଲୋକେ ସେତେବେଳେ ଧାର୍ମିକ, ସାହସୀ, କର୍ମକୁଶଳ ଏବଂ ଶିଳାଶିଳ୍ପ ଓ ଅନ୍ୟାନ୍ୟ କଳାବିଦ୍ୟାରେ ବହୁ ପାରଦର୍ଶୀ ଥିଲେ ।

ଶିଳାଶିଳ୍ପ—ଉତ୍କଳୀୟମାନେ ଖ୍ରୀଷ୍ଟ ପଞ୍ଚମ ଶତାବ୍ଦି ପୂର୍ବରୁ ଶିଳା-ଶିଳ୍ପରେ ଉନ୍ନତି କରିଥିବାର ପ୍ରମାଣ ମିଳେ । ଭୁବନେଶ୍ୱର ନିକଟରେ ଖଣ୍ଡଗିରି, ଉଦୟଗିରି ଓ ନୀଳଗିରି ନାମରେ ପାହାଡ଼ ତିନୋଟି ଅଛି, ପାହାଡ଼ ଗୁଡ଼ିକ ଅଳ୍ପ ଉଚ୍ଚ । ଖଣ୍ଡଗିରି ସବୁଠାରୁ ଅଧିକ ଉଚ୍ଚ, ଉଚ୍ଚତାରେ ୧୨୩ ଫୁଟ । ଉଦୟଗିରିର ଉଚ୍ଚତା ୧୧୦ ଫୁଟ । ଏହି ତିନି ପାହାଡ଼ରେ ବହୁତ ଗୁମ୍ଫା ଖୋଳା ଯାଇଛି । ଉଦୟଗିରିରେ ୪୪, ଖଣ୍ଡଗିରିରେ ୧୯ ଏବଂ ନୀଳଗିରିରେ ୩ଗୁମ୍ଫା ଅଛି । ସ୍ଥାନଟି ଶାନ୍ତିମୟ ଏବଂ ଅରଣ୍ୟ ମଧ୍ୟରେ

ଥାଇ ନିର୍ଜ୍ଜନ । ପାହାଡ଼ମାନଙ୍କର ଚତୁର୍ଦ୍ଦିଗର ଶୋଭା ବଡ଼ ମନୋରମ । ତୋଷାଳୀ ରାଜଧାନୀକୁ ନିକଟ, ସୁତରାଂ ସନ୍ୟାସିମାନେ ରାଜାଶ୍ରୟରେ ରହି ନିଶ୍ଚିନ୍ତରେ ଈଶ୍ୱର ଚିନ୍ତା କରିବାର ଏହା ଉପଯୁକ୍ତ ସ୍ଥଳ । ସନ୍ୟାସୀମାନଙ୍କର ନିର୍ଜ୍ଜନ ଚିନ୍ତା ଓ ଆଶ୍ରୟ ନିମନ୍ତେ ସେହି ଗୁମ୍ଫାମାନ ଖୋଳା ଯାଇଥିଲା । ନିଜେ ଖାରବେଳ ମଧ୍ୟ ସସ୍ତ୍ରୀକ ସନ୍ୟାସ ଜୀବନ କଟାଇବା ପାଇଁ 'ରାଣୀହଂସ-ପୁର' ବା 'ରାଣୀନଅର' ବା 'ରାଣୀ ଗୁମ୍ଫା' ଖୋଳାଇଥିଲେ । ରାଜା ନିଜେ ସନ୍ୟାସୀ ନଥିଲେ ମଧ୍ୟ, ରାଜକାର୍ଯ୍ୟର ଧନ୍ଦାରୁ ବିଶ୍ରାମ ନେବା ନିମନ୍ତେ ଏବଂ ସେଠାର ସନ୍ୟାସିମାନଙ୍କର ଭଲ ମନ୍ଦ ବୁଝିବା ନିମନ୍ତେ ରାଜଧାନୀ ପ୍ରାନ୍ତବର୍ତ୍ତୀ ଉଦୟଗିରିରେ କିଛି ସମୟ ବାସ କରୁଥିଲେ ।

ସକଳ ଗୁମ୍ଫା ମଧ୍ୟରେ ରାଣୀହଂସପୁର ଗୁମ୍ଫା ବୃହତ୍ତମ ଓ କାରୁକାର୍ଯ୍ୟରେ ଉତ୍କୃଷ୍ଟ । ଅନ୍ୟାନ୍ୟ ଗୁମ୍ଫାମାନଙ୍କ ମଧ୍ୟରେ ଗଣେଶ ଗୁମ୍ଫା, ଅଲକାପୁରୀ ବା ସ୍ୱର୍ଗପୁରୀ ଗୁମ୍ଫା, ପାତାଳପୁରୀ ବା ମଞ୍ଚପୁରୀ ଗୁମ୍ଫା, ବ୍ୟାଘ୍ର ଗୁମ୍ଫା, ସର୍ପଗୁମ୍ଫା, ଜୟବିଜୟ ଗୁମ୍ଫା, ହାତୀଗୁମ୍ଫା ପ୍ରଭୃତି ପ୍ରଧାନ । ଖଣ୍ଡଗିରିର ଗୁମ୍ଫାମାନଙ୍କ ମଧ୍ୟରେ ତତ୍ତ୍ୱଗୁମ୍ଫା, ନବ ମୁନିଗୁମ୍ଫା, ବାରଭୂଜ ଗୁମ୍ଫା, ଲଲାଟେନ୍ଦୁ ଗୁମ୍ଫା ପ୍ରଭୃତି ପ୍ରଧାନ । ଉତ୍କଳରେ ଜୈନଧର୍ମ ପ୍ରବଳ ଥିବାବେଳେ ଏଥିରୁ ଅଧିକାଂଶ ଗୁମ୍ଫା ଖୋଳା ହୋଇଥିଲା । ହାତୀଗୁମ୍ଫା ଖାରବେଳଙ୍କ ସମୟର; ସ୍ୱର୍ଗପୁରୀ, ମଞ୍ଚପୁରୀ, ସର୍ପ, ବ୍ୟାଘ୍ର, ଜମ୍ବେଶ୍ୱର, ହରିଦାସ ପ୍ରଭୃତି ପ୍ରାୟ ସେହି ସମୟର କାର୍ଯ୍ୟ । ଖାରବେଳଙ୍କ ପୂର୍ବରୁ ମଧ୍ୟ ଗୁମ୍ଫାମାନ ଥିଲା । ଏପରିକି ନନ୍ଦ ରାଜତ୍ୱ ପୂର୍ବରୁ ସେଠାରେ ଜୈନଗୁମ୍ଫା ଥିଲା ଏବଂ ଜୈନ ସନ୍ୟାସିମାନେ ବାସ କରୁଥିଲେ । ଯେପରି ଦେଖାଯାଏ, ଖ୍ରୀଷ୍ଟ ପୂର୍ବ ତୃତୀୟ ଓ ଚତୁର୍ଥ ଶତାବ୍ଦିରୁ ଖଣ୍ଡଗିରି ଓ ଉଦୟଗିରିରେ ଗୁମ୍ଫା ଖୋଳା ଆରମ୍ଭ ହୋଇଥିଲା । କେତେକ ଗୁମ୍ଫା ମଧ୍ୟ ଖ୍ରୀଷ୍ଟ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦିରେ ଖୋଳା ହୋଇଥିବା ସମ୍ଭବ । କେଶରୀ ରାଜାମାନଙ୍କ ସମୟରେ କୌଣସି କୌଣସି ଗୁମ୍ଫା ମଧ୍ୟ ଖୋଳା ଯାଇଥିଲା ।

ଗୁମ୍ଫାମାନଙ୍କର କାରୁକାର୍ଯ୍ୟ ଭୁବନେଶ୍ୱର ଓ କୋଣାର୍କ ପରି ସୂକ୍ଷ୍ମ ସୁନ୍ଦର ନହେଲେ ମଧ୍ୟ ସେ କାଳର ଉତ୍କଳୀୟମାନଙ୍କର ଶିଳ୍ପ-ନିପୁଣତା ଯଥେଷ୍ଟ ପ୍ରମାଣ କରୁଅଛି । ଗୁମ୍ଫାର ନରରୂପଗୁଡ଼ିକ ସ୍ୱାଭାବିକ; ମୁଖଭଙ୍ଗି ଓ ହସ୍ତରୁ ମନୁଷ୍ୟ ଜୀବନର ଭିନ୍ନ ଭିନ୍ନ ଅବସ୍ଥା ସୁନ୍ଦର ବୁଝାପଡ଼ୁଛି । ଆଶା, ନିରାଶା; ସୁଖ ଦୁଃଖ; ଆବେଗ, ଉତ୍ସାହ, ଧ୍ୟାନ ପ୍ରଭୃତି ମନର ଭିନ୍ନ ଭିନ୍ନ କାର୍ଯ୍ୟମାନ ଶିଳ୍ପୀମାନେ ନରଦେହରେ ଯଥେଷ୍ଟ ଦେଖାଇ ପାରିଛନ୍ତି । ହାତୀ, ଘୋଡ଼ା, ମୃଗ, ମର୍କଟ, ହଂସ ପ୍ରଭୃତି ଜୀବଜନ୍ତୁଗୁଡ଼ିକ ସୁନ୍ଦରଭାବରେ ଖୋଳା ଯାଇଛି । ଭୁବନେଶ୍ୱର ମନ୍ଦିରମାନଙ୍କର ଗଛ ପତ୍ର ଦୃଶ୍ୟ ପରି, ଗୁମ୍ଫାମାନଙ୍କର ଗଛପତ୍ର ଦୃଶ୍ୟ ତେତେ ସୂକ୍ଷ୍ମ ଓ ସୁନ୍ଦର ନୁହେଁ । ମାତ୍ର ସେ ସବୁ ଦୃଶ୍ୟ ବିଶେଷ ଭାବରେ ପ୍ରାକୃତିକ ହୋଇଥିବାର ଦେଖାଯାଏ ।

ଗୁମ୍ଫାମାନଙ୍କର କାରୁକାର୍ଯ୍ୟରୁ ସେ କାଳର ସାମାଜିକ ଓ ପାରିବାରିକ ଜୀବନର କେତେକ ପରିଚୟ ମିଳେ । ପୁରୁଷମାନେ କେତେକ ପରିମାଣରେ ବର୍ତ୍ତମାନ ପରି ଲୁଗା ପିନ୍ଧୁଥିଲେ । ଲୁଗା ଆଣ୍ଠୁତଳକୁ ବେଶି ଆସୁ-ନଥିଲା । ଉଚ୍ଚ କୁଳର ସ୍ତ୍ରୀମାନେ ସୂକ୍ଷ୍ମଲୁଗା ଓ ପାଟିମାନ ଓ ସୁନା ରୂପାର ଅଳଙ୍କାର ପିନ୍ଧୁଥିଲେ । ତେବେ ସେ କାଳର ଅଳଙ୍କାର ବର୍ତ୍ତମାନ ଅପେକ୍ଷା ସେପରି ସୂକ୍ଷ୍ମଥିବାର ବୋଧହୁଏ ନାହିଁ । ପୁରୁଷମାନେ ମୁଣ୍ଡରେ ପଗଡ଼ି ପିନ୍ଧୁଥିଲେ । ଦୋତାଲା ଘର, ବସିବାକୁ କାଠଆସନ, ଖଟ, ଥାଳୀ, ଗରା, ନାନାବାଦ୍ୟ ଯନ୍ତ୍ର, ଛତା, ଦଉଡ଼ି, ହାତୀ ଓ ଘୋଡ଼ାଙ୍କ କଲଆର, ଖଣ୍ଡା ଅସ୍ତ୍ରାଘାତର ଢାଲ, ଧନୁଶର ପ୍ରଭୃତି ବ୍ୟବହାର କରାଯାଉଥିଲା । ରାଣୀହଂସପୁରରେ ଗୋଟିଏ ଶିକାର ଦୃଶ୍ୟ ଅଛି, ତାହା ଆଧୁନିକ ଶିକାର ଦୃଶ୍ୟର ଅବିକଳ ପ୍ରତିକୃତି । ଧର୍ମ ଜୀବନର କେତେକ ଦୃଶ୍ୟ ମଧ୍ୟ ଖୋଦିତ ହୋଇଛି । ମନ୍ଦିର ମଧ୍ୟରେ ଦେବ ଉପାସନା; ଈଶ୍ୱର ଭକ୍ତିରେ ତନ୍ମୟ ହେବା ବା ଗୋଷ୍ଠୀର ସମସ୍ତେ ନୃତ୍ୟ ଗୀତ କରିବା, କୌଣସି ମହର୍ଷି ବା ଧର୍ମବୀରଙ୍କ ଉଦ୍ଦେଶ୍ୟରେ ଶୋଭା ଯାତ୍ରା କରିବା; ବୃକ୍ଷ, [illegible] ଓ ସୂର୍ଯ୍ୟଙ୍କ ଉପାସନା ପ୍ରଭୃତି ଦେଖାଯାଏ ।

ଉଦୟଗିରିର ରାଣୀହଂସପୁର ଗୁମ୍ଫାରେ ଅନ୍ୟାନ୍ୟ ଜୈନତୀର୍ଥମାନଙ୍କ ମଧ୍ୟରେ ପାର୍ଶ୍ଵନାଥଙ୍କ ଜୀବନର ଘଟଣାବଳୀର ଚିତ୍ର ଥିବାର ଦେଖାଯାଏ । ଏହି ଚିତ୍ର ମଧ୍ୟ ଗଣେଶ ଗୁମ୍ଫାରେ କେତେ କେତେ ଅଛି । ପାର୍ଶ୍ଵନାଥ ମହାବୀରଙ୍କ ଆବିର୍ଭାବର ୨୫୦ ବର୍ଷ ପୂର୍ବରୁ ଜୈନଧର୍ମ ପ୍ରଚାର କରିଥିଲେ । ଖ୍ରୀଷ୍ଟପୂର୍ବ ୭୫୦ ଅବ୍ଦ ମଧ୍ୟରେ ପାର୍ଶ୍ଵନାଥ ଜୈନଧର୍ମ ପ୍ରଚାର କରିଥିବାର ସ୍ଥିର ହୋଇଅଛି । ଖଣ୍ଡଗିରି ଓ ଉଦୟଗିରିରେ ପାର୍ଶ୍ଵନାଥଙ୍କ ଜୀବନୀ ଖୋଦିତ ହୋଇଛି; ଅଥଚ ଭାରତର ଅନ୍ୟାନ୍ୟ ଜୈନତୀର୍ଥମାନଙ୍କରେ ମହାବୀରଙ୍କ ଉଦ୍ଦେଶ୍ୟରେ ଜୈନକୀର୍ତ୍ତିମାନ ଖୋଦିତ ହୋଇଥିଲା । ସୁତରାଂ ଅନୁମାନ କରାଯାଏ ଯେ ଭାରତ ମଧ୍ୟରେ ଖଣ୍ଡଗିରି ଓ ଉଦୟଗିରିର ଜୈନକୀର୍ତ୍ତିମାନ ପ୍ରାଚୀନତମ ।

ଖଣ୍ଡଗିରିରେ ପରେଶନାଥ ବା ପାର୍ଶ୍ଵନାଥଙ୍କ ମନ୍ଦିର ଅଛି ଏବଂ ତାହାବାଦ୍ ଗୁମ୍ଫାଗଣ ଓ କେତେକ କ୍ଷୁଦ୍ର କ୍ଷୁଦ୍ର ପାଣିକୁଣ୍ଡ ମଧ୍ୟ ଅଛି ।

ଧଉଳିଗିରି — ଧଉଳିଗିରି ଭୁବନେଶ୍ଵରର ଦକ୍ଷିଣରେ ଦୟାନଦୀ କୂଳକୁ ଲାଗି ରହିଛି । କଳିଙ୍ଗର ପ୍ରାଚୀନ ରାଜଧାନୀ ତୋଷାଳୀରୁ ବର୍ତ୍ତମାନ ଧଉଳି ଅପଭ୍ରଂଶ ହୋଇ ଥିବାର ପଣ୍ଡିତମାନେ କହନ୍ତି । ଏଠାରେ ମଧ୍ୟ କେତୋଟି କ୍ଷୁଦ୍ର ଗୁମ୍ଫା ଅଛି । ଧଉଳି ତିନୋଟି ଶୃଙ୍ଗ । ସେଥି ମଧ୍ୟରୁ ଅଶ୍ଵତ୍ଥାମା ପାହାଡ଼ର ଦେହରେ ଅଶୋକଙ୍କର ଅନୁଶାସନମାନ ଖୋଳା ହୋଇଅଛି । ଅନୁଶାସନ ୩ ସ୍ତମ୍ଭରେ ଖୋଦିତ । ପ୍ରଥମ ସ୍ତମ୍ଭରେ [illegible] ଧାଡ଼ିରେ ୧ରୁ ୬ ପର୍ଯ୍ୟନ୍ତ ଅନୁଶାସନ; ମଧ୍ୟ ସ୍ତମ୍ଭରେ ୭ ରୁ ୧୦ ଏବଂ ୧୪ ଅନୁଶାସନ ଏବଂ ତୃତୀୟ ସ୍ତମ୍ଭରେ ୧୧ ଏବଂ ୧[illegible] ଅନୁଶାସନମାନ ଖୋଳା ଅଛି । ଏଥି ମଧ୍ୟରୁ ୧୧ ଟି ଅଶୋକଙ୍କର ସାଧାରଣ ଅନୁଶାସନ ଏବଂ ଦୁଇଟି କଳିଙ୍ଗ ପ୍ରତି ବିଶେଷ ଭାବରେ ଉଦ୍ଦିଷ୍ଟ ଅନୁଶାସନ । ଶେଷ ଚତୁର୍ଦ୍ଦଶ ଅନୁଶାସନ ସକଳ ଅନୁଶାସନମାନଙ୍କର ସାରମର୍ମ ସ୍ୱରୂପ ଧର୍ମର ପ୍ରକୃତ ବ୍ୟାଖ୍ୟା କରେ ।

ଏହା ବାଦ୍ ଧଉଳୀରେ ସ୍ଥାନେ ସ୍ଥାନେ ଗୁହା ଓ ଘରର ଭଗ୍ନାବଶେଷ ଦେଖାଯାଏ । ପଞ୍ଚପାଣ୍ଡବ ନାମରେ ଗୋଟିଏ ଗୁମ୍ଫା ଅଛି । ଧଉଳୀ ଉପରେ ଗୋଟିଏ ଶିବ ମନ୍ଦିର ଅଛି । ବୋଧହୁଏ ପରେ ଏହା କେଶରୀ ରାଜତ୍ୱରେ ତିଆରି ହୋଇଥିଲା । ମନ୍ଦିର ଟି ଭାଙ୍ଗି ଗଲାଣି, ମାତ୍ର ତାହାର ଶିଳ୍ପ ପ୍ରଶଂସନୀୟ ।

ବାଣିଜ୍ୟ—ସଭ୍ୟତାର ଅନ୍ୟ ଗୋଟିଏ ଉପକରଣ ବାଣିଜ୍ୟ । ଜଳ-ପଥରେ ବାଣିଜ୍ୟ ଚଳାଇବାର ବହୁ ପୂର୍ବରୁ ସ୍ଥଳବାଣିଜ୍ୟରେ ବଣିକମାନେ ନିପୁଣ ହୋଇ ଥିବାର କଥା । ବଣିକ ଦ୍ରବ୍ୟ ବିଶେଷ ଉତ୍କୃଷ୍ଟ ବା ପ୍ରଚୁର ନ ହେଲେ ତାହା ନିଜ ଦେଶ ମଧ୍ୟରୁ ବହିର୍ଦ୍ଦେଶକୁ ଯାଏ ନାହିଁ । ବହିର୍ଦ୍ଦେଶ ବାଣିଜ୍ୟରେ ବଣିକମାନଙ୍କର ବୁଦ୍ଧିକୌଶଳ, ଧୈର୍ଯ୍ୟ ସହିଷ୍ଣୁତା ବିଶେଷ ଆବଶ୍ୟକ । ପୁଣି ନୌବାଣିଜ୍ୟ ନିମନ୍ତେ ଏ ସବୁ ଗୁଣ ସଙ୍ଗେ ସଙ୍ଗେ ଅଶେଷ ସାହସ ମଧ୍ୟ ଲୋଡ଼ା । ପ୍ରମାଣ ମିଳୁଛି ଖ୍ରୀଷ୍ଟପୂର୍ବ ୮୦୦ ବର୍ଷ ପୂର୍ବରୁ କଳିଙ୍ଗବାସୀ ସମୁଦ୍ର ବାଣିଜ୍ୟରେ ନିପୁଣ ହୋଇଥିଲେ । ନନ୍ଦ ରାଜତ୍ୱଠାରୁ କେଶରୀ ରାଜତ୍ୱ ପର୍ଯ୍ୟନ୍ତ ସମସ୍ତ କଳିଙ୍ଗ ନୌବାଣିଜ୍ୟରେ ଚରମ ଉନ୍ନତ ଅବସ୍ଥା ପାଇଥିଲା ।

ପୂର୍ବରୁ କୁହା ଯାଇଛି (୧୮ ପୃଷ୍ଠା) ହାତୀ ଧରିବା ଓ ହାତୀଦାନ୍ତର ବ୍ୟବସାୟ ମହାଭାରତ କାଳରୁ ଉତ୍କଳରେ ଚାଲୁଥିଲା । ଖ୍ରୀଷ୍ଟପୂର୍ବ ୩ୟ ଓ ଚତୁର୍ଥ ଶତାବ୍ଦୀର ଅନୁଶାସନମାନଙ୍କରେ ଲେଖାଅଛି ଯେ ସମୁଦ୍ର ଯାତ୍ରା ଓ ସମୁଦ୍ର ବାଣିଜ୍ୟ ସେତେବେଳକୁ କଳିଙ୍ଗ ରାଜକୁମାରମାନଙ୍କର ଶିକ୍ଷା ବିଧାନର ଅନ୍ତର୍ଗତ ଥିଲା । ଅନୁମାନ ହୁଏ, ଏହାର ବହୁକାଳ ପୂର୍ବରୁ ସାଧାରଣ ଶିକ୍ଷାପଦ୍ଧତି ମଧ୍ୟରେ ଏହାକୁ ସ୍ଥାନ ଦିଆ ଯାଉଥିଲା । ଶିକ୍ଷା ପଦ୍ଧତିର ଅନ୍ତର୍ଗତ ହେବା ନିମନ୍ତେ ବୈଜ୍ଞାନିକ ଭାବରେ ବିଧିବଦ୍ଧ ହେବା ପୂର୍ବରୁ ଦେଶର ଜନସାଧାରଣ ବା ବଣିକଶ୍ରେଣୀଙ୍କ ମଧ୍ୟରେ ଏହା ଯେ ଚାଲିଥିଲା ସନ୍ଦେହ ନାହିଁ । ସୁତରାଂ ଖ୍ରୀଷ୍ଟପୂର୍ବ ୮୦୦ ବର୍ଷ ପୂର୍ବରୁ

କଳିଙ୍ଗରେ ନୌବାଣିଜ୍ୟ ଚାଲୁଥିବାର ଯେଉଁମାନେ କହନ୍ତି, ସେମାନଙ୍କର ସିଦ୍ଧାନ୍ତ ଅମୂଳକ ନୁହେଁ ।

ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦିରେ ମେଗାସ୍ଥିନିସଙ୍କ ଭାରତବର୍ଣ୍ଣନାରୁ ଜଣାଯାଏ, ସେତେବେଳେ ଏବଂ ତାହା ପୂର୍ବରୁ ତାମ୍ରପର୍ଣ୍ଣୀ (ଲଙ୍କା) ଦ୍ୱୀପ ଓ କଳିଙ୍ଗମଧ୍ୟରେ ହାତୀର ବାଣିଜ୍ୟ ସମୁଦ୍ରପଥରେ ଚାଲୁଥିଲା । ଲଙ୍କାହାତୀ ଆକାରରେ ଅଧିକ ବଡ଼ ଏବଂ ବଳରେ ସବଳ ଥିବାରୁ କଳିଙ୍ଗରାଜା ଲଙ୍କାହାତୀ କିଣି ରଖୁଥିଲେ । ମଧ୍ୟ ଓ ଉତ୍ତରଭାରତର ରାଜାମାନେ କଳିଙ୍ଗରୁ ଲଙ୍କାହାତୀ କିଣି ନେଉଥିଲେ । କଳିଙ୍ଗ ବଣିକମାନେ ସେହି ହାତୀ ରଖି ବିନିମୟରେ କଳିଙ୍ଗଜାତ ବଣିଜମାନ ଲଙ୍କା ବଣିକମାନଙ୍କୁ ଦେଉଥିଲେ । ହାତୀ ସମୁଦ୍ର ଉପରେ ବୋହିନେବା ନିମନ୍ତେ 'ହାତୀ ବୋଇତ' ନାମରେ ବଡ଼ ବଡ଼ ଜାହାଜମାନ ତିଆରି ହେଉଥିଲା । ଖାରବେଳ ଯେଉଁ 'ହାତୀ ବୋଇତମାନ' ପାଣ୍ଡ୍ୟରାଜାଙ୍କଠାରୁ ଅଧିକାର କରିଥିଲେ, ତାହା ଅଦ୍ଭୁତ ଏବଂ ଆଶ୍ଚର୍ଯ୍ୟଜନକ ଥିଲା । ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦିରେ 'ହାତୀ ବୋଇତ' ଭଳି ବୃହତ୍‌ଜାହାଜମାନ ସାଗରବକ୍ଷରେ ଚଳାଇବାର ସାହସ ଅବଶ୍ୟ ବହୁକାଳବର୍ତ୍ତୀ ସାଗର ବାଣିଜ୍ୟର ଅପେକ୍ଷା କରେ । ସୁତରାଂ ଖ୍ରୀଷ୍ଟପୂର୍ବ ୭ମ ବା ୮ମ ଶତାବ୍ଦି ପୂର୍ବରୁ କଳିଙ୍ଗରେ ସମୁଦ୍ର ବାଣିଜ୍ୟ ଆରମ୍ଭ ହୋଇ-ଥିଲା; ଏବଂ ସ୍ଥଳ ବାଣିଜ୍ୟର ଆରମ୍ଭ ନିମନ୍ତେ ଏହାର ଆହୁରି ବହୁକାଳ ପୂର୍ବକୁ ଯିବାକୁ ହେବ ।

ଏହିପରି ବଣାଇ ଜଳ ଓ ସ୍ଥଳ ବାଣିଜ୍ୟରୁ ଅନୁମାନ ହୁଏ ଯେ ଉତ୍କଳ ବା କଳିଙ୍ଗରେ ବଣିଜ ପଦାର୍ଥ ଏପରି ପ୍ରଚୁର ଭାବରେ ଉତ୍ପନ୍ନ ହେଉଥିଲା ଯେ ତାହା ଦେଶବାସିଙ୍କ ଅଭାବ ପୂରଣ କରି ଦେଶବିଦେଶକୁ ରପ୍ତାନି କରାଯାଉଥିଲା । ପ୍ରଚୁର ହେବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ବାଣିଜ୍ୟ-ପ୍ରଧାନ ଦେଶର ବଣିଜ ସହିତ ପ୍ରତିଯୋଗିତାରେ ପାରିଉଠିବା ନିମନ୍ତେ ଜିନିଷମାନ ମଧ୍ୟ ଅତି ଉତ୍କୃଷ୍ଟ ହେଉଥିଲା । ଉତ୍କଳରେ ୮ ବ

ବଣିକ ଜାତି ହେଉଥିଲେ, ତାହାସବୁ ଠିକ୍‌କରି ବର୍ତ୍ତମାନ କହିହେବ ନାହିଁ ।
ଉତ୍କଳର ଲୁଗା ଓ ପାଟ, ହୀରା, ସୁନା, ଲୁହା ପ୍ରଭୃତି ଖଣିଜପଦାର୍ଥମାନଙ୍କର
ସ୍ମୃତି ଅଦ୍ୟାପି ରହିଅଛି । ଉତ୍କଳର ବସ୍ତ୍ର ବଡ଼ ପ୍ରସିଦ୍ଧ ଓ ଦେଶ ବିଦେଶରେ
ବିଶେଷ ଆଦରଣୀୟ ବସ୍ତୁ ଥିଲା । ତାମିଲ ଦେଶରେ କଳିଙ୍ଗ ବସ୍ତ୍ରର ଏପରି
ଆଦର ଥିଲା ଯେ ତାମିଲଭାଷାରେ ବସ୍ତ୍ରକୁ କଳିଙ୍ଗ ବୋଲି କହନ୍ତି ।
କଳିଙ୍ଗ ବସ୍ତ୍ରର ଶ୍ରେଷ୍ଠତା ଯୋଗୁଁ ଦୂରଦେଶର ରାଜାମାନେ ତାହା ବିଶେଷ
ଆଦର କରୁଥିଲେ; ଏବଂ କଳିଙ୍ଗ ରାଜାମାନେ ବନ୍ଧୁତାସୂତ୍ରେ କଳିଙ୍ଗ ବସ୍ତ୍ର-
ମାନ ବିଦେଶୀ ରାଜାମାନଙ୍କୁ ଉପହାର ସ୍ୱରୂପ ଦେଉଥିଲେ । ଥରେ ଅଯୋଧ୍ୟା
ରାଜାଙ୍କ ନିକଟକୁ କଳିଙ୍ଗ ରାଜା ଖଣ୍ଡିଏ ବସ୍ତ୍ର ଉପହାର ଦେଇଥିଲେ ।
ତାହା ଏପରି ସୂକ୍ଷ୍ମ ଥିଲା ଯେ ଜଣେ ପୁରୋହିତ ତାହା ପିନ୍ଧି ବାହାରିବାରୁ
ଉଲଗ୍ନ ବୋଲି ସେ ରାଜକକ୍ଷରୁ ବିତାଡ଼ିତ ହୋଇଥିଲେ । କଳିଙ୍ଗ ବା ଉତ୍କଳ
ଚିରକାଳ ସୂକ୍ଷ୍ମବସ୍ତ୍ରର ଶିଳ୍ପ ନିମନ୍ତେ ଇତିହାସରେ ପ୍ରସିଦ୍ଧ ହୋଇଆସୁଅଛି ।

ବସ୍ତ୍ର ଛଡ଼ା ହୀରା ବାଣିଜ୍ୟର ଅନ୍ୟତମ ସାମଗ୍ରୀ ଥିଲା । ସମ୍ବଲପୁର ହୀରା
ନିମନ୍ତେ ପ୍ରସିଦ୍ଧ ଥିଲା । ମହାନଦୀ ଶଯ୍ୟାରୁ ସମ୍ବଲପୁରର ଝୋରୁଆଜାତି
ହୀରା ସଂଗ୍ରହକରି ବ୍ୟବସାୟ କରୁଥିଲେ । ଝୋରୁଆମାନେ ହୀରା
କାଢ଼ିବାର ନିମନ୍ତେ ଦେଶ ବିଦେଶ ଯାଇ ବସତି କରି ରହିଥିବାର
ବର୍ତ୍ତମାନ ଦେଖାଯାଏ । ସମ୍ବଲପୁର ହୀରା କେବଳ ଭାରତବର୍ଷଖ୍ୟାତ ନ ଥିଲା,
ସୁଦୂର ରୋମ ସାମ୍ରାଜ୍ୟରେ ମଧ୍ୟ ଏହି ହୀରାର ବିଶେଷ ଆଦର ଥିଲା । ଖ୍ରୀଷ୍ଟ
ପୂର୍ବ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀରେ ସମ୍ବଲପୁର ହୀରା ବହୁମୂଲ୍ୟରେ ରୋମ
ସହରରେ ବିକ୍ରୀ ହେଉଥିଲା । ସମ୍ବଲପୁର ଭୂମିରୁ ହୀରା ଶେଷ ପଡ଼ିଛି, ମାତ୍ର
ଝୋରୁଆ ଜାତି ଅଦ୍ୟାପି ଦେଶବିଦେଶରେ ବସତି କରି ରହି ପୂର୍ବପୁରୁଷ-
ମାନଙ୍କର ବିପୁଳ ବାଣିଜ୍ୟଲକ୍ଷ୍ମୀର ସ୍ମୃତିରେ ଜୀବିତ ଅଛନ୍ତି ।

ବାଣିଜ୍ୟ ବିସ୍ତାର ଓ ଉପନିବେଶ—ବାଣିଜ୍ୟ ବିସ୍ତାର ସଙ୍ଗେ କାଳକ୍ରମେ
ବାଣିଜ୍ୟର ସୁବିଧା ନିମନ୍ତେ ବିଦେଶରେ ଉପନିବେଶ ସ୍ଥାପନ କରିବା

ଇତିହାସର ଯୁଗେ ଯୁଗେ ଦେଖାଯାଏ । ଉତ୍କଳ ଇତିହାସରେ ମଧ୍ୟ ବାଣିଜ୍ୟର ସୁବିଧା ନିମନ୍ତେ ସାଗରର ପରପାରରେ ଦୂର ବିଦେଶମାନଙ୍କରେ ଉପନିବେଶ ସ୍ଥାପନ କରାଯାଇଥିବାର ଦେଖା ଯାଇଛି । ସମଗ୍ର ଭାରତବର୍ଷ ମଧ୍ୟରେ ଉତ୍କଳୀୟମାନେ ସର୍ବପ୍ରଥମେ ଦୂର ବିଦେଶରେ ଉପନିବେଶ ସ୍ଥାପନ କରିଥିଲେ । ସମଗ୍ର ବଙ୍ଗ ଉପସାଗର, ଆରବ୍ୟସାଗର ଓ ଭାରତ ମହାସାଗର ଉତ୍କଳୀୟ ବାଣିଜ୍ୟ ପୋତଶୃଙ୍ଖଳନାଦର ବିଘୋଷିତ ହେଉଥିଲା । ଭାରତମହାସାଗର ମଧ୍ୟରେ ଯାବାଦ୍ୱୀପରେ ଉତ୍କଳୀୟମାନେ ସମଗ୍ର ଭାରତ-ବାସିଙ୍କ ମଧ୍ୟରେ ସର୍ବପ୍ରଥମେ ଆର୍ଯ୍ୟବସତି ସ୍ଥାପନ କରିଥିଲେ । ଉତ୍କଳୀୟ-ମାନଙ୍କର ଏହି ସାହସିକ କାର୍ଯ୍ୟ ସମଗ୍ର ଭାରତ ଇତିହାସରେ ସର୍ବାପେକ୍ଷା ଅଧିକ ଗୌରବାବହ କାର୍ଯ୍ୟ ବୋଲି କଥିତ ହୋଇଅଛି । ଖ୍ରୀଷ୍ଟପୂର୍ବ ୭୫ ଅବ୍ଦରେ କଳିଙ୍ଗ ବଣିକମାନେ ବଙ୍ଗଉପସାଗର ପାରହୋଇ ଭାରତମହାସାଗର ମଧ୍ୟରେ ନିର୍ଭୟରେ ପଶି ଯାବାଦ୍ୱୀପରେ ଆର୍ଯ୍ୟବସତି ସ୍ଥାପନ କଲେ । ସେଠାରେ ସେମାନେ ଗ୍ରାମ ନଗର ସ୍ଥାପନ କଲେ, ଏବଂ ମାତୃଭୂମି ସହିତ ବହୁ ଶତାବ୍ଦି ଧରି ସୁବିଧାରେ ବାଣିଜ୍ୟ ଚଳାଇଲେ । ବର୍ତ୍ତମାନ ଯୁଗରେ ଔପନିବେଶିକମାନେ ସ୍ଥାନୀୟ ଆଦିମ ଜାତିଙ୍କୁ ତଡ଼ି ଦେଇ ବା ସେମାନଙ୍କୁ ସମୂଳେ ବିନାଶକରି ଦେଶ ଅଧିକାର କରି ବସୁଅଛନ୍ତି । ମାତ୍ର ଖ୍ରୀଷ୍ଟଜନ୍ମର ଅଳ୍ପକାଳ ମଧ୍ୟରେ ଉତ୍କଳୀୟ ଔପନିବେଶିକମାନେ ଯାବା ଓ ଅନ୍ୟାନ୍ୟ ସ୍ଥାନରେ ବସତି କରି ଆପଣାର ଉଚ୍ଚ ସଭ୍ୟତାରେ ଆଦିମବାସିମାନଙ୍କୁ ସଭ୍ୟ କରି ଦେଉଥିଲେ । ଯାବାରେ ବସତି ପ୍ରାରମ୍ଭରୁ ଉତ୍କଳୀୟମାନେ ଗୋଟିଏ ନୂତନ ସାଲ ଚଳାଇଲେ । ସେ ସାଲ ଅଦ୍ୟାପି ଯାବାରେ ପ୍ରଚଳିତ । ଯାବାରେ ସେମାନେ ବହୁ ଦେବଦେବୀ ସ୍ଥାପନ ଓ ମନ୍ଦିର ନିର୍ମାଣ କଲେ । ସେଥିମଧ୍ୟରୁ କେତେକ ମନ୍ଦିରର ଅବଶେଷ ଅଦ୍ୟାପି ରହିଛି । ଯାବାର ଆଦିମ ମାଳୟଭାଷା ଅଦ୍ୟାପି ଚଳୁଛି, ମାତ୍ର ଧର୍ମ କର୍ମାନୁଷ୍ଠାନ, ଧର୍ମଗ୍ରନ୍ଥ ଏବଂ ଅନୁଶାସନମାନଙ୍କରେ ସଂସ୍କୃତଭାଷାର ପରିଚୟ ମିଳୁଛି । ଯାବାଦ୍ୱୀପର ଆର୍ଯ୍ୟ-

ମାନେ ଅଦ୍ୟାପି ଆପଣାକୁ 'କ୍ଳିଙ୍ଗ୍' ବା କଳିଙ୍ଗବାସୀ ବୋଲି ପରିଚୟ ଦିଅନ୍ତି । କଳିଙ୍ଗବାସୀଙ୍କ ବସତି ପରେ ଗୁଜରାଟ ପ୍ରଭୃତିରୁ ଆର୍ଯ୍ୟମାନେ ଯିବାର ମଧ୍ୟ ବସତି କରିଥିଲେ; ମାତ୍ର କଳିଙ୍ଗବାସିଙ୍କ ପ୍ରଭାବ ଓ ପ୍ରତିଷ୍ଠା ଏତେ ଅଧିକ ଥିଲା ଯେ ପରବର୍ତ୍ତୀ ଔପନିବେଶିକମାନେ ମଧ୍ୟ ଆପଣାକୁ କ୍ଳିଙ୍ଗ ବୋଲି ପରିଚୟଦେଲେ । ଚୀନ ପରିବ୍ରାଜକ ଫାହିଅନ ଖ୍ରୀଷ୍ଟ ୪ ର୍ଥଶତାବ୍ଦିରେ ଉତ୍କଳର ମୁଖ୍ୟ ବନ୍ଦର ତାମ୍ରଲିପ୍ତଠାରୁ ସମୁଦ୍ର ଯାହାଜରେ ଲଙ୍କା, ଲଙ୍କାରୁ ଯାବା, ଯାବାରୁ ବାଲିଦ୍ୱୀପ ପ୍ରଭୃତି ଦେଇ ଚୀନ ଫେରିଥିଲେ । ସେ ଲେଖିଛନ୍ତି, ସେସବୁ ସ୍ଥାନକୁ ସେ ଉତ୍କଳୀୟ ଯାହାଜରେ ଯାଇଥିଲେ, ଏବଂ ସେସବୁ ଯାହାଜରେ ବ୍ରାହ୍ମଣଧର୍ମାବଲମ୍ବୀ ନାବିକମାନେ ଥିଲେ । ସେ ସମଗ୍ର ଯାବାବାସିଙ୍କୁ ହିନ୍ଦୁ ଥିବାର ଦେଖିଥିଲେ ।

ଯାବା ନିକଟବର୍ତ୍ତୀ ବାଲିଦ୍ୱୀପରେ ମଧ୍ୟ ଉତ୍କଳୀୟମାନେ ବସତି ସ୍ଥାପନ କରିଥିଲେ । ବାଲିଦ୍ୱୀପରେ ସଂସ୍କୃତ ଗ୍ରନ୍ଥମାନ ମିଳୁଛି । ସ୍ୱର୍ଗୀୟ ବାଳ ଗଙ୍ଗାଧର ତିଳକ ବାଲିଦ୍ୱୀପରୁ ଏକ ଶ୍ରୀମଦ୍ ଭଗବଦ୍ ଗୀତା ପାଇ ତାହାର ଆଲୋଚନା କରିଥିଲେ । ବାଲିଦ୍ୱୀପରେ ବର୍ତ୍ତମାନ ବ୍ରାହ୍ମଣ, କ୍ଷତ୍ରିୟ ପ୍ରଭୃତି ଚାରିବର୍ଣ୍ଣ ବର୍ତ୍ତ଼ମାନ ଅଛନ୍ତି; ଏବଂ ସେମାନେ କ୍ଳିଙ୍ଗ ବା କଳିଙ୍ଗବାସୀ ବୋଲି ଅଦ୍ୟାପି ଆପଣାର ପରିଚୟ ଦିଅନ୍ତି । ଯାବା ଓ ବାଲିଦ୍ୱୀପର ବସତି କଥା ଅଦ୍ୟାପି ଉତ୍କଳର ଘରେ ଘରେ ପରିଚିତ ।

ଯାବା ଓ ବାଲିଦ୍ୱୀପ ବ୍ୟତୀତ, ସୁମାତ୍ରା, ସିଙ୍ଗାପୁର, ମଲକସ, ପେଗୁ, କାମ୍ବୋଡିଆରେ ଉତ୍କଳୀୟମାନେ ବାଣିଜ୍ୟ ଉଦ୍ଦେଶ୍ୟରେ ବସତି କରିଥିବାର ପ୍ରମାଣ ମିଳେ । ସେହି ସ୍ଥାନମାନଙ୍କରେ ବସତି କରି ବ୍ରାହ୍ମଣ ଧର୍ମ ଓ ସଭ୍ୟତାରେ ସେ ଦେଶବାସିଙ୍କୁ ଉତ୍କଳୀୟ ବଣିକମାନେ ଦୀକ୍ଷିତ କରି ନେଇଥିଲେ । 'ସ୍ୱର୍ଣ୍ଣଭୂମି' ବା ବ୍ରହ୍ମଦେଶ ସହ କଳିଙ୍ଗର ବାଣିଜ୍ୟ ଅଶୋକଙ୍କ ପୂର୍ବରୁ ମଧ୍ୟ ଚାଲୁଥିଲା । ଅଶୋକଙ୍କ ଶାସନ କାଳରେ କଳିଙ୍ଗର ବୌଦ୍ଧ ପରିବ୍ରାଜକମାନେ ସ୍ଥାନର ପାରଦୋଇ ବ୍ରହ୍ମଦେଶରେ ବୌଦ୍ଧଧର୍ମ

ପ୍ରଭୃତ ଜଣଥିବାର ବ୍ରହ୍ମଦେଶର ଇତିହାସରୁ ଜଣାଯାଏ । ପରେ ପୁଣି ଉତ୍କଳୀୟମାନେ ବ୍ରହ୍ମଦେଶରେ ଉପନିବେଶ ସ୍ଥାପନ କଲେ । ବ୍ରହ୍ମଦେଶ ମଧ୍ୟରେ ପ୍ରୋମ ନିକଟବର୍ତ୍ତୀ 'ଥାଗ୍ରକେତ' ଉତ୍କଳୀୟମାନଙ୍କର ଏକ ପ୍ରଧାନ ବସତି ଥିଲା । କାଳକ୍ରମେ ଉତ୍କଳୀୟ ବଣିକମାନଙ୍କର ପ୍ରଭାବ ଓ ପ୍ରତିପତ୍ତି ଏତେ ବଢ଼ିଯାଇଥିଲା ଯେ ସେମାନେ ବ୍ରହ୍ମଦେଶର ପ୍ରୋମରାଜ୍ୟର ସିଂହାସନ ଅଧିକାର କରି ବହୁଦିନ ରାଜତ୍ୱ କରିଥିଲେ । ପରେ ପୁଣି ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ ଶେଷରେ ଉତ୍କଳୀୟ ବଣିକମାନେ ବଙ୍ଗୋପସାଗର ପାରହୋଇ ମାର୍ତ୍ତାବାନ ଉପକୂଳରେ ବହୁ ବସତି ସ୍ଥାପନ କରିଥିଲେ । ସେହି ବସତି-ମାନଙ୍କ ମଧ୍ୟରେ ଥାଟନ ବା "ସୁଧର୍ମ ନଗର" ପ୍ରସିଦ୍ଧ ଥିଲା । ଏଥିରୁ ବୋଧହୁଏ ଯେ ସ୍ଥାନୀୟ ଅଧିବାସୀଙ୍କ ଧର୍ମ ଅପେକ୍ଷା ଉତ୍କଳୀୟ ଧର୍ମ ଅଧିକ ଉନ୍ନତ ଓ ପବିତ୍ର ବୋଲି ସେଠାରେ ବିବେଚିତ ହୋଇଥିଲା । ସେଥିରେ ବର୍ତ୍ତମାନ ଅବିଷ୍କୃତ ପୁରାତନ ମୁଦ୍ରା ଓ ମୋହରମାନଙ୍କରେ ହିନ୍ଦୁ ସଙ୍କେତମାନ ପ୍ରମାଣ ପାଉଛୁ । ମଲକସ ଓ ସିଙ୍ଗାପୁରର ଭାରତବାସୀ ଯାବା ଓ ବାଲିଦ୍ୱୀପବାସୀଙ୍କ ପରି ଅଦ୍ୟାପି 'କ୍ଲିଙ୍ଗ' ବା କଳିଙ୍ଗବାସୀ ବୋଲି ଆପଣାର ପରିଚୟ ଦିଅନ୍ତି । ଏହା ବାଦ୍ ସୁଦୂର ଶ୍ୟାମ, କୋଚିନ ପ୍ରଭୃତିରେ କଳିଙ୍ଗ ବସତି ସ୍ଥାପିତ ହୋଇଥିଲା । କଳିଙ୍ଗ ବଣିକମାନେ ପ୍ରଶାନ୍ତ ମହାସାଗର ଭେଦକରି ଚୀନ ଓ ଜାପାନ ସହ ବାଣିଜ୍ୟ ମଧ୍ୟ କରୁଥିଲେ । ଫାହିଅନ ଯେ କଳିଙ୍ଗ ପୋତରେ ଚୀନ ଫେରି ଯାଇଥିଲେ, ତହିଁରୁ କଳିଙ୍ଗ ବାଣିଜ୍ୟର ବିସ୍ତୃତି ପ୍ରମାଣିତ ହୁଏ ।

କେବଳ ପ୍ରାଚ୍ୟ ସମୁଦ୍ରରେ ନୁହେଁ, ପଶ୍ଚିମ ସାଗର ବକ୍ଷରେ ମଧ୍ୟ ଉତ୍କଳୀୟ ନୌବାଣିଜ୍ୟ ଚାଲୁଥିବାର ପ୍ରମାଣ ମିଳେ । ସ୍ୱର୍ଗୀୟ ଭଣ୍ଡାର-କର ଆପଣାର ଦାକ୍ଷିଣାତ୍ୟର ଇତିହାସରେ କହନ୍ତି ଯେ କଳିଙ୍ଗବାସୀ ଆରବ୍ୟ ସାଗରରେ ବାଣିଜ୍ୟରେ ଏକାଧିପତ୍ୟ ଲାଭ କରିଥିଲେ । ଉତ୍କଳୀୟ ବଣିକମାନେ ଆରବ୍ୟସାଗର ପାର ହୋଇ ଆଫ୍ରିକା ମହାଦେଶର

ପୂର୍ବ ଉପକୂଳବର୍ତ୍ତୀ ରାଜ୍ୟମାନଙ୍କରେ ମାଡାଗାସ୍କର ଦ୍ୱୀପରେ ମଧ୍ୟ ବାଣିଜ୍ୟ ଚଳାଉ ଥିଲେ । ଏହି ସୁବିଶାଳ ବାଣିଜ୍ୟ କ୍ଷେତ୍ରରେ ବାଣିଜ୍ୟର ପ୍ରତିପତ୍ତି ରକ୍ଷା ନିମନ୍ତେ ଉତ୍କଳ ମଧ୍ୟରେ କେତେ ଯେ ବଣିକ ପଦାର୍ଥ ପ୍ରସ୍ତୁତ ହେଉଥିଲା ଏବଂ ସେହି ବାଣିଜ୍ୟ ପ୍ରଭାବରେ ଉତ୍କଳ ଯେ କେତେ ସମୃଦ୍ଧିଶାଳୀ ଥିଲା, ସହଜରେ ଅନୁମାନ କରାଯାଇପାରେ । ପୁଣି ଏହି ବାଣିଜ୍ୟ ରକ୍ଷା ନିମନ୍ତେ ବିଶାଳ ନୌସେନା ମଧ୍ୟ ଥିଲା । ଉତ୍କଳୀୟ ରଣତରୀ ଭାରତମହାସାଗର ମଧ୍ୟରେ ସ୍ୱଦେଶ ବାଣିଜ୍ୟ ତରୀର ରକ୍ଷା ନିମନ୍ତେ ନିଯୁକ୍ତ ଥିଲା ।

ବନ୍ଦର—ବାଣିଜ୍ୟର ଏପରି ବିସ୍ତାର ସ୍ଥଳେ ଉତ୍କଳ ଉପକୂଳରେ ବହୁ ବନ୍ଦର ଯେ ଥିଲା, ସନ୍ଦେହ ନାହିଁ । ସେହି ବନ୍ଦରମାନ କିଏ, ଏବଂ କେଉଁ ସ୍ଥାନରେ ଥିଲା, ବର୍ତ୍ତମାନ ସମ୍ପୂର୍ଣ୍ଣ ଜଣାପଡେ ନାହିଁ । ଗ୍ରୀକ ଲେଖକ ଟେଲେମୀଙ୍କ ଭୂଗୋଳରୁ ଜଣାଯାଏ 'ମୌସୋ-ଲଅ' (ମସଲି ପଟ୍ଟମ) କୌନାଗର (କୋଣାର୍କ ନଗର) କଳିଙ୍ଗର ପ୍ରଧାନ ବନ୍ଦର ଥିଲା । ବ୍ରହ୍ମଦେଶର ଦୁଇଟି ବଣିକଭ୍ରାତ କଳିଙ୍ଗ ବନ୍ଦର ଅଡ଼ିକଟାରେ (Adzeitta) ଜାହାଜରୁ ଓହ୍ଲାଇ ଥିଲେ । ସେହି ଅଡିକଟା ବନ୍ଦର କିଏ ଏବଂ କେଉଁଠାରେ ଥିଲା, ଜାଣିବାର ଉପାୟ ନାହିଁ । ଏହା-ବାଦ୍, କଳିଙ୍ଗପତ୍ତନ, ଚିଲିକା, ପୁରୀ, ଚନ୍ଦ୍ରୋପୂଲା ବା ଗୁରବ ବନ୍ଦର ହରିଶପୁର, ସୁବର୍ଣ୍ଣରେଖା, ହିଜଳୀ ଓ ତାମ୍ରଲିପ୍ତ ଉତ୍କଳ ଉପକୂଳର ପ୍ରସିଦ୍ଧ ବନ୍ଦର ଥିବାର ଜଣାଯାଏ ।



# ସପ୍ତମ ଅଧ୍ୟାୟ

## ଧର୍ମ

ଧର୍ମପରିବର୍ତ୍ତନ—ପୂର୍ବେ କୁହାଯାଇଛି (୧୨ ପୃଷ୍ଠା) ଭାରତରେ ଯେତେ ନବ ନବ ଧର୍ମର ଆବିର୍ଭାବ ହୋଇଛି, ସେ ସମସ୍ତ ଉତ୍କଳରେ ନିଜ ନିଜ କ୍ରିୟା ଦେଖାଇଯାଇଛି । ବରଂ, କୌଣସି ଧର୍ମର ସତ୍ତା ଉତ୍କଳରୁ ଏକାବେଳେକେ ଲୋପ ପାଇନାହିଁ । ଭାରତରୁ ଧର୍ମମତମାନ ଲୁପ୍ତ ହେଲେ ମଧ୍ୟ, ଉତ୍କଳ-ବକ୍ଷରେ ସେମାନଙ୍କର ସ୍ମୃତି ଅଦ୍ୟାପି ରହିଅଛି । ଖ୍ରୀଷ୍ଟାବ୍ଦରେ ଭିନ୍ନ ଭିନ୍ନ ଧର୍ମ ବିଭିନ୍ନ ଯୁଗରେ ଉତ୍କଳରେ ପ୍ରବଳ ହୋଇ ଉଠିଥିଲା । ଉତ୍କଳରେ ଧର୍ମମାନଙ୍କର ଏହିପରି ଉତ୍ଥାନ ପତନ ଦେଖି କେହି କେହି ଇଂରେଜ ଲେଖକ ଉତ୍କଳକୁ ଧର୍ମର ମହାବିପ୍ଳବ ସ୍ଥଳ ବୋଲି ଅନୁମାନ କରନ୍ତି, ଏବଂ ଉତ୍କଳ ଇତିହାସକୁ ଧର୍ମ ବିପ୍ଳବର ଇତିହାସ ବୋଲି ଧରନ୍ତି । ମାତ୍ର ଉତ୍କଳରେ ଧର୍ମର ସେପରି ମହାବିପ୍ଳବ ଘଟି ନାହିଁ । ଭିନ୍ନ ଭିନ୍ନ ଧର୍ମମତ ଭିନ୍ନ ଭିନ୍ନ ଯୁଗରେ ପ୍ରବଳ ହୋଇଛି ; ମାତ୍ର ପ୍ରବଳର ଦୁର୍ବଳ ପ୍ରତି ଅତ୍ୟାଚାର ବା ବିଦ୍ବେଷ ଲେଶ ଦେଖାଯାଇ ନାହିଁ । ପରସ୍ପର ମଧ୍ୟରେ ପ୍ରେମ ଉଦାରତା ଓ ସହିଷ୍ଣୁତା ଉତ୍କଳ ତଥା ଭାରତର ଧର୍ମଇତିହାସର ମୂଳ ମନ୍ତ୍ର ଥିଲା ।

ବ୍ରାହ୍ମଣ ଧର୍ମ— ଉତ୍କଳରେ ଆର୍ଯ୍ୟବସତି ବିସ୍ତାର ସଙ୍ଗେ ବ୍ରାହ୍ମଣ ବ ବୈଦିକ ଧର୍ମ ଉତ୍କଳରେ ଚଳିଲା । ବ୍ରାହ୍ମଣଧର୍ମର ପ୍ରଭାବ ଓ ପ୍ରତିଷ୍ଠା ବଳରେ ଉତ୍କଳର ଆଦିମ ବାସିମାନେ ସେହି ଧର୍ମ ଓ ସଭ୍ୟତାରେ ଦୀକ୍ଷିତ ହୋଇ-ଥିଲେ । ଉତ୍କଳ ମଧ୍ୟରେ ନାନା ତୀର୍ଥ ଓ ଦେବଦେବୀ ସ୍ଥାପିତ ହେଲେ । କଳିଙ୍ଗ ପ୍ରଥମେ ପତିତ ଦେଶ ବୋଲି ଧରାଯାଇଥିଲା, ମାତ୍ର ବ୍ରାହ୍ମଣଧର୍ମର

ପ୍ରତିଷ୍ଠା ହେବା ପରେ ଏହା ପବିତ୍ର ଦେଶରେ ପରିଣତ ହେଲା । ଅଦ୍ୟାପି ସମଗ୍ର ଭାରତ ମଧ୍ୟରେ ଉତ୍କଳ ପୁଣ୍ୟଭୂମି ବୋଲି ପରିଚିତ ହେଉଅଛି ।

ଜୈନ ଧର୍ମ—ଉତ୍କଳରେ ନନ୍ଦରାଜତ୍ୱର କିଛିକାଳ ପୂର୍ବପର୍ଯ୍ୟନ୍ତ ପ୍ରାୟ ଖ୍ରୀଷ୍ଟପୂର୍ବ ୫ମ ବା ୬ଷ୍ଠ ଶତାବ୍ଦି ପର୍ଯ୍ୟନ୍ତ ବ୍ରାହ୍ମଣଧର୍ମ ଅବାଧରେ ଉତ୍କଳରେ ଚାଲୁଥିଲା । ନନ୍ଦରାଜତ୍ୱର କିଛି କାଳ ପୂର୍ବରୁ ଜୈନଧର୍ମ ପ୍ରଥମେ ଉତ୍କଳ-ଳରେ ପ୍ରବେଶ କଲା । ନନ୍ଦମାନେ ବୈଦିକ ଧର୍ମାବଲମ୍ବୀଥିଲେ ସୁଦ୍ଧା ଜୈନଧର୍ମ ଉତ୍କଳରେ ରହିଥିଲା । ନନ୍ଦବର୍ଦ୍ଧନ ପ୍ରଥମ ଜିନ ଋଷଭଦେବଙ୍କ ପ୍ରତିମୂର୍ତ୍ତି କଳିଙ୍ଗ ରାଜଧାନୀରୁ ନିଜ ରାଜଧାନୀ ରାଜଗୃହକୁ ନେଇ ଯାଇଥିଲେ; ମାତ୍ର ଏହାଦ୍ୱାରା ଜୈନଧର୍ମ ଉତ୍କଳରୁ ଏକାବେଳକେ ଲୋପ ପାଇ ନ ଥିଲା, କି ଜୈନ ଧର୍ମ ପ୍ରତି ନନ୍ଦମାନଙ୍କର ବିଦ୍ୱେଷ ନ ଥିଲା ।

ପରେଶନାଥ—ଉତ୍କଳରେ ଯେଉଁ ଜୈନଧର୍ମ ପ୍ରଚଳିତ ଥିଲା, ତାହା ମହାବୀରଙ୍କ ପ୍ରତିଷ୍ଠିତ ଜୈନଧର୍ମ ନୁହେଁ । ମହାବୀରଙ୍କର ପ୍ରାୟ ୨୫୦ ବର୍ଷ ପୂର୍ବରୁ ପାର୍ଶ୍ୱନାଥ ବା ପରେଶନାଥ ନାମରେ ଜଣେ ମହାପୁରୁଷ ଜୈନଧର୍ମ ସୃଷ୍ଟି କରି ପ୍ରଚାର କରିଥିଲେ । ଭବଦେବ ସୂରୀଙ୍କର "ପାର୍ଶ୍ୱନାଥ ଚରିତ" ନାମକ ଏକ ଗ୍ରନ୍ଥ ଅଛି । ତହିଁରେ ଲେଖାଅଛି ପାର୍ଶ୍ୱନାଥ ବାରାଣସୀର ଏକ ରାଜାଙ୍କର ପୁତ୍ର ଥିଲେ । ଯୌବନରେ ପାର୍ଶ୍ୱ ଅସାଧାରଣ ବୀର ଥିଲେ । ଏହି ସମୟରେ କୁଶସ୍ଥଳୀ ( କନୌଜ ) ରାଜାଙ୍କର ପ୍ରଭାବତୀ ନାମରେ ଗୋଟିଏ ପରମସୁନ୍ଦରୀ କନ୍ୟା ଥିଲା । ପରେଶନାଥ ସେ କନ୍ୟାଙ୍କ ସୌନ୍ଦର୍ଯ୍ୟରେ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ଏଥି ମଧ୍ୟରେ କଳିଙ୍ଗ ରାଜା ପ୍ରଭାବତୀଙ୍କ ଲୋଭରେ କନୌଜ ଆକ୍ରମଣ କଲେ । ପାର୍ଶ୍ୱ କନୌଜ ଉଦ୍ଧାର ନିମନ୍ତେ କଳିଙ୍ଗ ରାଜାଙ୍କ ସହିତ ଯୁଦ୍ଧ କଲେ । କନୌଜର ରକ୍ଷା ହେଲା; ଏବଂ ରାଜା ସନ୍ତୁଷ୍ଟ ହୋଇ ପାର୍ଶ୍ୱନାଥଙ୍କ ହସ୍ତରେ ପ୍ରଭାବତୀଙ୍କୁ ସମର୍ପଣ କଲେ । କେତେ କାଳ ସଂସାର କଲା ପରେ ଦିନେ ପାର୍ଶ୍ୱ ଶିକାର

ଉଦ୍ଦେଶ୍ୟରେ ଅରଣ୍ୟ ମଧ୍ୟରେ ପଶିଲେ । ଭୂଲ ଭୂଖ କ୍ଳାନ୍ତ ହୋଇ ଗୋଟିଏ ଅଶୋକ ବୃକ୍ଷ ମୂଳରେ ବିଶ୍ରାମ କଲେ । ସେଠାରେ ଯୋଗମଗ୍ନ ତପସ୍ୱିମାନଙ୍କୁ ଦେଖି ସଂସାର ଓ ରାଜକାର୍ଯ୍ୟ ପ୍ରତି ପାର୍ଶ୍ୱଙ୍କର ବିତୃଷ୍ଣା ଜନ୍ମିଲା । ସେହି ଦିନଠାରୁ ପାର୍ଶ୍ୱ ପବିତ୍ର ସନ୍ନ୍ୟାସଧର୍ମ ଗ୍ରହଣ କଲେ । କେତେ କାଳ କଠୋର ତପସ୍ୟା ବଳରେ ତାହାଙ୍କର ଜ୍ଞାନୋଦୟ ହେଲା, ଏବଂ ସେ ଜୈନଧର୍ମ ପ୍ରଚାର କଲେ । ପୌଣ୍ଡ୍ର, ତାମ୍ରଲିପ୍ତ ଏବଂ ନାଗପୁରୀ ପ୍ରଭୃତି ଭୂଭି ଧର୍ମ ପ୍ରଚାର କରି ଶେଷରେ ସୋମେଦ୍ର ଶିଖର (ବର୍ତ୍ତମାନ ଗୟାଜିଲ୍ଲାର ପରେଶନାଥ ପର୍ବତ)ରେ ତାହାଙ୍କର ଶେଷ ପ୍ରୟାଣ ହେଲା । ପରେଶନାଥ ପର୍ବତ ଅଦ୍ୟାପି ପ୍ରଧାନ ଜୈନତୀର୍ଥ ହୋଇ ରହିଛି । ଖ୍ରୀଷ୍ଟ ୫ମ ଶତାବ୍ଦୀର ଗ୍ରନ୍ଥ "କଳ୍ପସୂତ୍ର"ରେ ପରେଶନାଥଙ୍କ ଜୀବନୀ ଲେଖାଅଛି । ସେଥିରେ କଳୁ ସେ କଳିଙ୍ଗ ରାଜାଙ୍କୁ ପରାସ୍ତ କରି କନୌଜ ରକ୍ଷା କରିଥିବାର ଲେଖାନାହିଁ । ପରେଶ ନାଥଙ୍କ ପ୍ରଚାର ବଳରେ 'ତାମ୍ରଲିପ୍ତିକା' ଏବଂ 'ପୌଣ୍ଡ୍ରବର୍ଦ୍ଧନୀୟା' ନାମରେ ଦୁଇଟି ଜୈନ ସମ୍ପ୍ରଦାୟ ଅନ୍ୟାନ୍ୟ 'ସ୍ଥବିର' ବା ଜୈନ ସମ୍ପ୍ରଦାୟ-ମାନଙ୍କ ମଧ୍ୟରେ ପରିଗଣିତ । ଉଦୟଗିରିର ରାଣୀହଂସପୁର ଗୁମ୍ଫା ଦେହରେ ସମ୍ପୂର୍ଣ୍ଣ, ଏବଂ ଗଣେଶ ଗୁମ୍ଫାରେ କିଛି କିଛି, ପାର୍ଶ୍ୱଙ୍କ ଜୀବନ ଚରିତ ଖୋଦିତ ହୋଇ ରହିଛି । ଖଣ୍ଡଗିରିରେ ପରେଶନାଥଙ୍କ ପ୍ରତିମୂର୍ତ୍ତି ଗୋଟିଏ ମନ୍ଦିର ମଧ୍ୟରେ ପୂଜା ପାଉଛନ୍ତି । ପରେଶନାଥଙ୍କ ଶିଷ୍ୟମାନେ ଉତ୍କଳରେ ଜୈନଧର୍ମ ପ୍ରଚାର କରି ରାଜଧାନୀ ନିକଟରେ ଖଣ୍ଡଗିରିରେ ଜୈନପୀଠ ସ୍ଥାପନ କରିଥିଲେ । ଅଦ୍ୟାପି ସେ ପୀଠ ରହିଛି; ଏବଂ ମାଘ ସପ୍ତମୀ ଉପଲକ୍ଷରେ ଖଣ୍ଡଗିରିରେ ମେଳା ହୁଏ । ଧର୍ମନିର୍ବିଶେଷରେ ସ୍ଥାନୀୟ ବାସିମାନେ ଉକ୍ତ ମେଳା ଓ ଉତ୍ସବରେ ଯୋଗ ଦିଅନ୍ତି ।

ବୌଦ୍ଧଧର୍ମ—ଅଶୋକଙ୍କର କଳିଙ୍ଗ ଅଧିକାର ପର୍ଯ୍ୟନ୍ତ ବୌଦ୍ଧଧର୍ମ ଉତ୍କଳ ବା କଳିଙ୍ଗରେ ପ୍ରବେଶ କରିନଥିଲା । ବୁଦ୍ଧଦେବଙ୍କ ବହୁକାଳ ପୂର୍ବରୁ ଖ୍ରୀଷ୍ଟପୂର୍ବ

୬ଷ୍ଠ ଶତାବ୍ଦୀକୁ ବୌଦ୍ଧଧର୍ମ ସୃଷ୍ଟି ହୋଇଥିଲେ ସୁଦ୍ଧା ଅଶୋକଙ୍କ ପୂର୍ବରୁ ତାହା କେବଳ ବୁଦ୍ଧଦେବଙ୍କ ଜନ୍ମସ୍ଥାନ କପିଳବାସ୍ତୁ ଓ ତାହା ନିକଟବର୍ତ୍ତୀ ଅଞ୍ଚଳରେ ଆବଦ୍ଧ ରହିଥିଲା । କଳିଙ୍ଗ ଯୁଦ୍ଧ ପରେ ଅଶୋକ ବୌଦ୍ଧଧର୍ମ ଗ୍ରହଣ କଲେ, ଏବଂ ଆପଣାର ଅଲୌକିକ ପ୍ରତିଭା ଉଦାରତା ଏବଂ ଅସାଧାରଣ କ୍ଷମତା ବଳରେ ସେ ବୌଦ୍ଧଧର୍ମକୁ ପୃଥିବୀବ୍ୟାପୀ ଧର୍ମ କରି ଉଠାଇ ଥିଲେ । କଳିଙ୍ଗରେ ବୌଦ୍ଧଧର୍ମ ପ୍ରଥମେ ଅଶୋକଙ୍କ ପ୍ରଭାବରେ ପଶିଲା । ରାଜଧାନୀ ତୋଷାଳୀର ପାହାଡ଼ ଧଉଳି ଗିରିରେ ଏବଂ ଦକ୍ଷିଣ କଳିଙ୍ଗର ରାଜଧାନୀ ଯଉଗଡ଼ରେ ଅଶୋକଙ୍କର ଏକାଦଶ ଆଜ୍ଞା ଖୋଳାହେଲା । ବୌଦ୍ଧଧର୍ମ କଳିଙ୍ଗର ରାଜଧର୍ମ ରୂପେ ଗୃହୀତ ହେଲା । ଲୋକଶିକ୍ଷା, ପ୍ରଜାତନ୍ତ୍ରଗଠନ ଓ ଧର୍ମପାଳନ ନିମନ୍ତେ ବୌଦ୍ଧଧର୍ମର ସକଳ ମହନୀୟ ତତ୍ତ୍ୱମାନ ଅଶୋକ ଅନୁଶାସନମାନଙ୍କରେ ପ୍ରଜାମାନଙ୍କ ମଧ୍ୟରେ ପ୍ରଚାର କଲେ । କଳିଙ୍ଗର ଯେଉଁ ରାଜା ଓ ପ୍ରଜାମାନେ ଅଶୋକଙ୍କର ଶାସନାଧୀନ ହୋଇ ନ ଥିଲେ, ସେମାନଙ୍କ ମଧ୍ୟରେ ବୌଦ୍ଧଧର୍ମ ପ୍ରଚାର ନିମନ୍ତେ ଅନୁଶାସନମାନ ଖୋଳା ହୋଇଥିଲା । ଖଣ୍ଡଗିରି ଓ ଉଦୟଗିରିର ଜୈନଗୁମ୍ଫା ଓ ଜୈନ ସନ୍ନ୍ୟାସିମାନଙ୍କୁ ଦେଖି ବୌଦ୍ଧମାନେ କଟକଜିଲ୍ଲାର ଅସିଆ ପାହାଡ଼ ଏବଂ ବାଲେଶ୍ୱର ଜିଲ୍ଲାର କୁପାରି ଗିରିରେ ଗୁମ୍ଫାମାନ ଖୋଳାଇ ବୌଦ୍ଧ ସନ୍ନ୍ୟାସିମାନଙ୍କୁ ଆଶ୍ରୟ ଦେଲେ ।

ବୌଦ୍ଧଧର୍ମ ଅଶୋକଙ୍କ ଆଶ୍ରୟରେ ଏତେ ପ୍ରବଳ ହୋଇ ପୃଥିବୀବ୍ୟାପୀ ହୋଇ ଥିଲେ ସୁଦ୍ଧା, ଅନ୍ୟାନ୍ୟ ଧର୍ମ ପ୍ରତି କୌଣସି ଅନାଦର ବା ବିଦ୍ୱେଷ ପୋଷି ନ ଥିଲା । ଅଶୋକ ଆପଣାର ଅନୁଶାସନରେ ଅନ୍ୟ ଧର୍ମ ପ୍ରତି ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ଦେଖାଇଅଛନ୍ତି, ଏବଂ ଉତ୍କଳର ଶାସନକର୍ତ୍ତାମାନଙ୍କୁ ସେହିପରି ଉଦାରତା ଓ ସମ୍ମାନ ଦେଖାଇବା ନିମନ୍ତେ ଆଜ୍ଞା ପ୍ରଚାର କରିଥିଲେ । ଅଶୋକଙ୍କ ପରେ ବୌଦ୍ଧ ଧର୍ମ କ୍ରମେ ଉତ୍କଳରୁ ହ୍ରାସ ପାଇଲା; ଏବଂ ବର୍ତ୍ତମାନ କେବଳ ଅସିଆ

ପାହାଡ଼ ଓ ଖୁପାଗ୍ର ଗିରି ଛଡ଼ା ଓଡ଼ିଶାରେ ଅନ୍ୟତ୍ର ବୌଦ୍ଧ ଧର୍ମର ଅବଶେଷ ନାହିଁ ।

ଜୈନଧର୍ମର ବିସ୍ତାର—ଅଶୋକଙ୍କ ପରେ ମୌର୍ଯ୍ୟ ରାଜତ୍ୱର ପ୍ରଭାବ କମିଯାଇ ଶେଷରେ ଲୋପ ପାଇଲା । ସଙ୍ଗେ ସଙ୍ଗେ ବୌଦ୍ଧ ଧର୍ମର ପ୍ରଭାବ କମିଗଲା । ଏଥି ମଧ୍ୟରେ ଚେଦିବଂଶର ଖାରବେଳ ଜୈନ-ସମ୍ରାଟ ଥିବାରୁ ଜୈନଧର୍ମ ରାଜ୍ୟଧର୍ମ ରୂପେ ଗୃହୀତ ହେଲା । ଖାରବେଳ ମଗଧ ରାଜଧାନୀ ରାଜଗୃହରୁ ଜୈନମୂର୍ତ୍ତିମାନ ନେଇ ଆସି ନିଜ ରାଜଧାନୀ ନିକଟବର୍ତ୍ତୀ ଖଣ୍ଡଗିରିରେ ପୁଣି ସ୍ଥାପନ କଲେ । ଜୈନଧର୍ମ ପ୍ରସାର ବିଶେଷ ବଢ଼ିଲା । ଜୈନପୀଠ ଖଣ୍ଡଗିରିରେ ବହୁସଂଖ୍ୟାରେ ଜୈନ ସନ୍ୟାସୀଙ୍କୁ ଆଶ୍ରୟ ଦେବା ନିମନ୍ତେ ବହୁ ଗୁମ୍ଫା ଖୋଳାହେଲା । ନିଜେ ଖାରବେଳ ମଧ୍ୟ ଶେଷ ଜୀବନରେ ସନ୍ୟାସୀ ହୋଇ ଉଦୟ ଗିରିରେ ବାସ କରୁଥିଲେ ।

ବୌଦ୍ଧ ଓ ଜୈନଧର୍ମର ଅବସାନ—ଚେଦିବଂଶର ଶେଷ ସମୟରୁ ଜୈନଧର୍ମ ଆଉ ସେପରି ପ୍ରବଳ ରହିଲା ନାହିଁ । ଚେଦିବଂଶର ଶେଷ ରାଜା ସୁରଥ ନିଜେ ବ୍ରାହ୍ମଣ ଧର୍ମାବଲମ୍ବୀ ଥିଲେ, ଏବଂ ଶେଷରେ ଶାକ୍ତ ହୋଇଥିଲେ । ଚେଦିବଂଶ ପରେ ଉତ୍କଳ ଅନ୍ଧ୍ରମାନଙ୍କ ଅଧୀନରେ ଆସିଲା ଅନ୍ଧ୍ରମାନେ ବୌଦ୍ଧ ଥିଲେ । ତଥାପି ବୌଦ୍ଧ ଧର୍ମ ବା ଜୈନଧର୍ମ ଏହା ପରେ ଉତ୍କଳରେ ଆଉ ରାଜ୍ୟଧର୍ମ ହୋଇପାରି ନ ଥିଲା । ମାତ୍ର ସେପରି ପ୍ରବଳ ହୋଇ ନ ଥିଲେ ମଧ୍ୟ ଉକ୍ତ ଧର୍ମଦ୍ୱୟ ଉତ୍କଳରୁ ହଠାତ୍ ଲୋପ ପାଇ ନଥିଲା । ବରଂ ତିବ୍ବତ ଦେଶୀୟ ପ୍ରାଚୀନ ଇତିହାସରେ ଲେଖାଅଛି ଯେ ପ୍ରାୟ ୨୦୦ ଖ୍ରୀଷ୍ଟାବ୍ଦରେ ସେ କାଳର ପ୍ରଧାନ ବୌଦ୍ଧ ପୁରୋହିତ ନାଗାର୍ଜ୍ଜୁନ ଉତ୍କଳ ରାଜାଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରିଥିଲେ । ଏକ ହଜାର ଉତ୍କଳବାସୀ ମଧ୍ୟ ବୌଦ୍ଧ ହୋଇଥିଲେ । ଦିଗ୍‌ନାଗାଚାର୍ଯ୍ୟ ନାମକ ଜଣେ ବୌଦ୍ଧ ଦାର୍ଶନିକ ପ୍ରାୟ ୫୦୦ ଖ୍ରୀଷ୍ଟାବ୍ଦରେ ଉତ୍କଳ ରାଜାଙ୍କ ଆଶ୍ରୟରେ

ବାସ କରୁଥିଲେ, ଏବଂ ତାହାଙ୍କର ପ୍ରଧାନ ନ୍ୟାୟ ଶାସ୍ତ୍ର "ପ୍ରମାଣ ସମୁଚ୍ଚୟ" ପ୍ରଣୟନ କରିଥିଲେ । ଏହାର ବହୁକାଳ ପରେ ଖ୍ରୀଷ୍ଟ ୭ମ ଶତାବ୍ଦିରେ ଚୀନ ପରିବ୍ରାଜକ ହୁଏନସାଂ ଉତ୍କଳ ଆସିଥିଲେ ଏବଂ ସେତେବେଳେ ବୌଦ୍ଧ ଓ ବ୍ରାହ୍ମଣ ଧର୍ମ ଉଭୟେ ସାମ୍ୟ ଓ ମୈତ୍ରୀଭାବରେ ଉତ୍କଳରେ ପ୍ରଚଳିତ ଥିବାର ସେ ଦେଖିଥିଲେ । ଖ୍ରୀଷ୍ଟ ୮ମ ଶତାବ୍ଦିରେ ଉତ୍କଳ ରାଜା ଚୀନ ସମ୍ରାଟଙ୍କ ନିକଟକୁ ଖଣ୍ଡିଏ ବୌଦ୍ଧଗ୍ରନ୍ଥ ପଠାଇ ଥିବାର ଚୀନ ଦେଶର ବୌଦ୍ଧ ଲିପିଟିକରେ ଲେଖାଅଛି । ଏହି ସବୁ ପ୍ରମାଣରୁ ଅନୁମାନ ହୁଏ ବୌଦ୍ଧଧର୍ମ ଉତ୍କଳରେ ସେତେ ପ୍ରବଳ ନ ଥିଲେହେଁ, ଅନ୍ୟ ଧର୍ମମାନଙ୍କ ମଧ୍ୟରେ ଖ୍ରୀଷ୍ଟ ୮ମ ଶତାବ୍ଦି ବା ତାହାର ପରକାଳ ପର୍ଯ୍ୟନ୍ତ ପ୍ରଚଳିତ ଥିଲା ।

ଚୈତ୍ରବଂଶ ପରେ ଜୈନଧର୍ମ ମଧ୍ୟ ଉତ୍କଳରୁ ଅନ୍ତର୍ହିତ ହୋଇ ନ ଥିଲା । ବର୍ତ୍ତମାନ ପର୍ଯ୍ୟନ୍ତ ଜୈନପୀଠ ଖଣ୍ଡଗିରି ଓ ଉଦୟଗିରିର ଜୈନ-ସନ୍ନ୍ୟାସୀ-ଆଶ୍ରମମାନ ଅକ୍ଷୁଣ୍ଣ ଥିବାରୁ ଅନୁମାନ କରାଯାଏ ଚୈତ୍ରବଂଶ ପରେ ବହୁଶତାବ୍ଦି ପର୍ଯ୍ୟନ୍ତ ଜୈନମାନେ ଉତ୍କଳରେ ସ୍ୱାଧୀନ ଧର୍ମ ଚିନ୍ତା ଓ ଉପାସନାର ସୁବିଧା ପାଇ ଥିଲେ । ଏପରିକି ଖ୍ରୀଷ୍ଟୀୟ ୧୧ଶ ଓ ୧୨ଶ ଶତାବ୍ଦି ପର୍ଯ୍ୟନ୍ତ ଜୈନଧର୍ମ ଗୋଟିଏ ପ୍ରଚଳିତ ଧର୍ମରୂପେ ଉତ୍କଳରେ ଥିବାର ପ୍ରମାଣ ମିଳେ ।

ବ୍ରାହ୍ମଣ ଧର୍ମ—ଉପରେ ଯେପରି କୁହାଯାଇଅଛି, ପ୍ରାଚୀନ ଉତ୍କଳରେ ଯେତେ ଧର୍ମମତ ପ୍ରଚଳିତ ଥିଲା, ସେମାନଙ୍କ ମଧ୍ୟରେ ଧର୍ମଗତ ସ୍ୱାଧୀନ ଚିନ୍ତା ଓ ସ୍ୱାଧୀନ ପ୍ରଚାରର କୌଣସି ପ୍ରତିରୋଧ ନ ଥିଲା । ଧର୍ମର ପାର୍ଥକ୍ୟ ନିମନ୍ତେ ଏକ ଧର୍ମର ଲୋକ ଅନ୍ୟ ଧର୍ମ ପ୍ରତି ଘୃଣା ବା ବିଦ୍ୱେଷ କରୁ ନ ଥିଲେ । ସମାଜ ଧର୍ମମତ ଅନୁସାରେ ଗଢ଼ା ହୋଇ ନଥିବାରୁ ଏକ ସମାଜର ଲୋକେ ବିଭିନ୍ନ ଧର୍ମ ସ୍ୱାଧୀନଭାବରେ ଗ୍ରହଣ କରି ପାରୁଥିଲେ । କୌଣସି ଧର୍ମ ରାଜାଶ୍ରୟରେ ପ୍ରବଳ ହୋଇ ରାଜ୍ୟଧର୍ମରେ ପରିଣତ

ହୋଇଥିଲେ ସୁଦ୍ଧା, ଅନ୍ୟଧର୍ମାବଲମ୍ବୀଙ୍କ ନିମନ୍ତେ ରାଜ୍ୟ ମଧ୍ୟରେ ସକଳ ସୁବିଧା ଓ ସ୍ୱାଧୀନତା ପାଉଥିଲା। ପ୍ରବଳପ୍ରତାପ ସମ୍ରାଟ ଅଶୋକ ବୌଦ୍ଧଧର୍ମର ସର୍ବଶ୍ରେଷ୍ଠ ପୃଷ୍ଠପୋଷକ ଥିଲେ ମଧ୍ୟ, ସେ ଅନ୍ୟାନ୍ୟ ଧର୍ମାବଲମ୍ବିମାନଙ୍କ ପ୍ରତି ଅପଣାର ସ୍ନେହ ଓ ଆଦର ଅନୁଶାସନମାନଙ୍କରେ ଘୋଷଣା କରିଥିଲେ। ଖାରବେଳ ନିଜେ ଜୈନ ଥିଲେ ହେଁ ବୈଦିକଧର୍ମ ଓ କୌଳିକ ପ୍ରଥା ଅନୁସାରେ ତାହାଙ୍କର ଅଭିଷେକ ବିଧି ନିର୍ବାହିତ ହୋଇଥିଲା। ଏହିରୂପେ ସାମ୍ୟ ଓ ମୈତ୍ରୀଭାବ ସର୍ବ ଧର୍ମସମ୍ପ୍ରଦାୟମାନଙ୍କ ମଧ୍ୟରେ ଥିବାରୁ ଭାରତରେ ଯୁଗେ ଯୁଗେ ଯେତେ ନବ ନବ ଦୀକ୍ଷା ଓ ସମ୍ପ୍ରଦାୟର ସୃଷ୍ଟି ହୋଇଛି, ଉତ୍କଳ ମଧ୍ୟରେ ସେ ସମସ୍ତେ ସମାନ ଆଶ୍ରୟ ଓ ସୁବିଧା ପାଇ ବଢିଥିଲେ। ଏହି ସାମ୍ୟ ଓ ମୈତ୍ରୀଭାବ ବୈଦିକଧର୍ମ ଓ ଭାରତ ସଭ୍ୟତାର ମୂଳମନ୍ତ୍ର। ସୁତରାଂ ବ୍ରାହ୍ମଣଧର୍ମାବଲମ୍ବୀ ଗୁପ୍ତସମ୍ରାଟମାନେ ମଗଧରେ ବ୍ରାହ୍ମଣ ଧର୍ମର ପ୍ରଚାର କରାଇବା ସଙ୍ଗେ ଉତ୍କଳରେ ଜୈନ ଓ ବୌଦ୍ଧଧର୍ମ ପରବର୍ତ୍ତିରେ ବ୍ରାହ୍ମଣଧର୍ମ ପୁଣି ପ୍ରବଳ ହୋଇଉଠିଲା। ମାତ୍ର ବୌଦ୍ଧ ଓ ଜୈନଧର୍ମ ଏକାବେଳକେ ଲୋପ ପାଇଲା ନାହିଁ; ବରଂ ବହୁକାଳ ଏହି ଦେଶରେ ରହିବାର ସୁବିଧା ପାଇ ଶେଷରେ ବ୍ରାହ୍ମଣଧର୍ମ ମଧ୍ୟରେ ସେମାନେ ମିଶିଗଲେ। ବ୍ରାହ୍ମଣଧର୍ମର ଏହି ସନାତନ ଉଦାର ସାମ୍ୟବାଦ ଉତ୍କଳରେ ଜଗନ୍ନାଥ ରୂପରେ ଜନସାଧାରଣଙ୍କର ସହଜବୋଧ ନିମନ୍ତେ ପ୍ରତିଷ୍ଠିତ ହୋଇଅଛି।

ଜଗନ୍ନାଥ— ଜଗନ୍ନାଥଙ୍କ ଯୋଗୁଁ ସମଗ୍ର ଭାରତବର୍ଷ ମଧ୍ୟରେ ଉତ୍କଳର ଗୌରବ ରହିଛି। ପ୍ରବାଦ ଅଛି, ମାଳବ ଦେଶର ଇନ୍ଦ୍ରଦ୍ୟୁମ୍ନ ନାମରେ ଜଣେ ପରମଭକ୍ତ ରାଜା ପ୍ରଥମେ ଜଗନ୍ନାଥଙ୍କୁ ପୁରୀ ବା ପୁରୁଷୋତ୍ତମ କ୍ଷେତ୍ରରେ ସ୍ଥାପନ କରିଥିଲେ। ଜଗନ୍ନାଥ କେବେ ସ୍ଥାପିତ ହେଲେ, ଇନ୍ଦ୍ରଦ୍ୟୁମ୍ନ ରାଜା ବା କିଏ ଥିଲେ, ବର୍ତ୍ତମାନ ତାହା କିଛି ନିଶ୍ଚୟ କରି ହୁଏ ନାହିଁ। ବୌଦ୍ଧ ଓ ଜୈନ ଧର୍ମରେ ବୁଦ୍ଧ ଓ ତୀର୍ଥଙ୍କରମାନଙ୍କର ପ୍ରତିମୂର୍ତ୍ତି ପୂଜା ପାଉଥିଲେ।

ଭକ୍ତ ଧର୍ମମାନ ପ୍ରବଳ ଥିବା ବେଳେ ମୂର୍ତ୍ତିପୂଜା ଅଡ଼କୁ ଜନସାଧାରଣଙ୍କର ମନ ଆକୃଷ୍ଟ ହୋଇଥିଲା । ଜନସାଧରଣଙ୍କ ଏହି ମନୋଭାବ ଦେଖି ପ୍ରଥମରେ ଜଗନ୍ନାଥଙ୍କର ପ୍ରତିଷ୍ଠା ହୋଇଥିବାର କେହି କେହି କହନ୍ତି । ସୁତରାଂ ସେମାନଙ୍କ ମତରେ ଖ୍ରୀଷ୍ଟପୂର୍ବ ୧ମ ୨ୟ ଶତାବ୍ଦୀରେ ଜଗନ୍ନାଥଙ୍କର ପ୍ରତିଷ୍ଠା ହୋଇଥିଲା । ମାତ୍ର ଏହି ମତ ଯେ କଷ୍ଟପ୍ରଦ, ତାହା କହି ହୁଏନାହିଁ । ଜଗନ୍ନାଥଙ୍କର ପ୍ରତିଷ୍ଠା ଯେ କାରଣରୁ ହେଉ ବା ଯେ ସମୟରେ ହେଉ, ଉତ୍କଳ ଯେ ଯୁଗେ ଯୁଗେ ଜଗନ୍ନାଥଙ୍କ ଯୋଗେ ସମଗ୍ର ହିନ୍ଦୁ ଜଗତରେ ପ୍ରଧାନ ତୀର୍ଥ ବୋଲି ଆଦର ପାଇଆସୁଛି ଏବଂ ହିନ୍ଦୁ ଧର୍ମର ସାମ୍ୟ ଓ ମୈତ୍ରୀଭାବ ଜଗତରେ ବିଖ୍ୟାତ କରୁଛି, ତାହାହିଁ ଉତ୍କଳ ଇତିହାସର ପ୍ରଧାନ ଗୌରବ ଘଟଣା । କୋଟି କୋଟି ହିନ୍ଦୁ ନରନାରୀ ଜଗନ୍ନାଥ ଦର୍ଶନ ନିମନ୍ତେ ପ୍ରତିବର୍ଷ ଉତ୍କଳକୁ ଆସି ଧନ୍ୟ ହେଉଛନ୍ତି । ମହାଭାରତ ଯୁଗରେ ଉତ୍କଳ ପତିତ ଦେଶ ଥିଲା, ମାତ୍ର ଜଗନ୍ନାଥଙ୍କ ନିମନ୍ତେ ଉତ୍କଳ ସମଗ୍ର ହିନ୍ଦୁ ଜଗତରେ ପ୍ରଧାନ ପୁଣ୍ୟ କ୍ଷେତ୍ରରୂପେ ଗଣ୍ୟ ହୋଇ ଆସୁଅଛି । ହିନ୍ଦୁ ଧର୍ମର ସକଳ ସାରତତ୍ତ୍ୱ, ସକଳ ମାହାତ୍ମ୍ୟ ଜଗନ୍ନାଥରେ ଯେପରି ପୁଞ୍ଜୀଭୂତ । ଜଗନ୍ନାଥ ଉତ୍କଳ ଇତିହାସର 'ସ୍ୱର୍ଣ୍ଣମଣି' ।



# ପ୍ରଥମ ଅଧ୍ୟାୟ

## କେଶରୀ ବଂଶ

### ଖ୍ରୀଷ୍ଟ ୭୨୦—୧୦୪୨ ଅବ୍ଦ

ଉତ୍କଳ—କେଶରୀବଂଶର ରାଜତ୍ୱ ସଙ୍ଗେ କଳିଙ୍ଗ ପରିବର୍ତ୍ତେ ଉତ୍କଳ ଇତିହାସରେ ପ୍ରସିଦ୍ଧି ପାଇଲା । କେଶରୀ ରାଜାମାନେ କଳିଙ୍ଗର ଉତ୍ତରଭାଗ ବା ଉତ୍କଳରେ ପ୍ରଥମେ ରାଜତ୍ୱ କଲେ । ସେହି ବଂଶ ଓ ପରବର୍ତ୍ତୀ ଗଙ୍ଗବଂଶ ସମୟରେ ଉତ୍ତରରୁ ରାଜପ୍ରଭାବ ଦକ୍ଷିଣ ଆଡକୁ ଗଲା । ସୁତରାଂ ଉତ୍କଳ ନାମରେ ସମସ୍ତ ଦେଶ ପରିଚିତ ହେଲା । ମୁସଲମାନ ଅଧିକାର ପର୍ଯ୍ୟନ୍ତ ଦେଶ ଉତ୍କଳ, ଏବଂ ଦେଶବାସୀ ଉତ୍କଳୀୟ, ବୋଲି ଖ୍ୟାତ ହୋଇ ଆସିଲା । କଳିଙ୍ଗର ପ୍ରଭାବ ବେଳେ ଉତ୍କଳ ବହୁବେଳେ ସ୍ୱତନ୍ତ୍ର ରାଜ୍ୟ ନ ଥିଲା । ପ୍ରଥମେ କୁହାଯାଇଛି ଉତ୍କଳ କଳିଙ୍ଗର ଉତ୍ତର ଅଂଶକୁ କୁହାଯାଉଥିଲା । ସୁତରାଂ ସମୁଦାୟ ଭୂଖଣ୍ଡ କଳିଙ୍ଗ ଦେଶ ନାମରେ ପରିଚିତ ଥିଲା । ଅବଶ୍ୟ ବେଳେ ବେଳେ କଳିଙ୍ଗର କୌଣସି ରାଜା ଦୁର୍ବଳ ଥିବା ଅବସ୍ଥାରେ ଦୁଇ ଦେଶ ଅଳ୍ପକାଳ ନିମନ୍ତେ ପୃଥକ୍ ରହୁଥିଲା । ମାତ୍ର ମୋଟରେ ଉଭୟ ଦେଶ ମଧ୍ୟରେ ରାଷ୍ଟ୍ରୀୟ ଏକତ୍ୱ ପ୍ରାୟ ସବୁ ସମୟରେ ଥିଲା । ଇତିହାସର ଭିନ୍ନଭିନ୍ନ ଯୁଗରେ କେତେବେଳେ ଏହା କଳିଙ୍ଗ, ଏବଂ କେତେବେଳେ ପୁଣି ଏହା ଉତ୍କଳ, ନାମରେ ପରିଚିତ

ହେଉଥିଲା । ତେଣସ୍ତ ସ୍ୱକତ୍ୱ କାଳରୁ -କଳଙ୍ଗ ପରବର୍ତ୍ତିରେ ଉତ୍କଳଙ୍କ ଦେଶର ନାମ ରହିଲା ।

କେଶରୀବଂଶ—ଇତପୂର୍ବେ କୁହାଯାଇଛି 'ଦକ୍ଷିଣ କୋଶଳ' ବା ଉତ୍କଳ କୋଶଳରେ ସୋମବଂଶୀ ଗୁପ୍ତ ରାଜାମାନେ ରାଜତ୍ୱ କରୁଥିଲେ । ସେହି ବଂଶର ଦ୍ୱାଦଶ ରାଜା ଶିବଗୁପ୍ତ ଥିଲେ । ତାହାଙ୍କର ପୁତ୍ର ଜନ୍ମେଜୟ ମହାଭବଗୁପ୍ତ ଉତ୍କଳ ସିଂହାସନ ଅଧିକାର କରି 'ତ୍ରିକଳିଙ୍ଗାଧିପତି' ବୋଲି ଆପଣାର ପରିଚୟ ଦେଲେ । କୋଶଳ ଯେତେବେଳେ ଗୁପ୍ତ ସାମ୍ରାଜ୍ୟର ଅନ୍ତର୍ଗତ ନ ଥିଲେ ସୁଦ୍ଧା କରଦ ରାଜ୍ୟରୂପେ ଅଧୀନସ୍ଥ ହୋଇ ରହିଥିଲା । ଗୁପ୍ତ ସାମ୍ରାଜ୍ୟ କ୍ରମେ ଦୁର୍ବଳ ହୋଇ ପଡ଼ିବାରୁ, ଏବଂ ସୋମବଂଶୀ କୋଶଳ ରାଜା ଉତ୍କଳ ସିଂହାସନ ପାଇବାରୁ ସେମାନେ ଆଉ ଗୁପ୍ତ ସାମ୍ରାଜ୍ୟର ଅଧୀନତା ସ୍ୱୀକାର କରୁ ନ ଥିଲେ । ସେମାନେ ଏବେ ପରାକ୍ରମୀ ଥିଲେ, ପୁଣି ଉତ୍କଳର ରାଜା ହୋଇ ସ୍ୱାଧୀନ ହେଲେ ; ସୁତରାଂ ବୀରତ୍ୱସୂଚକ 'କେଶରୀ' ନାମରେ ଆପଣା ବଂଶକୁ ପରିଚିତ କରାଇଲେ । କେଶରୀ ରାଜାମାନେ ସୋମବଂଶୀ ଥିଲେ । ଧର୍ମମତରେ ସେମାନେ ଶୈବ ଥିଲେ । ସୁତରାଂ କେଶରୀ ରାଜତ୍ୱ କାଳରୁ ବ୍ରାହ୍ମଣ ଧର୍ମ ଶୈବଧର୍ମ ଆକାରରେ ଉତ୍କଳରେ ରାଷ୍ଟ୍ରଧର୍ମରେ ପରିଣତ ହେଲା ।

## ଜନ୍ମେଜୟ

### ଖ୍ରୀଷ୍ଟାବ୍ଦ ୫୨୦—୫୫୨

ରାଜତ୍ୱ—ଯଯାତି କେଶରୀଙ୍କୁ କେହି କେହି ଉତ୍କଳର କେଶରୀ ବଂଶର ପ୍ରଥମ ରାଜା ବୋଲି କହନ୍ତି । ମାତ୍ର ସେ ଜନ୍ମେଜୟଙ୍କ ପୁତ୍ର ଥିଲେ, ଏବଂ ଜନ୍ମେଜୟ ନିଜେ ଉତ୍କଳରେ କେଶରୀ ବଂଶ ସ୍ଥାପନ କରିଥିଲେ । ଗୁପ୍ତ ସାମ୍ରାଜ୍ୟରୁ ସ୍ୱାଧୀନ ହୋଇ ଜନ୍ମେଜୟ ଉତ୍କଳ ସିଂହାସନ ଅଧିରୋହଣ କଲେ , ଏବଂ 'ମହା ରାଜାଧିରାଜ' 'ତ୍ରିକଳିଙ୍ଗାଧିପତି' 'ପରମ ମାହେଶ୍ୱର'

'ପରମଭଟ୍ଟାରକ' 'ସୋମକୁଳ ତିଳକ' ପ୍ରଭୃତି ଆଖ୍ୟାରେ ତାମ୍ରପଟ୍ଟା ସନନ୍ଦ-ମାନଙ୍କରେ ସେ ଆପଣାର ପରିଚୟ ଦେଇଛନ୍ତି । ଜନ୍ମେଜୟ ୪୪୨ ରୁ ୪୭୪ ଶକାବ୍ଦ ବା ୫୨୦ରୁ ୫୫୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ୩୨ବର୍ଷ ରାଜତ୍ୱ କରିଥିଲେ । ଏହାଙ୍କ ରାଜତ୍ୱ କାଳରେ ଏହାଙ୍କ ପ୍ରଦତ୍ତ ଛଗୋଟି ତାମ୍ରଶାସନ ବାହାରିଛି । ଗୋଟିଏ ରାଜତ୍ୱର ତୃତୀୟ ବର୍ଷରେ, ଅନ୍ୟ ଗୋଟିଏ ୬ଷ୍ଠବର୍ଷରେ, ତୃତୀୟଟି ଅଷ୍ଟମ ବର୍ଷରେ ଏବଂ ବାକୀ ତିନୋଟି ଏକବିଂଶବର୍ଷରେ ଖୋଳାଯାଇ ଥିଲା । ଏହି ତାମ୍ର ପଟ୍ଟା ସନନ୍ଦଦ୍ୱାରା ଜନ୍ମେଜୟ ବ୍ରାହ୍ମଣମାନଙ୍କୁ ଗ୍ରାମ ବା ଶାସନମାନ ଦାନ କରିଥିଲେ । ଏହି ପଟ୍ଟାମାନଙ୍କରେ 'ମହାଭବ ଗୁପ୍ତ' 'ଈଶ୍ୱର ରକ୍ଷିତ' ଉପାଧି ମଧ୍ୟ ତାଙ୍କର ଥିବାର ଲେଖାଅଛି । କଟକ ନିକଟରେ ମହାନଦୀ ଓ ବିରୂପା ନଦୀ ମଧ୍ୟରେ ଜନ୍ମେଜୟ 'ଚୌଦ୍ୱାର' ନଗର ସ୍ଥାପନ କରି ସେହିଠାରେ ରାଜଧାନୀ କରିଥିଲେ । ଚୌଦ୍ୱାରର ଭଗ୍ନାବଶେଷ ଅଦ୍ୟାପି ରହିଛି । କଟକଜିଲ୍ଲାର ତାଲଯୋଡ଼ାର ଅଗ୍ରାହାଟ ଗ୍ରାମରେ ଜନ୍ମେଜୟ ଏକ ଯଜ୍ଞ କରିଥିବାର ଲୋକମୁଖରୁ ଶୁଣାଯାଏ । ସେ ଯଜ୍ଞସ୍ଥଳୀର ପରିଚୟ ମଧ୍ୟ ଅଦ୍ୟାପି ମିଳେ ।

## ଯଯାତି କେଶରୀ

### ଖ୍ରୀଷ୍ଟ ୫୫୨—୫୯୮ ଅବ୍ଦ

ରାଜତ୍ୱ—ଜନ୍ମେଜୟଙ୍କ ମୃତ୍ୟୁପରେ ତାହାଙ୍କ ପୁତ୍ର ଯଯାତି କେଶରୀ ୫୫୨ ଖ୍ରୀଷ୍ଟାବ୍ଦରେ ଉତ୍କଳ ସିଂହାସନ ଆରୋହଣ କଲେ । ସେ ୫୯୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ୪୬ବର୍ଷ ରାଜତ୍ୱ କଲେ । ଯଯାତି ତିନୋଟି ତାମ୍ର ଶାସନ ଖୋଳାଇଥିଲେ । ତହିଁରେ ସେ ଆପଣାକୁ 'ମହାଶିବଗୁପ୍ତ' ଓ 'ଶିବରକ୍ଷିତ' ବୋଲି ଆଖ୍ୟା ଦେଇଛନ୍ତି । ଯଯାତିଙ୍କ ରାଜତ୍ୱ କାଳରୁ ଉତ୍କଳରେ ଏକ ସାଲ ପ୍ରଚଳିତ ହୋଇ ଆସୁଅଛି । ଏହି ସାଲ ଅନ୍ୟ ହିନ୍ଦୁ, ମୁସଲମାନ୍ ବା ଖ୍ରୀଷ୍ଟିଆନ ସାଲଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଭାଦ୍ରମାସ ଶୁକ୍ଳ

ଦ୍ୱାଦଶୀ ଦିନଠାରୁ ଏହି ସାଲର ବର୍ଷ ଆରମ୍ଭ । ସେ ଦିନ ସମଗ୍ର ଉତ୍କଳରେ 'ସୁନିଆ' ନାମରେ ଖ୍ୟାତ ଏବଂ ନାନା ଉତ୍ସବରେ ଅତିବାହିତ ହୁଏ । ବର୍ତ୍ତମାନ ଉକ୍ତ ସାଲର ୧୩୩୩ ବର୍ଷ ଚାଲୁଛି । ବର୍ତ୍ତମାନ ଉତ୍କଳରେ ଖ୍ରୀଷ୍ଟିୟାନ ସାଲ ସରକାରୀ କାଗଜ ପତ୍ରରେ ଚଳିଲେ ସୁଦ୍ଧା, ସମସ୍ତ ଜମିଦାର ସିରସ୍ତା ଓ ଅନ୍ୟାନ୍ୟ କାଗଜ ପତ୍ରରେ ଉତ୍କଳର ସ୍ୱତନ୍ତ୍ର ସାଲ ଚାଲି ଅଛି । ପୁଣି ରଜାମାନଙ୍କର ରାଜତ୍ୱ ବର୍ଷ ଗଣନା ନିମନ୍ତେ 'ଅଙ୍କ'ର ବ୍ୟବହାର ହୋଇ ଅଛି । ଏହାର ଗଣନା ସ୍ୱତନ୍ତ୍ର (୧୦ ବ୍ୟତୀତ ଯେଉଁ ସଂଖ୍ୟା ଶେଷରେ ୦ କିମ୍ବା ୬ ଥାଏ, ସେ ସଂଖ୍ୟା ଏବଂ ସଂଖ୍ୟା ୧ ଅଙ୍କରେ ଗଣନା କରାଯାଏ ନାହିଁ ) ଯଥା—୬, ୬, ୧୬, ୨୦ ଇତ୍ୟାଦି । ଏକ ରାଜାଙ୍କ ରାଜତ୍ୱର ଶେଷ ବର୍ଷ ଓ ପରବର୍ତ୍ତୀ ରାଜାଙ୍କ ରାଜତ୍ୱର ପ୍ରଥମ ବର୍ଷ ଏକା ବର୍ଷରେ ପଡ଼ୁଥିବାରୁ ୧ ଅଙ୍କ ହିସାବରେ ଗଣନା କରାଯାଏ ନାହିଁ । ପ୍ରତିବର୍ଷ ସୁନିଆରୁ ଅଙ୍କର ପରିବର୍ତ୍ତନ ହୁଏ । ଯଯାତିଙ୍କ ରାଜତ୍ୱ ଯେହି ହିସାବରେ ୫୨ ଅଙ୍କରେ ୪୨ବର୍ଷ ଧରାଯାଏ । ସେହି ଅଙ୍କ ହିସାବ ଅଦ୍ୟାବଧି ପୁରୀ ରାଜବଂଶରେ ପ୍ରଚଳିତ ।

ଯାଜପୁର—ପୂର୍ବେ କୁହାଯାଇଛି, ଜନ୍ମେଜୟ ଚୌଦ୍ୱାର କଟକରେ ଦୁର୍ଗ ନିର୍ମାଣକରି ରାଜଧାନୀ କରିଥିଲେ । ମାତ୍ର ଯଯାତି ଚୌଦ୍ୱାର ପରିବର୍ତ୍ତରେ ବୈତରଣୀ ନଦୀ କୂଳବର୍ତ୍ତୀ ଯାଜପୁରରେ ନଗର ସ୍ଥାପନ କରି ରାଜଧାନୀ କଲେ । ଯଯାତି ବିଶେଷ ଧର୍ମପରାୟଣ ଥିଲେ, ଏବଂ ପୁଣ୍ୟତୋୟା ବୈତରଣୀ ତଟ ତାଙ୍କ ପ୍ରତି ଅଧିକ ଆଦରଣୀୟ ସ୍ଥାନ ଥିଲା । ଉତ୍କଳରେ ବ୍ରାହ୍ମଣ ଧର୍ମ ( ଶୈବଧର୍ମ ) ଚଳାଇବାରେ ଯଯାତିଙ୍କର ବିଶେଷ ଆଗ୍ରହ ଥିଲା । ମାତ୍ର ସେତେବେଳେ ଉତ୍କଳରେ ଯେଉଁ ବ୍ରାହ୍ମଣମାନେ ଥିଲେ, ସେମାନେ ବୈଦିକ କ୍ରିୟା କାଣ୍ଡ ସେତେ ଜାଣି ନଥିଲେ । ବିଶୁଦ୍ଧ ବୈଦିକ ଧର୍ମ ଉତ୍କଳରେ ଚଳାଇବା ପାଇଁ ଯଯାତି କାନ୍ୟକୁବ୍ଜରୁ ଦଶ ହଜାର ବିଶୁଦ୍ଧ ବୈଦିକ ବ୍ରାହ୍ମଣ ଅଣାଇ ଉତ୍କଳରେ ସ୍ଥାନ ଦେଇଥିଲେ । ସେହିମାନଙ୍କ

ପରେ ଯଯାତି ମଧ୍ୟ ବୈତରଣୀ କୂଳରେ ଏକ ଯାଗ କରି ଥିଲେ । ସେହି ନବାଗତ ବ୍ରାହ୍ମଣମାନଙ୍କ ପୌରୋହିତ୍ୟରେ ଯାଗ ହୋଇଥିଲା । ସେହି ଯାଗ ଯୋଗୁଁ ସ୍ଥାନର ନାମ ଯାଜନଗର, ଯଜ୍ଞପୁର ଏବଂ ବର୍ତ୍ତମାନ ଯାଜପୁର ହୋଇଅଛି । ସେହି ଯଜ୍ଞସ୍ଥଳରେ ଯଯାତି ରାଜଧାନୀ କଲେ ଏବଂ ନବାଗତ ବ୍ରାହ୍ମଣମାନଙ୍କୁ ଭୂମିଦାନ କରି ସେଠାରେ ଏବଂ ଚୌଦ୍ୱାର ଅଞ୍ଚଳରେ ଶାସନମାନ ବସାଇଲେ । କାଳକ୍ରମେ ପରବର୍ତ୍ତୀ ରାଜାମାନଙ୍କ ସମୟରେ ଉକ୍ତ ବ୍ରାହ୍ମଣ ବଂଶଧରମାନେ ଉତ୍କଳର ନାନା ସ୍ଥାନରେ ରାଜଦତ୍ତ ଶାସନମାନଙ୍କରେ ରହିଲେ । ସେହିମାନେ ବର୍ତ୍ତମାନ 'ଉତ୍କଳୀୟ ବ୍ରାହ୍ମଣ' ବୋଲି ପରିଚିତ । ସେମାନଙ୍କୁ 'ବୈଦିକ' ବା 'ଶ୍ରୋତ୍ରୀୟ' ବ୍ରାହ୍ମଣ କୁହାଯାଏ ଏବଂ ଉତ୍କଳର ଅଦିମ ବ୍ରାହ୍ମଣମାନେ 'ମାସ୍ତାନ' 'ବଳରାମ ଗୋତ୍ରୀ' 'ପଣ୍ଡା' 'ଲୌକିକ ବ୍ରାହ୍ମଣ' ପ୍ରଭୃତି ଆଖ୍ୟାରେ କଥିତ ହୁଅନ୍ତି । 'ଶ୍ରୋତ୍ରୀୟ ବ୍ରାହ୍ମଣ'ମାନେ ଶ୍ରେଷ୍ଠ ବ୍ରାହ୍ମଣ ବୋଲି ଉତ୍କଳରେ ସମ୍ମାନ ପାଆନ୍ତି ।

ଯଯାତି ଯାଜପୁରରେ ଯଜ୍ଞ ସମାପନ କରି ସେଠାରେ ଗୋଟିଏ ରାଜପ୍ରାସାଦ ନିର୍ମାଣ କରି ବାସକଲେ । ବର୍ତ୍ତମାନ ଯାଜପୁର ସରକାରୀ କଚେରୀମାନ ଯେଉଁଠାରେ ଅଛି, ଯଯାତିଙ୍କ ରାଜନଅର ସେହିଠାରେ ଥିଲା । ଯାଜପୁରରେ ଅଦ୍ୟାପି ଯଯାତିଙ୍କ ଯଜ୍ଞକୁଣ୍ଡ, ଯାଗସ୍ତମ୍ଭ ପ୍ରଭୃତି ଦେଖାଯାଏ । ଯାଜପୁରରେ ବୈତରଣୀ ନଦୀ କୂଳର ଦଶାଶ୍ୱମେଧ ଘାଟ ଯଯାତିଙ୍କର କୀର୍ତ୍ତି, ତାହା ଅଦ୍ୟାପି ରହିଅଛି । ଏହିଠାରେ ସ୍ନାନ କଲେ ଦଶଟି ଅଶ୍ୱମେଧ ଯଜ୍ଞର ଫଳ ମିଳେ ବୋଲି ଘାଟର ନାମ ସେପରି ଦିଆ ଯାଇଛି । ନରକରୁ ଉଦ୍ଧାର ପାଇବା ଏବଂ ଦଶ ଅଶ୍ୱମେଧ ଯଜ୍ଞର ଫଳ ପାଇବା କାମନାରେ ଲକ୍ଷ ଲକ୍ଷ ହିନ୍ଦୁ ନରନାରୀ ଏହି ଘାଟରେ ସ୍ନାନ କରି ବୈତରଣୀରେ ଗୋଦାନ କରନ୍ତି ।

**ଜଗନ୍ନାଥ ମନ୍ଦିର**—ଜଗନ୍ନାଥ ପୂର୍ବରେ ପ୍ରଥମେ ଯେଉଁ ମନ୍ଦିରରେ ସ୍ଥାପିତ ହୋଇଥିଲେ କାଳକ୍ରମେ ତାହା ଭାଙ୍ଗି ଯିବାରୁ, ଯଯାତି ଗୋଟିଏ

ନୂତନ ମନ୍ଦିର କରି ଦେଲେ । ଜଗନ୍ନାଥଙ୍କଠାରେ ଅନ୍ନ ମହାପ୍ରସାଦ ଓ ପୂଜାବିଧି ବର୍ତ୍ତମାନ ଯେପରି ଚାଲୁଛି ତାହା ସବୁ ଯଯାତି ବିଧାନ କରିଥିଲେ । ପରବର୍ତ୍ତୀ କାଳରେ ପୂଜା ସମ୍ଭାର ଅନେକ ବଢିଲା, ମାତ୍ର ପୂଜାର ବିଧି ବିଧାନ ଅଧିକାଂଶ ଯଯାତିଙ୍କ ବେଳେ ଆରମ୍ଭ ହୋଇଥିଲା । ଜଗନ୍ନାଥ ମନ୍ଦିରର ସକଳ ବିଧି ବିଧାନ ଯଯାତିଙ୍କ ବେଳେ ଆରମ୍ଭ ହୋଇଥିବାରୁ ଯଯାତି ଲୋକରେ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ନାମରେ ଖ୍ୟାତ ହେଲେ ।

ଭୁବନେଶ୍ୱର—ପ୍ରଥମରୁ କୁହାଯାଇଛି କେଶରୀ ରାଜାମାନେ ଶୈବ ଥିଲେ । ଉତ୍କଳରେ ଶିବ ଉପାସନା ପ୍ରଚଳନ କରିବା ସେମାନଙ୍କର ପ୍ରଧାନ କାର୍ଯ୍ୟ ଥିଲା । ଭୁବନେଶ୍ୱର ଉତ୍କଳର ରାଜଧାନୀ ରୂପେ ନନ୍ଦ-ରାଜତ୍ୱ ପୂର୍ବରୁ ପ୍ରସିଦ୍ଧ ଥିଲା । ଜୈନ ଓ ବୌଦ୍ଧଧର୍ମର କେନ୍ଦ୍ର ଭୁବନେଶ୍ୱର ନିକଟରେ ଥିଲା । ସୁତରାଂ କେଶରୀମାନେ ଶିବ ଉପାସନା ନିମନ୍ତେ ଭୁବନେଶ୍ୱରକୁ ପ୍ରଶସ୍ତ କ୍ଷେତ୍ର ମନେ କରିବା ସ୍ୱାଭାବିକ । ଯଯାତି ଜଗନ୍ନାଥ ମନ୍ଦିର କାର୍ଯ୍ୟ ଶେଷ କରି ରାଜତ୍ୱର ଶେଷ ଅଂଶକୁ ଭୁବନେଶ୍ୱରରେ ଶିବ-କ୍ଷେତ୍ର ସ୍ଥାପନ କରିବାର ଉଦ୍ୟୋଗ କଲେ । ଗଙ୍ଗରାଜଙ୍କ ବର୍ତ୍ତମାନ ମନ୍ଦିରର ନିର୍ମାଣ କାର୍ଯ୍ୟ ଯଯାତି ଆରମ୍ଭ କରାଇ ଥିଲେ । ଉତ୍କଳର ପ୍ରଧାନ ବୌଦ୍ଧ ଓ ଜୈନ କେନ୍ଦ୍ର ଏବଂ ରାଜଧାନୀ ଯଯାତିଙ୍କଦ୍ୱାରା ପ୍ରଧାନ ଶିବକ୍ଷେତ୍ରରେ ପରିଣତ ହେଲା । ଯଯାତି ଭୁବନେଶ୍ୱର ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ ମାତ୍ର କରିଥିଲେ, ଏପରି ସମୟରେ ତାହାଙ୍କର ମୃତ୍ୟୁ ଘଟିଲା ।

## ଲଳିତେନ୍ଦ୍ରକେଶରୀ

### ଖ୍ରୀଷ୍ଟ ୬୩୧ — ୬୭୫ ଅବ୍ଦ

ସୂର୍ଯ୍ୟ ଓ ଅନନ୍ତ କେଶରୀ—ଯଯାତିଙ୍କ ମୃତ୍ୟୁ ପରେ ସୂର୍ଯ୍ୟକେଶରୀ ୧୯ ବର୍ଷ ଏବଂ ଅନନ୍ତ କେଶରୀ ୧୪ବର୍ଷ ରାଜତ୍ୱ କରିଥିଲେ । ସୂର୍ଯ୍ୟ-କେଶରୀଙ୍କର ଗୋଟିଏ ତାମ୍ରଶାସନ ମିଳିଛି । ତହିଁରେ ସେ ଅପଣାକୁ

'ଶ୍ରୀମାର୍ଥଦେବ' ଓ 'ମହାଭବ ଗୁପ୍ତ' ଆଖ୍ୟା ଦେଇଛନ୍ତି । ଏହି ତାମ୍ରଶାସନରେ ସେ ବ୍ରାହ୍ମଣମାନଙ୍କୁ ଶାସନ ଦାନ ଦେଇଥିଲେ । ଏହି ଦୁହିଁଙ୍କ ରାଜତ୍ବରେ ବହୁ ବିଶେଷ ଘଟଣା ଘଟି ନାହିଁ । ଯଯାତି ଯେଉଁ ଭୁବନେଶ୍ବର ମନ୍ଦିର କାର୍ଯ୍ୟ ଆରମ୍ଭ କରିଥିଲେ, ସୂର୍ଯ୍ୟ ଓ ଅନନ୍ତ କେଶରୀ ତହିଁରେ ଲଗିଥିଲେ । ଏମାନଙ୍କ ପରେ କେଶରୀ ବଂଶର ପ୍ରସିଦ୍ଧ ନରପତି ଲଲଟେନ୍ଦୁ ବା ଲଲାଟେନ୍ଦୁ କେଶରୀ ୬୩୧ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କଲେ । ଇତିହାସରେ ସେ ମଧ୍ୟ 'ଅଳାବୁକେଶରୀ' ନାମରେ ପରିଚିତ ।

ଭୁବନେଶ୍ବର—ଯଯାତି ଭୁବନେଶ୍ବରରେ ବ୍ରାହ୍ମଣ ଧର୍ମର ବିଜୟ ସ୍ବରୂପ ଯେଉଁ ଶିବକ୍ଷେତ୍ର ଆରମ୍ଭ କରିଥିଲେ, ଲଲାଟେନ୍ଦୁ କେଶରୀ ତାହା ପୂର୍ଣ୍ଣ କରିବାରେ ଲଗିଲେ । ତାହାଙ୍କ ରାଜତ୍ବର ୪୩ ଅଙ୍କ ବା ୩୫ ବର୍ଷରେ ଲିଙ୍ଗରାଜଙ୍କ ମନ୍ଦିର ନିର୍ମାଣ ଶେଷହେଲା ( ଖ୍ରୀଷ୍ଟାବ୍ଦ୬୬୬ ) । ଲିଙ୍ଗରାଜଙ୍କ ମନ୍ଦିର ନିର୍ମାଣ ଶେଷ ହେବାମାତ୍ରେ ଲଲାଟେନ୍ଦୁ ଭୁବନେଶ୍ବରରେ ସାତପାଞ୍ଚ ଓ ବଅାଳିଶକଡ଼ି ବଣିଙ୍କ ଗୋଟିଏ ସହର ବସାଇଲେ । ଭୁବନେଶ୍ବରରେ ବର୍ତ୍ତମାନ ଯେତେ ଯାତ୍ରା ଓ ପର୍ବମାନ ଚଳିଛି, ସେ ସବୁ ଲଲାଟେନ୍ଦୁଙ୍କର ଅନୁଷ୍ଠାନ । ଯାଜପୁର ଯଯାତିଙ୍କର ରାଜଧାନୀ ହୋଇଥିଲା । ମାତ୍ର ଭୁବନେଶ୍ବର ଅତି ପ୍ରାଚୀନ କାଳରୁ ଉତ୍କଳର ଧର୍ମଧାମରୂପେ ପ୍ରସିଦ୍ଧ ଥିଲା । ପୁଣି ନୂତନ ଶିବକ୍ଷେତ୍ର ଯୋଗେ ଭୁବନେଶ୍ବରର ମାହାତ୍ମ୍ୟ ହିନ୍ଦୁ ଜଗତରେ ଆହୁରି ବଢ଼ିଗଲା ; ସୁତରାଂ ଭୁବନେଶ୍ବରର ଶିବକ୍ଷେତ୍ରରେ ରାଜଧାନୀ କରିବା ଶୈବରାଜାଙ୍କର ଇଚ୍ଛା ବଳବା ସ୍ବାଭାବିକ । ଲିଙ୍ଗରାଜଙ୍କ ମନ୍ଦିର ପାଖରେ ଠିକ ଦକ୍ଷିଣକୁ ଲଲାଟେନ୍ଦୁ ଗୋଟିଏ ନଅର ତିଆରିକରି ବାସକଲେ । ଉକ୍ତ ନଅର ପାଚିରି ପ୍ରଭୃତିର ଅବଶେଷ ଅଦ୍ୟାପି ରହିଅଛି ।

---

(୧)ଭୁବନେଶ୍ବର ମନ୍ଦିରରେ ନିର୍ମାଣ କାଳର ଶୋଡଶଲିପି ଅଛି—

ଗଜାଷ୍ଟେ ଶୂନ୍ୟଭେ ଜାତେ ଶକାବ୍ଦେ କୃତିବାସସଃ ପ୍ରାସାଦ ମକରୋଦ୍ରାଜା ଲଲାଟେନ୍ଦୁ କେଶରୀ ।
ଅର୍ଥାତ୍ ୫୮୮ ଶକାବ୍ଦ ବା ୬୬୬ ଖ୍ରୀଷ୍ଟାବ୍ଦରେ ଲିଙ୍ଗରାଜଙ୍କ ମନ୍ଦିରନିର୍ମାଣ ଶେଷ ହୋଇଥିଲା ।

କଥିତ ଅଛି ଲଲାଟେନ୍ଦୁ ମଧ୍ୟେ ମଧ୍ୟେ ଉଦୟଗିରିର ରାଣୀହଂସପୁରରେ ବାସ କରୁଥିଲେ ।

ଭୁବନେଶ୍ୱର ଏହାପୂର୍ବରୁ ଏକାମ୍ରକାନନନାମରେ ପରିଚିତ ଥିଲା ଲିଙ୍ଗରାଜ ବା ଭୁବନେଶ୍ୱରଙ୍କ ମନ୍ଦିର ନିର୍ମାଣ କାଳରୁ ତାହା 'ଭୁବନେଶ୍ୱର' ନାମରେ ପ୍ରସିଦ୍ଧ ହେଲା । ଭୁବନେଶ୍ୱରରେ ଯେତେ ମନ୍ଦିର ଅଛି ବା ଥିଲା, ସେ ସବୁ ଲଲାଟେନ୍ଦୁଙ୍କ ରାଜତ୍ୱରେ ତିଆର ହୋଇ ନଥିଲା । ଅନ୍ୟାନ୍ୟ ମନ୍ଦିରମାନ ପରବର୍ତ୍ତୀ ରାଜାମାନଙ୍କର କୀର୍ତ୍ତି । କେବଳ ଲିଙ୍ଗରାଜଙ୍କ ମନ୍ଦିର ଲଲାଟେନ୍ଦୁଙ୍କ କୀର୍ତ୍ତି ଏବଂ ଏହାହିଁ ଭୁବନେଶ୍ୱରରେ ସର୍ବ ପ୍ରଥମେ ତିଆର ହୋଇଥିଲା । ଉତ୍କଳରେ ଯେତେ ମନ୍ଦିର ଅଛି ବା ଥିଲା ଲିଙ୍ଗରାଜଙ୍କ ମନ୍ଦିର ସବାପେକ୍ଷା ପୁରାତନ ଲଲାଟେନ୍ଦୁଙ୍କ ନିର୍ମିତ ମନ୍ଦିର ଅଦ୍ୟାପି ସେହିପରି ରହିଛି । ଶିଳ୍ପ କଳା ସମ୍ବନ୍ଧରେ ଭୁବନେଶ୍ୱର କେବଳ ଭାରତରେ ନୁହେଁ; ସମଗ୍ର ପୃଥିବୀରେ ପ୍ରସିଦ୍ଧ । ଉତ୍କଳର ଶିଳ୍ପକଳା ପ୍ରଥମେ ଖଣ୍ଡଗିରି ଉଦୟଗିରି ଗହ୍ୱରମାନଙ୍କରେ ପ୍ରକାଶ ପାଇଥିଲା । କାଳକ୍ରମେ ତାହା ଉନ୍ନତ ହୋଇ ଭୁବନେଶ୍ୱରରେ ଦେଖାଗଲା । କଳାର ଏହି ଆଶ୍ଚର୍ଯ୍ୟ ଉତ୍କର୍ଷତା ଯୋଗେ ଉତ୍କଳୀୟମାନେ ପୃଥିବୀରେ ଖ୍ୟାତ ହୋଇଛନ୍ତି । ବୋଧହୁଏ ପରଶୁରାମେଶ୍ୱରଙ୍କ ମନ୍ଦିର ଛଡ଼ା ଭୁବନେଶ୍ୱରର ପ୍ରାୟ ସକଳ ମନ୍ଦିର ଓ କୀର୍ତ୍ତି କେଶରୀ ବଂଶ ରାଜତ୍ୱ କାଳର ଘଟଣା । ବର୍ତ୍ତମାନ ସବୁ ମନ୍ଦିର ନାହିଁ; ଯାହାସବୁ ଅଛି ସେଥିରୁ ସେ କାଳର ଉନ୍ନତ ଆଦର୍ଶ କଳା, ଗଠନ ପରିପାଟୀ ଓ କଳା କୁଶଳତାର ସୁନ୍ଦର ପରିଚୟ ମିଳେ । ଭୁବନେଶ୍ୱରରେ ଆକାରରେ ଲିଙ୍ଗରାଜଙ୍କ ମନ୍ଦିର ଏବଂ କଳାପରିପାଟୀରେ ମୁକ୍ତେଶ୍ୱରଙ୍କ ମନ୍ଦିର ସର୍ବ ପ୍ରସିଦ୍ଧ । ମନ୍ଦିର ଦେହରେ ନାନା ଲତା ପତ୍ର ଜୀବଜନ୍ତୁ କାର୍ଯ୍ୟ ଏବଂ ସିଦ୍ଧତପା ଯୋଗୀଋଷି, ଶିକ୍ଷକ ଓ ଛାତ୍ର, ସୈନ୍ୟସାମନ୍ତ, ନର୍ତ୍ତକ ନର୍ତ୍ତକୀ ଗାୟକ ବାଦକ, ପ୍ରେମିକ ପ୍ରେମିକା, ରାଜଦରବାର, ଯୁଦ୍ଧଅଭିଯାନ ପ୍ରଭୃତି

ସର୍ବାବଧି ଦୃଶ୍ୟ ଶୋଭାବହୋଇ ଅଦ୍ୟାପି ଦର୍ଶକ ମନରେ ଅଶ୍ଚର୍ଯ୍ୟ ଜନ୍ମାଉଅଛି । ଭିନ୍ନ ଭିନ୍ନ ଯୁଗରେ ମନ୍ଦିରମାନ ତିଆର ହୋଇଥିବାରୁ ଭୁବନେଶ୍ୱର ଉତ୍କଳର କଳାଇତିହାସର ସକଳ ସାର ସଂଗ୍ରହକରି ରଖିଅଛି ଲିଙ୍ଗରାଜଙ୍କ ମନ୍ଦିରର ଉଚ୍ଚତା ବେଢ଼ାପ୍ରାଙ୍ଗଣରୁ ୧୬୦ଫୁଟ; ଏହି ବେଢ଼ା ଦୈର୍ଘ୍ୟରେ ୫୨୦ଫୁଟ ଏବଂ ପ୍ରସ୍ଥରେ ୪୬୫ ଫୁଟ । ବେଢ଼ାର କ୍ଷେତ୍ରଫଳ ମୋଟରେ ୫୍ଏକର୍ । ଏହି ବେଢା ମଧ୍ୟରେ ପାର୍ଶ୍ୱଦେବତାଙ୍କର କ୍ଷୁଦ୍ର କ୍ଷୁଦ୍ର ମନ୍ଦିର ୬୦ ବା ୭୦ ପର୍ଯ୍ୟନ୍ତ ଅଛି । ବେଢାର ବାହାରେ ବହୁଦୂର ଧରି ଆଉ ସବୁ ଯେ ମନ୍ଦିରମାନ ଅଛି ତାହା ମଧ୍ୟରେ ବିନ୍ଦୁସାଗର ପାର୍ଶ୍ୱବର୍ତ୍ତୀ ଅନନ୍ତ ବାସୁଦେବ, ଉତ୍ତରେଶ୍ୱର, ଋଷିରେଶ୍ୱର, କପାଳିନୀ, ଶାଢ଼ୀଦେଉଳ; ପାପନାଶିନୀ କୁଣ୍ଡ ପାର୍ଶ୍ୱବର୍ତ୍ତୀ ବରୁଣେଶ୍ୱର, ମୈତ୍ରେଶ୍ୱର, ଚକ୍ରକର୍ଣ୍ଣୀ; କେଦାରଗୌରୀ କୁଣ୍ଡ ପାର୍ଶ୍ୱବର୍ତ୍ତୀ ପରଶୁରାମେଶ୍ୱର, ସିଦ୍ଧେଶ୍ୱର, ମୁକ୍ତେଶ୍ୱର, କେଦାରେଶ୍ୱର,ଗୌରୀ, ରାଜରାଣୀ, ଏବଂ ନାକେଶ୍ୱର ମନ୍ଦିର, ଗୋ ସହସ୍ରେଶ୍ୱର ଓ ତାହାର ନିକଟବର୍ତ୍ତୀ ମନ୍ଦିରମାନ; ଏବଂ ଦକ୍ଷିଣରେ କପିଳେଶ୍ୱର, ଉତ୍ତରରେ ରାମେଶ୍ୱର, ପଶ୍ଚିମରେ ଯମେଶ୍ୱର ଏବଂ ପୂର୍ବରେ ବ୍ରହ୍ମେଶ୍ୱର, ମେଘେଶ୍ୱର ଓ ଭାସ୍କରେଶ୍ୱର ମନ୍ଦିରମାନ ପ୍ରଧାନ ।

ହୁଏନସାଙ୍କ ଉତ୍କଳ ଭ୍ରମଣ—( ୬୪୦ଖ୍ରୀଷ୍ଟାବ୍ଦ ) ଲଲାଟେନ୍ଦୁକେଶରୀଙ୍କ ରାଜତ୍ୱ କାଳରେ ପ୍ରସିଦ୍ଧ ଚୀନ ପରିବ୍ରାଜକ ହୁଏନସାଂ ଉତ୍କଳ ପରିଦର୍ଶନ କରିଥିଲେ । ଭାରତର ଅନ୍ୟାନ୍ୟ ସ୍ଥାନରେ ବୌଦ୍ଧକୀର୍ତ୍ତି ଦେଖି ସେ ଲଙ୍କାଯିବା ବାଟରେ ତାମ୍ରଲିପ୍ତ ବନ୍ଦରରେ ଉପସ୍ଥିତହେଲେ; ମାତ୍ର ତାମ୍ରଲିପ୍ତ ବନ୍ଦରଠାରୁ ଲଙ୍କାଯିବା ସମୁଦ୍ର-ପଥ ସେତେବେଳେ ଦୁର୍ଗମହୋଇ ଥିବାରୁ ସେ ବୌଦ୍ଧକୀର୍ତ୍ତିଦେଖିବାନିମନ୍ତେ ଉତ୍କଳକୁ ଆସିଲେ । ସେ ଉତ୍କଳବିଷୟରେ ଯେଉଁ ବର୍ଣ୍ଣନା ଦେଇଛନ୍ତି ପରବର୍ତ୍ତୀ ଅଧ୍ୟାୟରେ ତାହା ଲେଖାଯିବ ।

# ପରବର୍ତ୍ତୀ କେଶରୀ ରାଜଗଣ

କେଶରୀ ବଂଶର ୪୪ଜଣ ରାଜା ରାଜତ୍ୱ କରିଥିବାର ମାଦଳାପାଞ୍ଜିରେ ଲେଖାଅଛି । ଲଲାଟେନ୍ଦ୍ର ବଂଶର ପଞ୍ଚମ ରାଜା; ୬୬୫ ଖ୍ରୀଷ୍ଟାବ୍ଦରେ ତାହାଙ୍କର ମୃତ୍ୟୁ ହେଲା । ସେଠାରୁ ୧୦୪୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ୩୯ଜଣ ରାଜା ରାଜତ୍ୱ କରିଥିଲେ । ମାତ୍ର ସେମାନଙ୍କ ମଧ୍ୟରୁ କିଏ କେଉଁ ସମୟରେ କେତେକାଳ ରାଜା ହୋଇଥିଲେ; ଏବଂ ସେମାନଙ୍କ ସମୟରେ କି କି ଘଟଣା ଘଟିଥିଲା ତାହା ନିଶ୍ଚିତରୂପେ ଜଣାଯାଏ ନାହିଁ । ମାଦଳା ପାଞ୍ଜି ବ୍ୟତୀତ କେତେକ ଅନୁଶାସନ, ପ୍ରାଚୀନ ଗ୍ରନ୍ଥ ଏବଂ ଅନ୍ୟ ଦେଶର ଇତିହାସରୁ କେତେକ କେଶରୀ ରାଜାଙ୍କ ନାମ ମିଳେ । ମାଦଳାପାଞ୍ଜିରେ ସେମାନଙ୍କର ନାମ ନାହିଁ । ତେବେ ଯେଉଁ କେଶରୀମାନଙ୍କ ସମ୍ବନ୍ଧରେ କିଛି ନିଶ୍ଚିତରୂପେ ଜଣାଯାଇଅଛି, ସେହିମାନଙ୍କ ନାମ ଓ ରାଜତ୍ୱକାଳର ଘଟଣା ନିମ୍ନରେ ଦିଆଗଲା ।

ନୃପକେଶରୀ— ଜଗନ୍ନାଥ ମନ୍ଦିରର ଜୀର୍ଣ୍ଣ ସଂସ୍କାର କରିଥିଲେ ।

କୋଶଳ କେଶରୀ— ପୁରୀର ମାର୍କଣ୍ଡେଶ୍ୱର ଦେଉଳ ଓ ପୁଷ୍କରିଣୀ ଏହାଙ୍କର ପ୍ରଧାନ କୀର୍ତ୍ତି ।

ଶୁଭଙ୍କର କେଶରୀ— ଖ୍ରୀଷ୍ଟ ଅଷ୍ଟମ ଶତାବ୍ଦୀରେ ଚୀନ ସମ୍ରାଟଙ୍କୁ ଶୁଭଙ୍କର କେଶରୀ 'ଗୁଣ୍ଡାବତଂସକ ସୂତ୍ର' ନାମରେ ଖଣ୍ଡିଏ ବୌଦ୍ଧଗ୍ରନ୍ଥ ଉପହାର ସ୍ୱରୂପ ପଠାଇଥିଲେ । ଚୀନଦେଶୀୟ ବୌଦ୍ଧ ତ୍ରିପିଟକ ମଧ୍ୟରେ ଏହା ଅଦ୍ୟାପି ଅନୁବାଦିତ ହୋଇ ରହିଅଛି । ଶୁଭଙ୍କର ମଧ୍ୟ ଚୀନ ସମ୍ରାଟଙ୍କୁ ଗୋଟିଏ ନାନା ଚିତ୍ରବିଚିତ୍ର ଚନ୍ଦ୍ରାତପ ଉତ୍କଳରୁ ଉପହାର ସ୍ୱରୂପ ପଠାଇଥିଲେ । ତାହା ମଧ୍ୟ ଅଦ୍ୟାପି ଚୀନ ରାଜଧାନୀରେ ରକ୍ଷିତ ଅଛି ।

କର୍ଣ୍ଣକେଶରୀ—ଦଣ୍ଡଭୁକ୍ତି (ବା ବିହାର) ରାଜାଙ୍କ ସଙ୍ଗେ ଯୁଦ୍ଧ କରିଥିବାର ବର୍ଣ୍ଣନା ଅଛି ।

ଉଦ୍ୟୋତ ବା ବସ୍ତକଲ୍ପକେଶରୀ— ଏହାଙ୍କ ରାଣୀ କୋଲାବତୀ ଭୁବନେଶ୍ୱରରେ ବ୍ରହ୍ମେଶ୍ୱରଙ୍କ ମନ୍ଦିର ନିର୍ମାଣ କରାଇଥିଲେ । ଲିଙ୍ଗରାଜଙ୍କ ମନ୍ଦିରର ନାଟମନ୍ଦିର ଆଦି ଏହାଙ୍କ ରାଜତ୍ୱରେ ତିଆରି ହୋଇଥିଲା । ଉଦ୍ୟୋତ ବିଶେଷ ଯୁଦ୍ଧପ୍ରିୟ ଥିଲେ । ସିଂହଳ ବା ଲଙ୍କା, ଚୋଳ, ଗୌଡ଼ ବା ବଙ୍ଗଦେଶର ରାଜାମାନଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ । ଏହାଙ୍କର ଦୁଇଟି ଖୋଦିତ ଲିପି ଖଣ୍ଡଗିରିର ନବମୁନିଗୁମ୍ଫା ଓ ବ୍ରହ୍ମେଶ୍ୱର ମନ୍ଦିରରେ ଅଦ୍ୟାପି ରହିଅଛି । ଏହାଙ୍କ ରାଜତ୍ୱରେ ଶୁଭଚନ୍ଦ୍ର ନାମକ ଜଣେ ଜୈନ-ସନ୍ନ୍ୟାସୀ ଖଣ୍ଡଗିରିରେ ନବମୁନି ଗୁମ୍ଫା ଖୋଳାଇ ଥିଲେ ।

ଶିଶୁପାଳ କେଶରୀ —ଭୁବନେଶ୍ୱରର ଦକ୍ଷିଣ ପୂର୍ବରେ ଗଙ୍ଗୁଆ ନଦୀ କୂଳରେ ଶିଶୁପାଳ ଏକ ଦୁର୍ଗ ନିର୍ମାଣ କରିଥିଲେ । ସେ ଦୁର୍ଗ ତାହାଙ୍କ ନାମାନୁସାରେ ଖ୍ୟାତ । ସେ ଦୁର୍ଗର ପ୍ରାଚୀର ଓ ପରିଖାର ଅବଶେଷ ଅଦ୍ୟାପି ବହୁଦୂରରୁ ଦେଖାଯାଏ । ଦୁର୍ଗ ମଧ୍ୟରୁ ପୁରାକାଳର ଇଟା ପଥର ତାମ୍ର ପ୍ରଭୃତି ପ୍ରଚୁର ମିଳେ ।

ପୁରନ୍ଦର ( ବା ପୁରଞ୍ଜନ ) କେଶରୀ—କୋଣାର୍କରେ ସୂର୍ଯ୍ୟଦେବଙ୍କର ଯେଉଁ ମନ୍ଦିର ଥିଲା ତାହା କାଳକ୍ରମେ ଜୀର୍ଣ୍ଣ ହୋଇଯାଇ ଥିବାରୁ ପୁରନ୍ଦର ଗୋଟିଏ ନୂତନ ମନ୍ଦିର ନିର୍ମାଣକରି ସୂର୍ଯ୍ୟଦେବଙ୍କୁ ତହିଁରେ ସ୍ଥାପନ କରିଥିଲେ । ସୂର୍ଯ୍ୟଦେବଙ୍କ ପୂଜାବିଧାନ ପୁରନ୍ଦର ବହୁତ ବଢାଇ ଦେଇଥିଲେ; ଏବଂ କୋଣାର୍କ ନିକଟରେ ଅଠଗୋଟି ବ୍ରାହ୍ମଣଶାସନ ବସାଇଥିଲେ । ପୁରନ୍ଦର ଖ୍ରୀଷ୍ଟ ୯ମ ଶତାବ୍ଦିର ମଧ୍ୟଭାଗରେ କୋଣାର୍କ ମନ୍ଦିର କରାଇଥିବାର ଅନୁମାନ କରାଯାଏ । ପୁରନ୍ଦରଙ୍କ ମନ୍ଦିର ବା ବ୍ରାହ୍ମଣ ବସତି ବର୍ତ୍ତମାନ ନାହିଁ ।

ବରାହ କେଶରୀ—ଯାଜପୁରରେ ବରାହନାଥଙ୍କ ନିମନ୍ତେ ମନ୍ଦିର କରାଇ ଥିଲେ । ସେ ମନ୍ଦିର ବର୍ତ୍ତମାନ ମନ୍ଦିର ଅବଶ୍ୟ ନୁହେଁ । ବରାହନାଥ ଭୁବନେଶ୍ୱରରେ ବିନ୍ଦୁସାଗର ଖୋଳାଇଥିଲେ । ଭାରତବର୍ଷର ସକଳ

ତୀର୍ଥମାନଙ୍କର ଜଳ ମିଶି ବିନ୍ଦୁସାଗର ହୋଇଥିବାର ପୁରାଣରେ ବର୍ଣ୍ଣିତ ସେଥିପାଇଁ ବିନ୍ଦୁସାଗର ଭୁବନେଶ୍ୱରର ଗୋଟିଏ ବଡ଼ ପବିତ୍ର ତୀର୍ଥ ।

ନୃପକେଶରୀ— ଖ୍ରୀଷ୍ଟାବ୍ଦ ୯୬୦ରୁ ୯୭୫ ପର୍ଯ୍ୟନ୍ତ ୧୫ବର୍ଷ ରାଜତ୍ୱ କରିଥିଲେ । ନୃପକେଶରୀ ଯୁଦ୍ଧବିଦ୍ୟାରେ ବିଶେଷ ବିଚକ୍ଷଣ ଥିଲେ । ସେହି ବିଚକ୍ଷଣତାରେ ସେ ଭୁବନେଶ୍ୱର ଓ ଯାଜପୁର ପରିବର୍ତ୍ତେ ମହାନଦୀ ଓ କାଠଯୋଡ଼ି ମଧ୍ୟବର୍ତ୍ତୀ ସ୍ଥାନରେ ବାରାଣସୀ କଟକ ବର୍ତ୍ତମାନ ( ବିଡ଼ାନସୀ ) ନାମକ ନଗର ବସାଇ ସେଠାରେ ଦୁର୍ଗ ନିର୍ମାଣ କରି ରାଜଧାନୀ କଲେ । ଦୁର୍ଗର ଅବଶେଷ କିନ୍ତୁ ବର୍ତ୍ତମାନ ବିଡ଼ାନସୀରେ ନଥିଲେ ମଧ୍ୟ, ସ୍ଥାନଟି ସେତିକି ଦୁର୍ଗ ଥିବାର ପରିଚୟ ମିଳେ । ବିଡ଼ାନସୀ ବର୍ତ୍ତମାନ କଟକ ସହରର ପଶ୍ଚିମରେ ପ୍ରାୟ ଦେଢ଼ମାଇଲ ଦୂରରେ । ଅତି ଅଳ୍ପ ମାତ୍ର ଅଧିବାସୀ ସେଠାରେ ଅଛନ୍ତି ।

ମରକତ କେଶରୀ—(ଖ୍ରୀଷ୍ଟାବ୍ଦ ୯୭୫—୯୮୯) ପିତାଙ୍କ ପ୍ରତିଷ୍ଠିତ ନୂତନ ରାଜଧାନୀ ବାରାଣସୀ କଟକର ରକ୍ଷା ନିମନ୍ତେ କାଠଯୋଡ଼ି ଓ ମହାନଦୀ କୂଳରେ ପଥରବନ୍ଧ କରାଇଥିଲେ । ମହାନଦୀକୂଳ ବନ୍ଧ ସ୍ଥାନେ ସ୍ଥାନେ ଭାଙ୍ଗି ଗଲାଣି । ମାତ୍ର କାଠଯୋଡ଼ି ପଥରବନ୍ଧ ଅଦ୍ୟାପି ଅକ୍ଷୁଣ୍ଣ ରହି ପ୍ରାଚୀନ ଉତ୍କଳବାସୀଙ୍କ ଅଦ୍ଭୁତ ଇଞ୍ଜିନିଅରିଂ ବିଦ୍ୟାର ପରିଚୟ ଦେଉଅଛି । ପରବର୍ତ୍ତୀ କାଳରେ ମରହଟ୍ଟା ଶାସନରେ ସେ ପଥରବନ୍ଧର ସଂସ୍କାର ହୋଇଥିଲା ।

ସାରଙ୍ଗକେଶରୀ—କଟକର ଦକ୍ଷିଣରେ ବର୍ତ୍ତମାନ ପଟ୍ଟିଆରେ ସେ ସାରଙ୍ଗଗଡ଼ ନାମକ ଏକ ଦୁର୍ଗ ନିର୍ମାଣ କରିଥିଲେ । ପଟ୍ଟିଆର ସାରଙ୍ଗହ୍ରଦ ପୁଷ୍କରିଣୀ ତାଙ୍କ ଦ୍ୱାରା ଖୋଳା ହୋଇଥିଲା ।

ମତ୍ସ୍ୟକେଶରୀ—ପୁରୀ ନିକଟରେ ଜଗନ୍ନାଥ ସଡ଼କରେ ଅଠରନଳା ନାମରେ ଏକ ବିସ୍ତୃତ ସେତୁଦ୍ୱାର ନଦୀ ବନ୍ଧାଇଥିଲେ । ଅଠରନଳା ଅଦ୍ୟାପି ଅକ୍ଷୁଣ୍ଣ ରହିଛି । ଏହା ପ୍ରାଚୀନ ଉତ୍କଳୀୟମାନଙ୍କର

ଖିଲ୍ଲଣଭାମର ଜୀବନ୍ତ ପ୍ରମାଣ । ଖିଲ୍ଲଣ ଯେ ସହସ୍ରାଧିକ ବର୍ଷକାଳ ଅକ୍ଷୁନ୍ନ ରହିପାରେ, ଉତ୍କଳୀୟମାନେ ଅଠରନଳାରେ ତାହା ଦେଖାଇଥିଲେ । ମୋଟରେ ଅଠରନଳାର ଲମ୍ବ ୨୦ଫୁଟ; ଏବଂ ଖିଲ୍ଲଣ ଗୁଡ଼ିକର ଓସାର ୧୬ ରୁ ୭ ଫୁଟ ପର୍ଯ୍ୟନ୍ତ । ମଧ୍ୟଖିଲ୍ଲଣଟି ସବୁଠାରୁ ବଡ଼ ଏବଂ ଦୁଇ ପାଖକୁ ଅଳ୍ପେ ଅଳ୍ପେ ଛୋଟ କରାଯାଇଛି । ଯେଉଁ ନଦୀ ଉପରେ ଅଠର ନଳା ଗଢ଼ା ହୋଇଛି, ତାହାର ନାମ 'ମଧୁପୁର'ନଦୀ; ସାଧାରଣରେ ତାହା 'ହୁଲୁ ହୁଳଅ' ବା 'ମଙ୍ଗଳା' ନାମରେ ପରିଚିତ । ମତ୍ସ୍ୟକେଶରୀ ୧୨୭୫ରୁ ୧୧୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

**ବୈଦେଶିକ ଆକ୍ରମଣ**—ସପ୍ତମ ଶତାବ୍ଦୀର ଆରମ୍ଭରେ ଶଶାଙ୍କ ନାମରେ ବଙ୍ଗଦେଶର ଜଣେ ରାଜା ଉତ୍କଳ ଆକ୍ରମଣ କରିବାର କେହି କେହି କହନ୍ତି । କେହି କେହି ମଧ୍ୟ କହନ୍ତି ଯେ ଭାରତର ଶେଷ ହିନ୍ଦୁ ସମ୍ରାଟ କାନ୍ୟକୁବ୍ଜର ଶିଳାଦିତ୍ୟ ହର୍ଷବର୍ଦ୍ଧନ ଉତ୍କଳ ଆକ୍ରମଣ କରି ନିଜ ସାମ୍ରାଜ୍ୟ ଭୁକ୍ତ କରିଥିଲେ । ମାତ୍ର ସେ ସମୟର କେଶରୀ ବଂଶର ପ୍ରବଳତମ ନରପତି ଲଲାଟେନ୍ଦୁ କେଶରୀ ଉତ୍କଳରେ ସ୍ୱାଧୀନ ନରପତି ଥିଲେ । ହର୍ଷବର୍ଦ୍ଧନଙ୍କ ସାମ୍ରାଜ୍ୟ ମଧ୍ୟରେ ଉତ୍କଳ କଦାପି ରହି ନ ଥିଲା ।

ଦଶମ ଶତାବ୍ଦୀର ଶେଷାର୍ଦ୍ଧ ଏବଂ ଏକାଦଶ ଶତାବ୍ଦୀର ପ୍ରାରମ୍ଭରେ ଦାକ୍ଷିଣାତ୍ୟର ଚୋଳ ରାଜ୍ୟ ପ୍ରବଳ ହୋଇ ଉଠିଲା । ସେହି ବଂଶର ରାଜେନ୍ଦ୍ର ଚୋଳ ଦେଶ ବିଦେଶ ଜୟ କଲେ । ଦେଶ ବିଜୟରେ ଉତ୍ତରରେ ବଙ୍ଗଦେଶ ପର୍ଯ୍ୟନ୍ତ ସେ ଜୟ କରିଥିଲେ । ମାତ୍ର ସେ ଉତ୍କଳ ଜୟ କରି ନ ଥିଲେ କି ଉତ୍କଳକୁ ମଧ୍ୟ ଆସି ନ ଥିଲେ । ସେ ଦକ୍ଷିଣ କଳିଙ୍ଗ ଜୟ କରି ଓଡ୍ର ବିଷୟକୁ ଯାତ୍ରା କଲେ ଏବଂ ସେଠାରୁ ଦକ୍ଷିଣ କୋଶଳ ଜୟ କରି ଛୋଟନାଗପୁର ବାଟେ ବଙ୍ଗଦେଶ ଆକ୍ରମଣ କରିବାକୁ ଯାଇଥିଲେ । ସୁତରାଂ ସେ ଆଧୁନିକ ଜୟପୁର ବସ୍ତର (ଓଡ୍ରଦେଶ) ମଧ୍ୟଦେଇ ମଧ୍ୟପ୍ରଦେଶ ଓ ସମ୍ବଲପୁର ବାଟେ ବଙ୍ଗଳାକୁ ଯାଇଥିଲେ । ସେ ଦେଶ ସେ

ଜୟ କରିଥିଲେ ସେଠାରେ ତାଙ୍କ ବିଜୟ ଅଳ୍ପକାଳ ସ୍ଥାୟୀ ହୋଇଥିଲା । ଫେରିବା ମାତ୍ରେ ବିଜିତ ରାଜ୍ୟମାନ ପୁଣି ସ୍ୱାଧୀନ ହୋଇ ବସିଲେ ଏବଂ ରାଜେନ୍ଦ୍ର ଚୋଳଙ୍କ ଅନ୍ତେ ଚୋଳ ରାଜ୍ୟର କ୍ଷମତା ମଧ୍ୟ ମ୍ଳାନ ହୋଇଗଲା ।

କେଶରୀ ବଂଶର ଅବସାନ—ସୁବର୍ଣ୍ଣକେଶରୀ କେଶରୀ ବଂଶର ଶେଷ ରାଜା ଥିଲେ । ସୁବର୍ଣ୍ଣକେଶରୀ ନିଃସନ୍ତାନ ଥିଲେ । କଥିତ ଅଛି ବାସୁଦେବ ନାମକ ସୁବର୍ଣ୍ଣକେଶରୀଙ୍କର ଜଣେ ବ୍ରାହ୍ମଣ ମନ୍ତ୍ରୀ ସୁବର୍ଣ୍ଣକେଶରୀଙ୍କ ଦ୍ୱାରା ଅପମାନିତ ହୋଇ ତାହାଙ୍କୁ ରାଜ୍ୟଚ୍ୟୁତ କରିବା ନିମନ୍ତେ ଦାକ୍ଷିଣାତ୍ୟରୁ ଚୋଡ଼ଗଙ୍ଗଙ୍କୁ ନିମନ୍ତ୍ରଣକରି ଆଣିଥିଲେ । କେହି କେହି ମଧ୍ୟ କହନ୍ତି ସୁବର୍ଣ୍ଣ କେଶରୀ ନିଃସନ୍ତାନ ଥିବାରୁ ତାହାଙ୍କ ଆଦେଶ ମତେ ବାସୁଦେବ ଚୋଡଗଙ୍ଗଙ୍କୁ ଉତ୍କଳର ରାଜା ସ୍ୱରୂପ ଦାକ୍ଷିଣାତ୍ୟରୁ ବରଣ କରି ଆଣିଥିଲେ । ଚୋଡଗଙ୍ଗ ଉତ୍କଳରେ ରାଜାହେବାରେ କେଶରୀ ବଂଶ ଶେଷ ପାଇଲା । ଚୋଡ଼ଗଙ୍ଗ ବୈଷ୍ଣବ ଥିଲେ; ସୁତରାଂ କେଶରୀ ବଂଶର ଅବସାନ ସଙ୍ଗେ ଶୈବ ଧର୍ମର ପ୍ରଭାବ ହ୍ରାସ ପାଇଲା । ୧୦୪୬ ଖ୍ରୀଷ୍ଟାବ୍ଦରେ କେଶରୀ ରାଜତ୍ୱ ଉତ୍କଳରୁ ଲୋପ ପାଇଥିଲା ।



# ଦ୍ୱିତୀୟ ଅଧ୍ୟାୟ

## କେଶରୀ ରାଜତ୍ୱରେ ଦେଶର ଅବସ୍ଥା

## (୫୨୦—୧୦୪୨ ଖ୍ରୀଷ୍ଟାବ୍ଦ)

ଶାସନ—କେଶରୀ ରାଜତ୍ୱରେ ଉତ୍କଳର ସୀମା କେତେଦୂର ବିସ୍ତୃତ ଥିଲା ନିର୍ଣ୍ଣୟ କରି କହି ହୁଏ ନାହିଁ । ମାଦଳାପାଞ୍ଜିରୁ ଜଣାଯାଏ କେଶରୀ ରାଜତ୍ୱ ବହୁଦୂର ବିସ୍ତୃତ ନ ଥିଲା । ଉତ୍ତରରେ କାଂସବାଂସ ନଦୀଠାରୁ ଦକ୍ଷିଣରେ ଋଷିକୁଲ୍ୟା ନଦୀ ପର୍ଯ୍ୟନ୍ତ, ଏବଂ ସମୁଦ୍ରଠାରୁ କାଳରେର ଅନୁଗୁଳ ବୌଦ୍ଧ ପ୍ରଭୃତି ରାଜ୍ୟ ପର୍ଯ୍ୟନ୍ତ କେଶରୀ ରାଜତ୍ୱ ବ୍ୟାପି ଥିଲା । କେଶରୀ ରାଜତ୍ୱରେ ଉତ୍କଳର କ୍ଷେତ୍ରଫଳ ବର୍ତ୍ତମାନ ହିସାବରେ ପ୍ରାୟ ୧୫୦୦୦ ବର୍ଗମାଇଲ ଏବଂ ରାଜସ୍ୱ ୧୫ ଲକ୍ଷ ମାତ୍ର ସ୍ଥିର ଥିଲା ।

ବର୍ତ୍ତମାନ ଯୁଗପରି ସେ କାଳରେ ଜମିଦାର ଓ ପ୍ରଜା ସୃଷ୍ଟି ନ ଥିଲା । ରାଜା ନିଜେ ଜମିଦାର ସ୍ୱରୂପ ଥିଲେ । ପ୍ରଜାମାନେ ନିଜେ ରାଜସ୍ୱ ଅଦାୟ କରି ରାଜକୋଷରେ ଜମା ଦେଉଥିଲେ । ବର୍ତ୍ତମାନ ଶାସନରେ ଜିଲ୍ଲା ଯେପରି, ସେତେବେଳେ ଗ୍ରାମ ସେହିପରି, ଶାସନରେ ଏକ ଏକ ମୂଳ ପିଣ୍ଡ ପ୍ରାୟ ଥିଲା । ଗ୍ରାମଶାସନ ଗ୍ରାମର 'ଜାନପଦ' ବା ପଞ୍ଚାୟତଙ୍କ ଉପରେ ଥିଲା । ସେହି ଜାନପଦ ସଭା ଗ୍ରାମବାସିଙ୍କ ଦ୍ୱାରା ନିର୍ବାଚିତ ହେଉଥିଲା । ଗ୍ରାମର ଶିକ୍ଷା, ସ୍ୱାସ୍ଥ୍ୟ, ଶାନ୍ତିରକ୍ଷା ଏବଂ ରାଜସ୍ୱ ଅଦାୟ ଆଦି ସକଳ ଗ୍ରାମଗତ କାର୍ଯ୍ୟ ସେହି ପଞ୍ଚାୟତଙ୍କ ଉପରେ ଥିଲା । କଉଡ଼ି ବର୍ତ୍ତମାନ ଟଙ୍କା ପଇସା ପରି ମୁଦ୍ରା ରୂପେ ଚଳୁଥିଲା । ଦେଶର ରାଜସ୍ୱରୁ ଶାସନ ବ୍ୟୟ ଯାଇ ବହୁତ ଟଙ୍କା ରାଜକୋଷରେ ସଞ୍ଚିତ ରହୁଥିଲା । ସେହି ସଞ୍ଚିତ ଟଙ୍କାରେ ଦେଉଳ, ପୋଖରୀ, ପଥ ଘାଟ ପ୍ରଭୃତି ଧର୍ମ ଓ ପ୍ରଜାହିତକର କାର୍ଯ୍ୟମାନ କରିବାକୁ ରାଜାମାନେ ସମର୍ଥ ହେଉଥିଲେ ।

କେଶରୀ ବଂଶୀୟ ରାଜାମାନେ ସାଧାରଣତଃ ଶାନ୍ତିପ୍ରିୟ ଥାଇ ଧର୍ମ କାର୍ଯ୍ୟରେ ବିଶେଷ ମନ ଦେଇଥିଲେ । ଦେଶ ବିଦେଶକୁ କେହି କେବେ ଯୁଦ୍ଧ ଅଭିଯାନରେ ଯାଇଥିବାର ଜଣା ନାହିଁ । କେଶରୀବଂଶର ଶେଷ କାଳକୁ ବେଳେ ବେଳେ ବୈଦେଶିକ ଶତ୍ରୁ ଉତ୍କଳ ଆକ୍ରମଣ କରିଥିଲେ । ମାତ୍ର ମୋଟରେ ରାଜା ଓ ଦେଶବାସୀ ଅତି ଶାନ୍ତିରେ ଥିଲେ । ପୁରୀରେ ଜଗନ୍ନାଥ ମନ୍ଦିର, ଭୁବନେଶ୍ୱରରେ ବହୁସଂଖ୍ୟକ ମନ୍ଦିର ନିର୍ମାଣ, ଯାଜପୁର ଭୁବନେଶ୍ୱର ଚୌଦ୍ୱାର ଓ କଟକରେ ଗଡ ଦୁର୍ଗ ଓ ରାଜଧାନୀ ସ୍ଥାପନ, ବୈତରଣୀ କାଠଯୋଡି ଓ ମହାନଦୀର ପଥରବନ୍ଧ, ପୁରୀର ଅଠରନଳା ଏବଂ ଦେଶ ମଧ୍ୟରେ ନାନାସ୍ଥାନରେ ପଥ ଘାଟ ନିର୍ମାଣ ପ୍ରଭୃତି ଧର୍ମ ଓ ସାଧାରଣ ପ୍ରଜାହିତକର କାର୍ଯ୍ୟରେ କେଶରୀ ରାଜାମାନଙ୍କର ଦୃଷ୍ଟି ବିଶେଷ ପଡ଼ିଥିଲା । ଏହା ବାଦ୍, ରାଜ୍ୟର ନାନାସ୍ଥାନରେ ଦେବଦେବୀ ସ୍ଥାପନ ମଧ୍ୟ କେଶରୀ ରାଜାଙ୍କର କୀର୍ତ୍ତି । ଏହିସବୁ କାର୍ଯ୍ୟରେ ଯେ ଅମାପ ଧନ ବ୍ୟୟ କରାଯାଇଥିବ ସନ୍ଦେହ ନାହିଁ । ଏଥିରୁ ଦେଶର ତଥା ରାଜାମାନଙ୍କର ବିଶେଷ ସମୃଦ୍ଧିର ପରିଚୟ ମିଳେ ।

ଦେଶବାସିଙ୍କ ଅବସ୍ଥା ଓ ଆଚାର ବ୍ୟବହାର— କେଶରୀ ରାଜତ୍ୱ କାଳରେ ରାଜାମାନଙ୍କର ଧାରାବାହିକ ଘଟଣାବଳି ଓ ରାଜତ୍ୱକାଳ ଇତିହାସରୁ ପରିଷ୍କାର ଜଣାଯାଇ ନ ଥିଲେ ହେଁ ଦେଶବାସୀଙ୍କ ଅବସ୍ଥା ବିଷୟରେ ବହୁତ କଥା ଜଣାଯାଏ । ରାଜାମାନଙ୍କର ଘଟଣାବଳିନେଇ ଇତିହାସ ଗଢା ହୁଏ ନାହିଁ । ଦେଶବାସିଙ୍କ ଅବସ୍ଥା ଓ ସମାଜ ଜୀବନୀହିଁ ପ୍ରକୃତ ଇତିହାସର ବିଷୟ । ସେ ଜୀବନୀ ବା ଇତିହାସର ପ୍ରଧାନ ସାକ୍ଷ୍ୟ ଉତ୍କଳୀୟ-ମାନେ ଦେବମନ୍ଦିରମାନଙ୍କରେ ରଖି ଯାଇଅଛନ୍ତି । ମନ୍ଦିରମାନଙ୍କରେ ଯେ ଅସଂଖ୍ୟ ନରଦେବତାଙ୍କ ମୂର୍ତ୍ତି ଓ ଲତାପତ୍ର ଜୀବଜନ୍ତୁ କାମ ହୋଇଛି ସେଥିରୁ ସେ କାଳର ଉତ୍କଳବାସିଙ୍କ ଅବସ୍ଥା ଓ ରୀତିନୀତି ବିଷୟର ବହୁତ ପରିଚୟ ମିଳେ । କେଶରୀ ରାଜତ୍ୱର ବିଶ୍ୱାସଯୋଗ୍ୟ

ଇତିହାସ ଲେଖି ଯାଇନାହିଁ । ମାତ୍ର ଭୁବନେଶ୍ୱରର କୀର୍ତ୍ତିକାହାଣୀ ସେ ଅଭାବ ବହୁପରିମାଣରେ ଦୂର କରୁଅଛି ।

କେଶରୀମାନେ ପ୍ରଧାନ ଶିବଉପାସକ ଥିଲେ ସତ୍ୟ, ଏବଂ ଶୈବଧର୍ମ ରାଷ୍ଟ୍ରୀୟଧର୍ମରୂପେ ଚଳୁଥିଲେ ସୁଦ୍ଧା, ବୌଦ୍ଧ ଓ ଜୈନଧର୍ମ ଉତ୍କଳରୁ ଲୋପ ପାଇ ନ ଥିଲା । ଭୁବନେଶ୍ୱର ମନ୍ଦିରମାନଙ୍କରେ କେତେକ ଯୋଗୀ ଚିତ୍ର ଅଛି । ସେମାନଙ୍କର ଲମ୍ବା ଦାଢ଼ୀ, ମୁଣ୍ଡରେ ଉଚ୍ଚଜଟା କୌପୀନ ବସନ; ମାଳିମାଳା କ ପଇତା ସେମାନଙ୍କ ଦେହରେ ନାହିଁ । ସେମାନଙ୍କୁ ଦେଖିଲେ ଦେଶରେ ଜୈନ ଓ ବୌଦ୍ଧ ତପସ୍ୱୀମାନେହିଁ ତପସ୍ୟା କରୁଥିଲେ, ବୋଧହୁଏ । ରାଜା ଓ ସମ୍ଭ୍ରାନ୍ତ ଲୋକେ ବର୍ତ୍ତମାନ ଉପକନପର ଏକପ୍ରକାର ପୋଷାକ ପିନ୍ଧୁଥିଲେ । ପାଇଜାମା ଜଙ୍ଘିଆ ମଧ୍ୟ ପୁରୁଷ ପୋଷାକ ଥିଲା । ଯେତେବେଳେ ଉତ୍କଳରେ ଦରଜିମାନେ ଥିଲେ, ଏବଂ ସେମାନେ ଉତ୍କୃଷ୍ଟ ସିଲେଇକାମ କରି ପାରୁଥିଲେ । ସମ୍ଭ୍ରାନ୍ତ ସ୍ତ୍ରୀ ଲୋକେ ଉତ୍କୃଷ୍ଟ ଛିଟଲୁଗା ପିନ୍ଧୁଥିଲେ । ଛିଟଲୁଗା ନିମନ୍ତେ ଉତ୍କଳ ଚିରକାଳ ପ୍ରସିଦ୍ଧ ଥିଲା । କେଶରୀ ରାଜତ୍ୱ ପୂର୍ବରୁ ଛିଟଲୁଗାର କାରିଗରି ଏ ଦେଶରେ ବହୁକାଳଯାଏ ପ୍ରଶଂସା ପାଇଆସିଛି । ପୋଷାକ ପରିଚ୍ଛଦ ପରି ଗହଣା ଗଣ୍ଠି କାମ ଅତି ସୂକ୍ଷ୍ମ ଏବଂ ଉତ୍କୃଷ୍ଟ ଥିଲା । ମୁଣ୍ଡ, କାନ, ନାକ, ବେକ, ବାହୁ, ହାତ, ଅଣ୍ଟା, ପାଦରେ ସ୍ତ୍ରୀଲୋକେ ନାନା ପ୍ରକାର ସୁନାରୂପା ଅଳଙ୍କାର ମଣ୍ଡିହେଉଥିଲେ । ପୁରୁଷମାନେ ମଧ୍ୟ କାନ, ବେକ, ହାତ, ଓ ଅଣ୍ଟାରେ ନାନାପ୍ରକାର ଅଳଙ୍କାର ପିନ୍ଧୁଥିଲେ । ହାସ୍ୟପ୍ରସ୍ତତ ରାଜକର୍ମଚାରୀମାନେ ମୁଣ୍ଡରେ ପଗଡ଼ି ବାନ୍ଧୁଥିଲେ ।

ବର୍ତ୍ତମାନ ପରି ସେ ଯୁଗରେ ଦେବତା ଓ ରାଜାମାନଙ୍କ ନିମନ୍ତେ ଛତ୍ର ଚାମର ବ୍ୟବହାର କରାଯାଉଥିଲା । ବର୍ତ୍ତମାନ ପରି କାଠ କଳସ ବ୍ୟବହାର ମଧ୍ୟ ଥିଲା । ସୁନ୍ଦର ଓ ସୂକ୍ଷ୍ମକାରୁଖଚିତ ଖଟ, ପଲଙ୍କ, ଚୌକି ଲୋକେ ଅବସ୍ଥା ଅନୁସାରେ ବ୍ୟବହାର କରୁଥିଲେ । କଠୋଉ ଓ ଏକପ୍ରକାର

ଯୋଡା ସମାଜରେ ଚଳୁଥିଲା । ପାଲଙ୍କି, ସବାର, ଚୌଦୋଳର ବ୍ୟବହାର ଥିଲା । କଂସା ପିତଳର ନାନାପ୍ରକାର ବାସନ ଚଳୁଥିଲା । ଗଡ଼ୁ ତାଟ ଥାଳି ବାସନ ପିକଦାନୀ ଫୁଲଦାନି ପ୍ରଭୃତି ବହୁପ୍ରକାର ଜିନିଷର ବ୍ୟବହାର ଦେଖାଯାଏ । ଦର୍ପଣ ଚିରଣୀ ଅଳଙ୍କାର ପ୍ରଭୃତି ମଧ୍ୟ ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ଥିଲା ।

ସୂକ୍ଷ୍ମବିଦ୍ୟା ମଧ୍ୟରେ କାଠ ଓ ପଥରର ସୁନା ରୂପା ପିତଳ କଂସାର ସ୍ୱର୍ଣ୍ଣକାମ ବାଦ୍ ସଙ୍ଗୀତବିଦ୍ୟାର ଆଦର କିଛି ଅଳ୍ପ ନ ଥିଲା । ଏହି ସମସ୍ତ ଭାରତରେ ସଙ୍ଗୀତ ଚର୍ଚ୍ଚାର ଶ୍ରେଷ୍ଠ ସମୟ । ଉତ୍କଳବାସୀଙ୍କର ଉତ୍କର୍ଷତା ମଧ୍ୟ ସେହିପରି ଥିଲା । ଢୋଲ, ପଖୋଜ, ବୀଣା, ମହୁରୀ, ଘଣ୍ଟା, ବଂଶୀ ପ୍ରଭୃତି ବହୁବିଧ ବାଦ୍ୟଯନ୍ତ୍ରର ବ୍ୟବହାର ହେଉଥିଲା । ମନ୍ଦିରମାନଙ୍କରେ ସଙ୍ଗୀତ ତାନରେ ନାରୀର ଯେ ଦୃଶ୍ୟମାନ ଅଛି ତାହା ଅତି ପ୍ରୀତିକର ଓ ସୁରୁଚିସମ୍ପନ୍ନ ।

ସାଧାରଣ ଯାନ ମଧ୍ୟରେ ଶଗଡ଼ ରଥ ନୌକା ଘୋଡା ବଳଦ ହାତୀ ପ୍ରଧାନ ଥିଲା । ଯୁଦ୍ଧ ମଧ୍ୟରେ ଧନୁଶର ବର୍ଚ୍ଛା ଗଦା ତରବାରୀ ଛୁରୀ କଟାରୀ ତ୍ରିଶୂଳ ଢାଲ ଖଡ୍ଗର ବ୍ୟବହାର ଯୁଦ୍ଧ ଅଭିଯାନରେ ଦେଖାଯାଏ । ଏହା ବାଦ୍ ଲମ୍ବାଲମ୍ବା ଛତ୍ର ତ୍ରିକୋଣୀ ପତାକାର ବ୍ୟବହାର ମଧ୍ୟ ଥିଲା । ଯୁଦ୍ଧରେ ଅଶ୍ୱ ହସ୍ତୀ ରଥ ପ୍ରଧାନ ଯାନ ଥିଲା ।

ଚୀନପରିବ୍ରାଜକ ହୁଏନ୍‌ସାଂଙ୍କ ଦେଶବର୍ଣ୍ଣନା ପରେ ଦିଆଯିବ । ତହିଁରୁ ଜଣାଯାଏ ଦେଶବାସୀ ବଡ ସରଳ ସତ୍ୟବାଦୀ ଓ ସୁରୁଚିସମ୍ପନ୍ନ ଥିଲେ । ଅଧିକ ବିଳାସ ସମାଜରେ ପଶି ନ ଥିଲା । ଶିକ୍ଷା ସେତେବେଳେ ସାଧାରଣ ଥିଲା । ସଂସ୍କୃତ ଭାଷା ରାଜଭାଷା ଥିଲା । ଦାନପତ୍ର ଓ ଅନୁଶାସନମାନଙ୍କରେ ସଂସ୍କୃତ ଭାଷାର ବ୍ୟବହାର ହେଉଥିଲା । ଭୁବନେଶ୍ୱରର ମନ୍ଦିରମାନଙ୍କରେ ଶିକ୍ଷା ଦାନର ଯେ ଦୃଶ୍ୟମାନ ଅଛି, ତହିଁରେ ସ୍ତ୍ରୀମାନେ ଗୁରୁ ସମ୍ମୁଖରେ ପୁରୁଷମାନଙ୍କ ସହିତ

ସମାନ ଅସନରେ ବସି ଶିକ୍ଷା ଗ୍ରହଣ କରୁଥିବାର ଦେଖାଯାଏ । ସ୍ତ୍ରୀଶିକ୍ଷା ଓଡ଼ିଶାର ଅତି ପ୍ରାଚୀନ କାଳର ପ୍ରଥା । ରାଜପୁତ୍ରଠାରୁ ସାଧାରଣ କୃଷକ ପର୍ଯ୍ୟନ୍ତ ସ୍ତ୍ରୀ ପୁରୁଷ ସକଳ ଶ୍ରେଣୀର ଲୋକ ଏକ ଆସନରେ ବସି ଏକ ଗୁରୁମୁଖରୁ ଶିକ୍ଷା ଲାଭ କରୁଥିଲେ ।

ଶିଳ୍ପ—କେଶରୀ ରାଜତ୍ୱ କାଳରେ ଉତ୍କଳୀୟମାନେ ଶିଳ୍ପକାର୍ଯ୍ୟରେ ଆଶ୍ଚର୍ଯ୍ୟ-ଜନକ ଉନ୍ନତି କରିଥିଲେ । ଉତ୍କୃଷ୍ଟ କଳା ଯୋଗେ ଦେଶ ଦେଶ ଦେଶରେ ନାମ ଉଜ୍ଜଳ ହୋଇଥିବାର କହନ୍ତି । ଶିଳ୍ପ ମଧ୍ୟରେ ପଥରର ଭାସ୍କର କାର୍ଯ୍ୟ, ଲୁହା ପିତଳର କାମ ଓ ଜୀବନର ଆବଶ୍ୟକୀୟ ଅନ୍ୟାନ୍ୟ କାର୍ଯ୍ୟମାନ ପ୍ରଧାନ ଥିଲା । ପ୍ରସ୍ତର ଶିଳ୍ପ ବା ଭାସ୍କର କାର୍ଯ୍ୟର ଜୀବନ୍ତ ସାକ୍ଷୀ ଭୁବନେଶ୍ୱରର ମନ୍ଦିରମାନ ଅଦ୍ୟାପି ବିଦ୍ୟମାନ ଅଛି । ଖଣ୍ଡଗିରି ଓ ଉଦୟଗିରି ଗୁମ୍ଫାମାନଙ୍କରେ ଯେଉଁ ଶିଳ୍ପର ଅଧମ ଅବସ୍ଥା ଦେଖାଯାଏ, ତାହା କାଳକ୍ରମେ ଉନ୍ନତ ଓ ପରିମାର୍ଜିତ ହୋଇ ଭୁବନେଶ୍ୱର ମନ୍ଦିରମାନଙ୍କ ଗାତ୍ରରେ ପ୍ରତିଫଳିତ ହୋଇଅଛି । ନାନା ପ୍ରକାର ଲତାପତ୍ର, ଫଳ ପୁଷ୍ପର କାମ, ପଶୁ ପକ୍ଷୀ ଓ ଅନ୍ୟାନ୍ୟ ଜୀବଜନ୍ତୁର ମୂର୍ତ୍ତି, ଏବଂ ନାନା ଦେବତାଙ୍କ ପ୍ରତିମୂର୍ତ୍ତି ସବୁ ଦେଖିଲେ ଦେଢ଼ ହଜାର ବର୍ଷ ପୂର୍ବେ ଉତ୍କଳୀୟ ଶିଳ୍ପୀମାନଙ୍କର ଅଲୌକିକ ପ୍ରତିଭା, ସହଜ କଳାକୁଶଳତା, ଏବଂ ଅଦ୍ଭୁତ ଗଠନକୌଶଳ ବର୍ତ୍ତମାନ ଉନ୍ନତ ଯୁଗର ଶିଳ୍ପୀମାନଙ୍କ ମନରେ ଆଶ୍ଚର୍ଯ୍ୟ ଜନ୍ମାଏ । ସୁନା ରୂପାର କାମ ପରି ପଥରରେ ଲତା ପତ୍ରର କାମ ଅତ୍ୟନ୍ତ ସୂକ୍ଷ୍ମ ଓ ସୁନ୍ଦର । ଜୀବଜନ୍ତୁମାନେ ଯେପରି ପୂର୍ଣ୍ଣ ପ୍ରାଣରେ ପ୍ରକୃତିର ଅନନ୍ତ କୋଳରେ ସ୍ୱଚ୍ଛନ୍ଦ ବିହାର କରୁଥିବାର ବୋଧହୁଏ । ମନୁଷ୍ୟର ପ୍ରତିକୃତି ଗୁଡ଼ିକ ଅଦ୍ଭୁତ ଆଶ୍ଚର୍ଯ୍ୟଜନକ । ବିଶେଷ କଥା ମନୁଷ୍ୟର ହାବଭାବ, ମନର ସକଳ ପ୍ରକାର ଅବସ୍ଥା ବହିରଙ୍ଗରେ ପୂର୍ଣ୍ଣରୂପେ ପ୍ରକାଶ ପାଇଛି । ଯୁଦ୍ଧ ମଧ୍ୟରେ ସୈନିକର ମନଭାବ, ପ୍ରେମରେ ପ୍ରେମିକର ଭାବୋଚ୍ଛ୍ୱାସ, ନୃତ୍ୟମଦରେ ନର୍ତ୍ତକୀର ପୂର୍ଣ୍ଣପ୍ରାଣ, ବିଚ୍ଛେଦରେ ବିରହୀର

ଶୂନ୍ୟ ପ୍ରାଣ, ସଟମ୍ଭାଙ୍କରେ ଯୋଗିର ନିଶ୍ଚିନ୍ତ ହୃଦୟ ଇତ୍ୟାଦି ମନୁଷ୍ୟମନର ବିଭିନ୍ନ ଅବସ୍ଥାର ବିଭିନ୍ନ ଭାବ ପ୍ରସ୍ତର ଦେହରେ ଅତି ଉଚ୍ଚ ଭାବରେ ଖୋଳା ଯାଇଛି । ସ୍ଥୂଳତଃ ମନୁଷ୍ୟଜୀବନରେ ଯେତେ ଭାବ ପରିବର୍ତ୍ତନ ଘଟିପାରେ, ମନୁଷ୍ୟ ଯେତେ ଯେତେ ଅବସ୍ଥାରେ ଜୀବନ ଯାପନ କରି ପାରିବା ସମ୍ଭବ— ଗୃହୀ, ସନ୍ୟାସୀ, ରାଜା, ସୈନିକ, ପ୍ରେମିକ, ମଲ୍ଲ, ଶିକାରୀ, ଗାୟକ, ବାଦକ, ନର୍ତ୍ତକ, ଶିକ୍ଷକ, ଶିଷ୍ୟ, ବଣିକ, କୃଷକ, ନାବିକ, କମ୍ଭକ, ଧର୍ମିକ ପ୍ରଭୃତି ସକଳ ଅବସ୍ଥାରେ ମନୁଷ୍ୟର ଭାବ ଭଙ୍ଗି ଅତି ଆଶ୍ଚର୍ଯ୍ୟରୂପେ ସେକାଳର ଉତ୍କଳୀୟ ଶିଳ୍ପୀମାନେ ପ୍ରସ୍ତର ଦେହରେ ଦେଖାଇଥିଲେ । ପୁଣି ସେତେ ହଜାର ବର୍ଷ ତଳେ କାମ ହୋଇଥିଲେ ସୁଦ୍ଧା ସେ ସବୁ ଏବେ ମଧ୍ୟ ଜୀବନ୍ତ ଓ ନୂତନ ପରି ବୋଧହୁଏ ।

ଏହି ସବୁ ଶିଳ୍ପରେ ଏକ ଧର୍ମ ଜୀବନ ଓ ଆଧ୍ୟାତ୍ମିକତା ଉତ୍କଳଶିଳ୍ପୀଙ୍କର ପରମ ଆଦର୍ଶ ଥିଲା । କେବଳ ପ୍ରକୃତିର ଅନୁକରଣ ନ କରି ସେମାନେ ଧର୍ମଜୀବନର ପୂର୍ଣ୍ଣ ମୁକ୍ତତା ଆଡ଼କୁ ସର୍ବଦା ଦୃଷ୍ଟି ଦେଉଥିଲେ । କଳା ଅନନ୍ତ କଳାର ବିକାଶ ମଧ୍ୟ ଅନନ୍ତ, ସୁତରାଂ କଳାର ବିକାଶ ଯେତେ ଉତ୍କୃଷ୍ଟ ଓ ପୂର୍ଣ୍ଣ ହେଲେ ମଧ୍ୟ, ତାହା ଅନନ୍ତକଳାର ବ୍ୟଞ୍ଜନା ମାତ୍ର । ଦେବ ଦେବୀଙ୍କ ଉଦ୍ଦେ-ଶ୍ୟରେ ଉତ୍ସୃଷ୍ଟ ଓ ସ୍ଥାପିତ ମନ୍ଦିରନିର୍ମାଣରେ ଯେପରି ଉତ୍କଳବାସିଙ୍କର ଏକାନ୍ତ ଧର୍ମମୟ ପ୍ରାଣ ପ୍ରକାଶ ପାଇଛି, ଦେବତା ଆକାରରେ ନରରୂପ କଳ୍ପନା କରି ଏବଂ ଉପସ୍ଥିତ ବିକାଶରେ କଳାର ବ୍ୟଞ୍ଜନା ମାତ୍ର ସୂଚନା ଦେଇ ଉତ୍କଳୀୟ ଶିଳ୍ପିମାନେ ସେହିପରି କଳାର ଅନନ୍ତତା ଆଡ଼କୁ ଆକୃଷ୍ଟ ହୋଇଛନ୍ତି । ଏକଥା ନ ବୁଝି, କେହି କେହି ଦୋଷ ଦେଖାନ୍ତି, ଉତ୍କଳୀୟମାନେ ସିଂହ ଦେଖି ନ ଥିଲେ, ବା ମନୁଷ୍ୟ ଦେହର ମାଂସପେଶୀ ଦେଖାଇବାରେ ସୁଦକ୍ଷ ନଥିଲେ ମାତ୍ର ଏହି ଅଭାବମାନ ଶିଳ୍ପର ନ୍ୟୂନତା ନ ଦେଖାଇ, ବରଂ ତାହାର ପୂର୍ଣ୍ଣତା ଏବଂ ଅନନ୍ତ ଆଧ୍ୟାତ୍ମିକତା ପ୍ରମାଣ କରୁଅଛି ।

ଭୁବନେଶ୍ୱରରେ ଶିଳ୍ପର ଅନ୍ୟ ବିଶେଷତ୍ୱ ମନ୍ଦିରର ବର୍ଗାକାର ଅଭାବ ଏବଂ ସୁନ୍ଦର ଗଠନ ପ୍ରଣାଳୀ । ମନ୍ଦିର ଏତେ ବୃହତ ଏବଂ ତାହାର ସର୍ବାଙ୍ଗ ଶିଳ୍ପର ବୈଚିତ୍ର୍ୟରେ ଏତେ ଭୂଷିତ ଦେଖି ବୈଦେଶିକ ବହୁ ଲେଖକମାନେ ଆଶ୍ଚର୍ଯ୍ୟାନ୍ୱିତ ହୋଇଛନ୍ତି । ଭୁବନେଶ୍ୱରର ସକଳ ମନ୍ଦିରମାନଙ୍କ ମଧ୍ୟରେ ମୁକ୍ତେଶ୍ୱର ମନ୍ଦିର ଶିଳ୍ପରେ ସର୍ବାଙ୍ଗ ସୁନ୍ଦର ବୋଲି ପ୍ରଶଂସିତ । କେହୁ ଲେଖକ ଏହାକୁ ଉତ୍କଳ ଶିଳ୍ପର "ସାରସଂଗ୍ରହ" ଏବଂ କେହି ଅବା ଏହାକୁ 'ପଥରରେ ସ୍ୱପ୍ନ' ଆଖ୍ୟା ଦେଇଛନ୍ତି । ବହୁ ଶତାବ୍ଦି ଧରି ଭୁବନେଶ୍ୱରର ମନ୍ଦିରମାନ ନିର୍ମିତ ହୋଇଅଛି । ଉତ୍କଳ କଳାର ଆରମ୍ଭରୁ ପରିଣତି ପର୍ଯ୍ୟନ୍ତ ସକଳ ଅବସ୍ଥା ଭୁବନେଶ୍ୱରରେ ପ୍ରକଟିତ ହେବାର ସୁବିଧା ଘଟିଛି । ସୁତରାଂ ଭୁବନେଶ୍ୱରକୁ ଉତ୍କଳ କଳା ଇତିହାସର ସାରସଂଗ୍ରହ ବୋଲି କୁହା ଯାଇପାରେ ।

କାଷ୍ଠଶିଳ୍ପ—ଏହା ଗଲା ପ୍ରସ୍ତର ଶିଳ୍ପ । କାଷ୍ଠଶିଳ୍ପ ମଧ୍ୟ ଅନୁସାରେ ଉନ୍ନତ ଥିବାର ପ୍ରମାଣ ମିଳେ । ଅବଶ୍ୟ ସେ କାଳର କାଠ କାମର ଏବେ ଚିହ୍ନ ନାହିଁ । କେବଳ ଭୁବନେଶ୍ୱର ବଡ଼ ଦେଉଳ ଦ୍ୱାରରେ ଦୁଇଟି କବାଟ ଅଛି; ସେ କାଳର ବଢେଇମାନଙ୍କ କାରିଗରିର ଏହା ଯଥେଷ୍ଟ ପ୍ରମାଣ ଦିଏ । ଯେଉଁ ଶିଳ୍ପିମାନେ ପଥରରେ କାମ କରୁଥିଲେ, ସେମାନେ ମଧ୍ୟ ସେହି ବଢେଇ; କାଠ କାମ କରିବା ସେମାନଙ୍କର ପାରମ୍ପରିକ ବ୍ୟବସାୟ । କାମ ଦେଖାଇବା ପାଇଁ ପଥର ଅପେକ୍ଷା କାଠ ଅଧିକ ସହଜ ପଦାର୍ଥ । ଯେଉଁ ଶିଳ୍ପିମାନେ ପଥରରେ ସେପରି ସୁନ୍ଦର କାରିଗରି ଦେଖାଇଥିଲେ, କାଠରେ ସେମାନଙ୍କ ହସ୍ତପାଟବ ଅଧିକ ଆଶ୍ଚର୍ଯ୍ୟଜନକ ଥିବ, ସନ୍ଦେହ ନାହିଁ । ପଲଙ୍କ, ଚୌକି ପ୍ରଭୃତିର କାମ ଭୁବନେଶ୍ୱର ମନ୍ଦିରମାନଙ୍କ ଦେହରେ ଯେପରି ସୁନ୍ଦର ଭାବରେ ଖୋଳା ଯାଇଛି, ମୌଳିକ ଜିନିଷମାନ ତାହା ଅପେକ୍ଷା ଯେ ଅଧିକ ସୁନ୍ଦର ଓ ଭୂଷଣର ଥିଲା, କହିବା ବାହୁଲ୍ୟ ମାତ୍ର । ନୌକା ଓ ଜାହାଜ ନିର୍ମାଣ ଉତ୍କଳରେ ବଢେଇଙ୍କର ଚିରନ୍ତନ କାମ । ପୂର୍ବେ ବାଣିଜ୍ୟ କର୍ମବ୍ୟାପେ

କୁହାଯାଉଛି , ଉତ୍କଳର କେତେଜଣମାନେ ବଡ ବଡ ଜାହାଜମାନ, ଏପରିକି ହାତିବୋଝଇଜମାନ, ତିଆରି କରୁଥିଲେ । ଉତ୍କଳ ଉପକୂଳବର୍ତ୍ତୀ ବନ୍ଦରମାନ ବୋଇତ ନିର୍ମାଣରେ ବର୍ତ୍ତମାନଙ୍କର କଳାକୌଶଳର ଉତ୍କୃଷ୍ଟ ପ୍ରଦର୍ଶନ ଥିଲା ।

ଲୌହଶିଳ୍ପ—ଲୁହାର କାରିଗରୀ ମଧ୍ୟ ବିଶେଷ ଉତ୍କର୍ଷତା ପାଇଥିଲା । ବର୍ତ୍ତମାନ ଯୁଗରେ ଲୁହା କାମ ନିମନ୍ତେ ଯେତେ କଳ କାରଖାନାର ସୃଷ୍ଟି ହୋଇଛି ; ସେତେବେଳେ ସେ ସବୁ ଜଣା ନ ଥିଲା । କମାରମାନେ କେବଳ ନିଜ ହାତ ହାତୁଡରେ ଯାହା କିଛି କାମ କରୁଥିଲେ । ସେ କାଳର ଲୁହା କାମ ମଧ୍ୟରେ ଭୁବନେଶ୍ୱରର ମନ୍ଦିରରେ ଯେଉଁ କଡିମାନଙ୍କର ବ୍ୟବହାର କରାଯାଇଛି, ବର୍ତ୍ତମାନ କଳକାରଖାନା ଯୁଗର ଦର୍ଶକମାନେ ତାହା ଦେଖି ବିସ୍ମିତ ହୁଅନ୍ତି । ଭୁବନେଶ୍ୱରର କଡିମାନ ୨୫ ଫୁଟ ପର୍ଯ୍ୟନ୍ତ ଲମ୍ବ ଏବଂ ତଦନୁସାରେ ମୋଟା । ଏହାର ଗଠନ ମଧ୍ୟ ବିଚିତ୍ର । ପ୍ରାୟ ଏକଇଞ୍ଚ ଉଚ୍ଚ ଓ ଓସାର ୨ । ୩ ଫୁଟ ଲମ୍ବ ବହୁତ ଗୁଡିଏ ଲୁହାଛଡକୁ ଏକଠି ରଖି ଯାଇ ସେମାନଙ୍କ ଉପରେ ତରଳ ଲୁହା ଢଳାଯାଇଛି । ତରଳ ଲୁହା ଛଡ଼ଗୁଡିକର ଫାଙ୍କମାନଙ୍କରେ ପୂର୍ଣ୍ଣ ହୋଇ ସକଳ ଛଡ ଗୁଡିକୁ ଏକ ବିରାଟ କଡି ଆକାରରେ ସୁଦୃଢ କରିଛି । ଏପରି ନିର୍ମିତ ହୋଇ କଡି ଗୁଡ଼ିକ କିଛି ଅଳ୍ପ ଶକ୍ତ ହୋଇ ନାହିଁ । ପ୍ରମାଣ କରାଯାଇଛି, ଭୁବନେଶ୍ୱରର କଡି ପ୍ରତ୍ୟେକ ବର୍ଗ ଇଞ୍ଚରେ ୨୦ ଟନ ପର୍ଯ୍ୟନ୍ତ ଭାର ସମ୍ଭାଳି ପାରେ, ଅଥଚ ବର୍ତ୍ତମାନ ଯୁଗର କଳ କାରଖାନାରୁ ଇ ପ୍ରସ୍ତୁତ ଲୁହା କଡି ପ୍ରତିବର୍ଗ ଇଞ୍ଚରେ ୨୩ ଟନ ପର୍ଯ୍ୟନ୍ତ ବୋଝ ସମ୍ଭାଳିଲେ ଯଥେଷ୍ଟ ହେଲା । ଅଧୁନିକ ବିଜ୍ଞାନଯୁଗର ହେତ ହଜାର ବର୍ଷ ପୂର୍ବରେ ଉତ୍କଳର କମାର 'ଗ୍ରାଡ଼' ମାନଙ୍କରୁ ଏହିପରି ଅତ୍ତର୍ଯ୍ୟଜନକ କଡିମାନ ଯେ ପ୍ରସ୍ତୁତ ହେଉଥିଲା, ତାହାହିଁ ବଡ ହେବ କଥା । ଅଥଚ ସେହି ସମୟରେ ଏବଂ ତାହାର ବହୁ ପରବର୍ତ୍ତୀ କାଳ ପର୍ଯ୍ୟନ୍ତ ଇଂଲଣ୍ଡରେ କମାରମାନେ

ବଡ଼ ବଡ଼ ସମୁଦ୍ରରେ ଚଳାଇ ଦିଆଯାଉଥିଲା ବା ଜାହାଜ ଗଢ଼ିପାରୁଥିଲେ, ଅପଣାଙ୍କୁ ବଡ଼ କାରିଗର ମନେ କରୁଥିଲେ । ଏପରିକି ୨୦।୨୫ ବର୍ଷ ପୂର୍ବେ ଇଉରୋପ ଓ ଆମେରିକାର ସକଳ କଳକାରଖାନା ଏକତ୍ର ମିଶିଲେ ଭୁବନେଶ୍ୱର କୀର୍ତ୍ତିରୁ ଗୋଟିଏ ପ୍ରସ୍ତୁତ କରିବାପାଇଁ ସମର୍ଥ ନ ଥିଲା ।

ଲୁହାକଡ଼ ବର୍ତ୍ତମାନ ଦେଖାଯାଉ ଥିବାରୁ ତାହାର କାରିଗରୀ ଆଖିରେ ପଡ଼ୁଛି । ମାତ୍ର ଉତ୍କଳର ବଜାର ଘାଟମାନଙ୍କରୁ ଅତ୍ୟନ୍ତ କେତେ ଯେ ବଡ଼ ଓ ସାନ, ହାଲୁକା ଏବଂ ଲୌହଜାତ କଳସମାନ ତିଆରି ହୋଇ ବୈଦେଶିକ ବାଣିଜ୍ୟ ହାଟରେ ଆଦର ପାଉଥିଲା, କହିହୁଏ ନାହିଁ । ଷ୍ଟିମ୍ ଓ ବଡ଼ ବୋଇତ ନିର୍ମାଣରେ ଲୁହା କଳସ କେତେ ଯେ ଲାଗୁଥିବ, ସନ୍ଦେହ ନାହିଁ ।

ଲୁହାକାମ ଏତେବେଳ ପର୍ଯ୍ୟନ୍ତ ଅଛି । ଅନ୍ୟାନ୍ୟ ଧାତବ ପଦାର୍ଥର କୌଣସି ସାକ୍ଷାତ ପ୍ରମାଣ ବର୍ତ୍ତମାନ ମିଳେନାହିଁ । ମାତ୍ର ମନ୍ଦିରମାନଙ୍କ ଦେହରେ କଂସା ପିତଳ ପ୍ରସ୍ତୁତର କାମରୁ, ଯେ ସକଳ କାର୍ଯ୍ୟ ପ୍ରଚୁର ତିଆରି ହେଉଥିଲା ଅନୁମାନ କରାଯାଏ । ସ୍ଥୂଳତଃ, ସକଳଶ୍ରେଣୀର ଶିଳ୍ପରେ କଂସାପିତଳ, ଲୁହା, ପଥର କାମଠାରୁ ସୂତା ଓ ପାଟ କାମ ପର୍ଯ୍ୟନ୍ତ ସବୁଥିରେ ଉତ୍କଳୀୟ ଶିଳ୍ପିମାନଙ୍କର ହସ୍ତପାଟବର ଯଥେଷ୍ଟ ପ୍ରମାଣ ମିଳେ ।

ବାଣିଜ୍ୟ ଓ ଉପନିବେଶ—ଶିଳ୍ପ ଓ ବାଣିଜ୍ୟ ଉତ୍କର୍ଷତା ଓ ବିସ୍ତାର ଜମଜ୍ଜେ ପରସ୍ପର ଉପରେ ନିର୍ଭର କରେ । ଶିଳ୍ପ ଉତ୍କର୍ଷ ଓ ପ୍ରଚୁର ନ ହେଲେ ବାଣିଜ୍ୟ ଅସମ୍ଭବ ; ଏବଂ ବାଣିଜ୍ୟର ବହୁଳ ବିସ୍ତୃତ ନ ହେଲେ ଶିଳ୍ପଜାତ ଦ୍ରବ୍ୟର ଉତ୍କର୍ଷତା ଓ ବହୁଳତା ହୁଏ ନାହିଁ, ବା ଶିଳ୍ପୀ ମନରେ ସେହିଳି ଯତ୍ନ ପ୍ରତିଯୋଗିତାର ଜ୍ଞାନ ଜନ୍ମେ ନାହିଁ । ଉତ୍କଳରେ ଶିଳ୍ପର ବହୁଳତା ଓ ଉତ୍କର୍ଷତା ଯୋଗୁଁ ଉତ୍କଳ ବାଣିଜ୍ୟର ବହୁଳ ବିସ୍ତୃତ ଅନୁମାନ କରିବାର କଥା । ଉତ୍କଳ ଶିଳ୍ପ କେବଳ

ଉତ୍କଳ ମଧ୍ୟରେ ଆବଦ୍ଧ ରହି ନଥିଲା; ଦେଶ ବିଦେଶର ବାଣିଜ୍ୟ ବିପଣୀରେ ଏହାର ସମଧିକ ଆଦର ଥିଲା । ପୂର୍ବେ (୭ମ ଅଧ୍ୟାୟ) ବାଣିଜ୍ୟ ପ୍ରସଙ୍ଗରେ କୁହାଯାଇଛି, ଉତ୍କଳୀୟ ବଣିକମାନେ ବାଣିଜ୍ୟ ଉଦ୍ଦେଶ୍ୟରେ ସାଗର ମନ୍ଥନ କରୁଥିଲେ; ଏବଂ ବାଣିଜ୍ୟ ସୂତ୍ରରେ ପାରାବାରର ପରପାରିରେ ଯାବା, ବାଲୀ, ସିଂଗାପୁର, ବ୍ରହ୍ମଦେଶ, ସୁମାତ୍ରା ପ୍ରଭୃତିରେ ବସତି ସ୍ଥାପନ କରିଥିଲେ । ଉତ୍କଳର ବାଣିଜ୍ୟ ତରୀ ସୁଦୂର ପ୍ରଶାନ୍ତ ମହାସାଗର ଓ ଭାରତ ମହାସାଗର ଅତିକ୍ରମକରି ଚୀନ, ଜାପାନ, ଆରବ, ଆଫ୍ରିକା ଏବଂ ମାଡାଗାସ୍କର ପ୍ରଭୃତି ଦେଶ ଓ ଦ୍ୱୀପମାନଙ୍କରେ ଉତ୍କଳ ପଣ୍ୟ ଜନ୍ମକ୍ରେ ବିପଣୀ ସର୍ଜନା କରୁଥିଲେ । ଏହି ବାଣିଜ୍ୟ ପ୍ରଭାବରେ କେଶରୀ ରାଜାମାନେ ଚୀନ ପ୍ରଭୃତି ଦୂରଦେଶ ସହିତ ନାନାପ୍ରକାର ଅନ୍ତର୍ଜାତୀୟ ରାଷ୍ଟ୍ରୀୟ ସଂପର୍କ ରଖିପାରି ଥିଲେ । ଜଣେ ଚୀନପରିବ୍ରାଜକ ହୁଏନସାଂ ଉତ୍କଳର ବନ୍ଦରମାନଙ୍କ ମଧ୍ୟରେ ଚରିତ୍ରପୁରା ବା ଶୃତିର ଏବଂ ତାମ୍ରଲିପ୍ତ ବନ୍ଦର ଦ୍ୱୟର ବର୍ଣ୍ଣନା କରିଛନ୍ତି । ତାମ୍ରଲିପ୍ତ ଉତ୍କଳରେ ସର୍ବପ୍ରଧାନ ବନ୍ଦର ଥିଲା । ବଙ୍ଗୋପ-ସାଗର ଓ ଭାରତ ମହାସାଗରରେ ଚଳାଚଳ ବୋଇତମାନଙ୍କର ଏହା ପରମ ଆଶ୍ରୟ ଥିଲା । କେଶରୀ ରାଜତ୍ୱର ଶେଷ ଆଡ଼କୁ ଉତ୍କଳର ଦକ୍ଷିଣାଂଶରୁ ଧୀବରମାନେ ଦକ୍ଷିଣ ଉପକୂଳବର୍ତ୍ତୀ କୌଣସି ବନ୍ଦରରୁ ପୋତାଶ୍ରୟରେ ଯାଇ ତାମ୍ରଲିପ୍ତରେ ବସତି କରିଥିଲେ; ଏବଂ କାଳକ୍ରମେ ସେଠାରେ ରାଜପଣ ମଧ୍ୟ କରିଥିଲେ ।

ତାମ୍ରଲିପ୍ତପରି ଚରିତ୍ରପୁରା ବା ଶୃତିର ବନ୍ଦର ବର୍ତ୍ତମାନ କୋଣାର୍କ ନିକଟରେ ଉତ୍କଳର ଅନ୍ୟତମ ବୈଦେଶିକ ବନ୍ଦର ଥିଲା । ଏହି ବନ୍ଦରକୁ ଟେଲେମୀ ଖ୍ରୀଷ୍ଟାବ୍ଦ ଆରମ୍ଭବେଳେ ଭାରତ ଉପକୂଳର ପ୍ରଧାନ ବନ୍ଦରମାନଙ୍କ ମଧ୍ୟରେ ଗଣିଥିଲେ । ତାହାର କ୍ରମୋନ୍ନତି ହୋଇ ହୁଏନସାଂଙ୍କ ବେଳକୁ ଶୃତର ବା ଚରିତ୍ରପୁରା ନାମ ବହି ପ୍ରଧାନ ବୈଦେଶିକ ବନ୍ଦରମାନଙ୍କ ମଧ୍ୟରେ ତାହା ଗଣ୍ୟ ହୋଇଥିଲା । ଅନ୍ୟକ

ପ୍ରମାଣ ଦିଆଯାଇଛି, ହୁଏନସାଁଙ୍କ ଚରିତ୍ରପୁର ବା ଗୁରୁଣ୍ଡ ବନ୍ଦର କୋଣାର୍କର ଚନ୍ଦ୍ରଭାଗାନଦୀ ମୁହାଣ *। ହୁଏନସାଁଙ୍କ ବେଳକୁ ଏହା ପ୍ରଧାନ ବୈଦେଶିକ ବନ୍ଦର ଥିଲା। ବହୁଦୂର ବିଦେଶରୁ ବାଣିଜ୍ୟ ପୋତମାନ ଆସି ଏହି ବନ୍ଦରରେ ଅବସ୍ଥାନ କରୁଥିଲା ଏବଂ ମାଲଖଲାସି ଓ ବୋଝାଇ କରୁଥିଲା। ବହୁସଂଖ୍ୟକ ବିଦେଶୀ ବଣିକ ସେହି ବନ୍ଦରରେ ଅଧିବାସ କରିଥିଲେ ଏବଂ ନାନା ମୂଲ୍ୟବାନ ଓ ଦୁଷ୍ପ୍ରାପ୍ୟ ବଣିଜର କାରବାର ସେ ବନ୍ଦରରେ ହେଉଥିଲା

ଏହି ଦୁଇ ବନ୍ଦର ବ୍ୟତୀତ ଅନ୍ୟ ବନ୍ଦର ଯେ ଉତ୍କଳରେ ନ ଥିଲା ଏପରି ନୁହେଁ। ସେହି ବନ୍ଦରମାନଙ୍କରେ ଅନବରତ ପୋତ ନିର୍ମାଣ ଏକଶ୍ରେଣୀ ଉତ୍କଳ ଶିଳ୍ପିମାନଙ୍କର ଏକମାତ୍ର ଜୀବିକା ଥିଲା। ଶିଳ୍ପଜାତ ପଣ୍ୟର ବହୁଳତା ଏବଂ ବାଣିଜ୍ୟର ବିସ୍ତୃତି ଏବଂ ବିଦେଶ ବିପଣୀ ଅନୁସନ୍ଧାନରେ ଉତ୍କଳବାସିଙ୍କର ଅଦମ୍ୟ ପ୍ରବୃତ୍ତି ଦେଖିଲେ, ସେକାଳର ଉତ୍କଳଶିଳ୍ପୀ ଓ ସାଧବମାନଙ୍କର ନିଷ୍ଠା, ଅଧ୍ୟବସାୟ, ଧୈର୍ଯ୍ୟ, ସାହସ, କୌଶଳ ଓ ସମୃଦ୍ଧିଶାଳିତା ସହଜରେ ଅନୁମାନ କରାଯାଏ। ଏହାର ଅନ୍ୟପ୍ରମାଣ ମଧ୍ୟରେ ଚୀନପରିବ୍ରାଜକ ହୁଏନ୍‌ସାଁଙ୍କ ବର୍ଣ୍ଣନା ଅଧିକ ଉଲ୍ଲେଖ ଯୋଗ୍ୟ।

ହୁଏନସାଁଙ୍କ ଉତ୍କଳ ବର୍ଣ୍ଣନା— ଖ୍ରୀଷ୍ଟ ୬୩୦ରୁ ୬୪୩ ଅବ୍ଦ ମଧ୍ୟରେ ହୁଏନସାଁ ଭାରତର ନାନାସ୍ଥାନ ଭ୍ରମଣ କରିଥିଲେ। ସେ ପାଟଳିପୁତ୍ରରୁ ତମଲୁକ ଦେଇ ଉତ୍କଳରେ ପ୍ରବେଶ କରିଥିଲେ। ତମଲୁକ ସମ୍ବନ୍ଧରେ ସେ ଲେଖିଛନ୍ତି, ଏହା ଏକ ବଡ ବନ୍ଦର ଥିଲା। ନାନା ଦେଶ ବିଦେଶରୁ ବାଣିଜ୍ୟ ତରୀ ଏଠାରେ ଲାଗୁଥିଲା। ଏଠାରେ ହିନ୍ଦୁ ଓ ବୌଦ୍ଧ ଉଭୟେ ଥିଲେ। ବହୁତ ବୌଦ୍ଧ ମଠ ଏଠାରେ ଥିଲା। ଉତ୍କଳର ପରିଧି ୧୪୦ ମାଇଲ। ଚରିତ୍ରପୁର ବା ଗୁରୁଣ୍ଡ ବନ୍ଦର ଏହାର ରାଜଧାନୀ। ଏଠାରେ ହିନ୍ଦୁ ଓ ବୌଦ୍ଧମାନେ ସାମ୍ୟଭାବରେ ନିଜ ନିଜର ଧର୍ମ ପାଳନ କରୁଥିଲେ; ଅନେକ ବଡ ବଡ ଧର୍ମମନ୍ଦିରମାନ ଥିଲା। ଏହାର ପରିଧି ୬° ଇ ବ

* ଲେଖକଙ୍କ "କୋଣାର୍କ" ୩ୟ ଅଧ୍ୟାୟ।

ମ୍ୟ ମାଇଲ ଥିଲା । ଏହି ବନ୍ଦରରୁ ବଣିକମାନେ ବିଭିନ୍ନ ଦେଶକୁ ବାଣିଜ୍ୟ ଉଦ୍ଦେଶ୍ୟରେ ଯାତ୍ରା କରୁଥିଲେ । ଏହି ସ୍ଥାନରେ ବହୁ ବିଦେଶୀ ବଣିକଙ୍କର ସମାଗମ ହେଉଥିଲା । ନଗରର ପ୍ରାଚୀର ଶକ୍ତ ଓ ଉଚ୍ଚ । ସକଳ ପ୍ରକାର ଦୁଷ୍ପ୍ରାପ୍ୟ ଓ ଦୁର୍ମୂଲ୍ୟ ପଦାର୍ଥ ଏଠାରେ ମିଳୁଥିଲା । ନଗରର ବାହାରେ ପାଞ୍ଚଟି ବୌଦ୍ଧମଠ ଥିଲା । ସେଗୁଡ଼ିକ ଅତି ଉଚ୍ଚ । ସନ୍ୟାସିମାନଙ୍କର ପ୍ରତିମୂର୍ତ୍ତି ସେମାନଙ୍କ ଦେହରେ ଖୋଳାହୋଇଥିଲା । ଏହି ବନ୍ଦର କୋଣାର୍କ ଥିବାର ଅନ୍ୟତ୍ର * ପ୍ରମାଣିତ ହୋଇଅଛି । ଉତ୍କଳ ଦେଶର ଜମି ବିଶେଷ ଉର୍ବର ଏବଂ ଶସ୍ୟପ୍ରଚୁର ଥିଲା । ବହୁ ଆଶ୍ଚର୍ଯ୍ୟଜନକ ଗୁଳ୍ମ ଓ ପୁଷ୍ପବୃକ୍ଷ ଦେଶରେ ଥିଲା । ଦେଶବାସୀ ସେତେ ସଭ୍ୟ ନ ଥିଲେ, ଦେଖିବାକୁ ତେଜେର ହରଡ ଓ କୃଷ୍ଣ । ଲୋକେ ଯଥେଷ୍ଟ ବିଦ୍ୟାଭିଳାଷୀ ଥିଲେ । ଉତ୍କଳ ବୌଦ୍ଧଧର୍ମର ପ୍ରଧାନ ପୀଠ ଥିଲା । ବହୁ ଶତ ବୌଦ୍ଧମଠ ଏବଂ ଦଶ ସହସ୍ର ବୌଦ୍ଧ ସନ୍ୟାସୀ ଉତ୍କଳରେ ଥିଲେ । ଅଥଚ ହିନ୍ଦୁମନ୍ଦିର ପଚ୍ଚଶଟି ମାତ୍ର ଥିଲା । ପୁଷ୍ପଗିରି ନାମକ ପର୍ବତ ଉପରେ ଏକ ବୌଦ୍ଧମଠ ଥିଲା ଏବଂ ମଠ ଉପରେ ଗୋଟିଏ ପ୍ରସ୍ତରରୁ ଏକ ଅଦ୍ଭୁତ ଆଲୋକ ବାହାରୁଥିଲା ।

ଉତ୍କଳର ଦକ୍ଷିଣ ପଶ୍ଚିମକୁ କୋଙ୍ଗଦ ରାଜ୍ୟ ଥିଲା । କୋଙ୍ଗଦବାସୀ ଅତି ସାହସୀ ଓ ତେଜସ୍ୱୀ ଥିଲେ । ସେମାନଙ୍କ ଶରୀର କୃଷ୍ଣବର୍ଣ୍ଣ, ଚରିତ୍ର ଭଦ୍ର ଓ ସାଧୁ ଥିଲା । ଉତ୍କଳବାସିଙ୍କ ସଙ୍ଗେ ସେମାନେ ଏକ ଗୋଷ୍ଠୀର ଲୋକ ଥିଲେ । ବାଣିଜ୍ୟ ଅତି ଉନ୍ନତ ଥିଲା । କଉଡ଼ି ମୁକ୍ତା ରାଜ୍ୟରୁ ଯଥେଷ୍ଟ ଆସୁଥିଲା । ହସ୍ତୀ ପ୍ରଧାନ ଯାନ ଥିଲା ।

କୋଙ୍ଗଦର ଦକ୍ଷିଣରେ କଳିଙ୍ଗରାଜ୍ୟ । ରାଜ୍ୟର ପରିଧି ଏକହଜାର ମାଇଲ । ଜମି ଯଥେଷ୍ଟ ଉର୍ବର । କୃଷି ଅତି ଉନ୍ନତ ଥିଲା । ଦେଶରେ ବହୁ ଜଙ୍ଗଲ ଓ ସେଥି ମଧ୍ୟରେ ହାତୀ ପ୍ରଚୁର

* ଲେଖକଙ୍କ "କୋଣାର୍କ" ତୃତୀୟ ଅଧ୍ୟାୟ ।

ଥିଲା । ଦେଶବାସୀ ବିଶେଷ ତେଜସ୍ୱୀ ଥିଲେ । ବ୍ୟବହାର କଠୋର ଥିଲା । ମାତ୍ର ଲୋକେ ବିଳାସୀ ଦୃଢ଼ପ୍ରତିଜ୍ଞ ବଳିଷ୍ଠ ଓ ହୃଷ୍ଟପୁଷ୍ଟ ଥିଲେ ।

ଧର୍ମ—କେଶରୀବଂଶୀୟ ରାଜାମାନେ ଶୈବଧର୍ମାବଲମ୍ବୀ ଥିବାର କୁହାଯାଉଛି । ସେମାନଙ୍କ ଆଶ୍ରୟରେ ବ୍ରାହ୍ମଣଧର୍ମ ଶୈବଧର୍ମ ଆକାରରେ ଉତ୍କଳରେ ପ୍ରବଳ ହୋଇ ଉଠିଲା । ଯଯାତି କାନ୍ୟକୁବ୍ଜରୁ ଯେଉଁ ବ୍ରାହ୍ମଣମାନଙ୍କୁ ଆଣିଥିଲେ, ସେମାନେ ଶୈବ ଥିବାରୁ ଉତ୍କଳୀୟ ବ୍ରାହ୍ମଣସମାଜ ପରବର୍ତ୍ତୀ ଯୁଗର ଅନ୍ୟ ଧର୍ମସଂପ୍ରଦାୟର ପ୍ରବଳ ବାତ୍ୟା ସମ୍ମୁଖରେ ଅଦ୍ୟାପି ଶୈବମତାବଲମ୍ବୀ ହୋଇ ରହିଛନ୍ତି । ରାଜାମାନେ ଶୈବ ଥିବାରୁ ଉତ୍କଳର ନାନାସ୍ଥାନରେ ଶିବଲିଙ୍ଗର ପ୍ରତିଷ୍ଠା ଏବଂ ଶିବମନ୍ଦିର ନିର୍ମାଣ କରାଇଥିଲେ ।* ପ୍ରତ୍ୟେକ ବ୍ରାହ୍ମଣଶାସନ ବା ଗ୍ରାମମାନଙ୍କରେ ଶିବଲିଙ୍ଗ ସ୍ଥାପନ କରାଯାଇଥିଲା। ରାଜାଶ୍ରୟରେ ଶୈବ ସଂପ୍ରଦାୟ ପ୍ରବଳ ହେବା ସଙ୍ଗେ ଅନ୍ୟ ଧର୍ମସଂପ୍ରଦାୟମାନ ସଙ୍କୁଚିତ ହେବା ସ୍ୱାଭାବିକ; ମାତ୍ର ଏକାବେଳକେ ସେମାନେ ବିଲୁପ୍ତ ହୋଇ ନ ଥିଲେ । ସନାତନ ଆର୍ଯ୍ୟ ଉଦାରତା ଉତ୍କଳରେ କଷ୍ଟ ଅନ୍ତ ନ ଥିଲା । କେଶରୀବଂଶ ଶୈବ ଥିଲେ ମଧ୍ୟ ପ୍ରଧାନରାଜା ଯଯାତି ଜଗନ୍ନାଥଙ୍କ ମନ୍ଦିର ନିର୍ମାଣ ଓ ପୂଜାପଦ୍ଧତି ନିର୍ଦ୍ଦିଷ୍ଟ କରିବା ରାଜତ୍ୱର ପ୍ରଥମକାର୍ଯ୍ୟସ୍ୱରୂପ ନେଇଥିଲେ ; ଏପରିକି ଜୈନ ଓ ବୌଦ୍ଧଧର୍ମ ଉତ୍କଳରୁ ଏକାବେଳେକେ ଲୋପ ପାଇ ନ ଥିଲା । ଭୁବନେଶ୍ୱରରେ ଶିବକ୍ଷେତ୍ର ସ୍ଥାପନ ପରେ ହୁଏନସାଂ ଲେଖିଛନ୍ତି ହିନ୍ଦୁ ଓ ବୌଦ୍ଧମାନେ ପରସ୍ପର ପ୍ରତି ସ୍ନେହ ଓ ଆଦର ରଖି ସାଖ ସନ୍ତୋଷପୂ

---

* ଭୁବନେଶ୍ୱର ପ୍ରଃ ସ୍ଥାନରେ ଲଲାଟେନ୍ଦୁ କେଶରୀ ଦେଶମଧ୍ୟରେ ନାନାବିଧ ଅମ୍ଭସ୍ମୃ ତଥ୍ୟ, କରାଇଥିବାର ପ୍ରବାଦ ରହିଅଛି ।

। ୧ । ଦକ୍ଷେଶ୍ୱର, ସୋରଦାର ଅଃ ଗ୍ରାମରେ । ୨ । ଓମୋପୁରା ନଙ୍ଗଳରେ ବଟେଶ୍ୱର । ୩ । ଭୁବନେଶ୍ୱରରେ ୧ ମାଇଲ ୪ ଅଚ୍ୟବାଗ ନିକଟରେ କପାଳ ବାଲୁକେଶ୍ୱର । ୪ । କୋଠଦେଶରେ ଭୁବନେଶ୍ୱର । ୫ । ପୁରୀରେ ଲେକେଶ୍ୱର ଏବ । ୬ । ଭୁବନେଶ୍ୱରରେ ଭଟିକେଶ୍ୱର ।

ଚଳୁଥିଲେ; ଏବଂ ବୌଦ୍ଧମଠ ଓ ମନ୍ଦିର ଦେଶରେ ବହୁଳ ଥିଲା । ବୌଦ୍ଧଧର୍ମ ଲୋପର ବହୁପରକାଳ ପର୍ଯ୍ୟନ୍ତ ଜୈନଧର୍ମ ମଧ୍ୟ ଦେଶରେ ଚଳୁଥିଲା । ମୂଳତଃ ବ୍ରାହ୍ମଣଧର୍ମର ଶୈବ, ଶାକ୍ତ, ସୌର, ବୈଷ୍ଣବ ପ୍ରଭୃତି ବିଭିନ୍ନ ସଂପ୍ରଦାୟ ମଧ୍ୟରେ ରାଜାମାନଙ୍କଠାରୁ ପ୍ରଜାସାଧାରଣଙ୍କ ପର୍ଯ୍ୟନ୍ତ ସମସ୍ତେ ଯେପରି ପରସ୍ପର ମଧ୍ୟରେ ସ୍ନେହ ଓ ଭ୍ରାତୃଭାବ ରଖିଥିଲେ; ବ୍ରାହ୍ମଣ, ବୌଦ୍ଧ ଓ ଜୈନଧର୍ମ ମଧ୍ୟରେ ସେହିପରି ଉଦାରତା ଓ ମୈତ୍ରୀଭାବ ବିଦ୍ୟମାନ ଥିଲା । ବୁଦ୍ଧ ଦେବ, ଶିଷ୍ୟମାନେ ପରବର୍ତ୍ତୀକାଳରେ ପ୍ରଧାନ ବେଦାନ୍ତବାଦୀ ବ୍ରାହ୍ମଣ ଆଚାର୍ଯ୍ୟ ଶିଷ୍ୟମାନଙ୍କୁ ବୁଝାଇଥିଲେ, ଧର୍ମର ଗ୍ଲାନି ହେଲେ ପାପ ପ୍ରବଳ ହୋଇ ସମାଜ କଳୁଷିତ କଲେ, ଜନାର୍ଦ୍ଦନ ନିଜେ ଅବତାର ଗ୍ରହଣକରି ଧର୍ମ ଓ ସମାଜ ଉଦ୍ଧାର କରନ୍ତି । ବୁଦ୍ଧ ନିଜେ ସେହି ଜନାର୍ଦ୍ଦନଙ୍କର ଅବତାର । ଏହି ଉଦାରତା ସାମ୍ୟବାଦ ଓ ବ୍ୟାପକଭାବ ଉତ୍କଳ ତଥା ଭାରତ ଆର୍ଯ୍ୟସଭ୍ୟତାର ସାରମର୍ମ ଓ ମୂଳତତ୍ତ୍ୱ । ସୁତରାଂ ଉତ୍କଳଇତିହାସରେ ଧର୍ମର ପରିବର୍ତ୍ତନ ହୋଇଛି, ମାତ୍ର ବିପ୍ଳବ କେବେ ଘଟିନାହିଁ, ବା ଘଟିବାର ଆଶଙ୍କା ହୋଇନାହିଁ । କେଶରୀବଂଶର ଅବସାନ ପରେ ଗଙ୍ଗବଂଶର ରାଜତ୍ୱ ଆରମ୍ଭରୁ ଶୈବମତ ମ୍ଳାନହୋଇ ବୈଷ୍ଣବଧର୍ମ ପ୍ରବଳ ହୋଇଥିଲା । ବୈଷ୍ଣବଧର୍ମର ପ୍ରାବଲ୍ୟ ଗଙ୍ଗବଂଶ ଓ ପରବର୍ତ୍ତୀ ସୂର୍ଯ୍ୟବଂଶ ରାଜତ୍ୱରେ କିପରି ଉତ୍କଳବ୍ୟାପୀ ହୋଇ ଉଠିଥିଲା, ତାହା ଉକ୍ତବଂଶ, ଦ୍ୱୟର ଗୌରବ-କାହାଣୀରେ ଆଲୋଚନା କରାଯିବ ।



# ତୃତୀୟ ଅଧ୍ୟାୟ

## ଗଙ୍ଗବଂଶ ।

### ଖ୍ରୀଷ୍ଟ ୧୦୮୬—୧୪୩୫ ଅବ୍ଦ

ପରିଚୟ— କେଶରୀବଂଶୀୟ ରାଜାମାନେ ଉତ୍କଳରେ ରାଜତ୍ୱ କରୁଥିବା ବେଳେ ଉତ୍କଳର ଦକ୍ଷିଣସୀମା ଋଷିକୁଲ୍ୟା ନଦୀ ଥିବାର ପୂର୍ବେ କୁହା ଯାଇଛି । ସୁତରାଂ କେଶରୀ ରାଜାମାନେ ଆପଣାକୁ କଳିଙ୍ଗାଧିପତି କହୁଥିଲେ ସୁଦ୍ଧା, ପ୍ରକୃତ କଳିଙ୍ଗ ଅର୍ଥାତ୍ ଋଷିକୁଲ୍ୟା ନଦୀର ଦକ୍ଷିଣସ୍ଥ କଳିଙ୍ଗ କେଶରୀରାଜ୍ୟଭୁକ୍ତ ନ ଥିଲା ।

ଉତ୍କଳରେ କେଶରୀବଂଶର ରାଜତ୍ୱ ଆରମ୍ଭରେ କୋଲାହଳ ବା ରାଜେନ୍ଦ୍ର ଅନନ୍ତ ବର୍ମା ନାମକ ଜଣେ ରାଜା ଦାକ୍ଷିଣାତ୍ୟର କର୍ଣ୍ଣାଟକ ପ୍ରଦେଶରୁ ଆସି ଖ୍ରୀଷ୍ଟାବ୍ଦ ୭ମ ଶତାବ୍ଦୀରେ ଦକ୍ଷିଣ କଳିଙ୍ଗ ଅଧିକାର କରିଥିଲେ । ଅନନ୍ତ ବର୍ମା ପ୍ରଥମେ କଳିଙ୍ଗ ମଧ୍ୟରେ ଯେଉଁ ସ୍ଥାନ ଅଧିକାର କରି ରାଜତ୍ୱ କଲେ, ତାହା 'ଗଙ୍ଗବାଡି' ନାମରେ ଖ୍ୟାତ ଥିଲା । ତାହା ବହୁ ଧନ ରତ୍ନପୂର୍ଣ୍ଣ ରାଜ୍ୟ ଥିଲା । ଗଙ୍ଗବାଡି ସେହି ରାଜ୍ୟର ରାଜଧାନୀ ଥିଲା । ବର୍ତ୍ତମାନ ପାରଳାଖେମୁଣ୍ଡି ରାଜ୍ୟର ମୁଖଲିଙ୍ଗ ନଗରୀ ସେହି ଗଙ୍ଗବାଡି ନଗରର ଆଧୁନିକ ନାମ । ମହେନ୍ଦ୍ରଗିରି ଉପରେ ଥିବା ଗୋକର୍ଣ୍ଣେଶ୍ୱର ଦେବ ଅନନ୍ତ ବର୍ମା ଏବଂ ତାଙ୍କ ବଂଶଧରମାନଙ୍କର ଇଷ୍ଟଦେବତା ଥିଲେ । ଗଙ୍ଗବାଡିରେ ରାଜତ୍ୱ କରିବାଠାରୁ ଅନନ୍ତବର୍ମାଙ୍କ ବଂଶ ଗଙ୍ଗବଂଶ ନାମରେ ପରିଚିତ ହେଲା । ଅନନ୍ତବର୍ମା ଏବଂ ତାଙ୍କ ବଂଶଧରମାନେ 'ରୂପଗଙ୍ଗ' ନାମରେ ମଧ୍ୟ ଖ୍ୟାତ ଥିଲେ । ସେମାନେ ଚନ୍ଦ୍ରବଂଶୀୟ ରାଜା ବୋଲି ଆପଣାର ପରିଚୟ ଦିଅନ୍ତି । ନହୁଷ ଯଯାତି ପୁରୁରବା ପ୍ରଭୃତି ପୁରାଣ-ପ୍ରସିଦ୍ଧ

ରାଜାମାନଙ୍କର ଗଙ୍ଗବଂଶ ରାଜାମାନେ ବଂଶଧର ଥିବାର ତାମ୍ରଶାସନ-ମାନଙ୍କରେ ଉଲ୍ଲେଖ ଅଛି । ଅନନ୍ତବର୍ମା ପ୍ରଥମେ ଗଙ୍ଗାବାଡ଼ି ଅଧିକାର କରି ରାଜତ୍ୱ କଲେ । ଅଳ୍ପକାଳ ମଧ୍ୟରେ ଗଙ୍ଗବଂଶର ପ୍ରଭାବ ବଢ଼ିଲା, ଏବଂ ସମସ୍ତ ଦକ୍ଷିଣ କଳିଙ୍ଗ ଅର୍ଥାତ୍ ବଂଶଧାରାନଦୀର ନିକଟବର୍ତ୍ତୀ ସିଂହାଚଳ ବା ସୀମାଚଳ ଠାରୁ ଋଷିକୁଲ୍ୟା ନଦୀ ପର୍ଯ୍ୟନ୍ତ, ଜୟପୁର ଅଞ୍ଚଳ ଧରି, ଗଙ୍ଗାବାଡ଼ି ରାଜ୍ୟର ଅନ୍ତର୍ଗତ ହେଲା । ସୁତରାଂ କେଶରୀମାନେ ଉତ୍କଳ ବା ଉତ୍ତର କଳିଙ୍ଗରେ ରାଜତ୍ୱ କରୁଥିବାବେଳେ, ଉତ୍କଳର ଭବିଷ୍ୟତ ଗଙ୍ଗବଂଶ ରାଜାମାନଙ୍କର ପୂର୍ବ ପୁରୁଷମାନେ ଦକ୍ଷିଣ କଳିଙ୍ଗର ରାଜା ଥିଲେ । ଦାକ୍ଷିଣାତ୍ୟର ଚୋଳ ଓ ଚାଳୁକ୍ୟ ରାଜାମାନଙ୍କ ସଙ୍ଗେ ଗଙ୍ଗବଂଶ ରାଜାମାନଙ୍କର ଯୁଦ୍ଧ ବିଗ୍ରହ ବାରମ୍ବାର ଘଟୁଥିଲା । ମାତ୍ର ଗଙ୍ଗମାନେ ନାନା ଉପାୟରେ ଆପଣାର ସ୍ୱାଧୀନତା ରକ୍ଷା କରିବାକୁ ସମର୍ଥ ହୋଇଥିଲେ । ଶେଷକୁ ଚୋଳ ରାଜ୍ୟର ରାଜା ରାଜେନ୍ଦ୍ର ଚୋଳ ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀରେ ବଙ୍ଗଦେଶ ପର୍ଯ୍ୟନ୍ତ ଜୟ କରିଥିଲେ । ସେତେବେଳେ ଗଙ୍ଗମାନେ ରାଜେନ୍ଦ୍ର ଚୋଳଙ୍କର ଅଧୀନସ୍ଥ ରହିଥିବେ, ମାତ୍ର ରାଜେନ୍ଦ୍ର ଚୋଳଙ୍କ ବିଜୟ ଅତି ଅଳ୍ପକାଳସ୍ଥାୟୀ ଥିଲା । ରାଜେନ୍ଦ୍ର ଚୋଳଙ୍କ ଅନ୍ତେ ଚୋଳ ପ୍ରଭାବ ହ୍ରାସ ପାଇଲା, ଏବଂ ଚୋଳରାଜ୍ୟ କ୍ରମେ ସଙ୍କୁଚିତ ହୋଇଗଲା । କଳିଙ୍ଗର ଗଙ୍ଗାବଂଶ ଅଳ୍ପକାଳ ନିମନ୍ତେ ରାଜେନ୍ଦ୍ର ଚୋଳଙ୍କର ଅଧୀନସ୍ଥ ହୋଇଥିଲେ ମଧ୍ୟ, ଅଳ୍ପକାଳ ମଧ୍ୟରେ ଆପଣାର ସ୍ୱାଧୀନତା ପୁନରୁଦ୍ଧାର କରିଥିଲେ । ଗଙ୍ଗବଂଶର ପଞ୍ଚମ ରାଜା କାମାର୍ଣ୍ଣବ ଦିଗ୍‌ବିଜୟୀ ଥିଲେ । ସେ ସମସ୍ତ କଳିଙ୍ଗ ଅଧିକାରକରି ଓଡ୍ରଦେଶ ବା ବସ୍ତର କଳାହାଣ୍ଡି ରାଜ୍ୟ ମଧ୍ୟ ଆକ୍ରମଣ କରିଥିଲେ । ଗଙ୍ଗ ବଂଶର ୭ମ ରାଜା କାମାର୍ଣ୍ଣବଙ୍କ ପୁତ୍ର ବଜ୍ରହସ୍ତ ଅନନ୍ତ ବର୍ମା ଦେବ ତ୍ରିକଳିଙ୍ଗ ଜୟ କରି 'ତ୍ରିକଳିଙ୍ଗ' ନାଥ ଉପାଧି ଧରିଥିବାର ଉଲ୍ଲେଖଅଛି । ବୋଧହୁଏ କେଶରୀବଂଶର କୌଣସି ରାଜାଙ୍କୁ ସେ ପରାସ୍ତକରିଥିଲେ, ମାତ୍ର ସେ ଉତ୍କଳର ସମ୍ପୂର୍ଣ୍ଣ ଅଧିକାର

ଯାଇ ନ ଥିଲେ । ଏହି ଦେଶ ବିସ୍ତାର ମଧ୍ୟରେ ଗଙ୍ଗବଂଶର କଳିଙ୍ଗ ରାଜାମାନେ ଉତ୍ତରରେ ଉତ୍କଳ ଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ କଳିଙ୍ଗରାଜ୍ୟ ବଢ଼ାଇଥିଲେ । ଅନନ୍ତ ବର୍ମା ଦେବଙ୍କ ପରେ ତାହାଙ୍କ ପୁତ୍ର ରାଜ ରାଜ ଦେବ ଅଠବର୍ଷ ମାତ୍ର କଳିଙ୍ଗର ରାଜତ୍ୱ କରିଥିଲେ । ସେ ଅତି ପରାକ୍ରମଶାଳୀ ରାଜା ଥିଲେ । ତାହାଙ୍କର ବନପତି ନାମରେ ଏକ ସେନାପତି ଚୈଦ୍ୟରାଜା ଏବଂ ଉତ୍କଳର କେଶରୀ ରାଜାଙ୍କୁ ପରାସ୍ତ କରିଥିଲେ । ବେଙ୍ଗୀ ରାଜ୍ୟ (ବର୍ତ୍ତମାନ ବସ୍ତରର ଦକ୍ଷିଣାଞ୍ଚଳ) ଖିମଣ୍ଡି (ଗଞ୍ଜାମ ଜିଲ୍ଲାର ମାଳ ଅଞ୍ଚଳ—ପାରଳା, ବଡ ଓ ସନ ଖେମଣ୍ଡି), କୋଶଳ ଏବଂ ଓଡ୍ର ରାଜ୍ୟ (ବର୍ତ୍ତମାନ ବସ୍ତର ଓ ଜୟପୁର ପ୍ରଭୃତି) ରାଜ୍ୟମାନ କଳିଙ୍ଗର ଅନ୍ତର୍ଭୁକ୍ତ ହୋଇଥିଲା । ସ୍ଥୂଳତଃ ଚିଲିକାର ଦକ୍ଷିଣରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ଏବଂ ସମୁଦ୍ରଠାରୁ ପଶ୍ଚିମରେ ମହାରାଷ୍ଟ୍ର ଦେଶ ପର୍ଯ୍ୟନ୍ତ ସକଳ ରାଜ୍ୟ ଗଙ୍ଗବଂଶ ରାଜାମାନଙ୍କ ରାଜ୍ୟ ମଧ୍ୟରେ ଥିଲା । ରାଜରାଜଙ୍କ ପୁତ୍ର ଅନନ୍ତ ବର୍ମା ଚୋଳଗଙ୍ଗ ଦେବ ଉତ୍କଳ ଅଧିକାର କରିବାରୁ ପ୍ରାଚୀନ ଉତ୍କଳ ଓ କଳିଙ୍ଗ ପୁନର୍ବାର ଏକ ରାଜ୍ୟ ଏବଂ ଏକ ଶାସନାଧୀନ ହୋଇ ପାଞ୍ଚ ଶତାଧିକ ବର୍ଷକାଳ ରହିଲା । ଚୋଳଗଙ୍ଗ ଉତ୍କଳ ସିଂହାସନ ଆରୋହଣ କରିବା ସଙ୍ଗେ ସମଗ୍ର ପ୍ରାଚୀନ କଳିଙ୍ଗ କେବଳ ଉତ୍କଳ ନାମରେ ଅଭିହିତ ହେଲା । ଗଙ୍ଗବଂଶର ରାଜତ୍ୱ ଆରମ୍ଭରୁ ଉତ୍କଳର ଧାରାବାହିକ ରାଷ୍ଟ୍ରୀୟ ଇତିହାସ ମିଳେ । ଗଙ୍ଗବଂଶ ରାଜାମାନଙ୍କର ବହୁତ ଭୂମିଦାନ ଓ ଦାନପତ୍ର, ଗ୍ରନ୍ଥକାରମାନଙ୍କର ଗ୍ରନ୍ଥାବଳୀ ଏବଂ ଦେବମନ୍ଦିରର ଶିଳାଲେଖ ଦ୍ୱାରା ଉତ୍କଳଇତିହାସ ଏଣିକି ଗୌରବମୟ ଓ ସହଜବୋଧ୍ୟ ହୋଇଅଛି । ଗଙ୍ଗବଂଶ ଓ ତତ୍‌ପରବର୍ତ୍ତୀ ସୂର୍ଯ୍ୟବଂଶ ରାଜତ୍ୱ ଉତ୍କଳ ଇତିହାସର ମହା ଗୌରବମୟ ଯୁଗ । ଉତ୍କଳର ସକଳ ସମ୍ପଦ, କଳାକୁଶଳତା, ଶିକ୍ଷା ପାଣ୍ଡିତ୍ୟ, ଶିଳ୍ପ ବାଣିଜ୍ୟ ଏହି ପାଞ୍ଚଶତ ବର୍ଷମଧ୍ୟରେ ପୂର୍ଣ୍ଣତା ପାଇଥିଲା ।

## ଚୋଳ ଗଙ୍ଗଦେବ

ଖ୍ରୀ ୧୦୪୬ – ୧୧୧୬ ଅବ୍ଦ

ଗ୍ରାଜତ୍ୱ—ଚୋଳଗଙ୍ଗଦେବ ଉତ୍କଳ ଗଙ୍ଗବଂଶର ପ୍ରଥମରାଜା ଥିଲେ । ତାଙ୍କ ପିତା ରାଜରାଜଦେବ ଚୋଳରାଜ୍ୟର ରାଜା ରାଜେନ୍ଦ୍ରଚୋଳଙ୍କର ପରମସୁନ୍ଦରୀ କନ୍ୟା ରାଜସୁନ୍ଦରୀଙ୍କୁ ବିବାହ କରିଥିଲେ । ରାଜସୁନ୍ଦରୀଙ୍କ ଗର୍ଭରୁ ଚୋଳଗଙ୍ଗ ଜାତ ହୋଇଥିଲେ । ଚୋଳଗଙ୍ଗଙ୍କର ନାମ ଅନନ୍ତ ବର୍ମା ଥିଲା, ମାତ୍ର ଚୋଳ ରାଜକୁମାରୀଙ୍କ ଗର୍ଭରୁ ଗଙ୍ଗବଂଶରେ ଜନ୍ମ ହୋଇଥିବାରୁ ନାମ ରହିଥିଲା ଅନନ୍ତବର୍ମା ଚୋଳଗଙ୍ଗଦେବ । ସାଧାରଣତଃ ସେ ଚୋଳଗଙ୍ଗ, ଚୋଡଗଙ୍ଗ, ଚୋଡ଼ଗଙ୍ଗ ବା ଚୂଡ଼ଙ୍ଗଦେବ ନାମରେ ପରିଚିତ ।

ଚୋଳଗଙ୍ଗ ଉତ୍କଳ ସିଂହାସନ ଅଧିରୋହଣ କରିବା ବେଳକୁ ରାଜ୍ୟ ଉତ୍ତରରେ ଗଙ୍ଗାନଦୀଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ଏବଂ ପୂର୍ବରେ ବଙ୍ଗୋପସାଗରରୁ ପଶ୍ଚିମରେ ବର୍ତ୍ତମାନ ଛତିଶଗଡ଼ ପର୍ଯ୍ୟନ୍ତ ବିସ୍ତୃତ ପ୍ରଭୃତ ରାଜ୍ୟ ନେଇ ବ୍ୟାପି ରହିଥିଲା । ମୂଳତଃ ଖାରବେଳଙ୍କବେଳେ କଳିଙ୍ଗରାଜ୍ୟ ଯେତେଦୂର ବିସ୍ତୃତ ହୋଇଥିଲା, ତାହା ପରବର୍ତ୍ତି ରାଜତ୍ୱ ମାନଙ୍କରେ ସଙ୍କୁଚିତ ବା ବିଭକ୍ତ ହୋଇଥିଲେ ହେଁ ବା, ଗଙ୍ଗବଂଶ ରାଜତ୍ୱ ଆରମ୍ଭରୁ ତାହା ପ୍ରାଚୀନସୀମା ପର୍ଯ୍ୟନ୍ତ ପୁଣି ବଢ଼ି ପାରିଥିଲା ଉତ୍କଳର ଏହି ବିସ୍ତୃତି ପାଖଶତାଧିକ ବର୍ଷକାଳ ଅକ୍ଷୁନ୍ନ ରହିଥିଲା ।

ମାଦଳାପାଞ୍ଜି ଅନୁସାରେ ଚୋଳଗଙ୍ଗ କନ୍ୟା ୧୩ ଦିନ କୃଷ୍ଣତ୍ରୟୋଦଶୀ ଗୁରୁବାର କଟକରେ ରାଜତ୍ୱ ଆରମ୍ଭ କଲେ । ମାତ୍ର ତାହାଙ୍କ ଅଭିଷେକ ହେଉ ହେଉ କନ୍ୟା ୨୫ ଦିନ ଶୁକ୍ଳଦଶମୀ ଦଶହରା

ହୋଇଥିଲା । ରାଜତ୍ୱ ଆରମ୍ଭ ସଙ୍ଗେ ସଙ୍ଗେ ସେ ପୂର୍ବ ରାଜାମାନଙ୍କର ଜଗନ୍ନାଥଙ୍କ ନିମନ୍ତେ ଯାହା ଜମି ଦାନ ବା ଖଞ୍ଜା ଥିଲ, ତାହା ସବୁ ମଞ୍ଜୁର କଲେ; ଏବଂ ନିଜେ ପରମ ବୈଷ୍ଣବ ଥିବାରୁ ଜଗନ୍ନାଥଙ୍କ ନିମନ୍ତେ ଅଧିକ ଭୂମି ସେବା ପୂଜା ଖଞ୍ଜା କରିଦେଲେ । ଜଗନ୍ନାଥଙ୍କ ନୀତି ଅଧିକ ଆଡମ୍ବରରେ ଚାଲିଲା । ଜଗନ୍ନାଥ ମନ୍ଦିରର ଯେଉଁ 'ମାଦଳା ପାଞ୍ଜି'ର ନାମ ଶୁଣାଯାଏ, ତାହା ଚୋଳଗଙ୍ଗଙ୍କ ଆଦେଶରେ ଲେଖା ହେବାର ପ୍ରଥମେ ଆରମ୍ଭ ହେଲା । ଜଗନ୍ନାଥଙ୍କ ନୀତିଗତି ଓ ମନ୍ଦିର ସମ୍ପର୍କୀୟ ଘଟଣାବଳୀ ଲେଖି ରଖିବା ଉଦ୍ଦେଶ୍ୟରେ ଏହାର ଆରମ୍ଭ ହୋଇଥିଲେହେଁ, ଏଥିରେ ଉତ୍କଳ ଇତିହାସର ପ୍ରଧାନ ପ୍ରଧାନ ଘଟଣାବଳୀର ଉଲ୍ଲେଖ ରହିଲା । ବାସ୍ତବିକ ବିଶେଷ ସାବଧାନତାର ସହିତ ସୁଯୋଗ୍ୟ ଲେଖକମାନଙ୍କ ହାତରେ ଲେଖା ହୋଇଥିଲେ, ମାଦଳାପାଞ୍ଜି ଉତ୍କଳର ପ୍ରଧାନ ଓ ଅଖଣ୍ଡନୀୟ ଇତିହାସ ହୋଇ ରହିଥାନ୍ତା । ଯାହାହେଉ ସମସ୍ତ ଭ୍ରମ ପ୍ରମାଦ ସତ୍ତ୍ୱେ ଉତ୍କଳ-ଇତିହାସ-ଲେଖକ ପ୍ରତି ଏହା ଯେ ଏକ ପ୍ରଧାନ ସହାୟ ସନ୍ଦେହ ନାହିଁ ।

ଯଯାତିକେଶରୀ ଜଗନ୍ନାଥଙ୍କ ନିମନ୍ତେ ପାଞ୍ଚଶତ ବର୍ଷ ପୂର୍ବେ ଯେଉଁ ମନ୍ଦିର ନିର୍ମାଣ କରାଇଥିଲେ, ତାହା କ୍ଷୁଦ୍ର ଏବଂ ଜୀର୍ଣ୍ଣ ହୋଇଥିବାର ଦେଖି ଚୋଳଗଙ୍ଗ ନୂତନ ମନ୍ଦିର ନିର୍ମାଣର ବ୍ୟବସ୍ଥା କଲେ । କେହି କେହି ନ ବୁଝି କହନ୍ତି, ବୈଷ୍ଣବ ଧର୍ମ ବିଜୟର ସ୍ମାରକ ସ୍ୱରୂପ ସେ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ମାତ୍ର ସେପରି ବିଜୟ ପ୍ରବୃତ୍ତି ଉତ୍କଳର ଧର୍ମ ଇତିହାସରେ ଦେଖାଯାଏନାହିଁ, କି ଚୋଳଗଙ୍ଗ ଜଗନ୍ନାଥମନ୍ଦିର ନିର୍ମାଣ ଶେଷ କରି ନ ଥିଲେ । ତାହାଙ୍କ ନାମାନୁସାରେ ପୁରୀରେ ବର୍ତ୍ତମାନ ଗୋଟିଏ ସାହି ଏବଂ ଗୋଟିଏ ପୋଖରୀ ଅଛି ।

ଗୌରବ ଓ ବିଜୟ—ଚୋଳଗଙ୍ଗ ଅସାଧାରଣ ବୀର ଥିବାର ବର୍ଣ୍ଣନା ଅଛି । ମନୁଷ୍ୟତ୍ୱରେ ସେ ଖ୍ୟାତନାମା ରାଜମାନଙ୍କୁ ପରାସ୍ତ କରି ପାରୁଥିଲେ ।

ଯୁଦ୍ଧ ଅଭିଯାନରେ ସେ ସୁକୌଶଳୀ ଓ ସାହସୀ ଥିଲେ । ଜନ୍ମେଜୟ ଯେଉଁ ଚୌଦ୍ୱାର ନଗର ସ୍ଥାପନ କରିଥିଲେ, ଚୋଡ଼ଗଙ୍ଗ ସେଠାରେ ଏକ ଅଭେଦ୍ୟ ଦୁର୍ଗ ନିର୍ମାଣ କଲେ । ଦକ୍ଷିଣରେ ସାରଙ୍ଗଗଡ଼ ଦୁର୍ଗ ସେ ଅଧିକ ଦୃଢ଼ କରିଥିଲେ । ନିଜେ ଯୁଦ୍ଧକୌଶଳୀ ଥିବାରୁ ସେ ରାଜଧାନୀ କଟକ ବାରାଣସୀକୁ ବହିଃଶତ୍ରୁ ଆକ୍ରମଣରୁ ନିରାପଦରେ ରକ୍ଷାକରିବା ନିମନ୍ତେ ଉତ୍ତର ଓ ଦକ୍ଷିଣରେ ନଦୀର ଅପର ପାରରେ ଏହିପରି ଦୁଇଟି ସୁଦୃଢ଼ ଦୁର୍ଗର ଆବଶ୍ୟକତା ସେ ବୁଝିଥିଲେ ।

ବଙ୍ଗଦେଶବିଜୟ ଚୋଡ଼ଗଙ୍ଗଙ୍କ ରାଜତ୍ୱର ଅନ୍ୟତମ ଘଟଣା । ସେତେବେଳେ ବଙ୍ଗଦେଶରେ ଗଙ୍ଗାକୂଳରେ 'ମନ୍ଦାର' ନାମକ ଗୋଟିଏ ରାଜ୍ୟ ଥିଲା । ବର୍ତ୍ତମାନ ହୁଗୁଳି ଜିଲ୍ଲା ସେ ରାଜ୍ୟମଧ୍ୟରେ ଥିବାର କେହି କେହି କହନ୍ତି । ଚୋଡ଼ଗଙ୍ଗ ଦେଶବିଜୟ ପୂର୍ବେ ମନ୍ଦାର ରାଜ୍ୟ ଆକ୍ରମଣ କଲେ । ଚୋଡ଼ଗଙ୍ଗଙ୍କ ଆକ୍ରମଣ ଆଶଙ୍କା କରି ମନ୍ଦାର ଅଧିପତି ପୂର୍ବରୁ ରାଜ୍ୟ ଛାଡ଼ି ପଳାଇଥିଲେ । ପରେ ପୁଣି ସାହସ ବାନ୍ଧି ବହୁ ସୈନ୍ୟବଳ ସଂଗ୍ରହକରି ଗଙ୍ଗାକୂଳରେ ସେ ଚୋଡ଼ଗଙ୍ଗଙ୍କ ସଙ୍ଗେ ଯୁଦ୍ଧ ଆରମ୍ଭକଲେ । ମାତ୍ର ଯୁଦ୍ଧରେ ଚୋଡ଼ଗଙ୍ଗଙ୍କ ଅସ୍ତ୍ରାଘାତରେ କ୍ଷତବିକ୍ଷତ ହୋଇ ସେ ପଳାୟନ କଲେ; ଏବଂ ଚୋଡ଼ଗଙ୍ଗ ମନ୍ଦାର ଅଧିକାର କଲେ ।

ଚୋଡ଼ଗଙ୍ଗଙ୍କର ଅନ୍ୟ ଏକ ଅଭିଯାନ ପଶ୍ଚିମ ଦିଗରେ ରତ୍ନପୁର ବିରୁଦ୍ଧରେ ଚାଲିଥିଲା । ପୂର୍ବେ କୁହାଯାଇଛି, କୋଶଳ ରାଜ୍ୟରୁ କେଶରୀ ରାଜାମାନେ ଉତ୍କଳକୁ ଆସିଥିଲେ; ଏବଂ ଚେଦୀ ରାଜ୍ୟର କାଳଚୁରୀ ରାଜାମାନେ କୋଶଳ ଅଧିକାର କରି ଜବଲପୁର ନିକଟବର୍ତ୍ତୀ ତ୍ରିପୁରୀରେ ରାଜଧାନୀ ସ୍ଥାପନ କରିଥିଲେ । ସେହି ଚେଦୀ କାଳଚୁରୀମାନଙ୍କର ଏକ ଶାଖା ହେହୟ ଜାତି ବିଳାସପୁର ମଧ୍ୟବର୍ତ୍ତୀ ରତ୍ନପୁରରେ ରାଜତ୍ୱ କରୁଥିଲେ । କାଳକ୍ରମେ ସେହି ହେହୟମାନେ ଚେଦୀ ରାଜ୍ୟରୁ ସ୍ୱାଧୀନ ହୋଇ ରତ୍ନପୁର

ଦୁର୍ଗରୁ ସମୁଦାୟ କୋଶଳ ରାଜ୍ୟ ଶାସନ କଲେ । ରତ୍ନପୁର ପନ୍ତ ଓ ଉତ୍କଳ କେଶରୀମାନଙ୍କ ମଧ୍ୟରେ ବିବାଦ ବଢ଼ୁଥିବାର ଚାଲିଥିଲା ରତ୍ନପୁର ରାଜାମାନେ ମଧ୍ୟ କେଶରୀମାନଙ୍କୁ ଦୂରକରି ତ୍ରିକଳିଙ୍ଗାଧିପତି ହେବା ପ୍ରୟାସରେ ଥିଲେ । ଅଧୁନାର ବିଲାସପୁର ମଧ୍ୟରେ କେଶରୀରାଜାମାନେ ରତ୍ନପୁରପତିଙ୍କ ସଙ୍ଗେ କେତେଥର ଯୁଦ୍ଧ କରିଥିଲେ । ଗଙ୍ଗବଂଶ ରାଜତ୍ୱ ଆରମ୍ଭ ପର୍ଯ୍ୟନ୍ତ ସେହି ବିବାଦ ଅଳ୍ପାଧିକ ଚାଲିଥିଲା । ଚୋଡ଼ଗଙ୍ଗ ରାଜ୍ୟ ବିସ୍ତାର ସମ୍ପର୍କରେ ରତ୍ନପୁର ଉପରେ ଆଖି ପକାଇବା ସ୍ୱାଭାବିକ । ପ୍ରାଚୀନ କୋଶଳ ସହିତ କଳିଙ୍ଗଉତ୍କଳର ପ୍ରାଚୀନ ରାଜନୈତିକ ସମ୍ବନ୍ଧ ଓ ସଭ୍ୟତାର ଏକତ୍ୱ ଥିବାରୁ ରତ୍ନପୁର ବା ପ୍ରାଚୀନ କୋଶଳଖଣ୍ଡକୁ ଉତ୍କଳର ଅନ୍ତର୍ଭୁକ୍ତ କରି ଏକ ରାଜ୍ୟ କରିବା ନିମନ୍ତେ ଚୋଡ଼ଗଙ୍ଗ ମନ ବଳାଇଥିଲେ । ରତ୍ନପୁରପତିଙ୍କ ସଙ୍ଗେ ଚୋଡ଼ଗଙ୍ଗଙ୍କର ଘୋର ଯୁଦ୍ଧ ହେଲା । ଶେଷରେ ଚୋଡ଼ଗଙ୍ଗ ଜୟୀ ହୋଇ ମଧ୍ୟପ୍ରଦେଶସ୍ଥ ଗଣ୍ଡୱାନା ରାଜ୍ୟ ପର୍ଯ୍ୟନ୍ତ ଉତ୍କଳର ସୀମା ବଢ଼ାଇଥିଲେ ।

* * *

ଶେଷକାଳ—ଚୋଡ଼ଗଙ୍ଗଙ୍କ ଜୀବନ କେବଳ ନୀରସ ଯୁଦ୍ଧ ଅଭିଯାନରେ ଅତିବାହିତ ହୋଇ ନ ଥିଲା । ସେ ଜୀବନରେ ସରସତା ମଧ୍ୟ ଥିଲା । ବିଦ୍ୟାଚର୍ଚ୍ଚାରେ ସେ ମନ ଦେଉଥିଲେ । ତାଙ୍କ ଦରବାରରେ ନାନା ପଣ୍ଡିତମଣ୍ଡଳୀ ସମବେତ ହେଉଥିଲେ । ପୁରୀର ଜଣେ ପଣ୍ଡିତ ସତ୍ୟାନନ୍ଦ 'ସୂର୍ଯ୍ୟସିଦ୍ଧାନ୍ତ' ନାମରେ ଏକ ଜ୍ୟୋତିଷ ଗ୍ରନ୍ଥ ପ୍ରଣୟନ କରିଥିଲେ । ପଣ୍ଡିତମାନଙ୍କୁ ଉତ୍ସାହ ଦେବା ଏବଂ ସେମାନଙ୍କ ସଙ୍ଗେ ଜ୍ଞାନ ଚର୍ଚ୍ଚା କରିବା ଚୋଡ଼ଗଙ୍ଗଙ୍କର ଅନ୍ୟ କାର୍ଯ୍ୟ ଥିଲା । ଚୋଡ଼ଗଙ୍ଗଙ୍କର ପାଞ୍ଚ ପାଟରାଣୀ ଏବଂ ପାଞ୍ଚ ପୁତ୍ର ଥିଲେ । ସରଶେଷରେ ୭୦ ବର୍ଷ କାଳ ସୁଦୀର୍ଘ ରାଜତ୍ୱ ପରେ ଚୋଡ଼ଗଙ୍ଗଦେବ ୧୧୧୬ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କରିଥିଲେ ।

# କାମାର୍ଣ୍ଣବ ଦେବ

ଖ୍ରୀଷ୍ଟ ୧୧୪୨—୧୧୪୬ ଅବ୍ଦ ।

ଶୈଳଗଙ୍ଗ ଦେବଙ୍କ ମୃତ୍ୟୁ ପରେ ତାହାଙ୍କର ସୁବିଶାଳ ରାଜ୍ୟର ଶାସନ ଭାର ୧୧୪୨ ଖ୍ରୀଷ୍ଟାବ୍ଦରେ ତାହାଙ୍କ ପୁତ୍ର କାମାର୍ଣ୍ଣବଙ୍କ ହାତରେ ପଡ଼ିଲା । ପିତାଙ୍କ ସଦୃଶ ସେ ମଧ୍ୟ ରାଜ୍ୟ ଶାସନ ନିମନ୍ତେ ଉପଯୁକ୍ତ ପୁତ୍ର ଥିଲେ । ସେ ଯେପରି ସୁଧୀର ଓ ବିଚକ୍ଷଣ, ସେହିପରି ମଧ୍ୟ ପରାକ୍ରମଶାଳୀ ଓ ସମରପ୍ରିୟ ଥିଲେ । ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଏହି ବିରାଟ ରାଜ୍ୟର ସଂରକ୍ଷଣ ଓ ସୁଶାସନ ନିମନ୍ତେ ଯାଜପୁର, ଚୌଦ୍ୱାର, ବାରାଣସୀ କଟକ, ଛତା ଏବଂ ଦକ୍ଷିଣ ପ୍ରଦେଶରେ ଅମରାବତୀ, ଏହି ପାଞ୍ଚ କଟକ ସେ ସୁଦୃଢ଼ ଏବଂ ଶାସନର କେନ୍ଦ୍ର ସ୍ଥିର କରିଥିଲେ । ସେ ମଧ୍ୟ ଅସାଧାରଣ ଦାନବୀର ଥିବାର କଥିତ ଅଛି । ସେ ପ୍ରତ୍ୟହ 'ତୁଳାପୁରୁଷ', ଅର୍ଥାତ୍ ଆପଣା ଶରୀର ଓଜନର ସମାନ ସ୍ୱର୍ଣ୍ଣ, ବ୍ରାହ୍ମଣମାନଙ୍କୁ ଦାନ କରୁଥିବାର ତାମ୍ରଶାସନରେ ଲେଖାଅଛି । ଯୁଦ୍ଧବିଦ୍ୟା ଓ ଦେଶ ସୁଶାସନ ସଙ୍ଗେ ଜ୍ଞାନଚର୍ଚ୍ଚା ପ୍ରତି ତାହାଙ୍କର ବିଶେଷ ଆଗ୍ରହ ଥିଲା । ଦେଶରେ ଓ ରାଜଦରବାରରେ ବହୁ ପଣ୍ଡିତ ସମବେତ ଥିଲେ ।

କୌଶଲ୍ୟାଗଙ୍ଗ—କାମାର୍ଣ୍ଣବଙ୍କର ଅନ୍ୟ ନାମ ଗଙ୍ଗେଶ୍ୱର ଦେବ ଥିବାର 'ମାଦଳା ପାଞ୍ଜି'ରୁ ବୋଧହୁଏ । ଏହାଙ୍କର କୀର୍ତ୍ତି ମଧ୍ୟରେ କୌଶଲ୍ୟାଗଙ୍ଗ ପୁଷ୍କରଣୀର ଅବଶେଷ ଅଦ୍ୟାପି ରହିଛି । ଏହା ଗୋଟିଏ ବିରାଟ ପୁଷ୍କରଣୀ; ଦୈର୍ଘ୍ୟ ଓ ପ୍ରସ୍ଥରେ ଏକକ୍ରୋଶ ବା ୨ମାଇଲ ଥିଲା ; ଅର୍ଥାତ୍ ପୋଖରୀର କ୍ଷେତ୍ରଫଳ ୪ ବର୍ଗମାଇଲ । ବର୍ତ୍ତମାନ ଏହା ଚାରପାଖରୁ ପୋତି ହୋଇଅଛି କୃଷିଭୂମିରେ ପରିଣତ ହେଲାଣି ତଥାପି

ଯାହାଅଛୁ, ତାହା ଲମ୍ବରେ ଦେଢ଼ମାଇଲ ଏବଂ ଓସାରରେ ୧ ମାଇଲ ପର୍ଯ୍ୟନ୍ତ ହେବ । ଏହାର ମଧ୍ୟସ୍ଥଳରେ ଗୋଟିଏ ଦ୍ୱୀପାକାର ସ୍ଥାନ ଅଛି । ତହିଁରେ ଗୋଟିଏ ରାଜଭବନ ଥିଲା ; ତାହାର ଅବଶେଷ ଅଦ୍ୟାପି ରହିଛି । ବୋଧହୁଏ ଭୁବନେଶ୍ୱରରେ ଅବସ୍ଥାନ କାଳରେ ରାଜାମାନେ ବେଳେ ବେଳେ ଏହି ଜଳାଶୟ ମଧ୍ୟବର୍ତ୍ତୀ ସୁରମ୍ୟ ଭବନରେ ଶୀତଳ ସମୀରର ମଧ୍ୟରେ ପ୍ରମୋଦ ଉପଭୋଗ କରୁଥିଲେ ।

ପୁଷ୍କରଣୀଟି ପ୍ରାଚୀନ ରାଜଧାନୀ ଚୌଦ୍ୱାରରେ ବର୍ତ୍ତମାନ ଧଉଳପାହାଡର ପାଦଦେଶରେ ଖୋଳା ହୋଇଥିଲା । ଏହା ଠିକ ଦୟାନଦୀ ଉପରେ, ଉତ୍ତରପଶ୍ଚିମ କୋଣରେ ଏହା ଗୋଟିଏ ନାଳଦ୍ୱାରା ଦୟାନଦୀ ସଙ୍ଗେ ମିଶିଥିଲା । ସେହି ନାଳ ଉପରେ ଗୋଟିଏ ସେତୁ ଥିଲା, ତାହାର ଅବଶେଷ ଅଦ୍ୟାପି ରହିଛି । ପୁଷ୍କରଣୀର ପଶ୍ଚିମ ଦିଗକୁ ପଥରର ମୂଳପତ୍ତନ, ଖମ୍ବ, ଇଟା ପ୍ରଭୃତି ବହୁତ ଦେଖାଯାଏ; ସେଥିରୁ ଅନୁମାନ କରାଯାଏ, ସେହିସ୍ଥାନରେ ଗୋଟିଏ କ୍ଷୁଦ୍ର ନଗର ଥିଲା । ହୁଏତ ତାହା ପ୍ରାଚୀନ ଚୌଦ୍ୱାରର ଅବଶେଷ, ଅଥବା ଚୌଦ୍ୱାରରୁ ରାଜଧାନୀ ସ୍ଥାନାନ୍ତରିତ ହେବାପରେ, ଯେ କେତେକ ସ୍ଥାନୀୟ ଅଧିବାସୀ ଥିଲେ, ଏହି ଅବଶେଷ ସବୁ ସେହିମାନଙ୍କର ବାସଭବନ ଥିଲା । ସେ ଯାହାହେଉ, କୌଣସି ଜନାଧିବାସ ସେଠାରେ ନ ଥିଲେ ଏବଂ ବର୍ତ୍ତମାନ ପରି ସେ ସ୍ଥାନ କେବଳ ନିର୍ଜ୍ଜନ ଶ୍ୱାପଦସଙ୍କୁଳ ଜଙ୍ଗଲ ଥିଲେ, ଏତେ ବୃହତ ପୁଷ୍କରଣୀ ସେଠାରେ ଖୋଳାଇବାର ଆବଶ୍ୟକ ହୋଇ ନ ଥାନ୍ତା । ଜଳେ ଗଙ୍ଗେଶ୍ୱରଦେବ ଓ ତାହାଙ୍କ ପ୍ରିୟତମା କନ୍ୟା କୌଶଲ୍ୟାଙ୍କ ନାମାନୁସାରେ ପୁଷ୍କରଣୀଟିର ନାମ ରହିଥିଲା । ଏହା ସମ୍ବନ୍ଧରେ ରାଧାନାଥଙ୍କ 'ପାର୍ବ୍ବତୀ' କାବ୍ୟରେ ଯେ ଉଦ୍ଭଟ ଗଳ୍ପ ଦିଆଯାଇଛି ତାହା ସମ୍ପୂର୍ଣ୍ଣ ମିଥ୍ୟା ।

କାମାର୍ଣ୍ଣବ ୧୬ ଅଙ୍କରେ ୧୦ବର୍ଷ ରାଜ୍ୟଶାସନ କରି ୧୧୪୨ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କଲେ ।

# ଶ୍ରୀ ରାଘବ ଦେବ

## ଖ୍ରୀଷ୍ଟ ୧୧୭୨—୧୧୮୭ ଅବ୍ଦ ।

ରାଜତ୍ୱ—କାମାର୍ଣ୍ଣବ ଅପୁତ୍ରିକ ଥିଲେ । ଚୋଡ଼ଗଙ୍ଗଙ୍କର ପ୍ରଥମ ମହିଷୀ କସ୍ତୁରୀକାମୋଦିନୀଙ୍କ ଗର୍ଭରୁ କାମାର୍ଣ୍ଣବ ଜନ୍ମ ହୋଇଥିଲେ । ସୂର୍ଯ୍ୟବଂଶୀୟ ରାଜକନ୍ୟା ଇନ୍ଦିରା ଚୋଡ଼ଗଙ୍ଗଙ୍କର ଦ୍ୱିତୀୟ ମହିଷୀ ଥିଲେ । ତାହାଙ୍କ ଗର୍ଭରେ ଶ୍ରୀ ରାଘବଦେବ ଜନ୍ମ ହୋଇଥିଲେ । କାମାର୍ଣ୍ଣବଙ୍କ ଅନ୍ତେ ପୁତ୍ର ଅଭାବରେ ତାହାଙ୍କ ଅନୁଜ ଶ୍ରୀରାଘବ ସିଂହାସନ ଅଧିରୋହଣ କଲେ । ଏହାଙ୍କ ସମୟରେ ବିଶେଷ କିଛି ଘଟଣା ଘଟିଥିବାର ଜଣାଯାଉ ନାହିଁ । ତେବେ ସେ ପୂର୍ବ ରାଜାମାନଙ୍କ ପରି ପରାକ୍ରମୀ ଥିବାର ଏବଂ ବହୁ ଭୂମି ଦେବତା ବ୍ରାହ୍ମଣଙ୍କୁ ଦାନ କରିଥିବାର ବର୍ଣ୍ଣନା ଅଛି । ଶ୍ରୀ ରାଘବ ମଧ୍ୟ ଅପୁତ୍ରିକ ଥିଲେ । ଏହାଙ୍କ ନାମ 'ମାଦଳାପାଞ୍ଜିରେ' ଏକଜଟା କାମଦେବ ଥିବାର ଲେଖାଅଛି ।

# ଶ୍ରୀ ରାଜରାଜ ଦେବ

## ଖ୍ରୀଷ୍ଟାବ୍ଦ ୧୧୮୭—୧୧୭୨ ଅବ୍ଦ

ରାଜତ୍ୱ— ଚୋଡ଼ଗଙ୍ଗଙ୍କ ତୃତୀୟ ମହିଷୀ 'ଅଦଭରୂପା' ଚନ୍ଦ୍ରଲେଖାଙ୍କ ଗର୍ଭରୁ ଜାତ ଶ୍ରୀ ରାଜରାଜ ଦେବ ଶ୍ରୀ ରାଘବଙ୍କ ପରେ ରାଜା ହେଲେ । ସେ ବଡ଼ ଶକ୍ତିଶାଳୀ ରାଜା ଥିଲେ ଏବଂ ଦିଗ୍‌ବିଜୟରେ ଯଶ ଲାଭ କରିଥିଲେ । ସେ ସୁଶାସକ ଥିଲେ ; ରାଜ୍ୟରେ ସର୍ବଦା ଶାନ୍ତି ରାଜତ୍ୱ କରୁଥିଲା । ସେ ଉଦାରବାନ୍ ରାଜା ଥିବାର ମଧ୍ୟ କଥିତ ଅଛି । ଏହାଙ୍କର ଅନ୍ୟ ନାମ ମଦନମହାଦେବ ବୋଲି ପାଞ୍ଜିରେ ଲେଖାଅଛି ।

## ଅନିୟଙ୍କ ଭୀମ ଦେବ

### ଖ୍ରୀଷ୍ଟ ୧୧୭୨—୧୧୭୨ ଅବ୍ଦ

ରାଜତ୍ୱ— ରାଜରାଜଙ୍କ ଅନ୍ତେ ତାହାଙ୍କ ଅନୁଜ ଅନିୟଙ୍କ ଭୀମ ଦେବ ୧୧୭୨ରୁ ୧୧୭୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସିଂହାସନାରୋହଣ କରିଥିଲେ । ସେ ବଡ଼ ଜନତାପ୍ରିୟ, ଧର୍ମନିଷ୍ଠ, ସୁବିଚାର ଓ କାର୍ଯ୍ୟଦକ୍ଷ ନରପତି ଥିଲେ । ଦଣ୍ଡ ନୀତିରେ ସେ ବିଶେଷ ପାରଦର୍ଶୀ ଥିଲେ । ସୁଶାସନ ନିମନ୍ତେ ସେ ବିଶେଷ ଲୋକପ୍ରିୟ ହୋଇଥିଲେ ।

## ରାଜରାଜେଶ୍ୱର ଦେବ

### ଖ୍ରୀଷ୍ଟ ୧୧୭୨—୧୧୮୯ ଅବ୍ଦ

ଶାସନ — ଅନିୟଙ୍କ ଭୀମ ଦେବଙ୍କ ମୃତ୍ୟୁ ପରେ ତାହାଙ୍କ ପୁତ୍ର ରାଜରାଜେ-ଶ୍ୱର ଦେବ ୨୧ ଅଙ୍କରେ ୧୭ବର୍ଷ ରାଜତ୍ୱ କରିଥିଲେ । ତାହାଙ୍କର ଅନ୍ୟନାମ ପୁରୁଷୋତ୍ତମ ଦେବ ଥିଲା । ସେ ବଡ ନୀତିକୁଶଳ ରାଜାଥିଲେ । ବିନା ଯୁଦ୍ଧରେ କେବଳ ନୀତିକୌଶଳରେ ସେ ଦୁର୍ଦ୍ଦାନ୍ତ ଶତ୍ରୁମାନଙ୍କୁ ଆୟତ୍ତ କରି ଦେଶରେ ଶାନ୍ତି ଓ ଶାସନ ଦୃଢ଼ ରଖିଥିଲେ । ସେ ବିଶେଷ ବିଦ୍ୟାପ୍ରିୟ ରାଜା ଥିଲେ । ସମଗ୍ର ଦେଶରେ ପ୍ରଜାସାଧାରଣଙ୍କ ମଧ୍ୟରେ ସେ ବିଦ୍ୟାର ଏତେ ଆଦର କରୁଥିଲେ ଯେ ପ୍ରଜାସାଧାରଣଙ୍କ ଭିତରେ କେହି ମୂର୍ଖ ନ ଥିଲେ । ତାହାଙ୍କ ରାଜଦରବାର ପଣ୍ଡିତ ମଣ୍ଡଳରେ ପୂର୍ଣ୍ଣ ଥିଲା । ସେ ଚାଲୁକ୍ୟ ରାଜବଂଶର ମଙ୍କୁଣ ଦେବୀଙ୍କର ପାଣିଗ୍ରହଣ କରିଥିଲେ । ମଙ୍କୁଣ ଦେବୀଙ୍କ ଗର୍ଭରୁ ସୁପ୍ରସିଦ୍ଧରାଜା ଅନଙ୍ଗଭୀମଦେବ ଜାତ ହୋଇଥିଲେ ।

# ଅନଙ୍ଗଭୀମ ଦେବ

ଖ୍ରୀଷ୍ଟ ୧୧୮୯–୧୨୨୩ ଅବ୍ଦ ।

ସିଂହାସନାରୋହଣ—ରାଜୁଲ ଗଙ୍ଗବଂଶର ସପ୍ତମ ଓ ସୁବିଖ୍ୟାତ ନରପତି ଅନଙ୍ଗ ଭୀମଦେବ ୧୧୮୯ ଖ୍ରୀଷ୍ଟାବ୍ଦରେ ସିଂହାସନାରୋହଣ କଲେ । ପିତାଙ୍କ ଆଡୁ ବଂଶାନୁକ୍ରମେ ଗଙ୍ଗବଂଶର ସକଳ ଶୌର୍ଯ୍ୟ ବୀର୍ଯ୍ୟ ଓ ସଦ୍‌ଗୁଣରେ ସେ ଉତ୍ତରାଧିକାରୀ ହୋଇଥିଲେ; ଏବଂ ମାତା ମଙ୍କୁଣ-ଦେବୀ ଚାଲୁକ୍ୟବଂଶୀୟା ଥିବାରୁ ସେହି ବଂଶର ରକ୍ତରେ ସେ ଅଧିକ ଶକ୍ତିଶାଳୀ ହୋଇଥିଲେ । ଅଭିଷେକ ବେଳେ ସେ 'ତୁଳାପୁରୁଷ' ଏବଂ ଶାସନାଦି ବ୍ରାହ୍ମଣମାନଙ୍କୁ ଦାନ ଦେଇଥିଲେ ।

ସାଧାରଣ ହିତ କାର୍ଯ୍ୟ—ଅନଙ୍ଗଭୀମଦେବ ଅସାଧାରଣ ଦାନୀ ଧାର୍ମିକ ଏବଂ ପ୍ରଜାହିତୈଷୀ ରାଜା ଥିଲେ । ରାଜତ୍ୱର ପ୍ରଥମାବସ୍ଥାରେ ସେ ୬୦ ଦେଉଳ, ୧୦ ସେତୁ, ୮୪ ବାପୀ, ୨୦ ପୋଖରୀ ଏବଂ ୧୫୨ ଘାଟ ନିର୍ମାଣ କରାଇ ଥିଲେ । ୪୫୦ ବ୍ରାହ୍ମଣ ଶାସନ ସେ ବସାଇ ବ୍ରାହ୍ମଣମାନଙ୍କୁ ବିସ୍ତର ଭୂମିଦାନ କରିଥିଲେ । ଏହା ବାଦ୍ ସେ ଜଗନ୍ନାଥଙ୍କୁ ୧୦ ହଜାର ମାଡସ୍ୱର୍ଣ୍ଣ ଦାନ କରିଥିଲେ, ଏବଂ ୧୦ ହଜାର ଭରଣ ଧାନ ଗରିବମାନଙ୍କ ନିମନ୍ତେ ଅନ୍ନଛତ୍ରରେ ବ୍ୟୟ କରିଥିଲେ । ସେ ଶତ ଶତ ରାଜମାର୍ଗ ନିର୍ମାଣ କରାଇଥିଲେ ଏବଂ ତାହା ପାଖରେ ବହୁତ କୂଅ ପୋଖରୀ ଖୋଳାଇ ଥିଲେ । ରାଜମାର୍ଗଗାମୀ ପଥିକମାନଙ୍କର ସୁବିଧା ନିମନ୍ତେ ମାର୍ଗର ସ୍ଥାନେ ସ୍ଥାନେ ଚଟିଘର ବସାଇ, ମାର୍ଗର ଦୁଇ ପାଖରେ ନାନା ଫୁଲଫଳର ମନୋହର ଏବଂ ଛାୟାପ୍ରଦ ବୃକ୍ଷମାନ ଯୋଡାଇଥିଲେ ।

ଜଗନ୍ନାଥ ମନ୍ଦିର—ଅନଙ୍ଗ ଭୀମଦେବଙ୍କର ଗୌରବମୟ ରାଜତ୍ୱ-କାଳର ମଧ୍ୟରେ ପୁରୀରେ ଜଗନ୍ନାଥ ମନ୍ଦିର ନିର୍ମାଣ ପ୍ରଧାନ ଘଟଣା । ଚୋଳଗଙ୍ଗଦେବ ଏହି ମନ୍ଦିର ନିର୍ମାଣ ଆରମ୍ଭ କରିଥିବାର କୁହାଯାଇଛି । ମାତ୍ର ତାହାଙ୍କ ପୁତ୍ରପୌତ୍ରାଦିମାନେ ତାହା ସମାପନ କରିବାରେ ମନଯୋଗ ଦେଇ ନ ଥିଲେ । ତାହା ଯେପରି ଅନଙ୍ଗଭୀମଦେବଙ୍କ ରାଜତ୍ୱକୁ ଅପେକ୍ଷା କରି ରହିଥିଲା । ଅନଙ୍ଗଭୀମ ସିଂହାସନାରୋହଣ କରିବା ସଙ୍ଗେ ସଙ୍ଗେ ରାଜତ୍ୱର ୨ୟ ଅଙ୍କ ବା ପ୍ରଥମ ବର୍ଷରେ ମନ୍ଦିର ନିର୍ମାଣ ଆରମ୍ଭ କଲେ । ତାହାଙ୍କ ହିସାବରେ ବଡଦେଉଳର ଉଚ୍ଚତା ୧୨୦ ହାତ । ଖଳକଣ୍ଟରାଜଗୁରୁ ମହାପାତ୍ର ପରମହଂସ ବାଜପେୟୀଙ୍କ ଉପରେ ମନ୍ଦିର ନିର୍ମାଣଭାର ନ୍ୟସ୍ତଥିଲା । ନିର୍ମାଣକାର୍ଯ୍ୟ ନିମନ୍ତେ ୧୨ଲକ୍ଷ ୫୦ହଜାର ମାଢ଼ ସ୍ୱର୍ଣ୍ଣ ଏବଂ ଅଢ଼େଇଲକ୍ଷ ମାଢ଼ ସ୍ୱର୍ଣ୍ଣ ମୂଲ୍ୟର ରତ୍ନାଦି ବ୍ୟୟ କରାଯାଇଥିଲା । ୧୫ବର୍ଷରେ ଅର୍ଥାତ୍ ୧୨୦୫ ଖ୍ରୀଷ୍ଟାବ୍ଦରେ ମନ୍ଦିର ନିର୍ମାଣ ଶେଷ ହେଲା । ମନ୍ଦିର ନିର୍ମାଣ ପରେ ସେହି ବାଜପେୟୀଙ୍କ ହସ୍ତରେ ମନ୍ଦିରର ସଂକଳ ଶାସନ ଓ ପରିଚାଳନ ଭାର ନ୍ୟସ୍ତ କରାଯାଇଥିଲା ।

ଜଗନ୍ନାଥ ମନ୍ଦିରରେ ଯେଉଁ ସବୁ ସେବା ଓ ନୀତମାନ ବର୍ତ୍ତମାନ ଚାଲିଛି, ସେଥି ମଧ୍ୟରୁ ପୂର୍ବରୁ ଯଯାତି ଯାହା କରିଥିଲେ, ତାହା ଉପରେ ଅନଙ୍ଗଭୀମଦେବ ବହୁତ ବଢ଼ାଇ ଦେଲେ । ସେ ଜଗନ୍ନାଥଙ୍କ ସମ୍ମୁଖରେ ଭୈରବ ମୂର୍ତ୍ତି ସ୍ଥାପନ କରିଥିଲେ; ଏବଂ ଭୈରବମନ୍ତ୍ରରେ ଜଗନ୍ନାଥଙ୍କ ପୂଜା ଅଦ୍ୟାପି ଚାଲୁଛି । ଆପଣାର ଉଦାରଚେତା ଏବଂ ପରମହଂସ ବାଜପେୟୀଙ୍କ ସୁଦୂର ଦୃଷ୍ଟି ପ୍ରଭାବରେ ଜଗନ୍ନାଥଙ୍କ ସେବାପୂଜାର ବିଧାନ ଏତେଦୂର ସର୍ବଜନୀନ ହୋଇଅଛି ଯେ ହିନ୍ଦୁମାନେ ଯେ କୌଣସି ସମ୍ପ୍ରଦାୟଭୁକ୍ତ ହେଉନ୍ତୁ, ସମସ୍ତେ ସମାନ ଭକ୍ତିରେ ଜଗନ୍ନାଥ ଦର୍ଶନ ଅର୍ଚ୍ଚନ କରି ଆପଣାକୁ କୃତାର୍ଥ ମନେ କରନ୍ତି । ଜଗନ୍ନାଥଙ୍କ ସେବକମାନେ

ନିଜ ନିଜ ସେବାନୁସାରେ ୩୬ଶ୍ରେଣୀରେ ବିଭକ୍ତ ହୋଇ 'ଛତିଶା ନିଯୋଗ' ନାମରେ ପରିଚିତ ହେଲେ । ପଢ଼ୀହାରି, ଗୋଛିକାର, ସୁଆର, ମେକାପ, କହୁ, ଖୁଣ୍ଟିଆ, ଦଇତା, ପଶୁପାଳକ, ପୂଜାପଣ୍ଡା ପ୍ରଭୃତି ସେବକମାନଙ୍କ ଶ୍ରେଣୀ ବିଭାଗ ଏହି ସମୟରୁ ଆରମ୍ଭ ହୋଇ ସେବା ପୂଜା ଅନୁସାରେ ବିଧିବଦ୍ଧ ହୋଇ ରହିଲା ।

ବର୍ତ୍ତମାନ ଜଗନ୍ନାଥ ମନ୍ଦିରର ବେଢ଼ା ମଧ୍ୟରେ ଯେଉଁ ପାର୍ଶ୍ୱଦେବତା ମନ୍ଦିରମାନ ଅଛି ସେ ସମସ୍ତ ଅନଙ୍ଗଭୀମଦେବ ତୋଳାଇ ନ ଥିଲେ । କେବଳ ବଡ଼ ଦେଉଳ ଓ ଜଗମୋହନ ବାହାର ପ୍ରାଚୀର, ଲକ୍ଷ୍ମୀ ଓ ବିମଳା ମନ୍ଦିର ବଡ଼ ଦେଉଳ ସଙ୍ଗେ ନିର୍ମିତ ହୋଇଥିଲା । ପରବର୍ତ୍ତୀ ରାଜାମାନେ ଭିତର ବେଢ଼ା ବା କୂର୍ମବେଢ଼ା ଓ ଅନ୍ୟାନ୍ୟ ମନ୍ଦିରମାନ ନିର୍ମାଣ କରାଇଥିଲେ ।

ଜଗନ୍ନାଥ ମନ୍ଦିର ବ୍ୟତୀତ ଅନଙ୍ଗଭୀମଦେବ ପୁରୀରେ ବହୁ ବାସଭବନ ନିର୍ମାଣ କରାଇଥିଲେ । ପୁରୀ ସେତେବେଳେ 'ଇନ୍ଦ୍ରପୁରୀ' ସଦୃଶ ମନୋହର ହୋଇଥିଲା । ସେ ମଧ୍ୟ ଭୁବନେଶ୍ୱରରେ ମେଘେଶ୍ୱର ମନ୍ଦିର ଏବଂ କଟକ ନିକଟରେ ଚଟେଶ୍ୱର ମନ୍ଦିର ନିର୍ମାଣ କରାଇଥିଲେ । ଚଟେଶ୍ୱର ମନ୍ଦିରର ଶିଳାଲିପି ଅନଙ୍ଗଭୀମ ଦେବଙ୍କ ରାଜତ୍ୱର ଯଥେଷ୍ଟ ବିବରଣ ଦିଏ ।

ସାମାଜିକ ବ୍ୟବସ୍ଥା ଓ ବିଦ୍ୟାନୁରାଗ— ଅନଙ୍ଗଭୀମଦେବ ଉତ୍କଳ ସମାଜ ଉନ୍ନତିରେ ବହୁ ଚେଷ୍ଟା କରିଥିଲେ । ବିଦ୍ୟା ସମାଜ ସଂସ୍କାରର ମୂଳଭିତ୍ତି ଜାଣି ସମସ୍ତ ଦେଶରେ ବିଦ୍ୟାର ବହୁଳ ବିସ୍ତାର କରାଇଥିଲେ । ନିଜ ରାଜଧାନୀରେ ବହୁ ଖ୍ୟାତନାମା ପଣ୍ଡିତ ରାଜ ଦରବାର ମଣ୍ଡନ କରୁଥିଲେ । ସଂସ୍କୃତ ସେତେବେଳେ ରାଜଭାଷା ଏବଂ ବିଦ୍ୟାର ପ୍ରଧାନ ପାଠ୍ୟ ବିଷୟ ସଂସ୍କୃତଭାଷା ଓ ସାହିତ୍ୟରେ ଥିଲା । ଚଟେଶ୍ୱର ଶିଳାଲିପିପ୍ରଣେତା

ପଣ୍ଡିତ ଭୂସୁର, ପ୍ରଧାନ ରାଜମନ୍ତ୍ରୀ ଗୋବିନ୍ଦ ପଟ୍ଟଜ୍ୟୋତିଷ, ପରମହଂସ ବାଜପେୟୀ, ଏବଂ ରାଜସ୍ୱ ସଚିବ ଦାମୋଦର ବଡ଼ପଣ୍ଡା ପ୍ରଭୃତି ଅଦ୍ୱିତୀୟ ପଣ୍ଡିତମାନେ ରାଜଦରବାରର ପ୍ରଧାନ ଭୂଷଣ ଥିଲେ। ସେତେବେଳେ ଯେଉଁ ପୁରାଣ ଶାସ୍ତ୍ରମାନ ପ୍ରଚଳିତ ଥିଲା, ତାହାସବୁ ଲୋକଶିକ୍ଷାର ଉପଯୋଗୀ ନ ଥିବାରୁ ଦେଖି ଅନଙ୍ଗଭୀମ ନିଜ ଦରବାର ପଣ୍ଡିତମାନଙ୍କ ଦ୍ୱାରା ସେମାନଙ୍କର ନୂତନ ସଂସ୍କରଣ କରାଇଲେ। ନିଜେ ରାଜା ବେଦ, ନ୍ୟାୟଶାସ୍ତ୍ର, ଲୋକବାର୍ତ୍ତା ଏବଂ ଦଣ୍ଡନୀତି ପ୍ରଭୃତିରେ ବଡ଼ ପଣ୍ଡିତ ଥିଲେ। ବିଦ୍ୟା ଓ ଗୁଣର ଉତ୍କର୍ଷତା ଦେଖି ସେ ଦେଶବାସିଙ୍କ ମଧ୍ୟରେ ସମ୍ମାନ-ସୂଚକ କେତେକ ଉପାଧି ସୃଷ୍ଟି କରିଥିଲେ। ପଟ୍ଟଜ୍ୟୋତିଷ, ବଡ଼ପଣ୍ଡା, ବାଜପେୟୀ, ସାମନ୍ତରାୟ, ମଙ୍ଗରାଜ, ପଟ୍ଟନାୟକ, ମହାପାତ୍ର ପ୍ରଭୃତି ଉପାଧି ତାହାଙ୍କ ଦ୍ୱାରା ସୃଷ୍ଟି କରାଯାଇଥିଲା। ଫଳତଃ ସମାଜସଂସ୍କାର ବିଦ୍ୟାପ୍ରଚାର ଏବଂ ପ୍ରଜା ସାଧାରଣଙ୍କର ଆଧ୍ୟାତ୍ମିକ ଉନ୍ନତି ବିଧାନ ନିମନ୍ତେ ଅନଙ୍ଗଭୀମ ଦେବଙ୍କର ବିଶେଷ ଚେଷ୍ଟା ଥିଲା।

ସୈନ୍ୟ ସଂଗଠନ —ଅନଙ୍ଗ ଭୀମଦେବ କେବଳ ନିଷ୍ଠାବାନ ଧର୍ମପ୍ରିୟ ରାଜା ନ ଥିଲେ। ବିକ୍ରମ ଓ ବୀରତ୍ୱରେ ମଧ୍ୟ ତାଙ୍କ ଜୀବନ ଗଠିତ ହୋଇଥିଲା। ସୈନ୍ୟ ସଂଗଠନ ଓ ଦୁର୍ଗ ନିର୍ମାଣ କୌଶଳରୁ ତାଙ୍କର ସାମରିକ କୁଶଳତାର ପରିଚୟ ମିଳେ। ଅନଙ୍ଗଭୀମଙ୍କ ରାଜତ୍ୱ କାଳରେ ମୁସଲମାନମାନଙ୍କ ଦୃଷ୍ଟି ଉତ୍କଳ ଉପରେ ପଡ଼ିଥିଲା, ଏବଂ ମୁସଲମାନମାନେ ଉତ୍କଳ ଆକ୍ରମଣ ଆରମ୍ଭ କରିଥିଲେ। ସୁତରାଂ ଦେଶରକ୍ଷା ନିମନ୍ତେ ସୈନ୍ୟ ସଂଗଠନ ଏବଂ ଦୁର୍ଗ ନିର୍ମାଣ ରାଜାଙ୍କର ପ୍ରଧାନ କାର୍ଯ୍ୟ ହେଲା। ସେ ସୈନ୍ୟବଳ ବହୁତ ବଢ଼ାଇ ଦେଇଥିଲେ। ପଦାତିକ ୬୦ ହଜାର, ଅଶ୍ୱାରୋହୀ ୫୦ ହଜାର, ଏବଂ ହସ୍ତୀ ୨୫ ହଜାର ସାଧାରଣ ସୈନ୍ୟ-ଶ୍ରେଣୀଭୁକ୍ତ ଥିଲେ। ମାତ୍ର ଶତ୍ରୁ ଆକ୍ରମଣରୁ ଦେଶ ରକ୍ଷା ବା ବିଦେଶି ବିଜୟ ଅଭିଯାନ ବେଳେ ରାଜାଙ୍କ ଆଦେଶ ମାତ୍ରେ ଅସ୍ତ୍ରର ଲକ୍ଷ

ସୈନ୍ୟ ଅବଲମ୍ବେ ଏକତ୍ରିତ ହୋଇ ପାରୁଥିଲେ । ଏହିରୂପେ ଦୁଇ ଭାଗରେ ଦେଶର ଯୁଦ୍ଧବଳ ବିଭକ୍ତ ହେଲା । ଯେଉଁମାନେ ନିଯୁକ୍ତ ସାଧାରଣ ସୈନ୍ୟ, ସେମାନେ ରାଜକୋଷରୁ ବେତନ ପାଉଥିଲେ । ଯୁଦ୍ଧ ହିଁ ସେମାନଙ୍କର ପ୍ରଧାନ ବ୍ୟବସାୟ ଥିଲା । ଅନ୍ୟ ସୈନ୍ୟଦଳ କେବଳ ଯୁଦ୍ଧ ବିଦ୍ୟା ଶିକ୍ଷା କରୁଥାନ୍ତି, ଏବଂ ଆବଶ୍ୟକ ବେଳେ ଯୁଦ୍ଧ ନିମନ୍ତେ ଅସ୍ତ୍ର ଶସ୍ତ୍ର ଧରି ପ୍ରସ୍ତୁତ ହୁଅନ୍ତି । ସେମାନଙ୍କୁ ନିଷ୍କର ଭୂମି ଦାନ କରାଯାଇ ଥିଲା । କୃଷି ସେମାନଙ୍କର ପ୍ରଧାନ ଜୀବିକା ଥିଲା । ସେମାନେ ସେହି ଦାନଜମି ବା ଜାଗୀରବୃତ୍ତି ଚାଷ କରୁଥାନ୍ତି; କେବଳ ରାଜାଦେଶ ବେଳେ ନିଜ ନିଜ ଦଳପତିଙ୍କ ଅଧୀନରେ ଯୁଦ୍ଧକୁ ବାହାରି ପଡ଼ନ୍ତି । ଏମାନେ ପାଇକ ନାମରେ ପରିଚିତ । ଦେଶର ନାନା ସ୍ଥାନରେ ଦୁର୍ଗ ନିର୍ମାଣ କରାଯାଇ ସୈନ୍ୟମାନଙ୍କୁ ଶିକ୍ଷା ଦିଆ ଯାଉଥିଲା ।

ଦେଶର ନାନା ସ୍ଥାନରେ ଅନଙ୍ଗଭୀମଦେବ ୧୬ଜଣ ସାମନ୍ତରାଜା ସୃଷ୍ଟି କରିଥିଲେ । ସେମାନଙ୍କୁ ଖଣ୍ଡିଏ ଖଣ୍ଡିଏ ରାଜ୍ୟ ଭୋଗ କରିବାକୁ ଦାନ କରିଥିଲେ । ସେହି ରାଜାମାନଙ୍କ ଅଧୀନରେ ସୈନ୍ୟ ଥିଲେ । ଯୁଦ୍ଧବେଳେ ରାଜାଙ୍କୁ ସାହାଯ୍ୟ କରିବା ଏବଂ ଶତ୍ରୁ ଆକ୍ରମଣରୁ ଦେଶ ରକ୍ଷା କରିବା ସେହି ସାମନ୍ତ ରାଜାମାନଙ୍କର ପ୍ରଧାନ କାର୍ଯ୍ୟ ଥିଲା । ଆଧୁନିକ ଗଡଜାତମାନଙ୍କ ମଧ୍ୟରୁ କେତେକ ରାଜ୍ୟ ଏହିରୂପେ ଅନଙ୍ଗଭୀମଦେବ ସୃଷ୍ଟି କରିଥିଲେ ।

ବାରବାଟୀ—ଉତ୍କଳ ମଧ୍ୟରେ ଅନଙ୍ଗଭୀମ ଦେବଙ୍କର ଅନ୍ୟାନ୍ୟ ଦୁର୍ଗ ମଧ୍ୟରେ କଟକର ବାରବାଟୀ ଦୁର୍ଗ ସର୍ବପ୍ରଧାନ । ବାରବାଟୀ ସ୍ଥାପନ ପୂର୍ବରୁ ଚୌଦ୍ୱାର ଦୁର୍ଗ ଅନଙ୍ଗଭୀମଙ୍କର ରାଜଧାନୀ ଥିଲା । ଏହା ପୂର୍ବରୁ କଟକର ବିଡାନସୀ ଏବଂ ସାରଙ୍ଗଗଡ ଦୁର୍ଗମାନ ଥିଲା । ମାତ୍ର ଅନଙ୍ଗଭୀମ ବଡ଼ ବିଚକ୍ଷଣତା ସହ କଟକ ବାରବାଟୀରେ ଦୁର୍ଗ ନିର୍ମାଣ କରିବାର କଳ୍ପନା କଲେ । ବାରବାଟୀ ସର୍ବାପେକ୍ଷା ଅଧିକ ନିରାପଦ ସ୍ଥାନ । ଯେ କେହି ଆଧୁନିକ ପ୍ରବୀଣ ଯୁଦ୍ଧକୌଶଳୀ ସେନାପତି ବାରବାଟୀର ମାହାତ୍ମ୍ୟ ବୁଝନ୍ତେ ।

ଉତ୍ତରରେ ମହାନଦୀ ଓ ବିରୂପା, ଏବଂ ତାହା ମଧ୍ୟରେ ଚୌଦ୍ୱାରର ଅଭେଦ୍ୟ ଦୁର୍ଗ, ପଶ୍ଚିମରେ ମହାନଦୀ ଓ କାଠଯୋଡ଼ିର ଭୀଷଣ ଜଳସ୍ରୋତ ଏବଂ ତାହା ପାଖରେ ବଡ଼ଜାନକୀ ଦୁର୍ଗ, ଏବଂ ଦକ୍ଷିଣରେ କାଠଯୋଡ଼ିର ପ୍ରବଳ ସ୍ରୋତର ପର ପାରରେ ସାରଙ୍ଗଗଡ଼ । ସୁତରାଂ ଚତୁର୍ଦ୍ଦିଗରେ ଏହିପରି ଦୁର୍ଗମ ନଦୀ ଓ ଦୁର୍ଭେଦ୍ୟ ଦୁର୍ଗ ଥିବାରୁ ବାରବାଟୀକୁ ଦୁର୍ଗମ ଓ ନିରାପଦ ସ୍ଥଳ ବିବେଚନା କରି ଅନଙ୍ଗଭୀମ ସେହିଠାରେ ଦୁର୍ଗ ଓ ରାଜଧାନୀ ନିର୍ମାଣ କଲେ । ତାହାଙ୍କ ରାଜତ୍ୱର ୧୫ ଅଙ୍କ ବା ୧୩ବର୍ଷରେ ବାର ବାଟୀ ଦୁର୍ଗ ନିର୍ମିତ ହୋଇଥିଲା (୧୨୦୨ ଖ୍ରୀଷ୍ଟାବ୍ଦ) । ଦୁର୍ଗ ଓ ରାଜଧାନୀର ନାମ ହେଲା ବାରବାଟୀ କଟକ; ସୁତରାଂ ବର୍ତ୍ତମାନ କଟକ ନାମ ରହିଅଛି । ବାର ବାଟୀ ବର୍ତ୍ତମାନ ଇତିହାସର ସ୍ମୃତିରାଜ୍ୟରେ ପୂର୍ବ ବିଭବର କ୍ଷୀଣ ଅବୟବମାତ୍ର ହୋଇଅଛି । ଦୁର୍ଗର ବହିର୍ଦ୍ଦେଶରେ ଗୋଟିଏ ବୃହତ୍ ପରିଖା ଥିଲା, ଅଦ୍ୟାପି ତାହାର ଅବଶେଷ ଅଛି । ପରିଖାଟି ପ୍ରଥମେ ୨୨୦ ଫୁଟ ଓସାରରେ ଖୋଳା ହୋଇଥିଲା । ପରିଖା ଉପରେ ଗୋଟିଏ ବଡ଼ ପଥର ପାଚୀର ଦୁର୍ଗର ଚତୁର୍ଦ୍ଦିଗ ଘେରି ରହିଥିଲା । ଦୁର୍ଗର ଲମ୍ବା ଥିଲା ୨୧୫୦ ଫୁଟ ଏବଂ ଓସାର ୧୮୦୦ ଫୁଟ । ପାଚୀରଟି ସର୍ବତ୍ର ଭାଙ୍ଗି ଯାଇଛି, କେବଳ ପୂର୍ବଦିଗ ଦ୍ୱାର ପାଖରେ ଅତି ସାମାନ୍ୟ ମାତ୍ର ଅଛି । ଏହି ପାଚୀର ଭିତରେ ପୁଣି ଏକ ଭିତର ପାଚୀର ଥିଲା । ତାହା ମଧ୍ୟ ସମ୍ପୂର୍ଣ୍ଣ ଭାଙ୍ଗି ଯାଇଛି । ବାହାର ପାଚୀରି ଭିତରେ ଦୁର୍ଗ ଭୂମିର କ୍ଷେତ୍ରଫଳ ୯୦ ଏକର ଥିଲା । ଦୁର୍ଗ ମଧ୍ୟରେ ଯେ ରାଜଭବନ ଥିଲା ତାହା ଭାଙ୍ଗି ପରେ ଏକ ସୁରମ୍ୟ ଓ ବିରାଟ ଭବନ ରାଜା ମୁକୁନ୍ଦଦେବ ନିର୍ମାଣ କରିଥିଲେ । *

ବାରବାଟୀ ନିର୍ମାଣ କରି ଅନଙ୍ଗଭୀମଦେବ ସେହିଠାରେ ସ୍ଥାୟୀ ରାଜଧାନୀ କଲେ । ସେହି କାଳରୁ କଟକ ଉତ୍କଳର ରାଜଧାନୀ ହୋଇ ଆସିଅଛି । କଥିତ ଅଛି ଅନଙ୍ଗଭୀମଦେବ ରାଜତ୍ୱର ୧୩ ବର୍ଷରେ

* ଦୁର୍ଗର ସବିଶେଷ ବିବରଣ ଜାଣିବା ନିମନ୍ତେ ଲେଖକଙ୍କ "ବାରବାଟୀଦୁର୍ଗ" ଦ୍ରଷ୍ଟବ୍ୟ ।

ବାରବାଟୀରେ ପ୍ରଥମ ଅଧିବାସ ସମୟରେ ନିଜ ନାମରେ ନୂତନ ମୁଦ୍ରା ପ୍ରସ୍ତୁତ ଓ ମୋହର ଖୋଦିତ କରାଇ ଥିଲେ । ସେହି ମୋହରରେ ତାହାଙ୍କର ଉପାଧି ଥିଲା "ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟିକର୍ଣ୍ଣାଟକଲ-ବର୍ଗେଶ୍ୱରାଧିରାଜ ଭୂତ-ଭୈରବ-ଦେବ-ସାଧୁ-ଶାସନୋଦ୍ଧାରିଣି ରାଉତରାୟ ଅତୁଳବଳପରାକ୍ରମ ସଂଗ୍ରାମସହସ୍ରବାହୁ କ୍ଷତ୍ରିୟକୁଳ-ଧୂମକେତୁ" । ମାତ୍ର ଏହି ଉପାଧି ଅନଙ୍ଗଭୀମଦେବଙ୍କ ମୋହରରେ ଥିବାର ସନ୍ଦେହ ହୁଏ । ଉତ୍କଳ ଗଜପତି ସେତେବେଳକୁ କର୍ଣ୍ଣାଟ କଲ-ବର୍ଗାଦି ଜୟ କରି ନ ଥିଲେ । ପରବର୍ତ୍ତୀ ରାଜାମାନେ ସେହି ଦେଶମାନ ଜୟ କରିଥିବାରୁ, ଉକ୍ତ ଉପାଧିମାଳ ପରବର୍ତ୍ତୀ କାଳରେ ସୃଷ୍ଟି କରାଯାଇ ଥିଲା । ଅନଙ୍ଗଭୀମଦେବଙ୍କ ମୋହରରେ ଏହି ଉପାଧିମାଳ ଥିଲେ ମଧ୍ୟ, "ନବକୋଟୀକର୍ଣ୍ଣାଟକଲବର୍ଗେଶ୍ୱର" ଉପାଧିଟି ପରବର୍ତ୍ତୀ ରାଜା ପୁରୁଷୋତ୍ତମ ଦେବଙ୍କ କାଳରେ ରାଜମୋହରରେ ଯୁକ୍ତ ହୋଇଥିଲା ।

ଭୂମି ଓ ରାଜସ୍ୱ ବନ୍ଦୋବସ୍ତ—ସଂସ୍କାର ଓ ଶାସନଶୃଙ୍ଖଳା ନିମନ୍ତେ ଅନଙ୍ଗଭୀମଦେବଙ୍କର ମହାସ୍ପୃହୀ ଶକ୍ତି ଶାସନର ସବୁ ବିଭାଗରେ ଦେଖା-ଯାଇଥିଲା । ରାଜସ୍ୱ ବିଭାଗରେ ସଂସ୍କାର ଓ ଶୃଙ୍ଖଳାବିଧାନ ନିମନ୍ତେ ସେ ଯଥେଷ୍ଟ ମନ ଦେଇଥିଲେ । ତାହାଙ୍କ ବିଚକ୍ଷଣ ରାଜସ୍ୱସଚିବ ଦାମୋଦର ବଡ଼ପଣ୍ଡା ଓ ଈଶାନ ପଟ୍ଟନାୟକ ସମଗ୍ର ଉତ୍କଳ ଦେଶର ପକ୍କା ବନ୍ଦୋବସ୍ତ କରିଥିଲେ । 'ନଳ'ରେ * ସମଗ୍ର ଦେଶ ମାପ ହେଲା; ଏବଂ ମାପ ଅନୁସାରେ ରାଜସ୍ୱ ବନ୍ଦୋବସ୍ତ କରାଗଲା । ବନ୍ଦୋବସ୍ତ ଫଳରେ ଜଣାଗଲା, ମୋଟ ଜମିର ପରିମାଣ ୬୨୨୮୦୦୦ ବାଟୀ । ଦଣ୍ଡା ପାହାଡ଼ ପଥରଭୂମି ୧୪୮୦୦୦୦ ବାଟୀ, ବାକି ଆବାଦୀଭୂମି ୪୭୪୮୦୦୦ ବାଟୀ । ସେହି ଆବାଦୀଭୂମି ମଧ୍ୟରୁ ୨୪୩୦୦୦୦ ବାଟୀ ଉପରେ କର ଧାର୍ଯ୍ୟ ହେଲା ।

* ୭ହାତ ୧ ବାଣରେ ଏକ ପଦକା ହୁଏ । ପଦକାର ନାମ ନଳ । ନଳ ଅଧୁନାତନ ମାପରେ ୧୦ ଫୁଟ ୮ ଇଞ୍ଚ ।

ଅବଶିଷ୍ଟ ୨୩୧୮୦୦୦ ବାଟୀ ବ୍ରାହ୍ମଣ, ରାଜକର୍ମଚାରୀ, ସେନାପତି, ପାଇକ, ସାମନ୍ତ ପ୍ରଭୃତିଙ୍କ ଭରଣପୋଷଣାର୍ଥେ ଦାନ ଓ ବେତନ ସ୍ୱରୂପ ନିଷ୍କରଦାନ କରାଯାଇ ଥିଲା । ଏହି କରଧାର୍ଯ୍ୟ ଜମିରୁ ରାଜସ୍ୱ ଅଦାୟ ହେଉଥିଲା ୩୫ ଲକ୍ଷ ମାଢ଼ ସୁନା, ଏହା ବାଦ୍ ଜଙ୍ଗଲଆବାଦ ଓ ପଣ୍ୟକର ମିଶି ମୋଟ ବାର୍ଷିକ ରାଜସ୍ୱ ୪୨ଲକ୍ଷ ୮୮ହଜାର ମାଢ ସୁନା ହୋଇଥିଲା । ✽

ବିଜୟ— ଅନଙ୍ଗଭୀମ ଦେବଙ୍କର ବିରାଟ ସୈନ୍ୟ ସଗଠନ ଏବଂ ଦୁର୍ଗ ନିର୍ମାଣରୁ ବୋଧହୁଏ, ସେ ଅତ୍ୟନ୍ତ ସମରକୁଶଳ ଥିଲେ । ମାତ୍ର ଏସବୁ କରିଥିଲେ ମଧ୍ୟ ଗୃଟେଶ୍ୱର ଶିଳା ଲିପିରୁ ପ୍ରମାଣ ମିଳେ, ସାମ୍ରାଜ୍ୟ ଶାସନ ଓ ରାଜ୍ୟ ବିସ୍ତାର ନିମନ୍ତେ ସୈନ୍ୟବଳ ଉପରେ ସେ ଏକାନ୍ତ ନିର୍ଭର କରୁ ନ ଥିଲେ । ବରଂ ଆପଣାର ଉଦାର ନୀତି, ସ୍ନେହ ଓ ମନ୍ତ୍ରବଳରେ ଶତ୍ରୁମାନଙ୍କୁ ବଶୀଭୂତ କରିନେବା ତାହାଙ୍କର ପ୍ରଧାନ ନୀତି ଥିଲା । ବତ୍ସ ବଂଶୀୟ ଗୋବିନ୍ଦ ପଣ୍ଡିତ ନାମକ ବ୍ରାହ୍ମଣ ତାହାଙ୍କର ପ୍ରଧାନ ମନ୍ତ୍ରୀ ଥିଲେ । ଗୋବିନ୍ଦ ବେଦରେ ସୁପଣ୍ଡିତ, ଏବଂ ସକଳ ନୀତିଶାସ୍ତ୍ରରେ ବିଶେଷ ପାରଦର୍ଶୀ ଥିଲେ । ଗୋବିନ୍ଦଙ୍କ ମନ୍ତ୍ରଣା ବଳରେ ଅନଙ୍ଗଭୀମଦେବ ଆପଣାର ସୁବିଶାଳ ରାଜ୍ୟ ଶାସନ କରିବାକୁ ସମର୍ଥ ହୋଇ ଥିଲେ । ସୁମନ୍ତ୍ରଣା ବାଦ୍, ଗୋବିନ୍ଦ ମଧ୍ୟ ଯୁଦ୍ଧବିଦ୍ୟାରେ ଧୁରୀଣ ଥିଲେ; ଏବଂ ନିଜେ ସେନାପତି ରୂପେ ଯୁଦ୍ଧକ୍ଷେତ୍ରରେ ସୈନ୍ୟ ପରିଚାଳନ ଏବଂ ଶତ୍ରୁ ସଙ୍ଗେ ସମ୍ମୁଖଯୁଦ୍ଧ କରୁଥିଲେ ।

---

✽ ବର୍ତ୍ତମାନ ଟଙ୍କାରେ ଉକ୍ତ ରାଜସ୍ୱ ହେବ—

୧ମାଢ ସୁନା – ଅଧତୋଳା ସୁନା । ଆଲାଉଦ୍ଦିନ୍ ଖିଲିଜି ଦିଲ୍ଲୀ ସମ୍ରାଟ ଥିବାବେଳେ ସୁନା ଓ ରୁପାର ଅନୁପାତ ୧ ଓ ୧୦ ଥିଲା । ସୁତରାଂ ଅଧତୋଳା ସୁନା ୫ତୋଳା ରୁପାସଙ୍ଗେ ସମାନ । ବର୍ତ୍ତମାନ ଟଙ୍କାରେ ବିଶୁଦ୍ଧ ରୁପା ଶତକଡ଼ା ୫୫ ହିସାବରେ ଥାଏ । ଅତଏବ ୧ମାଢ ସୁନା ବା ୫ ତୋଳା ରୁପାରେ ବର୍ତ୍ତମାନ ୯.୨୭ ଟଙ୍କା ହେବ । ଅନଙ୍ଗଭୀମଦେବଙ୍କ ମୋଟ ରାଜସ୍ୱ ୪୨ଲକ୍ଷ ୮୮ହଜାର ମାଢ ସୁନା । ଏହାର ବର୍ତ୍ତମାନ ମୂଲ୍ୟ ୪୨୮୮୦୦୦ × ୯.୨୭ ପ୍ରାୟ ୪କୋଟି ୫୩ଲକ୍ଷ ଟଙ୍କା । କେବଳ ଭୂମି ରାଜସ୍ୱ ୩୫ଲକ୍ଷ ମାଢ ସୁନାର ମୂଲ୍ୟ ୩କୋଟି ୨୨ଲକ୍ଷ ୧୦ହଜାର ଟଙ୍କା ।

ଅନଙ୍ଗଭୀମଦେବଙ୍କ ରାଜତ୍ୱ କାଳରେ ମୁସଲମାନମାନେ ପ୍ରଥମେ ଉତ୍କଳ ଆକ୍ରମଣ କଲେ । ମୁସଲମାନମାନେ ବଙ୍ଗ ଆକ୍ରମଣ କରିବାରୁ ବଙ୍ଗ ଦେଶର ଶେଷ ହିନ୍ଦୁରାଜା ଲକ୍ଷ୍ମଣସେନ ଭୟରେ ବଙ୍ଗଦେଶ ଛାଡ଼ି ୧୨୦୩ ଖ୍ରୀଷ୍ଟାବ୍ଦରେ ଉତ୍କଳକୁ ଆସି ଅନଙ୍ଗଭୀମଦେବଙ୍କ ଆଶ୍ରୟ ଲୋଡ଼ିଲେ । ଅନଙ୍ଗଭୀମ ଲକ୍ଷ୍ମଣସେନଙ୍କୁ ଉପଯୁକ୍ତ ରାଜମର୍ଯ୍ୟାଦା ଦେଖାଇ ଆଶ୍ରୟ ଦେଲେ, ଏବଂ ରାଜକମିରୁ ତାଙ୍କ ନିମନ୍ତେ ବୃତ୍ତି ଖଞ୍ଜି ଦେଇ ତାହାଙ୍କର ଜଗନ୍ନାଥ ଆରାଧନା ନିମନ୍ତେ ସକଳ ସୁବିଧା କରିଦେଲେ । ଲକ୍ଷ୍ମଣସେନ ଶେଷ ଜୀବନ ପୁରୀରେ ନୀରାପଦରେ ଯାପନ କରିଥିଲେ । ବୋଧହୁଏ ପଳାତକ ଲକ୍ଷ୍ମଣସେନଙ୍କୁ ଆଶ୍ରୟ ଦେଇଥିବାରୁ ଅନଙ୍ଗଭୀମଦେବଙ୍କ ଉପରେ ମୁସଲମାନମାନଙ୍କର ଆକ୍ରୋଶ ଜନ୍ମିଥିଲା । ଏବଂ ଅଳ୍ପକାଳ ମଧ୍ୟରେ ସେମାନେ ଉତ୍କଳ ଆକ୍ରମଣ ଆରମ୍ଭ କଲେ । ଏହି ସମୟରେ ମହମ୍ମଦ ଘୋରୀଙ୍କର ସେନାପତି ବକ୍ତିଆର ଖିଲିଜି ଭାରତରେ ମୁସଲମାନ ରାଜ୍ୟରେ ନିଯୁକ୍ତ ଥିଲେ । ତାହାଙ୍କର ଦେଶବିଜୟ ମଧ୍ୟରେ ମହମ୍ମଦ ସିରାଜ ନାମରେ ଜଣେ ସେନାପତି ବଙ୍ଗ ଆକ୍ରମଣ କରିଥିଲେ । ୧୨୦୫ ଖ୍ରୀଷ୍ଟାବ୍ଦରେ ସେହି ମହମ୍ମଦ ସିରାଜ ପ୍ରଥମେ ଉତ୍କଳ ଆକ୍ରମଣ କଲେ । ପରେ ପରେ ପଠାଣ ବାହିନୀ ବାରମ୍ବାର ଆକ୍ରମଣ ଚଳାଇଲେ । ମାତ୍ର ଅନଙ୍ଗଭୀମଦେବ ଉତ୍କଳର ନାନା ସ୍ଥାନରେ ଯେପରି ବିରାଟ ସୈନ୍ୟବଳ ସଂଗଠନ କରିଥିଲେ । ତାହା ବଳରେ ସକଳ ମୁସଲମାନ ଆକ୍ରମଣ ଅନାୟାସରେ ବିଦୂରିତ ହେଲା । ଶେଷରେ ୧୨୧୨ ଖ୍ରୀଷ୍ଟାବ୍ଦରେ ବଙ୍ଗ ସୁଲତାନ୍ ଗିୟାସୁଦ୍ଦିନ୍ ଇୱାଜ୍ ଉତ୍କଳ ଆକ୍ରମଣ କଲେ । ଅନଙ୍ଗଭୀମଦେବଙ୍କ ମନ୍ତ୍ରୀ ଗୋବିନ୍ଦ ପଟ୍ଟନାୟକ ସ୍ୱୟଂ ମୁସଲମାନ ସୁଲତାନଙ୍କ ବିରୁଦ୍ଧରେ ସୈନ୍ୟ ଚଳାଇଲେ । ଗୋବିନ୍ଦଙ୍କ ସଙ୍ଗେ ଯୁଦ୍ଧକରି ଆକ୍ରମଣକାରୀମାନେ ପରାସ୍ତ ହୋଇ ପଳାୟନ କଲେ । ଭୁବନେଶ୍ୱର ଶିଳାଲିପିରୁ ଜଣାଯାଏ ତୁମାନ୍ ରାଜାଙ୍କ ସଙ୍ଗେ ଉତ୍କଳୀୟ ସୈନ୍ୟଙ୍କର ବିନ୍ଧ୍ୟପର୍ବତ ନିକଟବର୍ତ୍ତୀ ଭୀମନଦୀ କୂଳରେ ଘୋରଯୁଦ୍ଧ ହୋଇଥିଲା ।

ନାମେ ଗୋବିନ୍ଦ ସେହି ଯୁଦ୍ଧରେ ଉତ୍କଳୀୟ ସୈନ୍ୟଙ୍କର ପ୍ରଧାନ ସେନାପତି ଥିଲେ । ତୁମାନ ଖାଁ ଗୋବିନ୍ଦଙ୍କ ଦ୍ୱାରା କ୍ଷତବିକ୍ଷତ ହୋଇ ପଳାୟନ କଲେ ।

ଅନଙ୍ଗ ଭୀମଦେବ ସୁଯୋଗ୍ୟ ପାତ୍ରମନ୍ତ୍ରୀଙ୍କ ସାହାଯ୍ୟରେ ସମଗ୍ର ଦେଶ ୩୪ବର୍ଷ କାଳ ସୁଶାସନ କରି ୧୨୨୩ ଖ୍ରୀଷ୍ଟାବ୍ଦରେ ସ୍ୱର୍ଗାରୋହଣ କଲେ ।

# ଲାଙ୍ଗୁଲା ନରସିଂହଦେବ

## ଖ୍ରୀଷ୍ଟ ୧୨୨୩—୧୨୫୭ ଅବ୍ଦ

ଚରିତ୍ର ଓ ରାଜତ୍ୱ — ଅନଙ୍ଗଭୀମଦେବଙ୍କ ମୃତ୍ୟୁପରେ ତାହାଙ୍କ ପୁତ୍ର ନରସିଂହ ଦେବ ୧୨୨୩ ଖ୍ରୀଷ୍ଟାବ୍ଦରେ ସିଂହାସନ ଅଧିରୋହଣ କଲେ । ନରସିଂହଙ୍କ ରାଜବେଶ ମଧ୍ୟରେ କଟିଦେଶରୁ ଲାଙ୍ଗୁଳ [illegible] ଭୂଷଣ ଝୁଲୁଥିଲା । ସେହି ହେତୁରୁ ସେ ଇତିହାସରେ 'ଲାଙ୍ଗୁଲା' 'ଲାଙ୍ଗୁଳୀୟ' ବା 'ସପୁଚ୍ଛ' ନରସିଂହ ଦେବ ନାମରେ ପରିଚିତ ହୋଇ ଅଛନ୍ତି । ନରସିଂହ ମାଳବ ରାଜକନ୍ୟାଙ୍କର ପାଣି ଗ୍ରହଣ କରିଥିଲେ । ଶରୀରରେ ତାହାଙ୍କର ଅତୁଳ ବଳ ଥିଲା । ସେ ବିଶେଷ ସାହସୀ ଓ ସମରପ୍ରିୟ ରାଜା ଥିଲେ । ଦାନ କରିବାକୁ ତାହାଙ୍କ ହସ୍ତ ସର୍ବଦା ମୁକ୍ତ ଥିଲା । ରାଜତ୍ୱ କାଳ ମଧ୍ୟରେ ସେ ବହୁ 'ତୁଳା ପୁରୁଷ' ଦାନ କରିଥିଲେ । ତାହାଙ୍କର ପାଣ୍ଡିତ୍ୟ ମଧ୍ୟ ଅସାଧାରଣ ଥିଲା; ଏବଂ ତାହାଙ୍କ ରାଜଦରବାର ବହୁସୁବିଖ୍ୟାତ ପଣ୍ଡିତ ମଣ୍ଡଳୀରେ ପୂର୍ଣ୍ଣଥିଲା । ସଂସ୍କୃତ ସାହିତ୍ୟର ଅଳଙ୍କାର ବିଷୟରେ 'ଏକାବଳୀ' ନାମକ ଗୋଟିଏ ପ୍ରସିଦ୍ଧ ଗ୍ରନ୍ଥ ଅଦ୍ୟାପି ଆଦୃତ ହେଉଅଛି । ଉକ୍ତ 'ଏକାବଳୀ' କାର ପଣ୍ଡିତ ବିଦ୍ୟାଧର ନରସିଂହ ଦେବଙ୍କ ରାଜଦରବାର ଭୂଷଣ କରୁଥିଲେ ।

ବିଜୟ—ଉପରେ କୁହାଯାଇଛି, ନରସିଂହଦେବ ଅତ୍ୟନ୍ତ ବଳଶାଳୀ ଓ ସମରପ୍ରିୟ ରାଜା ଥିଲେ । ଆପଣାର ରାଜ୍ୟ ଅକ୍ଷୁର୍ଣ୍ଣ ରଖି, ତାହା ପୁଣି ବିସ୍ତାରିତ କରିବାରେ ନରସିଂହଦେବ ସମଧିକ ତତ୍ପର ଥିଲେ । ଦକ୍ଷିଣ

ପଶ୍ଚିମ ଦିଗରେ ସେ କୋଲବର୍ଗ ଏବଂ ବିଦର ପର୍ଯ୍ୟନ୍ତ ବିଜୟ ପତାକା ଉଡ଼ାଇଥିଲେ । ବର୍ତ୍ତମାନ ବେରାର ପ୍ରଦେଶ ସେତେବେଳେ ବିଦର ଥିଲା, ଏବଂ କୋଲବର୍ଗ ରାଜ୍ୟ ଅନ୍ଧ୍ର ଓ ମହାରାଷ୍ଟ୍ର ଦେଶ ମଧ୍ୟରେ ବିଦରର ପଶ୍ଚିମ ଦିଗରେ ଥିଲା । ନରସିଂହ ସେହି ଉଭୟ ରାଜ୍ୟ ଜୟ କରି ଉତ୍କଳର ଅନ୍ତର୍ଭୁକ୍ତ କରିଥିଲେ । 'କେଲା' ନାମରେ ଗୋଟିଏ ରାଜ୍ୟ ବିଦରର ପଶ୍ଚିମରେ ଥିଲା। ନରସିଂହ ତାହାମଧ୍ୟ ଜୟ କରିଥିଲେ । ବୋଧହୁଏ 'କେଲା' ସେହି କୋଲବର୍ଗ ରାଜ୍ୟ ଥିଲା । ସୁଦୂର କୋଲବର୍ଗ ଓ ବିଦର ରାଜ୍ୟ ବିଜୟରେ ନରସିଂହ ଦେବଙ୍କ ସାହସ ଦେଖି ଇତିହାସ ଲେଖକମାନେ ଆଶ୍ଚର୍ଯ୍ୟାନ୍ୱିତ ହୋଇଅଛନ୍ତି ।

ଏହା ଗଲା ଦକ୍ଷିଣପଶ୍ଚିମ ଦିଗରେ ନରସିଂହ ଦେବଙ୍କର ବିଜୟ କାହାଣି । ଉତ୍ତର ଦିଗରେ ମଧ୍ୟ ଉତ୍କଳବାସିଙ୍କ ସାହସ ଓ ଯୁଦ୍ଧପାଟବ ଅତ୍ୟନ୍ତ ପ୍ରଶଂସନୀୟ । ୧୨୪୪ ଖ୍ରୀଷ୍ଟାବ୍ଦରେ ଉତ୍କଳ ସୈନ୍ୟ ବଙ୍ଗଦେଶ ଆକ୍ରମଣ କରି ବହୁ ଧନ ରତ୍ନ ଅଧିକାର କଲେ । ଉତ୍କଳବାସିଙ୍କ ଏହି ଧୃଷ୍ଟତାର ପ୍ରତିଶୋଧ ନେବା ନିମନ୍ତେ ନିଜେ ବଙ୍ଗ ସୁଲତାନ ତାତାର-ଖାଁଙ୍କ ତୋଗାନଖାଁ ଉତ୍କଳ ଆକ୍ରମଣ କଲେ । ସେତେବେଳେ ବହୁ ଉତ୍କଳ ସୈନ୍ୟ ବଙ୍ଗ ଆକ୍ରମଣରେ ଦୂର ଦେଶରେ ଥିଲେ । ତଥାପି ଉତ୍କଳର ସାମାନ୍ୟ ସୈନ୍ୟ ବଙ୍ଗସୈନ୍ୟଙ୍କୁ ପରାସ୍ତ କରି ବଙ୍ଗଦେଶ ମଧ୍ୟସ୍ଥଳ ପର୍ଯ୍ୟନ୍ତ ସେମାନଙ୍କର ଅନୁଧାବନ କଲେ । ନରସିଂହ ବଙ୍ଗଦେଶରେ ଥିବାବେଳେ ଏହି ସଂବାଦ ପାଇ ବଙ୍ଗସୁଲତାନଙ୍କ ଉପରେ ଦ୍ୱିଗୁଣ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ୧୨୪୫ ଖ୍ରୀଷ୍ଟାବ୍ଦରେ ବଙ୍ଗଦେଶ ଲୁଣ୍ଠନ କଲେ, ଏବଂ ଗୌଡ ବା ପଶ୍ଚିମ ବଙ୍ଗର ରାଜଧାନୀ 'ଲକ୍ଷନୌଟି' ଅବରୋଧ କଲେ । ଗୌଡ଼ ରାଜ୍ୟ ସେତେବେଳେ ପାଞ୍ଚ ଥିଲା; ସେମାନଙ୍କ ମଧ୍ୟରୁ 'ରାଢ଼' ଓ 'ବରେନ୍ଦ୍ର' ରାଜ୍ୟ ଦୁଇଟି ନରସିଂହ ଜୟ କରି ଅଧିକାର କରିଥିଲେ । ଉତ୍କଳ ସୈନ୍ୟଙ୍କ ପ୍ରତାପରେ ସେହି ବିଜିତ ରାଜ୍ୟବାସିଙ୍କ ମନରେ ଘୋର

ଥିଲେ ଜାତ ହୋଇଥିଲା, ଏବଂ ବହୁ ସଂଖ୍ୟକ ଯୋଦ୍ଧା ଉତ୍କଳ ସୈନ୍ୟଙ୍କ ହସ୍ତରେ ପ୍ରାଣହରାଇଥିଲେ। ଏହା ପରେ, ୧୨୪୭ଖ୍ରୀଷ୍ଟାବ୍ଦରୁ ୧୨୫୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବଙ୍ଗ ସୁଲତାନ ଇଖ୍ତିଆରୁଦ୍ଦିନ ଉଜ୍‌ବକ ଏବଂ ଉତ୍କଳବାସୀଙ୍କ ମଧ୍ୟରେ ତିନିବାର ଘୋର ଯୁଦ୍ଧ ହୋଇଥିଲା । ମାତ୍ର ପ୍ରତ୍ୟେକ ବାର ମୁସଲ-ମାନସୈନ୍ୟ ବହୁ ଧନ ଜନ ହସ୍ତୀ ହରାଇ ପରାସ୍ତ ହୋଇଥିଲେ । ଏହିପରି ବାରମ୍ବାର ପରାଜୟରେ ବଙ୍ଗୀୟ ମୁସଲମାନ-ବାହିନୀ ଏତେଦୂର ଭଗ୍ନୋତ୍ସାହ ହୋଇ ପଡିଥିଲେ ଯେ ଆଗକୁ ୨୦୦ ପର୍ଯ୍ୟନ୍ତ ବଙ୍ଗୀୟ ମୁସଲମାନମାନେ ଆଉ ଉତ୍କଳ ଆକ୍ରମଣ କରିବାକୁ ସାହସ କରି ନଥିଲେ ।

କୋଣାର୍କ—ଏହି ସବୁ ବୀରତ୍ୱ-କାହାଣୀ, ଏବଂ ବିଜୟ-ଅଭିଯାନ ନରସିଂହ ଦେବଙ୍କ ଗୌରବମୟ ରାଜତ୍ୱର କେବଳ ଘଟଣା ନୁହେଁ । ଏହାସବୁ କାଳକ୍ରମେ ଲୋକସ୍ମୃତିରୁ ଲିଭିଯାଇ କେବଳ ଇତିହାସର ବିଷୟ ହୋଇ ରହିଛି । ମାତ୍ର ଯାହା ଯୋଗେ ନରସିଂହ ଦେବ ଅଦ୍ୟାପି ଉତ୍କଳବାସୀଙ୍କ ନୟନ ପଟରେ ବିଦ୍ୟମାନ , ଶତ ଶତ ବର୍ଷର କରାଳ ଘଟଣାସ୍ରୋତରେ, ନାନା ରାଜନୈତିକ ଓ ସାମାଜିକ ବିପ୍ଳବ ବିପ୍ଲବ ମଧ୍ୟରେ ପଡି ଯାହା ଅଦ୍ୟାପି ଲାଙ୍ଗୁଳା ନରସିଂହଙ୍କ ନାମ ସାରା ଉତ୍କଳରେ ଜୀବନ୍ତ ରଖିଛି , କୋଣାର୍କର ସେହି ବିରାଟ ସ୍ଥାପତ୍ୟଖଚିତ ମନ୍ଦିର ନରସିଂହ ଦେବଙ୍କର ଅକ୍ଷୟ କୀର୍ତ୍ତି ।

କୋଣାର୍କ ବା ପଦ୍ମକ୍ଷେତ୍ର ଉତ୍କଳରେ ସୂର୍ଯ୍ୟ-ଉପାସନାର ଏକମାତ୍ର ପୀଠ ସ୍ଥଳ ସମଗ୍ର ହିନ୍ଦୁ ରାଜ୍ୟରେ ଏହା ପ୍ରଧାନ ସୂର୍ଯ୍ୟକ୍ଷେତ୍ର । ପ୍ରାଚୀନ ପୁରାଣମାନଙ୍କରେ ଏହା 'ମୈତ୍ରେୟ ବନ' ନାମରେ ଖ୍ୟାତ ଥିଲା । ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ପିତୃ ଅଭିଶାପରେ କୁଷ୍ଠ ରୋଗରେ ପଡ଼ି ଏହି ମୈତ୍ରେୟବନରେ ଚନ୍ଦ୍ରଭାଗା ନଦୀକୂଳରେ ସୂର୍ଯ୍ୟଆରାଧନା କରିଥିଲେ, ଏବଂ ଶେଷରେ କୁଷ୍ଠ-ରୋଗରୁ ଆରୋଗ୍ୟ ପାଇଥିଲେ । ସେ ଏହିସ୍ଥାନରେ ସୂର୍ଯ୍ୟବିଗ୍ରହ ସ୍ଥାପନ କରି ମନ୍ଦିର ନିର୍ମାଣ ଓ ସେବା ପୂଜାର ବ୍ୟବସ୍ଥା କରିଥିଲେ । ଅନନ୍ତର

କେଶରୀ ରାଜତ୍ୱରେ ପୁରନ୍ଦରକେଶରୀ ନୂତନ ମନ୍ଦିର ନିର୍ମାଣକରି ସୂର୍ଯ୍ୟ ପୂଜାର ବିରାଟ ଆୟୋଜନ କରିଥିଲେ, ଏବଂ କ୍ଷେତ୍ର ମଧ୍ୟରେ ୮ ଗୋଟି ବ୍ରାହ୍ମଣ ଶାସନ ବସାଇଥିଲେ । ବର୍ତ୍ତମାନ କୋଣାର୍କ ନିର୍ଜନ ବାଲୁକା ପ୍ରାନ୍ତରପରି ବୋଧ ହେଲେହେଁ, ପୂର୍ବେ ଏହା ସେପରି ନ ଥିଲା । ଏହା ଏକ ସମୃଦ୍ଧିଶାଳୀ ନଗର ଓ ବନ୍ଦର ଥିଲା । ଚନ୍ଦ୍ରଭାଗାନଦୀ ଚିତ୍ରୋତ୍ପଳା ନାମରେ ଖ୍ୟାତ ଥିଲା, ଏବଂ ସେହିନଦୀ ପ୍ରବଳ ସ୍ରୋତସ୍ୱତୀ ଥିଲା । ହୁଏନସାଂ ଯେଉଁ ଚରିତ୍ରପୁର ବା ଗୃହିତ ବନ୍ଦରର ବର୍ଣ୍ଣନା କରିଥିଲେ, ତାହା ଏହି ଚନ୍ଦ୍ରଭାଗା ମୁହାଣରେ ଥିଲା । ଗ୍ରୀକ ଲେଖକ ଟଲେମୀ ଯେଉଁ କୌନାଗର ବନ୍ଦରର ବିଷୟ ଲେଖିଥିଲେ,ତାହା କୋଣାର୍କ ଥିଲା । କୋଣାର୍କ ମଧ୍ୟ ପ୍ରାଚୀନ ଉତ୍କଳ ଓ କଳିଙ୍ଗର ଅନ୍ୟତମ ରାଜଧାନୀ ଥିଲା ।

କାଳକ୍ରମେ ପୁରନ୍ଦର କେଶରୀଙ୍କ ମନ୍ଦିର ଜୀର୍ଣ୍ଣ ହୋଇଯିବାରୁ ଲାଙ୍ଗୁଳା ନରସିଂହଦେବ ବର୍ତ୍ତମାନ କୋଣାର୍କ ମନ୍ଦିର ନିର୍ମାଣ କରାଇଲେ । ତାହାଙ୍କର ପାତ୍ର ଶିବାଇ ସାନ୍ତରା ବା ସଦାଶିବ ସାମନ୍ତରାୟ ମହାପାତ୍ର ଏହି ମନ୍ଦିରର ନିର୍ମାଣ କାର୍ଯ୍ୟରେ ନିଯୁକ୍ତ ଥିଲେ । ନରସିଂହଙ୍କ ରାଜତ୍ୱର ୩ୟ ଅଙ୍କ ବା ଦ୍ୱିତୀୟ ବର୍ଷରେ ଅର୍ଥାତ୍ ୧୨୨୮ ଖ୍ରୀଷ୍ଟାବ୍ଦରେ କୋଣାର୍କ ନିର୍ମାଣ ଆରମ୍ଭହୋଇ ୨୧ଅଙ୍କ ବା ୧୬ବର୍ଷରେ ଅର୍ଥାତ୍ ୧୨୪୦ ଖ୍ରୀଷ୍ଟାବ୍ଦରେ ଶେଷ ହୋଇଥିଲା ୧୨ଶତ ଶିଳ୍ପୀ ୧୬ବର୍ଷ କାମ କରି ମନ୍ଦିର ନିର୍ମାଣ ଶେଷ କରିଥିଲେ । ମନ୍ଦିର ନିର୍ମାଣରେ ଉତ୍କଳର ୧୨ବର୍ଷର ରାଜସ୍ୱ ଅନ୍ୟୂନ ୪୦ କୋଟି ଟଙ୍କା ବ୍ୟୟ କରାଯାଇ ଥିଲା । କେବଳ ଉତ୍କଳ ନୁହେଁ, ସମଗ୍ର ଭାରତରେ କୋଣାର୍କ ଉଚ୍ଚତମ ମନ୍ଦିର ଥିଲା । ବଡ଼ଦେଉଳର ଉଚ୍ଚତା ୨୩୦ ଫୁଟ ଏବଂ ମୁଖଶାଳା ୧୫୦ଫୁଟ ଥିଲା । ବଡଦେଉଳ ଭାଙ୍ଗି ଯାଇଛି, ମୁଖଶାଳାର କଳସ ଇତ୍ୟାଦି ଭାଙ୍ଗିପଡି କେବଳ ୧୩୦ଫୁଟ ଉଚ୍ଚର ମନ୍ଦିରଟି ଅଛି । ମୁଖଶାଳାର ଯାହା ବି ଅବଶେଷ ଅଛି, ତାହା ଭୁବନେଶ୍ୱର ବଡ଼ଦେଉଳଠାରୁ

ଉଚ୍ଚତାରେ ଥଲା ନୁହେଁ । କୋଣାର୍କ ବଡ଼ଦେଉଳ ଓ ମୁଖଶାଳା ୧୨ଫୁଟ ଉଚ୍ଚ ଏକ ପୀଠ ଉପରେ ସ୍ଥାପିତ । ଏହି ପୀଠ ଦେହରୁ ମୁଖଶାଳାର ପୂର୍ବ, ଦକ୍ଷିଣ ଏବଂ ଉତ୍ତର ଦ୍ୱାର ସମ୍ମୁଖରେ ୩ ଶ୍ରେଣୀ ବିସ୍ତୃତ ପାହାଚ ଅଛି । ପୂର୍ବ ପାହାଚର ଦୁଇ ପାଖରେ ୨ ଅଶ୍ୱ, ଉତ୍ତର ପାହାଚ ଶେଷରେ ଦୁଇଟି ଉନ୍ମତ୍ତ ଯୁଦ୍ଧ ଅଶ୍ୱ ଏବଂ ଦକ୍ଷିଣ ପାହାଚର ଶେଷରେ ଦୁଇଟି ଯୁଦ୍ଧ ହସ୍ତୀ ଥିଲା । ବର୍ତ୍ତମାନ ସେ ହସ୍ତୀ ଓ ଅଶ୍ୱ ଗୁଡ଼ିକ ସ୍ଥାନାନ୍ତରିତ ହୋଇ ଅଳ୍ପ ଦୂରରେ ପୂର୍ବ ଦ୍ୱାରର ସମ୍ମୁଖରେ ରଖା ଯାଇଛି । ମନ୍ଦିରର ପୀଠ ବାଡ଼ ଦେହରେ ଉତ୍ତର ଓ ଦକ୍ଷିଣ ପାଖରେ ୨୪ଟି ଚକର କାମ କରା ଯାଇଛି । ବଡ଼ ଦେଉଳ ଓ ମୁଖଶାଳା ଏହି ୨୪ଚକ୍ର ଉପରେ ସପ୍ତାଶ୍ୱ ବର୍ଷିଷ୍ଣୁ ଗୋଟିଏ ରଥ ଆକାରରେ ନିର୍ମିତ ହୋଇଥିଲା ।

ମୁଖଶାଳାର ସମ୍ମୁଖରେ କିଛି ଦୂରରେ ସମାନ ଉଚ୍ଚ ଏକ ସ୍ୱତନ୍ତ୍ର ପୀଠ ଉପରେ ନାଟମନ୍ଦିର ନିର୍ମିତ ହୋଇ ଥିଲା । ବଡ଼ ଦେଉଳର ଦକ୍ଷିଣ ପଶ୍ଚିମ କୋଣରେ ରାମଚଣ୍ଡୀଙ୍କ ମନ୍ଦିର ଥିଲା । ଏହି ସବୁ ମନ୍ଦିର ଭାଙ୍ଗି ଯାଇ ଅଳ୍ପ ଉଚ୍ଚରେ କାନ୍ଥ ଗୁଡ଼ିକ ରହିଛି । ଏ ସବୁ ବାଦ୍ ବେଢ଼ା ମଧ୍ୟରେ ଆଉ କେତେ ଗୁଡ଼ିଏ ପୀଠ ରହିଛି, ମାତ୍ର ସେମାନଙ୍କର ଉପରେ ଥିବା ମନ୍ଦିର-ମାନଙ୍କର କିଛି ମାତ୍ର ଅବଶେଷ ନାହିଁ । ଏହି ସମସ୍ତ ମନ୍ଦିରର ଚତୁର୍ଦ୍ଦିଗରେ ଏକ ବେଢ଼ା ପାଚୀର ଥିଲା ; ତାହାର ଅବଶେଷ ଅଦ୍ୟାପି ଅଛି । ବେଢ଼ା ମଧ୍ୟସ୍ଥ କ୍ଷେତ୍ରର ପରିମାଣ ଦୈର୍ଘ୍ୟରେ ୮୫୨ଫୁଟ ଏବଂ ପ୍ରସ୍ଥରେ ୫୪୦ ଫୁଟ, ଅର୍ଥାତ୍ ପ୍ରାୟ ୧୧ ଏକର ଭୂମି ; ଧ୍ୱଂସ ମନ୍ଦିର ବେଢ଼ାଠାରୁ ପ୍ରାୟ ୧ ଏକର ଅଧିକ ।

କେବଳ ଆକାର ଅପେକ୍ଷା, ଶିଳ୍ପ ଏବଂ ସ୍ଥାପତ୍ୟ ନିମନ୍ତେ କୋଣାର୍କ ଏକା ଉତ୍କଳ ବା ଭାରତ ନୁହେଁ, ସମସ୍ତ ପୃଥିବୀରେ ଅଦ୍ୱିତୀୟ ବୋଲି ପରି-ଚିହ୍ନିତ । ବର୍ତ୍ତମାନ ଅବସ୍ଥାରେ କୋଣାର୍କର ଭଗ୍ନକଙ୍କାଳ ଦେଖି ହତଯଶ

ଦର୍ଶକ ମାତ୍ରେ ମୁଗ୍ଧ ହୋଇଛନ୍ତି । ଉତ୍କଳ ଶିଳ୍ପରେ ତିନୋଟି ବିଶେଷତ୍ୱ ସାଧାରଣତଃ, ଦେଖାଯାଏ । ଏକେ ବିଶାଳତା, ଦ୍ୱିତୀୟରେ ସୂକ୍ଷ୍ମ କାରୁକାର୍ଯ୍ୟ, ଏବଂ ତୃତୀୟରେ ଗମ୍ଭୀର ଆଧ୍ୟାତ୍ମିକତା । ଉତ୍କଳ ଶିଳ୍ପୀ ପୁରୀ ମନ୍ଦିରରେ କାର୍ଯ୍ୟର ବିଶାଳତାଏବଂ ଭୁବନେଶ୍ୱର ଶିଳ୍ପରେ ସୂକ୍ଷ୍ମ କାରୁକାର୍ଯ୍ୟ ଅତି ବିଚିତ୍ର ଓ ସୁରୁଚିସମ୍ପନ୍ନ ଭାବରେ ଦେଖାଇ ଅଛନ୍ତି । ଆଧ୍ୟାତ୍ମିକତା ଅବଶ୍ୟ ଉଭୟ ସ୍ଥାନ ଶିଳ୍ପର ମୂଳାଧାର ସ୍ୱରୂପ । ମାତ୍ର କୋଣାର୍କରେ ଆଧ୍ୟାତ୍ମିକତାର ବିଶଦ ବିକାଶ ମଧ୍ୟରେ, ଉଭୟ ବିଶାଳତା ଓ ସୂକ୍ଷ୍ମ କାରୁକାର୍ଯ୍ୟର ବିଚିତ୍ର ଓ ମଧୁମୟ ସମାବେଶ ଦର୍ଶକଙ୍କୁ ଏକାବେଳକେ ମୁଗ୍ଧ କରିପକାଏ । କଳାର ସୂକ୍ଷ୍ମତା ଓ ବୈଚିତ୍ର୍ୟ, ଆଲୋକ ଓ ଛାୟା, ସାମ୍ୟ ଓ ବୈଷମ୍ୟର ଅଦ୍ଭୁତ ମିଳନ ଦେଖି ହୃଦୟ ଉଚ୍ଛ୍ୱସିତ ହେବା ସଙ୍ଗେ ସଙ୍ଗେ କାର୍ଯ୍ୟର ବିଶାଳ କଳେବର ଦୃଷ୍ଟିରେ ହୃଦୟ ବିଷଣ୍ଣ ମଧ୍ୟ ହୋଇପଡ଼େ । ମନ୍ଦିରର ସର୍ବାଙ୍ଗରେ ନାନା ଲତାପତ୍ରର କାମ, ଏବଂ ସୁନା ରୂପାର କାମପରି ତାହା ପୁଣି ଏତେ ସୂକ୍ଷ୍ମ । ସୁନ୍ଦର ମୂର୍ତ୍ତିଗୁଡ଼ିକ ସ୍ଥାନେ ସ୍ଥାନେ ଜୀବନ୍ତ ଠାଣିରେ ଯେପରି ରଖାଯାଇଥିଲା, ବର୍ତ୍ତମାନ ୭ଶହ ବର୍ଷପରେ ମଧ୍ୟ ସେହିପରି ସତେଜ ଓ ପୂର୍ଣ୍ଣପ୍ରାଣ ଥିବାର ଦେଖାଯାଏ । କୋଣାର୍କର ହସ୍ତୀ ଓ ଅଶ୍ୱ ଦେଖି ପ୍ରସିଦ୍ଧ ଶିଳ୍ପସମାଲୋଚକମାନେ କହନ୍ତି ଯେ, ପୃଥିବୀର ଯେ କୌଣସି ଆଧୁନିକ ରାଜଧାନୀରେ ଏଗୁଡ଼ିକ ଗୌରବମୟ ଭୂଷଣ ରୂପେ ଗଣ୍ୟ ହୁଅନ୍ତା । ରଥାକାରରେ ମନ୍ଦିର ନିର୍ମିତ ହୋଇଥିବାରୁ, ମନ୍ଦିରର ପୀଠ ଦେହରେ ଚକ୍ର ଅଶ୍ୱ ଅବିକଳ ପ୍ରସ୍ତୁତ କ୍ଷୁଦ୍ର କ୍ଷୁଦ୍ର ବିଭିନ୍ନ ଉପବିଭାଗମାନ ଶିଳ୍ପୀର ହସ୍ତପାଟବ ଦେଖାଉଦେଏ । ଏହିସବୁ ଶିଳ୍ପ ସଙ୍ଗେ ମୂର୍ତ୍ତିଗୁଡ଼ିକ ଦେଖିଲେ ବୋଧହୁଏ, ଶିଳ୍ପୀ ଯେପରି ବର୍ତ୍ତମାନ କାର୍ଯ୍ୟ ଶେଷ କରି ଯାଇଛି । ବିଗତ ୭ଶତ ବର୍ଷ ମଧ୍ୟରେ ଶିଳ୍ପର କିଛି ବିଭଙ୍ଗ ଦେଖାଯାଏ ନାହିଁ । କୋଣାର୍କର ଅନ୍ୟ ନାମ 'ପଦ୍ମକେଶର' । କୋଣାର୍କ 'ପଦ୍ମ-ତୋଳା' ଗଣ୍ଡ ଉପରେ ନିର୍ମିତ । କୋଣାର୍କର ସର୍ବାଙ୍ଗରେ ପଦ୍ମଫୁଲ ଖୋଦା

ଅବସ୍ଥାରେ ଦାନ୍ତ କରାଯାଇଛି । ସୁତରାଂ କୋଣାର୍କଙ୍କୁ 'ପଦ୍ମାକ୍ଷେତ୍ର' ମଧ୍ୟ କୁହାଯାଇପାରେ । ପଦ୍ମ ସହିତ ସୂର୍ଯ୍ୟର ନିତ୍ୟ ସମ୍ବନ୍ଧ କୋଣାର୍କ ବ୍ୟକ୍ତ କରେ ।

କୋଣାର୍କର କାରୁକାର୍ଯ୍ୟ ମନୋମୁଗ୍ଧକର; ମାତ୍ର ମନ୍ଦିର ଯେଉଁ ବିଶାଳ ଶିଳା ସାମଗ୍ରୀରେ ଗଢ଼ା, ତାହା ଅତି ବିସ୍ମୟକର । କୋଣାର୍କର ଖଣ୍ଡିଏ ଖଣ୍ଡିଏ ପଥର ଗୋଟିଏ ଗୋଟିଏ ପାହାଡ଼ ପରି । ମୁଖଶାଳାର ପୂର୍ବଦ୍ୱାର ଉପରେ ଯେଉଁ କଳାମୁଗୁନିର ନବଗ୍ରହ ପାଟ ଥିଲା, ତାହା ବର୍ତ୍ତମାନ ଖସିଯାଇ ସ୍ଥାନାନ୍ତରିତ ହୋଇଛି । ନବଗ୍ରହ ମୂର୍ତ୍ତି ଗୁଡ଼ିକର ସୌନ୍ଦର୍ଯ୍ୟ ଯେପରି ମନୋଜ୍ଞ, ପଥରଟିର ଆକାର ମଧ୍ୟ ସେହିପରି ବିସ୍ମୟଜନକ । ପାଟଟି ୨୦ ଫୁଟ ଲମ୍ବ, ୪ ଫୁଟ ଉଚ୍ଚ ଏବଂ ୫ ଫୁଟ ଓସାର, ଏବଂ ଓଜନରେ ୨୪୦ ମହଣ । ପାଟଟିକୁ କଲିକତା ଯାଦୁଘରକୁ ନେବା ଲାଗି ସରକାରଙ୍କର ବିସ୍ତର ଅର୍ଥ ବ୍ୟୟ କରାଗଲା; ମନ୍ଦିରଠାରୁ ସମୁଦ୍ର ପର୍ଯ୍ୟନ୍ତ ଟ୍ରାମ ଲାଇନ ଖୋଲାଗଲା । ଶେଷକୁ ପାଟଟିକୁ କାଟି ତୃତୀୟାଂଶ ମାତ୍ର ବୋହି ନେବାର ଚେଷ୍ଟା ହେଲା । ମାତ୍ର ସେ ଉଦ୍ୟମ ସରକାର ଛାଡ଼ିଦେଲେ । ପାଟର ନବଗ୍ରହ ମୂର୍ତ୍ତି ଥିବା ଅଂଶଟି ବର୍ତ୍ତମାନ ମନ୍ଦିର ନିକଟରେ ରଖା ଯାଇଛି ।

ବଡ଼ ଦେଉଳ ଉପରୁ ଗୋଟିଏ ଗଜସିଂହ ମୂର୍ତ୍ତି ବର୍ତ୍ତମାନ ବେଢ଼ା ମଧ୍ୟରେ ପଡ଼ି ରହିଛି । ଏହାର ଓଜନ ୧୩୦୦ ମହଣ ହେବ । ଏହି ପ୍ରକାଣ୍ଡ ମୂର୍ତ୍ତିଟି ପୁଣି ବଡ଼ ଦେଉଳ କାନ୍ଥରେ ୧୨୦ ଫୁଟ ଉଚ୍ଚରେ ରଖା ଯାଇଥିଲା । ବଡ଼ଦେଉଳ ଚୂଡ଼ାରେ ଯେଉଁ କଳସ ଥିଲା, ତାହା ଗୋଟିଏ ପଥରରେ ତିଆରି ହୋଇଥିଲା । ତାହାର ଓଜନ ପ୍ରାୟ ୫୨୦୦୦ ମହଣ । ଏହି ବିରାଟ ଶିଳାଟି ପୁଣି ୨୦୦ ଫୁଟ ଉଚ୍ଚରେ ମନ୍ଦିର ଦେହରେ ରଖା ଯାଇଥିଲା । ବର୍ତ୍ତମାନ କଳ କୌଶଳ ଯୁଗରେ ନବଗ୍ରହ ପାଟପରି ପଥରଟିଏ ବୋହି ନେବା ଏଡେ଼ ଅସାଧ୍ୟ ଥିବାସ୍ଥଳେ, ୭୦୦ ବର୍ଷ ପୂର୍ବେ ଉତ୍କଳବାସୀ କି ଉପାୟରେ ଏଡେ଼ ବିଶାଳ ଶିଳାମାନ ଦୂର ଦେଶରୁ ବୋହି ମନ୍ଦିର ଦେହରେ କାର୍ଯ୍ୟରେ ଲଗାଇଥିଲେ, ତାହାହିଁ ବିସ୍ମୟରେ ଭାବନା

ସ୍ତମ୍ଭୀଭୂତ କରିଦିଏ । ଫଳତଃ କୋଣାର୍କର ବିଶାଳ ଗାମ୍ଭୀର୍ଯ୍ୟ ଓ ଶିଳ୍ପ କଳା କୌଶଳ କଥାରେ କହି ହୁଏନାହିଁ । ଉତ୍କଳ ଶିଳ୍ପର ପରାକାଷ୍ଠା କୋଣାର୍କରେ ଦ୍ରଷ୍ଟବ୍ୟ । ଶିଳ୍ପର ଯୁଗ ଯୁଗ ବ୍ୟାପୀ ଉନ୍ନତି ଚରମ ଅବସ୍ଥାରେ କୋଣାର୍କରେ ପହଞ୍ଚିଛି ।

ଉତ୍କଳରେ କୋଣାର୍କ ନୂତନତମ ମନ୍ଦିର, ପୁଣି ଏପରି ବିଶାଳକାୟ । ଏହା ଭାଙ୍ଗିଯିବାର ଦେଖି ଦର୍ଶକମାନେ ଆଶ୍ଚର୍ଯ୍ୟ ହୁଅନ୍ତି । ଭାଙ୍ଗିଯିବାର କାରଣ ସ୍ୱରୂପ କେହି ଭୂମିକମ୍ପ, କେହି ମନ୍ଦିରର ମୂଳପତ୍ତନ ଦବିଯିବା, କେହି ବା ବଜ୍ରାଘାତ ଅଘାତ ବୋଲି କହନ୍ତି । ମାତ୍ର କଳାପାହାଡ଼ର ଆକ୍ରମଣ ମନ୍ଦିର ଭାଙ୍ଗିଯିବାର ପ୍ରକୃତ କାରଣ । କଳାପାହାଡ଼ ମନ୍ଦିର ଉପରୁ କଳସଟି ଭାଙ୍ଗିବାରେ ମନ୍ଦିରଟି କାଳକ୍ରମେ ଭାଙ୍ଗିପଡ଼ିଲା । ସୂର୍ଯ୍ୟଦେବ ସେଠାରୁ ଅଣାଯାଇ ପୁରୀ ମନ୍ଦିରରେ ସ୍ଥାପିତ ହେଲେ । କୋଣାର୍କର ଅରୁଣସ୍ତମ୍ଭ ମଧ୍ୟ ମରହଟ୍ଟାମାନେ ବୋହିଆଣି ପୁରୀମନ୍ଦିର ସମ୍ମୁଖରେ ସ୍ଥାପନ କଲେ । ଏହିରୂପେ କୋଣାର୍କର ଗୌରବରବି ଅସ୍ତମିତ ହୋଇଅଛି । ମାତ୍ର ଲାଙ୍ଗୁଳାନରସିଂହ ଦେବ ଓ ଶିବାଇ ସାମନ୍ତରା କୋଣାର୍କର ବର୍ତ୍ତମାନ ବିକଳାଙ୍ଗରେ ମଧ୍ୟ ଓତଃପ୍ରୋତ ପ୍ରାଣରେ ଆଶା ଓ ଅଭାବନା ଦେଉଅଛନ୍ତି ।

କୋଣାର୍କ ଦେବଙ୍କର ସେବାପୂଜା ପୂର୍ବରୁ ଯାହା ଥିଲା, ଅନଙ୍ଗଭୀମଦେବ ତାହା ବହୁତ ବଢାଇ ଦେଇ ବାର୍ଷିକ ୩୬ ଶତ ମାଢ଼ ସ୍ୱର୍ଣ୍ଣ ଖଞ୍ଜି ଦେଇଥିଲେ । ନରସିଂହ ଦେବ ମନ୍ଦିରନିର୍ମାଣ ଶେଷକରି ବାର୍ଷିକଖଞ୍ଜି ଅଧିକ ବଢ଼ାଇ ଦେଲେ । କୋଣାର୍କର ଯାତ୍ରାମଧ୍ୟରେ ରଥଯାତ୍ରା ଓ ଚନ୍ଦ୍ରଭାଗାସ୍ନାନ ପ୍ରସିଦ୍ଧ । ଚନ୍ଦ୍ରଭାଗା ସ୍ନାନ ଅଦ୍ୟାପି ମାଘ ଶୁକ୍ଳ ସପ୍ତମୀ ଦିନ ହେଉଅଛି । ଯେଉଁ ଚନ୍ଦ୍ରଭାଗା ନଦୀ ଉପରେ କୋଣାର୍କ ନିର୍ମିତ ହୋଇଥିଲା । ତାହା ପୋତି ହୋଇ ପଡ଼ି ଗୋଟିଏ ପୋଖରୀ ଆକାରରେ ବର୍ତ୍ତମାନ ଅଛି । ଏହାହିଁ ଚନ୍ଦ୍ରଭାଗାତୀର୍ଥ ନାମରେ ଅଦ୍ୟାପି ପ୍ରସିଦ୍ଧ ।

କୋଣାର୍କ ବ୍ୟତୀତ ସିଂହାଚଳରେ ନୃସିଂହଦେବଙ୍କ ମନ୍ଦିର ନରସିଂହଦେବ ନିର୍ମାଣ କରିଥିଲେ ।

## ଭାନୁଦେବ

### ଖ୍ରୀଷ୍ଟ ୧୨୫୭—୧୨୭୪ ଅବ୍ଦ

ରାଜତ୍ୱ—ନରସିଂହଦେବ ୩୩ ବର୍ଷ ରାଜତ୍ୱ କରି ୧୨୫୭ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କଲେ । ମାଳବ ରାଜକନ୍ୟାଙ୍କ ଗର୍ଭରେ ନରସିଂହଦେବଙ୍କର ପୁତ୍ର ଭାନୁଦେବ ସିଂହାସନ ଆରୋହଣ କଲେ । ସେ ୨୨ ଅଙ୍କରେ ୧୮ ବର୍ଷ ରାଜତ୍ୱ କରିଥିଲେ । ପିତାଙ୍କ ପରି ମଧ୍ୟ ଭାନୁଦେବ ବୀର ଓ ନୀତିକୁଶଳ ଥିଲେ । ସେ ଚାଲୁକ୍ୟ ରାଜବଂଶରେ ବିବାହ କରିଥିଲେ । ଏହାଙ୍କ ପୂର୍ବରୁ ଜଗନ୍ନାଥଙ୍କ ରଥଯାତ୍ରାରେ ଛଅଟି ରଥ ତିଆରି ହେଉଥିଲା । ପୁରୀ ବଡ଼ଦାଣ୍ଡରେ ଗୁଣ୍ଡିଚାଘର ନିକଟରେ ଗୋଟିଏ ନଦୀ ବୋହିଯାଇ ବର୍ତ୍ତମାନ ବାଙ୍କି ମୁହାଣରେ ସମୁଦ୍ରରେ ପଡ଼ୁଥିଲା । ବର୍ତ୍ତମାନ ସେହି ନଦୀସ୍ଥାନରେ ଗୋଟିଏ ବଡ଼ ନର୍ଦ୍ଦମା ମାତ୍ର ଅଛି; ଏବଂ ତାହା ଉପରେ ସେତୁଟିଏ ନିର୍ମିତ ଅଛି; ମାତ୍ର ଭାନୁଦେବଙ୍କ ବେଳେ ଏହା ଗୋଟିଏ ନଦୀ ଥିଲା । ରଥଯାତ୍ରାର ସୁବିଧା ନିମନ୍ତେ ସେ ତାହା ଉପରେ ଗୋଟିଏ ସେତୁ ନିର୍ମାଣ କରିଥିଲେ । ସେହି ସମୟରୁ ୬ ରଥ ପରିବର୍ତ୍ତରେ ୩ ରଥରେ ଜଗନ୍ନାଥଙ୍କର ଗୁଣ୍ଡିଚାଯାତ୍ରା ଚଳି ଆସୁଅଛି ।

## ପ୍ରତାପ ନରସିଂହ ଦେବ ।
## ଓ
## ପରବର୍ତ୍ତୀ ରାଜଗଣ ।

### ଖ୍ରୀଷ୍ଟ ୧୨୭୪—୧୪[illegible] ଅବ୍ଦ ।

ନରସିଂହଦେବ—୧୨୭୪ ଖ୍ରୀଷ୍ଟାବ୍ଦରେ ଭାନୁଦେବଙ୍କ ମୃତ୍ୟୁପରେ ଦ୍ୱିତୀୟ ନରସିଂହଦେବ ସିଂହାସନ ଆରୋହଣ କଲେ । ରାଜତ୍ୱର ୨୧ ବର୍ଷରେ ସେ କଟକଜିଲ୍ଲା ମଧ୍ୟରେ ବ୍ରାହ୍ମଣମାନଙ୍କୁ ଭୂମିଦାନଜ୍ଞାପକ ତାମ୍ରପଟ୍ଟ

ସନନ୍ଦ ଦେଇଥିଲେ, ତହିଁରେ ଗଙ୍ଗବଂଶର ରାଜାନୁକ୍ରମିକ ବର୍ଣ୍ଣିତ ଅଛି । ନରସିଂହ ଶାସ୍ତ୍ର ଓ ଶସ୍ତ୍ରବିଦ୍ୟାରେ ନିପୁଣ ଥିଲେ । ଏହାଙ୍କ ସମୟରେ ମୁସଲମାନମାନେ ପୁନର୍ବାର ଉତ୍କଳ ଆକ୍ରମଣ କଲେ । ୧୨୮୦ ଖ୍ରୀଷ୍ଟାବ୍ଦରେ ବଙ୍ଗସୁଲତାନ ତୋଗ୍ରେଲଖାଁ ଉତ୍କଳର ଉତ୍ତରାଞ୍ଚଳ ଆକ୍ରମଣ କରି ବହୁତ ହାତୀ ଧରିନେଇ ଥିଲେ । ଏହାଙ୍କୁ ମଧ୍ୟ ପ୍ରତାପ ନରସିଂହ ଦେବ ବୋଲି କୁହାଯାଇଅଛି । ଏହାଙ୍କ ସମୟରେ ଅଲ୍ଲାଉଦ୍ଦିନ ଖିଲିଜୀ ଦିଲ୍ଲୀସମ୍ରାଟ ଥିଲେ । ପଠାଣ ସମ୍ରାଟମାନଙ୍କ ମଧ୍ୟରେ ସେ ପ୍ରଥମେ ଦାକ୍ଷିଣାତ୍ୟରେ ମୁସଲମାନ ରାଜ୍ୟ ବିସ୍ତାର କରିଥିଲେ । ତାହାଙ୍କର ପ୍ରଧାନ ସେନାପତି ପ୍ରବଳପ୍ରତାପୀ ମାଲିକ୍ କାଫୁର ଦାକ୍ଷିଣାତ୍ୟରେ ରାମେଶ୍ୱର ପର୍ଯ୍ୟନ୍ତ ଜୟ କରିଥିଲେ । ଓରାଙ୍ଗଲ ନାମରେ ଦାକ୍ଷିଣାତ୍ୟରେ ସେତେବେଳେ ଗୋଟିଏ ସ୍ୱାଧୀନ ଓ ସମୃଦ୍ଧିଶାଳୀ ରାଜ୍ୟ ଥିଲା । ପ୍ରତାପ ନରସିଂହ ସେହି ରାଜ୍ୟ ଅଧିକାର କରିବା ନିମନ୍ତେ ବହୁକାଳରୁ ପ୍ରୟାସୀ ଥିଲେ ; ମାତ୍ର ସୁବିଧା ପାଉ ନ ଥିଲେ । ମାଲିକ୍ କାଫୁର ଏହି ସମୟରେ ଦାକ୍ଷିଣାତ୍ୟ ବିଜୟରେ ଲାଗି-ଥିବାର ଜାଣି ନରସିଂହ ଓରାଙ୍ଗଲ ଜୟ ଉଦ୍ଦେଶ୍ୟରେ ତାହାଙ୍କ ସଙ୍ଗେ ସନ୍ଧି ସ୍ଥାପନ କଲେ । ୧୩୦୯ ଖ୍ରୀଷ୍ଟାବ୍ଦରେ ଉତ୍କଳସୈନ୍ୟ ପଠାଣସୈନ୍ୟ ସହ ଓରାଙ୍ଗଲ ଆକ୍ରମଣ କଲେ; ମାତ୍ର ଓରାଙ୍ଗଲ ବିଜୟ ସଂପୂର୍ଣ୍ଣ ନ ହେଉଣୁ ନରସିଂହଦେବଙ୍କ ରାଜତ୍ୱ ଶେଷ ହୋଇଥିଲା ।

ଗଙ୍ଗବଂଶର ଶେଷ ରାଜଗଣ — ନରସିଂହଦେବଙ୍କ ପରେ ୯ଜଣ ଗଙ୍ଗବଂଶୀୟ ରାଜା ୧୪୩୫ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଉତ୍କଳରେ ରାଜପଣ କରିଥିଲେ । ଏମାନଙ୍କର ରାଜତ୍ୱ ଶତାଧିକ ବର୍ଷ ବ୍ୟାପିଥିଲା । କେବଳ ଉତ୍ତର ଓ ଦକ୍ଷିଣରେ ମୁସଲମାନମାନଙ୍କ ସଙ୍ଗେ ସଂଘର୍ଷ ବ୍ୟତୀତ, ସେହି ରାଜାମାନଙ୍କ ରାଜତ୍ୱକାଳରେ ଅନ୍ୟ କୌଣସି ବିଶେଷ ଘଟଣା ଘଟିଥିବାର ପ୍ରମାଣ ମିଳେ ନାହିଁ । ଅଲ୍ଲାଉଦ୍ଦିନ ଖିଲିଜୀଙ୍କ ରାଜତ୍ୱ କାଳ ମଧ୍ୟରେ (୧୨୯୫—୧୩୧୫ ଖ୍ରୀଷ୍ଟାବ୍ଦ) ମୁସଲମାନ ପ୍ରଭାବ ପ୍ରାୟ ସମଗ୍ରଭାରତବ୍ୟାପୀ ହୋଇ ଉଠିଥିଲା ।

ନରସିଂହ ଦେବଙ୍କ ରାଜତ୍ୱ କାଳ ମଧ୍ୟରେ ଉତ୍କଳ ଓ ପଠାଣ ସୈନ୍ୟମାନେ ଓଡ୍ରଙ୍କର ବିଜୟ ସଂପୂର୍ଣ୍ଣ କରି ପାରି ନ ଥିଲେ । କେତେ କାଳ ଯୁଦ୍ଧ ପରେ ଓଡ୍ରଙ୍କ ରାଜା ଦିଲ୍ଲୀ ସମ୍ରାଟଙ୍କୁ କର ଦେବାକୁ ବାଧ୍ୟ ହେଲେ । ଏହିମଧ୍ୟରେ ଆଲ୍ଲାଉଦ୍ଦିନଙ୍କ ମୃତ୍ୟୁ ହେବାରୁ ଦିଲ୍ଲୀସିଂହାସନ ଅଧିକାର କରିବା ନିମନ୍ତେ ତାଙ୍କ ବଂଶଧରମାନଙ୍କ ମଧ୍ୟରେ ଘୋର ଅନ୍ତର୍ବିବାଦ ଚାଲିଲା । ମାଲିକ କାଫର ମଧ୍ୟ ସେହି ଅନ୍ତର୍ବିବାଦରେ ପ୍ରଧାନ ଷଡ଼ଯନ୍ତ୍ରୀ ଥିଲେ । ଏବଂ ଶେଷରେ ନିହତ ହୋଇଥିଲେ । ତତ୍ପରେ ତୋଗଲକ ବଂଶ ଦିଲ୍ଲୀସିଂହାସନ ଅଧିକାର କଲେ । ମହମ୍ମଦ ତୋଗଲକଙ୍କ ବାତୁଳତା ଓ ଅତ୍ୟାଚାରରେ ଦିଲ୍ଲୀର ରାଜଶକ୍ତି ଦୁର୍ବଳ ହୋଇପଡ଼ିଲା, ଏବଂ ନାନାସ୍ଥାନରେ ରାଜାମାନେ ସ୍ୱାଧୀନ ହୋଇ ବସିଲେ । ଏହି ମଧ୍ୟରେ ଉତ୍କଳ ସୈନ୍ୟ ଓଡ୍ରଙ୍କ ଆକ୍ରମଣ କଲେ । ଓଡ୍ରଙ୍କ ଏଥିପୂର୍ବରୁ ଦିଲ୍ଲୀ ସୈନ୍ୟଙ୍କ ସଙ୍ଗେ ଯୁଦ୍ଧକରି ହୀନବଳ ହୋଇପଡ଼ିଥିଲା । ଉତ୍କଳ ସୈନ୍ୟ ଓଡ୍ରଙ୍କ ରାଜଶକ୍ତିକୁ ପରାସ୍ତକରି ୧୩୩୨ ଖ୍ରୀଷ୍ଟାବ୍ଦରେ ସେହି ରାଜ୍ୟ ଅଧିକାର କଲେ ।

ଏହିମଧ୍ୟରେ ଦାକ୍ଷିଣାତ୍ୟରେ ବିଜୟନଗର ଏବଂ ବାହାମଣୀ ରାଜ୍ୟ ଦୁଇଟି ଅତିପ୍ରବଳ ହୋଇ ଉଠିଥିଲା । ବିଜୟନଗରର ରାଜା ପ୍ରଥମ ବୁକ୍କାରାଓ ବିଶେଷ ପ୍ରତାପଶାଳୀ ଥିଲେ । ନୁନିଜ ନାମକ ଜଣେ ପର୍ତ୍ତୁଗିଜ ପର୍ଯ୍ୟଟକଙ୍କ ବୃତ୍ତାନ୍ତରୁ ଜଣାଯାଏ ଯେ ବୁକ୍କରାଓ ଓଡିଶା ବିଜୟ କରିଥିଲେ । ପୂର୍ବେ କୁହାଯାଇଅଛି । ବର୍ତ୍ତମାନ ବସ୍ତର ଜୟପୁର ପ୍ରଭୃତିରାଜ୍ୟ ପ୍ରାଚୀନ କାଳରେ ଓଡିଶା ନାମରେ ପରିଚିତ ଥିଲା । ବୁକ୍କାରାଓ ସେହି ଅଞ୍ଚଳମାନ ଜୟକରିଥିଲେ । ୧୩୫୬ ଖ୍ରୀଷ୍ଟାବ୍ଦରେ ବୁକ୍କାରାଓଙ୍କ ଭ୍ରାତୁଷ୍ପୁତ୍ର ଦ୍ୱିତୀୟସଙ୍ଗମ ଉତ୍କଳ ଗଜପତିଙ୍କୁ ପରାଜୟ କରିଥିଲେ । ବାହମଣୀ ସୁଲତାନ ମଧ୍ୟ ବେଳେ ବେଳେ ଉତ୍କଳ ଆକ୍ରମଣ କରୁଥିବାର ଜଣାଯାଏ ।

ଏହା ଗଙ୍ଗଦକ୍ଷିଣ ଦିଗରୁ ଉତ୍କଳ ଉପରେ ବହିଃଶତ୍ରୁମାନଙ୍କର ଆକ୍ରମଣ । ଉତ୍ତର ଦିଗରୁ ମୁସଲମାନ ଆକ୍ରମଣ ଅଳ୍ପ ଭୟଙ୍କର ନଥିଲା । ୧୩୨୩ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ସୁଲତାନ ଗିୟାସୁଦ୍ଦିନ ତୋଗଲକଙ୍କ ପୁତ୍ର ଉଲୁଘ ଖାଁ (ପରେ ସେ ମହମ୍ମଦ ତୋଗଲକ ନାମ ଧରି ଦିଲ୍ଲୀର ସମ୍ରାଟ୍ ହୋଇଥିଲେ ) ଉତ୍କଳ ଆକ୍ରମଣ କରି ୪୦ ହାତୀ ଧରି ନେଇ ଚାଲିଗଲେ । ପରେ ପୁଣି ୧୩୬୦ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ସମ୍ରାଟ୍ ଫିରୋଜସାହ ଉତ୍କଳ ମଧ୍ୟରେ ପ୍ରବେଶକରି ବାରବାଟୀ-କଟକ ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ । ଉତ୍କଳ ଗଜପତି ତାହାଙ୍କୁ କେତେକ ହାତୀ ଉପହାର ଦେବାରୁ ସେ ଉତ୍କଳରୁ ବାହୁଡ଼ିଗଲେ । ୧୪୧୨ ଖ୍ରୀଷ୍ଟାବ୍ଦରେ ବାହାମଣୀ ସୁଲତାନ ଫିରୋଜ, ଏବଂ ୧୪୧୨ ଖ୍ରୀଷ୍ଟାବ୍ଦରେ ମାଲବଦେଶର ରାଜା ହୁସାନ୍‌ଦ୍ଦିନ ହୋସାଙ୍ଗ ଉତ୍କଳ ଆକ୍ରମଣକରି ବହୁତ ହାତୀ ଧରି ନେଇ ଯାଇଥିଲେ ।

ଉତ୍କଳର ସର୍ବ ଦିଗରୁ ଏହିରୂପେ ଘନ ଘନ ଶତ୍ରୁ ଆକ୍ରମଣସତ୍ତ୍ୱେ, ଶତାଧିକ ବର୍ଷକାଳ ଉତ୍କଳ ଯେ ଆପଣାର ସ୍ୱାଧୀନତା ରକ୍ଷାକରି ପାରିଥିଲା, ତାହା ଅତି ଆଶ୍ଚର୍ଯ୍ୟଜନକ ବିଷୟ । ଗଙ୍ଗବଂଶର ଶେଷ ରାଜାମାନେ ଅବଶ୍ୟ ଦୁର୍ବଳଥିଲେ; ମାତ୍ର ପୂର୍ବବର୍ତ୍ତୀ ଗଙ୍ଗବଂଶୀୟ ପ୍ରବଳ ରାଜାମାନଙ୍କଦ୍ୱାରା ଶାସନତନ୍ତ୍ର ଏପରି ଲୋକପ୍ରିୟ ହୋଇଥିଲା ଯେ ପ୍ରଜା ଓ ସାମନ୍ତମାନେ ଦୁର୍ବଳ ରାଜଶକ୍ତି ବିନା ଆପଣାର ସ୍ୱାଧୀନତା ଓ ଶାସନତନ୍ତ୍ର ଶତାଧିକ ବର୍ଷକାଳ ରକ୍ଷା କରିବାକୁ ସମର୍ଥ ହୋଇଥିଲେ । ଫଳତଃ ଚତୁର୍ଦ୍ଦିଗରେ ମୁସଲମାନ ଶକ୍ତି ଏପରି ପ୍ରବଳ ହୋଇ ଉଠିଥିବାର ଦେଖି ଉତ୍କଳର ରାଜା ଓ ପ୍ରଜା, ସାମନ୍ତ ଓ ସେନାପତି ସମସ୍ତେ ଆପଣା ଆପଣା ମଧ୍ୟରେ ଅନ୍ତର୍ବିବାଦ ସୃଷ୍ଟି ନ କରି, ବହିଃଶତ୍ରୁ ନିବାରଣ ନିମନ୍ତେ ଏକମେଳ ହୋଇ ସଂଗ୍ରାମ କରୁଥିଲେ । ଉତ୍କଳର ଏହି ଦୁର୍ଦ୍ଦଶା ବେଳେ ଏକ ପ୍ରବଳ ରାଜଶକ୍ତି ଲୋଡ଼ାଥିଲା । ଉତ୍କଳ ଇତିହାସରେ ସେ ରାଜଶକ୍ତି ପରବର୍ତ୍ତୀ ସୂର୍ଯ୍ୟବଂଶୀୟ ବୀର କପିଳେନ୍ଦ୍ରଦେବଙ୍କଠାରେ ଦେଖାଦେଲା

# ଚତୁର୍ଥ ଅଧ୍ୟାୟ

## ସୂର୍ଯ୍ୟବଂଶ

### ଖ୍ରୀଷ୍ଟ ୧୪୩୫—୧୫୩୪ ଅବ୍ଦ

ସୂର୍ଯ୍ୟବଂଶ— ଗଙ୍ଗବଂଶର ଶେଷରାଜାଙ୍କର ପୁତ୍ର ନ ଥିଲେ । କପିଳେନ୍ଦ୍ର-ସାମନ୍ତରାୟ ନାମକ ତାହାଙ୍କର ଜଣେ ବିଶ୍ୱାସୀ ଓ ବିଚକ୍ଷଣ ମନ୍ତ୍ରୀ ଥିଲେ । କପିଳ ସୂର୍ଯ୍ୟବଂଶୀୟ କ୍ଷତ୍ରିୟ ଥିଲେ । ତାହାଙ୍କ ବାଲ୍ୟ ଜୀବନର କାହାଣୀ କିମ୍ବଦନ୍ତୀ * ଆକାରରେ ଅଦ୍ୟାପି ଲୋକ ମୁଖରେ ଶୁଣାଯାଏ । କପିଳେନ୍ଦ୍ର ବୀର, ସାହସୀ, ଯୁଦ୍ଧପ୍ରିୟ ଏବଂ ରାଷ୍ଟ୍ରନୀତିରେ ଅତି ବିଚକ୍ଷଣ ଥିଲେ । ଫଳତଃ

---

* କଥିତ ଅଛି — କପିଳ ସୂର୍ଯ୍ୟବଂଶର ଗୋଟିଏ ଦରିଦ୍ର କୁଟୀରରେ ଜନ୍ମହୋଇଥିଲେ । ବାଲ୍ୟାବସ୍ଥାରେ ସେ ଗୋଟିଏ ବ୍ରାହ୍ମଣ ଘରେ ଗୋରୁ ଜଗିବା କାମରେ ନିଯୁକ୍ତ ଥିଲେ । 'କାଶୀ' ନାମରେ ବ୍ରାହ୍ମଣର ଗୋଟିଏ ସନ୍ତାନ କପିଳଙ୍କର ବାଲ୍ୟ ସହଚର ଥିଲେ । ଦିନେ ଖରାବେଳେ ଗାଈ ଜଗୁଜଗୁ କପିଳ ଗୋଟିଏ ଗଛମୂଳେ ଶୋଇ ପଡ଼ିଲେ । ଏହିସମୟରେ ନାଗସାପଟିଏ ତାଂକ ମୁଣ୍ଡ ଉପରେ ଫଣା ଟେକି ରହିଥିବାର କାଶୀ ଦେଖିଲେ । ସାପ ଗଲାପରେ; କାଶୀ କପିଳଙ୍କୁ ଉଠାଇ କହିଲେ 'ଅରେ ତୁ ଗୋଟିଏ ରଜା ହେବୁ ।' କପିଳ କଥାଟି ବୁଝି, ମଜା ମଜାରେ ଉତ୍ତର ଦେଲେ, ମୁଁ ରଜା ହେଲେ, ତୁ ମୋର ମନ୍ତ୍ରୀ ହେବୁ । କେତେକାଳ ପରେ କପିଳ ଦିନେ ଜଗନ୍ନାଥ ଦର୍ଶନ ନିମନ୍ତେ ଯାଇଥିଲେ । ରଜା ତାଂକୁ ମନ୍ଦିର ମଧ୍ୟରେ ଦେଖି ଏବଂ ତାଂକ ଦେହରେ ରାଜ ଲକ୍ଷଣର ସଂକେତ ପାଇ ତାଂକୁ ନଅର ମଧ୍ୟକୁ ନେଇ ରଖିଲେ । କାଳକ୍ରମେ କପିଳ ରାଜାଂକର ପ୍ରଧାନ ମନ୍ତ୍ରୀ ହୋଇ ଉଠିଲେ । ରଜା ତାଂକୁ ଆପଣାର ଉତ୍ତରାଧିକାରୀ ମନୋନୀତ କଲେ, ଏବଂ ରାଜାଂକ ଅନ୍ତେ ସେ ମଧ୍ୟ ସିଂହାସନରେ ଅଧିଷ୍ଠିତ ହେଲେ । କପିଳ ରାଜା ହେବାର ଶୁଣି, କାଶୀ ଗାଉଥାଏ । 'ଆଜି କାଶୀଆ କପିଳାର କି ଭେଟ' । କଥାଟି ବର୍ତ୍ତମାନ ଏକ ପ୍ରବଚନ ହୋଇ ରହିଛି । ପରେ ପୁଣି କାଶୀ କପିଳଙ୍କ ସଙ୍ଗେ ଦେଖାକଲେ । କପିଳ ପୂର୍ବ ପ୍ରତିଶ୍ରୁତି ରକ୍ଷାକରି କାଶୀକୁ ମନ୍ତ୍ରୀପଦରେ ବରଣ କଲେ ।

ରାଜୋଚିତ ସକଳ କଳା ତାଙ୍କର ଥିଲା । ଗଙ୍ଗବଂଶର ଶେଷ ରାଜାଙ୍କ ମୃତ୍ୟୁପରେ ଦେଶର ପାତ୍ରମନ୍ତ୍ରୀମାନେ କପିଳେନ୍ଦ୍ରଦେବଙ୍କୁ ଉପଯୁକ୍ତ ବିବେଚନା କରି ସିଂହାସନରେ ଅଭିଷିକ୍ତ କରାଇଲେ । ସେହି କପିଳେନ୍ଦ୍ର ଦେବଙ୍କଠାରୁ ଉତ୍କଳରେ ସୂର୍ଯ୍ୟବଂଶ ରାଜତ୍ୱ ଆରମ୍ଭ ହେଲା ।

କେହି କେହି ଲେଖକ କୋଣାର୍କଦେବଙ୍କ ପ୍ରତିଷ୍ଠା ଏବଂ ମନ୍ଦିରର ଆଡ଼ମ୍ବର ଦେଖି ଉତ୍କଳରେ ସୂର୍ଯ୍ୟଉପାସନା ରାଷ୍ଟ୍ରଧର୍ମରୂପେ ପ୍ରଚଳିତ ଥିବାର କହନ୍ତି । ସେମାନଙ୍କ ଧାରଣା ଶୈବ୍ୟ ଓ ବୈଷ୍ଣବ ଧର୍ମର ରାଜାମାନଙ୍କ ପରେ ସୌର ରାଜାମାନେ ଉତ୍କଳରେ ରାଜତ୍ୱ କରିଥିଲେ । ମାତ୍ର ପ୍ରକୃତ ବିଷୟ ତାହା ନୁହେଁ । ସୂର୍ଯ୍ୟଉପାସନା କେବେ ଉତ୍କଳରେ ରାଷ୍ଟ୍ରଧର୍ମ ନ ଥିଲା, କି ସୂର୍ଯ୍ୟଉପାସନା ସହି ଉତ୍କଳର ସୂର୍ଯ୍ୟବଂଶ ରାଜତ୍ୱର କିଛି ଐତିହାସିକ ସମ୍ବନ୍ଧ ନାହିଁ । ବରଂ କୋଣାର୍କର ସୂର୍ଯ୍ୟମନ୍ଦିର ବୈଷ୍ଣବ ରାଜା ନରସିଂହ ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା; ଏବଂ ସୂର୍ଯ୍ୟବଂଶରେ ପରମ ବୈଷ୍ଣବ ଓ ଜଗନ୍ନାଥଭକ୍ତ ରାଜାମାନେ ରାଜତ୍ୱ କରିଥିଲେ ।

## କପିଳେନ୍ଦ୍ର ଦେବ

### ଖ୍ରୀଷ୍ଟ ୧୪୩୫—୧୪୬୭ ଅବ୍ଦ

ସିଂହାସନାରୋହଣ — କପିଳେନ୍ଦ୍ର ଦେବ ଉତ୍କଳରେ ସୂର୍ଯ୍ୟବଂଶ ରାଜତ୍ୱର ପ୍ରତିଷ୍ଠାତା । ଗଙ୍ଗବଂଶ ରାଜତ୍ୱ ଶେଷରେ ରାଷ୍ଟ୍ରୀୟ ମନ୍ତ୍ରୀସଙ୍ଘ ଦ୍ୱାରା ସେ ଆପଣାର ଗୁଣପ୍ରଭାବରେ ରାଜା ମନୋନୀତ ହୋଇଥିଲେ ଏବଂ ସାହସ, ବୀରତ୍ୱ ଏବଂ ସୁଶାସନ ଦ୍ୱାରା ସେ ଆପଣାକୁ ଉତ୍କଳ ସିଂହାସନର ଉପଯୁକ୍ତ ଅଧିକାରୀ କରି ପାରିଥିଲେ । ୧୪୩୫ ଖ୍ରୀଷ୍ଟାବ୍ଦରେ ତାହାଙ୍କର ଅଭିଷେକ କରାଯାଇ ଥିଲା * । ସିଂହାସନାରୋହଣ କାଳରୁ ଗୋଟିଏ

* ୧୩୫୭ ଶକାବ୍ଦ ଜ୍ୟେଷ୍ଠ ମାସ ଶୁକ୍ଳ ଚତୁର୍ଥୀ ବୁଧବାର ଦିନ ତାଙ୍କର ଅଭିଷେକ ହୋଇ ଥିବାର ମାଦଳାପାଞ୍ଜିରେ ଲେଖାଅଛି ।

ସ୍ୱତନ୍ତ୍ର ଅବ୍ଦ କପିଳେନ୍ଦ୍ର ଦେବଙ୍କ ନାମରେ ଅଦ୍ୟାପି ଚଳୁଛି । ଦେଶରେ ଶାନ୍ତିରକ୍ଷା, ବୈଦେଶିକ ଶତ୍ରୁନିବାରଣ, ଏବଂ ବିଦେଶରେ ଦେଶ ଅଧିକାର କପିଳେନ୍ଦ୍ର ଦେବଙ୍କ ରାଜତ୍ୱର ପ୍ରଧାନ ଘଟଣା ।

ବିଦ୍ରୋହ ଦମନ—ଗଙ୍ଗ ବଂଶର ଶେଷ ରାଜାମାନେ ଅପେକ୍ଷାକୃତ ଦୁର୍ବଳ ଥିଲେ । ଦେଶର ନାନାସ୍ଥାନର ସାମନ୍ତ ରାଜାମାନେ ରାଜଶକ୍ତି ଦୁର୍ବଳ ଦେଖି ବିଦ୍ରୋହ ଆଚରଣ କରୁଥିଲେ । ପୁଣି କପିଳେନ୍ଦ୍ର ଦେବଙ୍କୁ କେହି କେହି ସାମନ୍ତ ରାଜା ସିଂହାସନର ନ୍ୟାଯ୍ୟ ଉତ୍ତରାଧିକାରୀ ବୋଲି ମନେ ନ କରି, ତାଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କଲେ । କପିଳେନ୍ଦ୍ର ରାଜ୍ୟ ଭାର ନେବା ସଙ୍ଗେ ସଙ୍ଗେ ବିଦ୍ରୋହ ଦମନ ଶାସନର ପ୍ରଥମ କାର୍ଯ୍ୟ କରି ଧରିଲେ । ଦକ୍ଷିଣରେ ଖେମଣ୍ଡୀ ରାଜା ବିଦ୍ରୋହୀ ହୋଇ ଉଠିଲେ । କପିଳେନ୍ଦ୍ର ଦେବ ଦକ୍ଷିଣ ଯାତ୍ରାକରି ଛତ୍ରଗଡ଼ରେ ଶିବିର ସ୍ଥାପନ କଲେ । ଖେମଣ୍ଡୀ ରାଜା ପରାସ୍ତ ହୋଇ କପିଳେନ୍ଦ୍ର ଦେବଙ୍କ ଆଧିପତ୍ୟ ସ୍ୱୀକାର କଲେ । ଖେମଣ୍ଡୀରେ ଶାନ୍ତି ସ୍ଥାପନ କରି ଦକ୍ଷିଣ ଅଞ୍ଚଳର ଅନ୍ୟାନ୍ୟ ସାମନ୍ତ ରାଜାମାନଙ୍କର ବିଦ୍ରୋହ ଦମନ କରିବା ନିମନ୍ତେ କପିଳେନ୍ଦ୍ର ଦେବ ମହେନ୍ଦ୍ରଗିରି ପର୍ଯ୍ୟନ୍ତ ଅଗ୍ରସର ହେଲେ । ମହେନ୍ଦ୍ର ପର୍ବତରେ ଶିବିର ସ୍ଥାପିତ ହେଲା । ସେ ଅଞ୍ଚଳର ବିଦ୍ରୋହୀ ରାଜାମାନେ ପରାସ୍ତ ହୋଇ କପିଳେନ୍ଦ୍ରଙ୍କ ପ୍ରଭୁତ୍ୱ ସ୍ୱୀକାର କଲେ । ୧୪୪୨ ଖ୍ରୀଷ୍ଟାବ୍ଦ ବେଳକୁ ଉକ୍ତ ବିଦ୍ରୋହୀ ରାଜ୍ୟମାନଙ୍କ ମଧ୍ୟରେ ପୂର୍ଣ୍ଣଶାନ୍ତି ସ୍ଥାପିତ ହେଲା । ଦେଶ ବିଜୟ ନିମନ୍ତେ କପିଳେନ୍ଦ୍ରଦେବ ମହେନ୍ଦ୍ର ପର୍ବତରୁ ଦାକ୍ଷିଣାତ୍ୟ ଅଭିମୁଖେ ଯାତ୍ରାକଲେ । ଦାକ୍ଷିଣାତ୍ୟ ଅଭିଯାନରେ ସେ କୋଣ୍ଡାପିଲି ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ, ଏପରି ସମୟରେ ଶୁଣିଲେ ଯେ ଦେଶ ମଧ୍ୟରେ ଅଳ, କନକା ଓ କୁଜଙ୍ଗର ରାଜାମାନେ ବିଦ୍ରୋହାଚରଣ କରୁଥିଲେ । କପିଳେନ୍ଦ୍ର ଏହି ସମ୍ବାଦ ପାଇ ନିଜ ରାଜଧାନୀ ବାରବାଟିକୁ ଫେରିଆସିଲେ ଏବଂ ସେଠାରୁ ସସୈନ୍ୟରେ ଯାତ୍ରାକରି ବିଦ୍ରୋହୀ ରାଜାମାନଙ୍କୁ ଦମନ

କଲେ (୧୪୪୭) । ଏହିସମୟରେ ବଙ୍ଗ ସୁଲତାନ ନାସିରୁଦ୍ଦିନ୍ ମହମଦ ଉତ୍କଳର ଉତ୍ତରାଞ୍ଚଳ ଆକ୍ରମଣ କରି ଅଧିକାର କରୁଥିଲେ । କପିଳେନ୍ଦ୍ରଙ୍କ ସୈନ୍ୟମାନେ ଅଗ୍ରଯାତ୍ରା କରି ମୁସଲମାନମାନଙ୍କୁ ପରାଜୟ କଲେ । ସେମାନେ ପରାସ୍ତ ହୋଇ ପଳାୟନ କଲେ । ଏହାପରେ ବଙ୍ଗ ମୁସଲମାନମାନେ ଆଉ ଗଙ୍ଗାନଦୀ ପାରହୋଇ ଉତ୍କଳ ଆକ୍ରମଣ କରିବାକୁ ସାହସ କରି ନଥିଲେ ।

ଦାକ୍ଷିଣାତ୍ୟ ଅଭିଯାନ—ଦେଶମଧ୍ୟରେ ପୂର୍ଣ୍ଣ ଶାନ୍ତି ସ୍ଥାପିତ ହୋଇ ସୁଶାସନ ଚାଲିଲା । କପିଳେନ୍ଦ୍ରଦେବ ଦାକ୍ଷିଣାତ୍ୟ ବିଜୟ ନିମନ୍ତେ ବିରାଟ ଅଭିଯାନରେ ଯାତ୍ରାକଲେ (୧୪୫୪) । ବର୍ତ୍ତମାନ ନେଲୋର ଅଞ୍ଚଳରେ ଚନ୍ଦ୍ରଗିରି ଏବଂ ଉଦୟଗିରି ନାମରେ ଦୁଇଟି ରାଜ୍ୟ ଥିଲା । ନେଲୋର ଏଥିପୂର୍ବରୁ ଉତ୍କଳ ଗଜପତିଙ୍କ ଅଧୀନତା ସ୍ୱୀକାର କରିଥିଲା । ଗଙ୍ଗବଂଶର ଶେଷକାଳକୁ ଉତ୍କଳ ରାଜଶକ୍ତି ଦୁର୍ବଳ ଥିବାର ଦେଖି ନେଲୋର ଅଞ୍ଚଳର ରାଜାମାନେ ପୁଣି ସ୍ୱାଧୀନତା ଘୋଷଣା କରିଥିଲେ । କପିଳେନ୍ଦ୍ରଦେବ ୧୪୫୫ ଖ୍ରୀଷ୍ଟାବ୍ଦରେ ନେଲୋର ଜିଲ୍ଲାର ଚନ୍ଦ୍ରଗିରି ଓ ଉଦୟଗିରି ରାଜ୍ୟମାନ ଆକ୍ରମଣ କଲେ । ଉଦୟଗିରିର ରାଜା ବିରୁପାକ୍ଷ କପିଳେନ୍ଦ୍ରଦେବଙ୍କ ବିରୁଦ୍ଧରେ ଘୋର ଯୁଦ୍ଧକଲେ । ଶେଷରେ ବିରୁପାକ୍ଷ ରାଜା ବନ୍ଦୀ ହେଲେ; ଏବଂ ଉଦୟଗିରି ଓ ତତ୍ପରେ ଚନ୍ଦ୍ରଗିରି ରାଜ୍ୟଦ୍ୱୟ କପିଳେନ୍ଦ୍ରଦେବଙ୍କ ଦ୍ୱାରା ଅଧିକୃତ ହେଲା । କପିଳେନ୍ଦ୍ର ସେଠାରୁ ଯାତ୍ରାକରି କାବେରୀ ନଦୀ ତଟସ୍ଥ କେରଳରାଜ୍ୟ ଆକ୍ରମଣ କରି ଅଧିକାର କଲେ (୧୪୫୭) ।

ଏହିସବୁ କ୍ଷୁଦ୍ର ରାଜ୍ୟମାନ ଅଧିକାର କରିବା କପିଳେନ୍ଦ୍ରଙ୍କ ଦାକ୍ଷିଣାତ୍ୟ ଅଭିଯାନର ଏକମାତ୍ର ଉଦ୍ଦେଶ୍ୟ ନ ଥିଲା । ବହୁକାଳ ପୂର୍ବରୁ ବିଜୟନଗର ଓ ବାହାମନୀ ନାମରେ ଦୁଇଟି ପ୍ରବଳ ରାଜ୍ୟ ଦାକ୍ଷିଣାତ୍ୟରେ ପ୍ରତିଷ୍ଠିତ ହୋଇଥିଲା । ବିଜୟନଗର ହିନ୍ଦୁରାଜ୍ୟ, ଏବଂ ବାହାମଣୀ ମୁସଲମାନ ରାଜ୍ୟ । ବର୍ତ୍ତମାନ ହାଇଦରାବାଦ ଓ ତାହାର ଦକ୍ଷିଣବର୍ତ୍ତୀ ଅଞ୍ଚଳମାନ ନେଇ

ବାହ୍ମଣୀ ରାଜ୍ୟ ଗଠିତ ହୋଇଥିଲା । ବିଜୟନଗର ଅନ୍ତୁର ଦକ୍ଷିଣରେ ଥିଲା । ଉକ୍ତ ଦୁଇଟି ରାଜ୍ୟ [illegible] ମଧ୍ୟରେ [illegible] ଶତ୍ରୁତା ଚାଲୁଥିଲା । ଉକ୍ତ ରାଜ୍ୟ ଦୁଇଟି ମଧ୍ୟରେ [illegible] ସୁବିଧା ପାଇ କପିଳେନ୍ଦ୍ର ଦେବ ଅପଣାର ରାଜ୍ୟ ଦକ୍ଷିଣଦିଗରେ ଉତ୍କଳର ପ୍ରଭାବ ବିସ୍ତାରର କଳ୍ପନା କଲେ । [illegible] କପିଳେନ୍ଦ୍ର ଦେବ କୃଷ୍ଣା ନଦୀର ଦକ୍ଷିଣ ଅଞ୍ଚଳସ୍ଥ ପୂର୍ବଉପକୂଳବର୍ତ୍ତୀ ନେଲ୍ଲୋର, ଚନ୍ଦ୍ରଗିରି, ଉଦୟଗିରି ପ୍ରଭୃତି ଅଧିକାର କରିଥିଲେ । ଏହିସବୁ ରାଜ୍ୟମାନ ବିଜୟନଗର ଅନ୍ତର୍ଗତ ଥିଲା । ଉତ୍କଳ ସୈନ୍ୟ ସେହି ବିଜୟରେ ଉତ୍ସାହିତ ହୋଇ ୧୪୫୭ ଖ୍ରୀଷ୍ଟାବ୍ଦରେ ବିଜୟନଗର ଅବରୋଧ ନିମନ୍ତେ ଯାତ୍ରା କଲେ । ଗୋପୀନାଥ ମହାପାତ୍ର ନାମରେ ବିଜୟନଗରର ଜଣେ ପ୍ରଧାନ ସେନାପତି ଉତ୍କଳ ସୈନ୍ୟଙ୍କର ଗତିରୋଧ କଲେ ; ଘୋର ଯୁଦ୍ଧ ହେଲା; ବିଜୟନଗର ସୈନ୍ୟ ପରାସ୍ତ ହେଲେ, ଏବଂ ଶେଷରେ ଗୋପୀନାଥ କପିଳେନ୍ଦ୍ର ଦେବଙ୍କ ହସ୍ତରେ ବନ୍ଦୀ ହେଲେ ।

ବିଜୟନଗର ସୈନ୍ୟବଳର ପରାଭବ ପରେ କପିଳେନ୍ଦ୍ର ଦେବଙ୍କ ପ୍ରଭାବ ଦାକ୍ଷିଣାତ୍ୟରେ ବଢ଼ିଗଲା । ଦାକ୍ଷିଣାତ୍ୟର କ୍ଷୁଦ୍ର କ୍ଷୁଦ୍ର ରାଜାମାନେ ନିଜର ଅପଣାର ସ୍ୱାର୍ଥ ଓ ସ୍ୱାତନ୍ତ୍ର୍ୟ ରକ୍ଷା ନିମନ୍ତେ କପିଳେନ୍ଦ୍ରଙ୍କ ସାହାଯ୍ୟ ଲୋଡ଼ିଲେ । ବିଜୟନଗରର ପରାଭବ ପରେ କପିଳେନ୍ଦ୍ରଙ୍କ ସାହସ ମଧ୍ୟ ବିଶେଷ ବଢ଼ିଯାଇ ଥିଲା । ବାହ୍ମଣୀ ବିରୁଦ୍ଧରେ ସୈନ୍ୟ ଚାଳନା ନିମନ୍ତେ ତାହାଙ୍କର ପ୍ରବୃତ୍ତି ଜନ୍ମିଲା । ମାତ୍ର ଏକାଦିକ୍ରମେ ବହୁଦିନ ଯୁଦ୍ଧରେ ରତ ଥାଇ କ୍ଲାନ୍ତ ସୈନ୍ୟମାନଙ୍କୁ ନେଇ ବାହ୍ମଣୀର ପ୍ରବଳ ଶକ୍ତି ବିରୁଦ୍ଧରେ ଯୁଦ୍ଧ କରିବାକୁ କପିଳେନ୍ଦ୍ର ସାହସ କରି ପାରୁ ନ ଥିଲେ । ଏଥିପୂର୍ବରୁ ବାହ୍ମଣୀ ସୁଲତାନ ହୁମାୟୁନ ଶା ବାହ୍ମଣୀ ତେଲିଙ୍ଗ ବା ତେଲଙ୍ଗାନାର ହିନ୍ଦୁ ରାଜାମାନଙ୍କୁ ବାରମ୍ବାର ପରାସ୍ତ କରି ସେ ରାଜ୍ୟରେ ନାନା ଅତ୍ୟାଚାର କରିଥିଲେ । ବିଜୟନଗରର ସୈନ୍ୟବଳ ଖର୍ବ କରିବାର ଦେଖି

କପିଳେନ୍ଦ୍ର ଦେବଙ୍କ ପ୍ରଭାବରେ ସେହି ରାଜାମାନଙ୍କର ଆଶା ଓ ଉତ୍ସାହ ଭାଙ୍ଗିଗଲା । ସେମାନେ କପିଳେନ୍ଦ୍ରଙ୍କ ଆଶ୍ରୟ ଲୋଡିଲେ । କପିଳେନ୍ଦ୍ର ମଧ୍ୟ ପୂର୍ବରୁ ଯାହା ଲୋଡୁଥିଲେ, ବର୍ତ୍ତମାନ ସେହି ସୁବିଧା ପାଇଲେ । ତେଲିଙ୍ଗ ରାଜାମାନଙ୍କ ସାହାଯ୍ୟାର୍ଥେ ତେଲିଙ୍ଗ ଓ ଉତ୍କଳ ସୈନ୍ୟଙ୍କ ସହ ସେ ବାହାମଣୀ ରାଜ୍ୟ ଆକ୍ରମଣ କଲେ । ୧୪୫୭ ଖ୍ରୀଷ୍ଟାବ୍ଦରେ କପିଳେନ୍ଦ୍ର ଦେବ ରକୋଣ୍ଡା ନାମକ ଗୋଟିଏ ଅଭେଦ୍ୟ ବାହାମଣୀ ଦୁର୍ଗ ଅବରୋଧ କଲେ । ନିଜେ ସୁଲତାନ ହୁମାୟୁନ ସାହ ଏହି ଦୁର୍ଗରକ୍ଷା ନିମନ୍ତେ ଉପସ୍ଥିତ ଥିଲେ । ବହୁଦିନ ଧରି ଯୁଦ୍ଧ ଚାଲିଲା । ହୁମାୟୁନ ସାହ ଶେଷରେ ପରାସ୍ତ ହୋଇ ଦୁର୍ଗ ଛାଡ଼ି ପଳାୟନ କଲେ । କପିଳେନ୍ଦ୍ର ଦେବ ବହୁଦୂର ତାହାଙ୍କର ଅନୁଧାବନ କଲେ । ସେହି ଅନୁଧାବନରେ କପିଳେନ୍ଦ୍ର ବିଦର ପର୍ଯ୍ୟନ୍ତ ସମସ୍ତ ରାଜ୍ୟ ଧ୍ୱଂସ କଲେ । ବିଦର ଏଥିପୂର୍ବରୁ ଲାଙ୍ଗୁଳାନରସିଂହଙ୍କ ଦ୍ୱାରା ପରାଜିତ ହୋଇ ଉତ୍କଳର ଅଧୀନସ୍ଥ ଥିଲା । ମାତ୍ର ପରବର୍ତ୍ତୀ ଗଙ୍ଗା ରାଜାମାନଙ୍କ ରାଜତ୍ୱ ବେଳେ ଉତ୍କଳର ରାଷ୍ଟ୍ର ଶକ୍ତି ହୀନବଳ ହୋଇଯିବାରୁ ଏବଂ ବାହାମଣୀ ରାଜ୍ୟ ପ୍ରବଳ ହୋଇ ଉଠିବାରୁ ବିଦର ବାହାମଣୀ ରାଜ୍ୟର ଅନ୍ତର୍ଭୁକ୍ତ ହୋଇ ରହିଥିଲା । କପିଳେନ୍ଦ୍ର ଦେବ ବିଦର ପର୍ଯ୍ୟନ୍ତ ସକଳ ରାଜ୍ୟ ଜୟକରି ଉତ୍କଳର ପୂର୍ବ ଆଧିପତ୍ୟ ପ୍ରତିଷ୍ଠିତ କଲେ । ବିଜୟନଗରର ହିନ୍ଦୁ ରାଜା ଯଦି କପିଳେନ୍ଦ୍ର ଦେବଙ୍କ ସଙ୍ଗେ ଶତ୍ରୁତା ନ କରି, ତେଲିଙ୍ଗର ରାଜାମାନଙ୍କ ପରି ସଖ୍ୟଭାବ ରଖି ସନ୍ଧି କରିଥାନ୍ତେ, ତାହାହେଲେ ଉତ୍କଳର 'ଗଜପତି' ବିଜୟନଗରର 'ନରପତି'ମାନେ ଏକତ୍ରିତ ହୋଇ ଅନ୍ୟାନ୍ୟ ହିନ୍ଦୁ ରାଜାମାନଙ୍କ ସାହାଯ୍ୟରେ ବାହାମଣୀର ମୁସଲମାନ ଶକ୍ତି ଏକାବେଳକେ ଧ୍ୱସ୍ତ କରିଦେଇ ଥାନ୍ତେ । ମାତ୍ର ତାହା ହେବାର ନୁହେଁ, ନିଜେ ବିଜୟନଗର ସେହି ବାହାମଣୀ ସୁଲତାନମାନଙ୍କ ଦ୍ୱାରା ଅବଶେଷରେ ତାଲିକୋଟ ଯୁଦ୍ଧରେ (୧୫୬୫) ସମ୍ପୂର୍ଣ୍ଣ ଧ୍ୱସ୍ତ ହେଲା ।

ହୁମାୟୁନ ସାହ ପଳାୟନ କଲାପରେ ତାହାଙ୍କ ପୁତ୍ର ମହମ୍ମଦ ନିଜାମ ସାହ କପିଳେନ୍ଦ୍ରଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରି ସନ୍ଧି ସ୍ୱୀକାର କଲେ । ତତ୍ପରେ କପିଳେନ୍ଦ୍ର ଦେବ ଦାକ୍ଷିଣାତ୍ୟରେ ଅଧିକୃତ ରାଜ୍ୟମାନଙ୍କରେ ଆପଣାର ଆଧିପତ୍ୟ ସୁଦୃଢ଼ କରି ସ୍ୱୀୟ ରାଜଧାନୀକୁ ଫେରି ଆସିଲେ । କପିଳେନ୍ଦ୍ରଙ୍କ ଫେରିବାର ଅଳ୍ପକାଳ ମଧ୍ୟରେ ବିଜୟନଗର ରାଜା ପୁଣି ବିରୋଧାଚରଣ କଲେ ; ଏବଂ କପିଳେନ୍ଦ୍ରଙ୍କ ଅଧିକୃତ ରାଜ୍ୟମାନ ଆକ୍ରମଣ କରିବାର ଉଦ୍ୟୋଗ କଲେ । ଏଥି ମଧ୍ୟରେ ତେଲଙ୍ଗର ସିଂହାସନ ନିମନ୍ତେ ମଙ୍ଗଳରାୟ ଓ ଅମ୍ବର ରାୟଙ୍କ ମଧ୍ୟରେ ଘୋର ବିବାଦ ଉପସ୍ଥିତ ହେଲା । ଅମ୍ବର ରାୟ କପିଳେନ୍ଦ୍ରଦେବଙ୍କ ସାହାଯ୍ୟ ଲୋଡିଲେ । ମଙ୍ଗଳରାୟ କପିଳେନ୍ଦ୍ରଦେବଙ୍କ ବିରୁଦ୍ଧରେ ଆପଣାକୁ ଅସହାୟ ମନେ କରି ତେଲିଙ୍ଗ ରାଜ୍ୟର ପୂର୍ବ ଶତ୍ରୁ ବାହାମଣୀ ସୁଲତାନ ମହମ୍ମଦ ସାହଙ୍କର ଆଶ୍ରୟ ପ୍ରାର୍ଥନା କଲେ । କପିଳେନ୍ଦ୍ରଙ୍କ ସଙ୍ଗେ ପୂର୍ବରୁ ସନ୍ଧିସୂତ୍ରରେ ଆବଦ୍ଧ ଥିଲେ ସୁଦ୍ଧା, ବର୍ତ୍ତମାନ ସେ ସନ୍ଧି ଅମାନ୍ୟ କରି ମହମ୍ମଦ ସାହ ମଙ୍ଗଳରାୟଙ୍କୁ ସାହାଯ୍ୟ ଦେଲେ । ଅମ୍ବରରାୟ କପିଳେନ୍ଦ୍ରଦେବଙ୍କୁ ସାହାଯ୍ୟ ମାଗିବା ବେଳେ ସ୍ୱୀକାର କରିଥିଲେ ଯେ ବାହାମଣୀ ରାଜ୍ୟରୁ ଯେଉଁ ରାଜ୍ୟମାନ ଜୟ କରାଯିବ ତହିଁ ମଧ୍ୟରୁ କପିଳେନ୍ଦ୍ରଙ୍କୁ ଭାଗ ଦେବେ, ଏବଂ ଆପାତତଃ ତାଙ୍କ ବିଶ୍ୱାସ ଜନ୍ମାଇବା ନିମନ୍ତେ କୋଣ୍ଡାପିଲ୍ଲି ଦୁର୍ଗ ଓ ତାହାର ଅଧୀନସ୍ଥ ରାଜ୍ୟ କପିଳେନ୍ଦ୍ରଦେବଙ୍କୁ ଦାନକଲେ । କପିଳେନ୍ଦ୍ର ଏହି ସନ୍ଧି ସର୍ତ୍ତରେ ସ୍ୱୀକାର କରି ୧୦ ହଜାର ପଦାତିକ ଏବଂ ୮ ହଜାର ଅଶ୍ୱାରୋହୀ ସୈନ୍ୟ ମହମ୍ମଦ ସାହ ଓ ମଙ୍ଗଳରାୟଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ । ୧୪୬୩ ଖ୍ରୀଷ୍ଟାବ୍ଦରେ ଯୁଦ୍ଧ ହେଲା ; ତହିଁରେ ବାହାମଣୀ ଓ ମଙ୍ଗଳରାୟଙ୍କ ଯୁକ୍ତସେନା ପରାଭୂତ ହେଲା । ଯୁଦ୍ଧରେ ଜୟୀ ହୋଇ କପିଳେନ୍ଦ୍ରଦେବ ଅମ୍ବରରାୟଙ୍କୁ ତେଲିଙ୍ଗ ସିଂହାସନରେ ଅଭିଷିକ୍ତ କରିଦେଲେ ; ଏବଂ ତେଲିଙ୍ଗ ଖିଲିକାଖ

ସିଂହରାଜ୍ୟ ରୂପେ ରହିଲା । ୧୪୬୩ ଖ୍ରୀଷ୍ଟାବ୍ଦରେ ଅମ୍ବରରାୟଙ୍କ ପ୍ରତିଷ୍ଠିତ କୋଣ୍ଡାପିଲି ଦୁର୍ଗ ଉଦ୍ଧାର ଓ ହସ୍ତଗତ କରିବାନିମନ୍ତେ କପିଳେନ୍ଦ୍ର ସେ ଦୁର୍ଗ ଅବରୋଧ କଲେ । ଦୁର୍ଗର ରାଣୀ ଚନ୍ଦ୍ରାବତୀଦେବୀ ଦୁର୍ଗ ଉଦ୍ଧାରରେ କପିଳେନ୍ଦ୍ରଙ୍କୁ ବାଧାଦେଲେ । ମାତ୍ର ଶେଷରେ ସେ ବନ୍ଦୀ ହେଲେ, ଏବଂ ଦୁର୍ଗ କପିଳେନ୍ଦ୍ର ଦେବଙ୍କର ହସ୍ତଗତ ହେଲା । ଅମ୍ବରରାୟଙ୍କ ବଂଶରୁ ନରସିଂହ ରାୟ ନାମକ ଜଣେ ସାମନ୍ତଙ୍କୁ ଭୂଗତ ଶାସନକର୍ତ୍ତା କରି, କପିଳେନ୍ଦ୍ର ଦେବ ବିଜୟନଗର ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ । ଏହି ଯୁଦ୍ଧ ଅଭିଯାନରେ କପିଳେନ୍ଦ୍ର ଦେବ ରାଜ୍ୟ ପରେ ରାଜ୍ୟ ଜୟକରି ସେତୁବନ୍ଧ ରାମେଶ୍ୱର ପର୍ଯ୍ୟନ୍ତ ବିଜୟ ପତାକା ଉଡ଼ାଇଥିଲେ । ଏତେବେଳକୁ କପିଳେନ୍ଦ୍ର ବୃଦ୍ଧ ହୋଇଥିଲେ, ଏବଂ ଜୀବନବ୍ୟାପୀ ଯୁଦ୍ଧ ଅଭିଯାନରେ ତାହାଙ୍କର ଶରୀର ମଧ୍ୟ ଜୀର୍ଣ୍ଣ ହୋଇଥିଲା । ଯୁଦ୍ଧବିଜୟରୁ ନିଜ ରାଜ୍ୟକୁ ଫେରି ଆସିବା ବାଟରେ ୧୪୭୦ ଖ୍ରୀଷ୍ଟାବ୍ଦରେ କୃଷ୍ଣାନଦୀକୂଳରେ କପିଳେନ୍ଦ୍ରଦେବଙ୍କର ମହାପ୍ରୟାଣ ଘଟିଲା ।

ରାଜତ୍ୱ ଓ ଚରିତ୍ର—କେବଳ ଦେଶବିଜୟ ଓ ଅଶାନ୍ତ ଅର୍ଜନରେ କପିଳେନ୍ଦ୍ର ଦେବଙ୍କ ଜୀବନ ବ୍ୟୟିତ ହୋଇ ନ ଥିଲା । ଜୀବନବ୍ୟାପୀ ଯୁଦ୍ଧ ଅଭିଯାନ ମଧ୍ୟରେ ଦେଶର ସୁଶାସନ ଓ ଦାନ ଧର୍ମ ପ୍ରତି ତାହାଙ୍କର ସମଧିକ ମନୋଯୋଗ ଥିଲା । ସେ ଯେପରି ସମରପ୍ରିୟ ଯୋଦ୍ଧା ଥିଲେ ; ସେହିପରି ଶାନ୍ତିପ୍ରିୟ ଶାସନ ପରିଚାଳନରେ ଯତ୍ନବାନ୍ ଥିଲେ । ରାଜତ୍ୱର ୩ୟ ବର୍ଷରେ ସେ ବ୍ରାହ୍ମଣମାନଙ୍କୁ ପୁଷ୍କଳଗର ତୁଳସୀପୁର ଗ୍ରାମ ଦାନ କରି ବସତି କରାଇଥିଲେ । ୧୬ ଅଙ୍କ ବା ୧୪ଶ ବର୍ଷରେ ଅର୍ଥାତ ୧୪୪୫ ଖ୍ରୀଷ୍ଟାବ୍ଦରେ ସେ ପୁରୀ ନିକଟରେ ନିଜ ନାମାନୁସାରେ କପିଳେଶ୍ୱରପୁର ଶାସନ ବସାଇ ବ୍ରାହ୍ମଣମାନଙ୍କୁ ବହୁତ ଜମି ବାଡ଼ି ଦାନ କରିଥିଲେ । ୨୧ଅଙ୍କ ବା ୧୮ ବର୍ଷ ରାଜତ୍ୱ ବେଳେ ସେ ଦାମୋଦରପୁର ନାମକ ଅଉ

ଗୋଟିଏ ଶାସନ ବସାଇଥିଲେ । କପିଳେନ୍ଦ୍ର ବୈଷ୍ଣବ ଧର୍ମର ପ୍ରଧାନ ପୃଷ୍ଠପୋଷକ ଥିଲେ ; ଏବଂ ଜଗନ୍ନାଥଙ୍କ ନିମନ୍ତେ ବହୁ ଜମି ଓ ଜମା ଖଞ୍ଜା କରି ଦେଇଥିଲେ । ସ୍ୱରାଜ୍ୟର ୧୬ ଅଙ୍କ ବା ୧୩ ବର୍ଷରେ ସେ ଜଗନ୍ନାଥ ମନ୍ଦିରର ବାହାର ବେଢା ପାଚେରୀ ନିର୍ମାଣ କରାଇଥିଲେ, ଏହାଛଡ଼ା ଅନ୍ୟତ୍ର ମଧ୍ୟ କେତେ ସ୍ଥାନରେ ତାଙ୍କର ଧର୍ମଭାବ ଓ ଦାନଶୀଳ ଚରିତ୍ରର ପରିଚୟ ମିଳେ । ଗୋପୀନାଥ ମହାପାତ୍ର ନାମରେ ତାହାଙ୍କର ଜଣେ ମନ୍ତ୍ରୀ କଟକ ନିକଟରେ ଗୋପୀନାଥପୁର ଶାସନ ବସାଇ ସେଠାରେ ଜଗନ୍ନାଥ ମନ୍ଦିର ନିର୍ମାଣ କରାଇଥିଲେ ।

ପ୍ରଜାରଞ୍ଜନ ଓ ଶାନ୍ତି ସ୍ଥାପନ ତାହାଙ୍କ ଶାସନର ମୂଳମନ୍ତ୍ର ଥିଲା । କପିଳେନ୍ଦ୍ର ରାଜ୍ୟଭାର ଗ୍ରହଣ କରିବା ମାତ୍ରେ ବ୍ରାହ୍ମଣମାନଙ୍କୁ ଚୌକିଦାରୀ କରରୁ ମୁକ୍ତ କରି ଦେଇଥିଲେ । ଲୁଣ ଓ କଉଡ଼ିରୁ କର ମଧ୍ୟ ସେ ହଟାଇ ଦେଇ ଲୁଣ ମାରିବା ଓ କଉଡ଼ି ଆମଦାନି ନିମନ୍ତେ ପ୍ରଜାବର୍ଗଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦେଇଥିଲେ । ଗୋରୁମାନଙ୍କର ସ୍ୱାର୍ଥରକ୍ଷା କରି ସେ ପ୍ରତ୍ୟେକ ଗ୍ରାମରେ ପଡ଼ିଆ ଜମି ଗୋଚରଣ ନିମନ୍ତେ ଉଦ୍ଦିଷ୍ଟ ରଖିଥିଲେ ଏବଂ ପଡ଼ିଆ ଓ ଗୋଚର ଜମି ଆବାଦୀ ଜମିରେ ପରିଣତ କରିବା ଚେଷ୍ଟା ଏକାବେଳେକେ ବନ୍ଦ କରିଦେଇଥିଲେ । କେବଳ ସାକ୍ଷାତ ଶାସିତ ଅଞ୍ଚଳମାନଙ୍କରେ ସେ ଯେ ଏହିସବୁ ପ୍ରଜାରଞ୍ଜନ କାର୍ଯ୍ୟମାନ କରି ସନ୍ତୁଷ୍ଟ ଥିଲେ, ଏପରି ନୁହେଁ । ଦେଶ ମଧ୍ୟରେ ସାମନ୍ତ ରାଜାମାନଙ୍କ ଶାସନରେ ବହୁତ ଅଞ୍ଚଳ ଥିଲା । ସେସବୁ ରାଜ୍ୟମାନଙ୍କରେ ସମସ୍ତ ରାଜା ଓ ଶାସନକର୍ତ୍ତାମାନଙ୍କ ମଧ୍ୟରେ ଘୋଷଣା ପ୍ରଚାର କରିଥିଲେ ଯେ ରାଜାମାନେ ପ୍ରଜାରଞ୍ଜନ ଉଦ୍ଦେଶ୍ୟରେ ଶାସନ ପରିଚାଳନ କରିବେ । କୌଣସି ରାଜ୍ୟରେ ଏହାର ବ୍ୟତିକ୍ରମ ଦେଖାଗଲେ ସେ ରାଜ୍ୟର ରାଜା ନିର୍ବାସନ ଦଣ୍ଡରେ ଦଣ୍ଡିତ ହେବେ ଏବଂ ସେ ରାଜ୍ୟ ଖାସ ହୋଇ ଗଜପତିଙ୍କ ସାକ୍ଷାତ ଶାସନାଧୀନ

ହୋଇଉଠିବ । ଏହି ଘୋଷଣା ଫଳରେ ସମସ୍ତ ଦେଶରେ ସୁଶାସନ ସ୍ଥାପିତ ହୋଇଥିଲା ; ଏବଂ ପ୍ରଜାବର୍ଗ ପରମ ଶାନ୍ତି ଓ ସ୍ୱାଧୀନତାରେ କାଳ ଯାପନ କରୁଥିଲେ ।

କପିଳେନ୍ଦ୍ର ଦେବଙ୍କ ଜୀବନ ଅତି ରହସ୍ୟମୟ ଏବଂ ନାନା ବିଚିତ୍ର ଘଟଣାବଳୀରେ ପୂର୍ଣ୍ଣ । ସାମାନ୍ୟ ଗୋଚାରଣ ବୃତ୍ତିରୁ ଉନ୍ନୀତ ହୋଇ ସେ ଆପଣାର ଅଲୌକିକ ପ୍ରତିଭାବଳରେ ଉତ୍ତରରେ ଗଙ୍ଗାନଦୀଠାରୁ ଦକ୍ଷିଣରେ ପାଲାର ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡର ଅଧିନାୟକ ହୋଇ ପାରିଥିଲେ । ଦେଶ ମଧ୍ୟରେ ଏବଂ ବହିର୍ଦେଶରେ, ଏପରିକି ବାହାମଣୀ ଓ ବିଜୟ ନଗର ପରି ପ୍ରବଳ ରାଜ୍ୟମାନଙ୍କ ମଧ୍ୟରେ କପିଳେନ୍ଦ୍ର ଦେବ ପ୍ରଧାନ ଭୟର କାରଣ ହୋଇ ଉଠିଥିଲେ । ତାହାଙ୍କର ପ୍ରଭାବ ଓ ଆଧିପତ୍ୟ ସମସ୍ତ ଦକ୍ଷିଣାତ୍ୟରେ ପ୍ରତିଷ୍ଠିତ ହୋଇଥିଲା । ବର୍ତ୍ତମାନ ଗୁଣ୍ଟୁର, କୃଷ୍ଣା ଏବଂ ନେଲୋର ଜିଲ୍ଲାମାନଙ୍କରୁ ତାହାଙ୍କର ଶାସନ ଲିପି ମିଳୁଅଛି । ଜୀବନବ୍ୟାପୀ ଅଭିଯାନ ମଧ୍ୟରେ ସେ ଶାସନର ସୂକ୍ଷ୍ମ ସୂକ୍ଷ୍ମ ବିଷୟ ପ୍ରତି ସମଧିକ ଦୃଷ୍ଟି ଦେଉଥିଲେ । କ୍ଳାନ୍ତି ସେ ଜୀବନରେ ଆଦୌ ନ ଥିଲା । ସେ ଜୀବନର ବିଶ୍ରାମ ହୁଏ ତ ଥିଲା ଶାସନ ତନ୍ତ୍ରର ସୂତ୍ରରୁ ପରିଚାଳନାରେ, ଅଥବା ଯୁଦ୍ଧ-କ୍ଷେତ୍ରର ଘୋର ଝଞ୍ଜାଳ ମଧ୍ୟରେ । ଏହିରୂପ ଚିର-କର୍ମମୟ ଏବଂ ଅତୁଳ ଗୌରବପୂର୍ଣ୍ଣ ବୀରଜୀବନ ଯୋଗେ କପିଳେନ୍ଦ୍ରଙ୍କୁ ଉତ୍କଳ ଇତିହାସରେ ଦ୍ୱିତୀୟ ଖାରବେଳ ବୋଲି କୁହାଯାଇ ପାରେ ।

ଏହାଙ୍କ ରାଜତ୍ୱକାଳରେ କଟକ ଜିଲ୍ଲାର ଝଙ୍କଡ଼ନିବାସୀ କବି ସାରଳା ଦାସ ମହାଭାରତ ଓଡ଼ିଆରେ ରଚନା କରି ଥିଲେ ।

# ପୁରୁଷୋତ୍ତମ ଦେବ

## ଖ୍ରୀଷ୍ଟ ୧୪୬୭—୧୪୯୭ ଅବ୍ଦ

ଅଭିଷେକ—କପିଳେନ୍ଦ୍ର ଦେବ ଶେଷ ଦାକ୍ଷିଣାତ୍ୟ ଅଭିଯାନ ବେଳେ ସ୍ୱୀୟ ପୁତ୍ର ପୁରୁଷୋତ୍ତମ ଦେବଙ୍କୁ ସଙ୍ଗେ ନେଇ ଯାଇଥିଲେ । କଥିତ ଅଛି, ପୁରୁଷୋତ୍ତମ କପିଳେନ୍ଦ୍ରଙ୍କ ଉପପତ୍ନୀର ପୁତ୍ର ; କପିଳେନ୍ଦ୍ରଙ୍କ ରାଜମହିଷୀଙ୍କ ଗର୍ଭରୁ ଅନ୍ୟ ୧୮ପୁତ୍ର ଜନ୍ମ ହୋଇଥିଲେ । ମାତ୍ର ସକଳ ଭ୍ରାତାଙ୍କ ମଧ୍ୟରେ ପୁରୁଷୋତ୍ତମ ଶୌର୍ଯ୍ୟ, ବୀର୍ଯ୍ୟ, ଦୟା, ଦାକ୍ଷିଣ୍ୟ ପ୍ରଭୃତି ସକଳ ରାଜୋଚିତ ଗୁଣରେ ସର୍ବଶ୍ରେଷ୍ଠ ଥିଲେ । କପିଳେନ୍ଦ୍ରଦେବ ପୁରୁଷୋତ୍ତମଙ୍କ ଗୁଣରେ ମୁଗ୍ଧହୋଇ ଅନ୍ୟାନ୍ୟ ପୁତ୍ରମାନଙ୍କ ମଧ୍ୟରେ ତାହାଙ୍କ ଅଧିକ ସ୍ନେହ ଓ ଆଦର କରୁଥିଲେ । ପୁରୁଷୋତ୍ତମ ମଧ୍ୟ ଅବାଲ୍ୟରୁ ସକଳ ଅବସ୍ଥାରେ ପିତାଙ୍କର ସହଚର ଥିଲେ । ଯୁଦ୍ଧ ବିଗ୍ରହଠାରୁ ଶାସନଶୃଙ୍ଖଳା ବିଧାନ ପର୍ଯ୍ୟନ୍ତ ସକଳ ରାଜକାର୍ଯ୍ୟରେ ସ୍ୱପ୍ରାପଦ୍ଧ ସେ ପିତାଙ୍କର ଅନୁସରଣ କରୁଥିଲେ । ଅନ୍ୟାନ୍ୟ ପୁତ୍ରମାନଙ୍କ ମଧ୍ୟରେ କପିଳେନ୍ଦ୍ର ପୁରୁଷୋତ୍ତମଙ୍କୁ ଆପଣାର ଉପଯୁକ୍ତ ଉତ୍ତରାଧିକାରୀ ମନୋନୀତ କରିଥିଲେ । ଶେଷ ଦାକ୍ଷିଣାତ୍ୟ ଅଭିଯାନରୁ ଫେରିବାବେଳେ କୃଷ୍ଣାନଦୀ ତୀରରେ ଶିବିର ମଧ୍ୟରେ କପିଳେନ୍ଦ୍ରଙ୍କ ମୃତ୍ୟୁ ହେବାରୁ ସେଠାରେ ଉପସ୍ଥିତ ପାତ୍ରମନ୍ତ୍ରୀ ଓ ସାମନ୍ତଙ୍କ ଦ୍ୱାରା ପୁରୁଷୋତ୍ତମ ଦେବ ଉତ୍କଳର ଗଜପତି ରୂପେ ସେହି ଶିବିର ମଧ୍ୟରେ ଅଭିଷିକ୍ତ ହେଲେ ।

ଭ୍ରାତୃ ବିବାଦ—ପୁରୁଷୋତ୍ତମଦେବ ମହାସମାରୋହରେ କୃଷ୍ଣାନଦୀ ତୀରରୁ ସ୍ୱୀୟ ରାଜଧାନୀକୁ ଯାତ୍ରାକଲେ । ସେଠାରେ ମଧ୍ୟ ତାହାଙ୍କର ରାଜୋଚିତ ଅଭିଷେକ ହୋଇଗଲା । ମାତ୍ର ସେ କଦାପି ନିର୍ବିବାଦରେ ରାଜତ୍ୱ କରିପାରିଲେ ନାହିଁ । ଏବେ ଉପପତ୍ନୀର ପୁତ୍ର, ପୁଣି ବୟସରେ

କନିଷ୍ଠ । ସୁତରାଂ କପିଳେନ୍ଦ୍ରଙ୍କ ଅନ୍ୟାନ୍ୟ ପୁତ୍ରମାନେ ପୁରୁଷୋତ୍ତମଙ୍କ ସଙ୍ଗେ ବିଦ୍ରୋହାଚରଣ ଆରମ୍ଭକଲେ । ରାଜତ୍ୱର ପ୍ରଥମ ପାଞ୍ଚବର୍ଷ କେବଳ ଏହି ଭ୍ରାତୃବିବାଦରେ ଅତିବାହିତ ହେଲା । ଯୁଦ୍ଧ କିମ୍ବା କୌଣସି ଷଡ଼ଯନ୍ତ୍ରରେ ପୁରୁଷୋତ୍ତମ ଦେବଙ୍କୁ ହତ୍ୟା କରିଦେବା ଭାଇମାନଙ୍କର ଏକମାତ୍ର ଲକ୍ଷ୍ୟ ରହିଲା । ପୁରୁଷୋତ୍ତମ ବୟସରେ କନିଷ୍ଠ ହେଲେ ମଧ୍ୟ, ଅନ୍ୟାନ୍ୟ ଭାଇମାନଙ୍କ ଅପେକ୍ଷା ଧୈର୍ଯ୍ୟ, ବୀର୍ଯ୍ୟ ଓ ସହିଷ୍ଣୁତାରେ ସର୍ବଶ୍ରେଷ୍ଠ ଥିଲେ । ତାହାଙ୍କର ଜୀବନ ଅତି ପୁଣ୍ୟମୟ, ଏବଂ ସ୍ୱଭାବ ଅତି ମଧୁମୟ ଥିଲା । ଦେଶର ପ୍ରଜାବର୍ଗ, ସୈନ୍ୟ ସାମନ୍ତ ଓ ରାଜମନ୍ତ୍ରୀ ତାହାଙ୍କ ସ୍ନେହ ସୌଜନ୍ୟରେ ବଶୀଭୂତ ହୋଇଥିଲେ ଏବଂ ସେମାନଙ୍କ ମତରେ ସେ ସିଂହାସନର ସର୍ବୋତ୍କୃଷ୍ଟ ଉତ୍ତରାଧିକାରୀ ବିବେଚିତ ହୋଇଥିଲେ । ସୁତରାଂ, ଭାଇମାନେ ଯେତେ ବିଦ୍ରୋହ ବା ଷଡ଼ଯନ୍ତ୍ର କଲେ ମଧ୍ୟ ରାଜମନ୍ତ୍ରୀ ଓ ସୈନ୍ୟସାମନ୍ତ ସାହାଯ୍ୟରେ ସେ ସକଳ ଭ୍ରାତୃ ବିବାଦ ଦମନ କରିବାକୁ ସମର୍ଥ ହୋଇ ଥିଲେ । ଶେଷରେ ଭାଇମାନେ ପରାସ୍ତ ହେଲେ । ପୁରୁଷୋତ୍ତମ ଦେବ ସେମାନଙ୍କ ଉପରେ କୌଣସି ପ୍ରତିଶୋଧ ନନେଇ ଆପଣାର ସ୍ନେହ ଓ ଉଦାରତା ବଳରେ ସେମାନଙ୍କର ସକଳ ଅପରାଧ ମାର୍ଜନା କଲେ; ଏବଂ ସେମାନଙ୍କୁ ରାଜ୍ୟ ମଧ୍ୟରେ ଖଣ୍ଡିଏ ୨ ରାଜ୍ୟ ଦେଇ ସାମନ୍ତରାଜା ରୂପେ ରଖାଇଦେଲେ । ଜ୍ୟେଷ୍ଠ ଭ୍ରାତା ହମୀର ପାରଲାଖେମଣ୍ଡିର ଏବଂ କନିଷ୍ଠ ସୁବର୍ଣ୍ଣ ବାମଣ୍ଡା ରାଜ୍ୟର ରାଜାରୂପେ ମନୋନୀତ ହେଲେ । ଏହିରୂପେ ଅନ୍ୟ କେତେଜଣ ଖଣ୍ଡିଏ ୨ ଗଡଜାତ ପାଇ ସାମନ୍ତ ରାଜା ରୂପେ ଶାନ୍ତିରେ ରହିଲେ ।

କାଞ୍ଚିଯୁଦ୍ଧ— ଭ୍ରାତୃ ବିବାଦର ନିଷ୍ପତ୍ତି ପରେ ପୁରୁଷୋତ୍ତମ-ଦେବଙ୍କ ରାଜତ୍ୱ ସାଧାରଣତଃ ଦେଶରେ ଶାନ୍ତି ବିଧାନ, ଧର୍ମକର୍ମାନୁଷ୍ଠାନ ଓ ଜ୍ଞାନ ପ୍ରଚାରରେ ଅତିବାହିତ ହୋଇ ଥିଲା । କାଞ୍ଚି ଅଭିଯାନ କେବଳ ସେ ଶାନ୍ତିମୟ ରାଜତ୍ୱର ଏକମାତ୍ର ଯୁଦ୍ଧ କାହାଣି । ସେହି କାଞ୍ଚି ଯୁଦ୍ଧ ମଧ୍ୟ ତାହାଙ୍କର ନିତାନ୍ତ ସମରାଭିଳାଷର

ପରିଚୟ ଦେଇନାହିଁ ବରଂ ଘଟଣା ସ୍ରୋତରେ ପଡ଼ି ଉତ୍କଳ ସ୍ୱଜାତିର
ମାନରକ୍ଷା ନିମନ୍ତେ ପୁରୁଷୋତ୍ତମ କାଞ୍ଚୀ ଅଭିଯାନରେ ପ୍ରବର୍ତ୍ତିବାକୁ ବାଧ୍ୟ
ହୋଇଥିଲେ ।

କର୍ଣ୍ଣାଟ ଦେଶରେ କାଞ୍ଚି ବା କଞ୍ଜିଭେରମ ନାମରେ ଏକ ରାଜ୍ୟ
କାବେରୀ ନଦୀ କୂଳରେ ଥିଲା । ପଦ୍ମାବତୀ ନାମରେ କାଞ୍ଚୀ ରାଜାଙ୍କର
ଏଗୋଟିଏ ପରମରୂପସୀ କନ୍ୟା ଥିଲେ । ପୁରୁଷୋତ୍ତମ ଦେବ ପିତାଙ୍କ ସହିତ
ଦାକ୍ଷିଣାତ୍ୟ ଅଭିଯାନରେ ଯାଇଥିବାବେଳେ ପଦ୍ମାବତୀ ଓ ପୁରୁଷୋତ୍ତମଙ୍କ ମଧ୍ୟରେ
ପ୍ରଣୟ ଜନ୍ମିଥିଲା । କାଞ୍ଚି ରାଜା ପୁରୁଷୋତ୍ତମଙ୍କୁ ପଦ୍ମାବତୀଙ୍କର ବିବାହ
ଦେବାର ସ୍ଥିର କରିଥିଲେ । ମାତ୍ର କେତେ ସମୟ ଯିବାପରେ କାଞ୍ଚି ରାଜା
ଶୁଣିପାରିଲେ ଯେ ରଥଯାତ୍ରାବେଳେ ଉତ୍କଳ ଗଜପତିଙ୍କୁ ଜଗନ୍ନାଥଙ୍କର
"ଛେରା ପହଁରା" କରିବାକୁ ପଡ଼େ । ସୁତରାଂ ପୁରୁଷୋତ୍ତମଙ୍କୁ ଏହି
ହୀନ କାର୍ଯ୍ୟ ଯୋଗେ ଚଣ୍ଡାଳ ବୋଲି ଘୃଣାକରି ତାଙ୍କୁ ଆଉ ପଦ୍ମାବତୀଙ୍କ
ବିବାହ ଦେବାକୁ ସ୍ୱୀକୃତ ହେଲେ ନାହିଁ । ପୁରୁଷୋତ୍ତମ ଦେବ
କାଞ୍ଚି ରାଜାଙ୍କ ମନରୁ ଏହି କୁଭାବ ଦୂରକରାଇବା ନିମନ୍ତେ ଜଣେ
ବିଶ୍ୱସ୍ତ ରାଜଦୂତ ପଠାଇଲେ । ସେହି ଦୂତ କାଞ୍ଚିରାଜାଙ୍କୁ ଉତ୍କଳ
ଗଜପତିଙ୍କ ପ୍ରଶସ୍ତି ବହୁତ ଶୁଣାଇଲେ । ମାତ୍ର ସେ ତହିଁରେ ନ ବଦଳି
ବରଂ ଉତ୍କଳ ଦୂତଙ୍କୁ ବନ୍ଦୀକଲେ । ତେଣୁ ପୁରୁଷୋତ୍ତମ ବାଧ୍ୟହୋଇ ଉତ୍କଳ
ରାଜବଂଶର ମହତ୍ତ୍ୱ ରକ୍ଷାକରିବା ଏବଂ ପଦ୍ମାବତୀଙ୍କୁ ଜଣେ ପ୍ରକୃତ ଚଣ୍ଡାଳ ହସ୍ତରେ
ଦେଇ କାଞ୍ଚି ରାଜାଙ୍କ ଦୁର୍ବୁଦ୍ଧିର ଉଚିତ ପ୍ରତିଶୋଧ ନେବାନିମନ୍ତେ
୧୪୭୪ ଖ୍ରୀଷ୍ଟାବ୍ଦରେ କାଞ୍ଚି ଅଭିଯାନରେ ଯାତ୍ରା କଲେ । ଏହି କାଞ୍ଚିଯୁଦ୍ଧ
ଉତ୍କଳରେ ନାନା ଭାବରେ କାବ୍ୟ ନାଟକ ଏବଂ କିମ୍ବଦନ୍ତୀ ଆକାରରେ
କୀର୍ତ୍ତିତ ହୋଇ ଆସୁଅଛି । ପୁରୁଷୋତ୍ତମଦେବ କାଞ୍ଚି ଦୁର୍ଗ ଅବରୋଧ କଲେ
ମାତ୍ର ପ୍ରଥମେ ଅକୃତକାର୍ଯ୍ୟ ହୋଇ ସେ ଶୀଘ୍ର ରାଜଧାନୀକୁ ଫେରି ଆସିଲେ
ପରବର୍ଷ ପୁଣି ଅଧିକ ବଳ ସଂଗ୍ରହ କରି ସେ ଦ୍ୱିତୀୟବାର କାଞ୍ଚି ଅଭି-

ଯାନରେ ଯାତ୍ରା କଲେ (୧) । ପୁଣି କାଞ୍ଚିରାଜ୍ୟ ଅବରୁଦ୍ଧ ହେଲା । ଘୋର ଯୁଦ୍ଧପରେ କାଞ୍ଚି ରାଜା ପରାଜିତ ହେଲେ ଏବଂ ପଦ୍ମାବତୀ ଓ କାଞ୍ଚିରାଜା ବନ୍ଦୀ ହୋଇ ପୁରୁଷୋତ୍ତମଙ୍କ ହସ୍ତରେ ପଡିଲେ । ପୁରୀ ମନ୍ଦିର ମଧ୍ୟରେ ବିଜୟ ଦେଉଳର ପଶ୍ଚିମରେ ଯେଉଁ ଗଣେଶ ବିଗ୍ରହ ଅଛନ୍ତି, ଏବଂ ସତ୍ୟବାଦୀଠାରେ ଯେଉଁ ସାକ୍ଷିଗୋପାଳ ମୂର୍ତ୍ତି ଅଛନ୍ତି; ସେମାନେ କାଞ୍ଚିରାଜାଙ୍କର ପରମ ଆରାଧ୍ୟ ଦେବତାରୂପେ କାଞ୍ଚି ଦୁର୍ଗରେ ଥିଲେ । ପୁରୁଷୋତ୍ତମଦେବ କାଞ୍ଚି ଜୟ କରି ଉକ୍ତ ବିଗ୍ରହ ଦୁଇଟି ବିଜୟ-ସ୍ମାରକ ସ୍ୱରୂପ ପଦ୍ମାବତୀଙ୍କ ସଙ୍ଗେ ନିଜ ଦେଶକୁ ଘେନି ଆସିଲେ । ଗଣେଶମୂର୍ତ୍ତି ପୁରୀ ମନ୍ଦିର ମଧ୍ୟରେ ସ୍ଥାପିତ ହେଲେ । ସାକ୍ଷିଗୋପାଳ କଟକର ବାରବାଟୀ ଦୁର୍ଗ ମଧ୍ୟରେ ରଖାଗଲେ (୨) ପଦ୍ମାବତୀ ଜଣେ ଚଣ୍ଡାଳ ହସ୍ତରେ ଅର୍ପିତ ହେବା ନିମନ୍ତେ

(୧) କଥିତ ଅଛି ପ୍ରଥମ ଅଭିଯାନରେ ଅକୃତକାର୍ଯ୍ୟ ହୋଇ ପୁରୁଷୋତ୍ତମ ଜଗନ୍ନାଥଙ୍କର ଶରଣ ଗତ ହେଲେ । ଭକ୍ତବତ୍ସଳ ଜଗନ୍ନାଥ ପୁରୁଷୋତ୍ତମଙ୍କ ଉପରେ ପ୍ରୀତ ହୋଇ ସଂପ୍ରତି ବଳଭଦ୍ରଙ୍କ ସଙ୍ଗେ ଦୁଇଟି ଅଶ୍ୱାରୋହୀ ବେଶରେ ଉତ୍କଳ ସୈନ୍ୟଙ୍କ ନାୟକରୂପେ କାଞ୍ଚି ଯାତ୍ରା କରିଥିଲେ । ପଥରେ ଚିଲିକା ନିକଟରେ ମାଣିକ ନାମକ ଏକ ଗୌଡୁଣୀଠାରୁ ଦହି ଦୁଧ ଖାଇ ଜଗନ୍ନାଥ ଆପଣାର ରତ୍ନମୁଦି ତାକୁ ବନ୍ଧକ ଦେଇ ଚାଲିଯାଇଥିଲେ । ପୁରୁଷୋତ୍ତମ ପଛରେ ଯାଇ ଚିଲିକା ପାଖରେ ପହଞ୍ଚନ୍ତେ ମାଣିକ ଉକ୍ତ ରତ୍ନମୁଦି ତାଙ୍କୁ ଦେଖାଇ ଦହି ଦୁଧର ମୂଲ୍ୟ ଚାହିଁଲା । ପୁରୁଷୋତ୍ତମ ରତ୍ନମୁଦିରୁ ଜଗନ୍ନାଥଙ୍କ ପରିଚୟ ପାଇ ପରମ ଆପ୍ୟାୟିତ ହେଲେ, ଏବଂ ମାଣିକ ନାମରେ 'ମାଣିକ ପାଟଣା' ବା ମାଣିକ ପାଟଣା ଗ୍ରାମ ବସାଇ ଦେଲେ । ମାଣିକ ପାଟଣା ବର୍ତ୍ତମାନ ପର୍ଯ୍ୟନ୍ତ ନିମନ୍ତେ ପ୍ରସିଦ୍ଧ ।

(୨) ସାକ୍ଷିଗୋପାଳ, କଥିତ ଅଛି, ସାକ୍ଷ୍ୟଦେବା ନିମନ୍ତେ ବୃନ୍ଦାବନରୁ କାଞ୍ଚି ଯାତ୍ରା କରି ବାଟରେ କାଞ୍ଚୀ ନଗରରେ ପ୍ରତିଷ୍ଠିତ ହୋଇଥିଲେ । ପୁରୁଷୋତ୍ତମ ଦେବ ତାଙ୍କୁ ସେଠାରୁ ଆଣି ବାରବାଟୀ ଦୁର୍ଗ ମଧ୍ୟରେ ରଖାଇ ଥିଲେ । ପରବର୍ତ୍ତୀ ସମୟରେ ଶ୍ରୀଚୈତନ୍ୟଦେବ ସାକ୍ଷିଗୋପାଳଙ୍କୁ ବାରବାଟୀ ମଧ୍ୟରେ ଦର୍ଶନ କରିଥିଲେ । ବାରବାଟୀ ମୁସଲମାନ ହସ୍ତଗତ ହେବାରୁ ଏବଂ ଖୋର୍ଦ୍ଧାରେ ସ୍ୱାଧୀନ ରାଜା ରାମଚନ୍ଦ୍ର ରାଜତ୍ୱ ପାଇବାରୁ ସାକ୍ଷିଗୋପାଳ ଖୋର୍ଦ୍ଧାରେ ସ୍ଥାପିତ ହେଲେ । ତତ୍ପରେ ପଠାଣମାନଙ୍କର 'କାଳାପାହାଡ' ଆକ୍ରମଣ ହେତୁ ସାକ୍ଷିଗୋପାଳଙ୍କୁ ଖୋର୍ଦ୍ଧାରୁ ବର ଆରଣ୍ୟ ଦିଗ ଅନ୍ତର୍ଗତ 'ରଘୁନାଥପୁର'ରେ ରଖାଗଲା, ଏବଂ ସେଠାରେ ମନ୍ଦିର ନିର୍ମାଣ ଓ ସେବା ପୂଜା ଚାଲିଲା । ପରେ ସେ ସ୍ଥାନ ମଧ୍ୟ ନିରାପଦ ବିବେଚିତ ନ ହେବାରୁ ସାକ୍ଷିଗୋପାଳ ସେଠାରୁ

କାରବାସ୍ଥି ମଧ୍ୟରେ ବନ୍ଦୀଭାବରେ ରହିଲେ । ପରବର୍ଷ ରଥ ଯାତ୍ରାବେଳେ ରାଜା ଛେରାପହରା କରୁଥିବାବେଳେ ରାଜାଙ୍କର ସ୍ୱତନ୍ତ୍ର ମନ୍ତ୍ରୀ ପଦ୍ମାବତୀଙ୍କୁ ଆଣି ରାଜାଙ୍କ ହସ୍ତରେ ଅର୍ପଣ କରି କହିଲେ, "ପ୍ରଭୁ ବର୍ତ୍ତମାନ ଛେରାପହରା କାର୍ଯ୍ୟ କରୁଥିବାରୁ, ଜଗନ୍ନାଥଙ୍କ ପ୍ରକୃତ ଚଣ୍ଡାଳ; ସୁତରାଂ, ଚଣ୍ଡାଳ ହସ୍ତରେ ପଦ୍ମାବତୀ ଅର୍ପିତ ହେଲେ ।" ମନ୍ତ୍ରୀଙ୍କ ସାହସ, ଓ ବିଚକ୍ଷଣତାରେ ରାଜା କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ ; ଏବଂ ଉପସ୍ଥିତ ପାତ୍ର ମନ୍ତ୍ରୀ ଓ ଦର୍ଶକ-ବୃନ୍ଦଙ୍କ ଅନୁରୋଧ କ୍ରମେ ଲକ୍ଷ୍ମୀପ୍ରତିମା ପଦ୍ମାବତୀଙ୍କର ପାଣିଗ୍ରହଣ କଲେ । ଶ୍ରୀକ୍ଷେତ୍ରରେ ଏହି ବିବାହୋତ୍ସବ ସମାହିତ ହେଲା । ମାତ୍ର ପଦ୍ମାବତୀ ବହୁ ଦିନ ଉତ୍କଳ ମହାରାଣୀ ସମ୍ଭୋଗ ଭୋଗ କରି ପାରିଲେ ନାହିଁ । ଏକମାତ୍ର ପୁତ୍ର ପ୍ରତାପରୁଦ୍ରଙ୍କୁ ଜନ୍ମ କରି ଦେବାବତୀ ଇହସଂସାର ତ୍ୟାଗ କଲେ ।

ଅନଙ୍ଗ ଭୀମଦେବଙ୍କ ସମୟରେ ଉତ୍କଳ ଗଜପତିଙ୍କର ଯେଉଁ ସୁଦୀର୍ଘ ଉପାଧିମାଳା ଥିବାର ସାଧାରଣ ଧାରଣା ଏବଂ ପୂର୍ବେ ମଧ୍ୟ ଲେଖାଯାଇଛି ତାହା ସବୁ ପ୍ରଥମେ ପୁରୁଷୋତ୍ତମ ଦେବ ବ୍ୟବହାର କରିଥିଲେ । କାରଣ ପୁରୁଷୋତ୍ତମ ଦେବ କର୍ଣ୍ଣାଟ ଜୟ କରିଥିଲେ । ଏବଂ ତାଙ୍କ ପିତା ବାହାମଣୀ ସୁଲତାନଙ୍କୁ ପରାଜୟ କରି ବିଦର ଓ ଗୋଲବର୍ଗ ପର୍ଯ୍ୟନ୍ତ ଉତ୍କଳର ବିଜୟ ପତାକା ଉଡ଼ାଇ ଥିଲେ । "ନବକୋଟି କର୍ଣ୍ଣାଟ କଲ ବର୍ଗେଶ୍ୱର" ଉପାଧି (ଅର୍ଥାତ୍ କର୍ଣ୍ଣାଟ ଓ କଲ ବର୍ଗେଶ୍ୱର ପର୍ଯ୍ୟନ୍ତ ଉତ୍କଳର ନବକୋଟି ବା ନୂତନ ସୀମା ବଢ଼ି ଯାଇଥିଲା) ପୁରୁଷୋତ୍ତମ ଦେବଙ୍କ ସମୟରେ ଗଜପତିଙ୍କ ସମୟରେ ଯୁକ୍ତ ହେଲା ।

---

କଟକର କଣ୍ଟକବାଦରେ ସ୍ଥାପିତ ହେଲେ । ପରେ ସୋଧର ୧୮୧୨ ଖ୍ରୀଷ୍ଟାବ୍ଦ ବର୍ଗୀଙ୍କ ହାଙ୍ଗାମାରେ ଗୋରଖା ରାଜା ଦ୍ୱାରା ସ୍ଥାନାନ୍ତରିତ ହେଲେ. ଯାହା ତୁଳସୀପୁର ଉଦ୍ୟାନରେ ସାକ୍ଷିଗୋପାଳ ମୂର୍ତ୍ତି ସହିତ ମନ୍ଦିରର ଉତ୍ତର ମଧ୍ୟରେ ସ୍ଥାପିତ ହେଲେ ।

ବିଦ୍ୟାନୁରାଗ—ପୁରୁଷୋତ୍ତମ ବିଦ୍ୟାର ବିଶେଷ ଅନୁରାଗୀ ଥିଲେ। ସେ ନିଜେ ଅସାଧାରଣ ପଣ୍ଡିତ ଥିଲେ; ଏବଂ ତାହାଙ୍କ ରାଜଦରବାର ବହୁ ସୁନାମଧନ୍ୟ ପଣ୍ଡିତମଣ୍ଡଳୀରେ ଅଳଙ୍କୃତ ଥିଲା। ପୁରୁଷୋତ୍ତମଦେବ ନିଜେ "ତ୍ରିକାଣ୍ଡ ଶେଷ" ନାମକ ଏକ ସଂସ୍କୃତ ଅଭିଧାନ ପ୍ରଣୟନ କରିଥିଲେ। ସଂସ୍କୃତ ସାହିତ୍ୟରେ ଉକ୍ତ ଅଭିଧାନ ବିଶେଷ ଆଦରଣୀୟ ଗ୍ରନ୍ଥ ହୋଇଅଛି। ପୁରୁଷୋତ୍ତମଙ୍କ ଦରବାର-କବି ବିଶ୍ୱନାଥ ମହାପାତ୍ର "ସାହିତ୍ୟ ଦର୍ପଣ' ନାମକ ଯେଉଁ ଅଳଙ୍କାର ଗ୍ରନ୍ଥ ପ୍ରଣୟନ କରିଥିଲେ, ଅଦ୍ୟାପି ସଂସ୍କୃତ ସାହିତ୍ୟରେ ତାହା ପ୍ରଧାନ ଅଳଙ୍କାର ଶାସ୍ତ୍ରରୂପେ ଆଦର ପାଏ।

## ପ୍ରତାପରୁଦ୍ର ଦେବ

### ଖ୍ରୀଷ୍ଟ ୧୪୯୭—୧୫୩୨ ଅବ୍ଦ

ରାଜ୍ୟାଭିଷେକ— ଉତ୍କଳ ଇତିହାସରେ ପ୍ରତାପରୁଦ୍ର ଦେବ ଅନ୍ୟତମ ପ୍ରସିଦ୍ଧ ନରପତି ଥିଲେ। ସନ୍ଧି ବିଗ୍ରହଠାରୁ ଆରମ୍ଭକରି ଧର୍ମକର୍ମ ପର୍ଯ୍ୟନ୍ତ ନାନା ବିଚିତ୍ର ଘଟଣାବଳୀରେ ତାହାଙ୍କ ରାଜତ୍ୱକାଳ ପ୍ରସିଦ୍ଧି ଲାଭ କରିଥିଲା। ରାଜ୍ୟ ବିସ୍ତାରରେ ଅନୁରକ୍ତି, ଧର୍ମ ଜୀବନରେ ସନ୍ନ୍ୟାସ, ସାହିତ୍ୟର ଶ୍ରୀବୃଦ୍ଧି, ପାଣ୍ଡିତ୍ୟର ଆଦର, ସମାଜର ଆମୂଳ ପରିବର୍ତ୍ତନ ପ୍ରଭୃତି ପ୍ରତାପ-ରୁଦ୍ରଙ୍କ ଜୀବନର ନାନା ବିଚିତ୍ର କ୍ରିୟାରେ ଉତ୍କଳ ଇତିହାସ ଧନ୍ୟ ହୋଇ-ଅଛି। ପିତାଙ୍କର ଏକମାତ୍ର ପୁତ୍ର ଥିବାରୁ ପ୍ରତାପରୁଦ୍ର ଦେବ ପିତାଙ୍କ ମୃତ୍ୟୁ ଅନ୍ତେ ୧୪୯୭ ଖ୍ରୀଷ୍ଟାବ୍ଦରେ ନିର୍ବିବାଦରେ ସିଂହାସନରେ ଅଭିଷିକ୍ତ ହେଲେ।

---

ଏହି ବଢ଼ିଲ ଭୁବନେଶ୍ୱର ପ୍ରଧାନ ସଭା ମୁକୁନ୍ଦଦେବଙ୍କ (୧୬୮୮—୧୮୧୭) ଦ୍ୱାରା ନିର୍ମିତ ହୋଇଥିବ। ରାଜା ମଧ୍ୟ ଏଠାରେ ଏକ ବସନ୍ତ ନିବାସ ନିର୍ମାଣ କରିଥିଲେ। ଅତଏବ ତାହାର ଚତୁର୍ଥ ଅଂଶ ।ପରେ ପୁଣି ବାବାଜି 'ଲକ୍ଷ୍ମୀନାରାୟଣ ଚତୁର୍ଭୁଜ ୧୮୩୭ ରୁ ୧୮୭୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ସାକ୍ଷୀଗୋପାଳଙ୍କର ବର୍ତ୍ତମାନ ମନ୍ଦିର ନିର୍ମାଣ କରାଇଥିଲେ। ଚେଡ଼ିଙ୍କ ନାମାନୁସାରେ ସାକ୍ଷିଗୋପାଳ ବା ସତ୍ୟବାଦୀ ନାମରେ ଖ୍ୟାତ ହେଉଛି। ସବିଶେଷ ବିବରଣ ନିମନ୍ତେ ଲେଖକଙ୍କ 'ସତ୍ୟବାଦୀ' ଦ୍ରଷ୍ଟବ୍ୟ।

**ପଠାଣ ଆକ୍ରମଣ**—ପ୍ରତାପରୁଦ୍ର ରାଜ୍ୟଭାର ନେବାର ଅଳ୍ପକାଳ ମଧ୍ୟରେ ପଠାଣମାନେ ବଙ୍ଗଦେଶରୁ ପୁନର୍ବାର ଉତ୍କଳ ଆକ୍ରମଣ କଲେ । ୧୪୯୯ ଖ୍ରୀଷ୍ଟାବ୍ଦରେ ବଙ୍ଗ ସୁଲତାନ ହୋସେନସାହ ସସୈନ୍ୟରେ ଉତ୍କଳ ମଧ୍ୟରେ ପ୍ରବେଶ କରି ରାଜ୍ୟ ଲୁଣ୍ଠନ କଲେ । ପ୍ରତାପରୁଦ୍ର ସମ୍ବାଦ ପାଇବା ମାତ୍ରେ ଉତ୍ତରଭିମୁଖରେ ଯୁଦ୍ଧଯାତ୍ରା କଲେ । ହୋସେନସାହ ଯୁଦ୍ଧରେ ପରାଜିତ ହୋଇ ପଳାୟନ କଲେ । ରାଜ୍ୟର ଉତ୍ତରାଞ୍ଚଳରେ ଶାନ୍ତି ସ୍ଥାପନ କରି ପ୍ରତାପରୁଦ୍ର ରାଜଧାନୀକୁ ଫେରି ଆସିଲେ । କେତେକାଳ ପର୍ଯ୍ୟନ୍ତ ପଠାଣମାନେ ଆଉ ଉତ୍କଳ ଆକ୍ରମଣ କରିବାକୁ ସାହସ କରି ନ ଥିଲେ । ଇତ ମଧ୍ୟରେ ପ୍ରତାପରୁଦ୍ର ବିଜୟନଗର ରାଜ୍ୟ ବିରୁଦ୍ଧରେ ଦାକ୍ଷିଣାତ୍ୟରେ ଯୁଦ୍ଧରେ ଲିପ୍ତ ଥିବା ବେଳେ ବଙ୍ଗ ସୁଲତାନ ହୋସେନସାହଙ୍କର ଜଣେ ସେନାପତି ଇସମାଇଲଖାଁଙ୍କ ଅଧୀନରେ ୧୫୧୧ ଖ୍ରୀଷ୍ଟାବ୍ଦରେ ପଠାଣମାନେ ପୁଣି ଉତ୍କଳ ଆକ୍ରମଣ କଲେ ।

ପ୍ରତାପରୁଦ୍ରଙ୍କ ଅନୁପସ୍ଥିତିବେଳେ ଅନନ୍ତ ସାମନ୍ତସିଂହାର ନାମକ ଜଣେ ସେନାପତି କଟକ ବାରବାଟୀ ଦୁର୍ଗର ଏବଂ ଭୋଇ ଗୋବିନ୍ଦବିଦ୍ୟାଧର ସାରଙ୍ଗ ଗଡର ରକ୍ଷକ ନିଯୁକ୍ତ ହୋଇଥିଲେ । ପ୍ରତାପରୁଦ୍ର ଦାକ୍ଷିଣାତ୍ୟରେ ଦୂରଦେଶରେ ଯୁଦ୍ଧଲିପ୍ତଥିବାର ସୁବିଧା ପାଇ ଇସମାଇଲ ରାଜଧାନୀ ବାରବାଟୀ କଟକପର୍ଯ୍ୟନ୍ତ ଅଗ୍ରସର ହେଲେ । ଏବଂ ସଙ୍ଗେ ସଙ୍ଗେ ବାରବାଟୀ ଆକ୍ରମଣ କଲେ । ଅନନ୍ତ ସାମନ୍ତସିଂହାର ବହୁଦିନ ପର୍ଯ୍ୟନ୍ତ ଦୁର୍ଗ ରକ୍ଷାକରି ଶେଷରେ ଅଗତ୍ୟା ସାରଙ୍ଗ ଗଡ଼ରେ ଆଶ୍ରୟ ନେଲେ । ଗୋବିନ୍ଦ ବିଦ୍ୟାଧର ଅନନ୍ତଙ୍କୁ ସଙ୍ଗରେ ଧରି ସସୈନ୍ୟରେ ଆକ୍ରମଣ-କାରୀଙ୍କ ହସ୍ତରୁ ବାରବାଟୀ ରକ୍ଷାକଲେ । ଇସମାଇଲ କଟକରୁ ବିଧ୍ୱସ୍ତହୋଇ ପୁରୀଅଡ଼କୁ ଅଗ୍ରସର ହେଲେ । ପୁରୀର ପଣ୍ଡାମାନେ ପଠାଣ ଆକ୍ରମଣ-କାରୀଙ୍କୁ ଦେଖି ଅବମାନନା-ଭୟରେ ଦେବଦେବ ଜଗନ୍ନାଥଙ୍କୁ ଘେନିଯାଇ ଚିଲିକା ହ୍ରଦ ମଧ୍ୟବର୍ତ୍ତୀ ଚଢ଼େଇଗୁହା ପର୍ବତ ଶିଖରରେ ଲୁଚେଇ ରଖିଲେ ।

ପ୍ରତାପରୁଦ୍ର ଦକ୍ଷିଣାତ୍ୟର ଯୁଦ୍ଧକ୍ଷେତ୍ରରେ ଏହି ଦୁଃସମ୍ବାଦପାଇ ସଙ୍ଗେ ୨ ସସୈନ୍ୟରେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲେ । ଇସ୍ମାଇଲଖାଁ ପ୍ରତାପରୁଦ୍ରଙ୍କ ପ୍ରତ୍ୟାଗମନ ବାର୍ତ୍ତା ପାଇ ପୁଣି ଗଡ ପଳାଇବାକୁ ବସିଲେ । ପ୍ରତାପ ଗଙ୍ଗାନଦୀ ପର୍ଯ୍ୟନ୍ତ ତାହାଙ୍କର ଅନୁଧାବନ କଲେ । ଦେଶ ରକ୍ଷାହେଲା, ଶାସନତନ୍ତ୍ର ଶାନ୍ତିରେ ପୁଣି ଚଳିଲା । ପ୍ରତାପ ବାରବାଟୀ କଟକକୁ ଫେରି ଆସିଲେ । ଏବଂ ଗୋବିନ୍ଦ ବିଦ୍ୟାଧରଙ୍କ ସାହସ ଓ କୌଶଳରେ ସନ୍ତୁଷ୍ଟ ହୋଇ ତାହାଙ୍କୁ ପ୍ରଧାନ ମନ୍ତ୍ରୀ ପଦରେ ନିଯୁକ୍ତ କଲେ । ଗୋବିନ୍ଦଙ୍କ ହସ୍ତରେ ରାଜ୍ୟ ଶାସନର ସକଳ ଭାର ନ୍ୟସ୍ତ ରହିଲା ।

ଅନ୍ତର୍ବିବାଦ—ପ୍ରତାପରୁଦ୍ର ଏକେ ଦାକ୍ଷିଣାତ୍ୟରେ ଦୀର୍ଘକାଳ ଯୁଦ୍ଧରେ ଲିପ୍ତ ରହିଥିଲେ ; ତହିଁରେ ପୁଣି ପଠାଣମାନେ ବାରମ୍ବାର ଉତ୍କଳ ଆକ୍ରମଣ କରୁଥିଲେ । ଏହି ଉଭୟ ସଙ୍କଟରେ ପ୍ରତାପରୁଦ୍ର ହୀନ-ବଳ ହୋଇଯାଇ ଥିବାର ସମ୍ଭାବନା କରି ଖେମଣ୍ଡିର ରାଜାମାନେ ପ୍ରତାପରୁଦ୍ରଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କଲେ । ୧୫୨୦ ଖ୍ରୀଷ୍ଟାବ୍ଦରେ ପ୍ରତାପରୁଦ୍ର ଖେମଣ୍ଡି ଆକ୍ରମଣ କଲେ ; ଏବଂ ପରବର୍ଷ ମହେନ୍ଦ୍ରରେ ଶିବିର ସ୍ଥାପନ କରି, ସକଳ ଖେମଣ୍ଡୀ ରାଜାମାନଙ୍କର ବିଦ୍ରୋହ ଦମନ କଲେ । ଖେମଣ୍ଡୀ ରାଜାମାନେ ବିଦ୍ରୋହରୁ କ୍ଷାନ୍ତ ହେବା ପରେ ପ୍ରତାପରୁଦ୍ରଦେବଙ୍କ ଠାରୁ କ୍ଷମା ପାଇଲେ ; ଏବଂ ପ୍ରତାପରୁଦ୍ରଙ୍କ ପ୍ରଭୁତ୍ୱ ସ୍ୱୀକାର କରି ଶାନ୍ତିରେ ରାଜପଣ କରିବା ନିମନ୍ତେ ନିଜ ନିଜ ରାଜ୍ୟମାନ ଫେରି ପାଇଲେ ।

ତୃତୀୟ ପଠାଣ ଆକ୍ରମଣ—ହୋସେନ ସାହଙ୍କ ମୃତ୍ୟୁପରେ ଲୁତବ ସାହ ବଙ୍ଗ ଦେଶର ସୁଲତାନ ହେଲେ । ପୈତୃକ ଅବମାନନାର କ୍ଷାଳନ ନିମନ୍ତେ ଲୁତବ ବନ୍ଧୁ ସାହସ ତାଙ୍କ ପୁଣି ଉତ୍କଳ ଆକ୍ରମଣ କଲେ । ପ୍ରତାପରୁଦ୍ର ମହେନ୍ଦ୍ରରୁ ଫେରି ଆସି ଆକ୍ରମଣକାରୀ ମୁସଲମାନ ସୈନ୍ୟଙ୍କର ପଥ ରୋଧ କଲେ । ଘୋର ଯୁଦ୍ଧ ହେଲା; ଉଭୟ ପକ୍ଷରୁ ବହୁ ସୈନ୍ୟ

କରିବା ଦେଲେ ; ଶେଷରେ କୁତବ ପରାଜିତ ହୋଇ ଜୀବିତ ସୈନ୍ୟମାନଙ୍କ ସହ ଉତ୍କଳ ଛାଡ଼ି ବଙ୍ଗ ଦେଶକୁ ପଳାୟନ କଲେ । ଏହାପରେ ପ୍ରତାପ ରୁଦ୍ରଙ୍କ ରାଜତ୍ୱ କାଳ ମଧ୍ୟରେ ଏବଂ ତାହାଙ୍କର ମୃତ୍ୟୁପରେ ବହୁକାଳ ପର୍ଯ୍ୟନ୍ତ ମଧ୍ୟ ବଙ୍ଗ ପଠାଣମାନେ ଉତ୍କଳ ଆକ୍ରମଣ କରିବାକୁ ଆଉ ସାହସ କରିନଥିଲେ ।

ଦକ୍ଷିଣାତ୍ୟ ଅଭିଯାନ— ପୂର୍ବରୁ କୁହାଯାଇଛି ଦକ୍ଷିଣାତ୍ୟର ବିଜୟ ନଗର ନିକଟରେ ଯୁଦ୍ଧ କରୁଥିବା ବେଳେ ପ୍ରତାପ ରୁଦ୍ର ଉତ୍ତର ଦିଗରୁ ବଙ୍ଗ ସୁଲତାନଙ୍କର ଉତ୍କଳ ଆକ୍ରମଣ ବାର୍ତ୍ତା ପାଇ ଯୁଦ୍ଧକ୍ଷେତ୍ରରୁ ଫେରି ଆସିଥିଲେ । ଏହି ସମୟରେ କୃଷ୍ଣଦେବ ବିଜୟ ନଗରର ରାଜାଥିଲେ । କୃଷ୍ଣଦେବ ଅତ୍ୟନ୍ତ ସାହସୀ ଓ ପରାକ୍ରମୀ ଯୋଦ୍ଧା ଥିଲେ । ତାହାଙ୍କ ଗୌରବ କାହାଣୀ ଇତିହାସରେ ପ୍ରସିଦ୍ଧ ହୋଇଅଛି । କୃଷ୍ଣଦେବଙ୍କ ରାଜତ୍ୱ କାଳରେ ବିଜୟ ନଗର ବିଶେଷ ପ୍ରତାପଶାଳୀ ରାଜ୍ୟ ହୋଇଥିଲା । ତାହାଙ୍କୁ ପରାଜୟ କରିବା ଉତ୍କଳ ସୈନ୍ୟଙ୍କ ପକ୍ଷରେ ସହଜସାଧ୍ୟ ବ୍ୟାପାର ନଥିଲା । ତାହାଙ୍କ ସଙ୍ଗେ ପ୍ରତାପରୁଦ୍ରଙ୍କର ବହୁବାର ଯୁଦ୍ଧ ହୋଇଥିଲା । ଶେଷରେ ବଙ୍ଗ ସୁଲତାନଙ୍କ ଆକ୍ରମଣ ବାର୍ତ୍ତା ପାଇ ସ୍ୱଦେଶ ରକ୍ଷା ନିମନ୍ତେ ଫେରିଆସିବାକୁ ବାଧ୍ୟ ହେବାରୁ ପ୍ରତାପରୁଦ୍ର କୃଷ୍ଣଦେବଙ୍କ ସଙ୍ଗେ ସନ୍ଧି ସ୍ଥାପନ କଲେ । ଏହି ସନ୍ଧି ଅନୁସାରେ କୃଷ୍ଣାନଦୀର ଦକ୍ଷିଣାଞ୍ଚଳବର୍ତ୍ତୀ ରାଜ୍ୟମାନଙ୍କରୁ ଉତ୍କଳ ଗଜପତିଙ୍କ ପ୍ରଭୁତ୍ୱ ଅପସାରିତ ହେଲା । କୃଷ୍ଣଦେବ ପ୍ରତାପରୁଦ୍ରଙ୍କ କନ୍ୟାଙ୍କର ପାଣି ଗ୍ରହଣ କଲେ ।

ଏଥିମଧ୍ୟରେ କୁଲି କୁତବ ଶାହ ବାହାମଣୀ ରାଜ୍ୟ ସଙ୍ଗେ ବିଶ୍ୱାସଘାତକତା କରି ଗୋଲକୋଣ୍ଡା ନାମରେ ଏକ ସ୍ୱତନ୍ତ୍ର ଓ ସ୍ୱାଧୀନ ମୁସଲମାନ ରାଜ୍ୟ ସ୍ଥାପନ କରିଥିଲେ । ୧୫୫୨ ଖ୍ରୀଷ୍ଟାବ୍ଦରେ ଗୋଦାବରୀ ଓ କୃଷ୍ଣାନଦୀ ମଧ୍ୟସ୍ଥ ଉତ୍କଳ ରାଜ୍ୟର ସକଳ ଅଂଶ ଗୋଲକୁଣ୍ଡା ଅଧିକାର କଲା । ପ୍ରତାପରୁଦ୍ର ଏତେବେଳେ

ସେମାନେ ବିଦ୍ରୋହ ଦମନରେ ନିଯୁକ୍ତ ଥିଲେ ଏବଂ ସେ ବିଦ୍ରୋହ ଦମନ ସଙ୍ଗେ ସଙ୍ଗେ ଭୂତବସାହ ଉତ୍କଳ ଆକ୍ରମଣ କରିଥିଲେ । ଏତେ ଦେଶ ମଧ୍ୟରେ ବିଦ୍ରୋହ ଦମନ, ତାହା ଉପରେ ଉତ୍ତର ଓ ଦକ୍ଷିଣରୁ ପ୍ରବଳ ମୁସଲମାନ ବାଦ୍‌ଶାଙ୍କ ଆକ୍ରମଣ । ପ୍ରତାପରୁଦ୍ର ଏହି ସଙ୍କଟରେ ଅତି ହୀନପ୍ରଭ ହୋଇ ପଡ଼ିଥିଲେ । ଗୋଲକଣ୍ଡାଙ୍କ ରାଜମହେନ୍ଦ୍ରୀ ଆକ୍ରମଣ ବାର୍ତ୍ତା ପାଇ ପ୍ରତାପରୁଦ୍ର ସସୈନ୍ୟରେ ଦାକ୍ଷିଣାତ୍ୟ ଯାତ୍ରାକଲେ । ମାତ୍ର ନୂତନ ଶକ୍ତିରେ ଉତ୍ଥିତ ଗୋଲକଣ୍ଡାକୁ ପରାଜୟ କରିବା ପ୍ରତାପରୁଦ୍ରଙ୍କ ପକ୍ଷରେ ସହଜସାଧ୍ୟ ନ ଥିଲା । ସୁତରାଂ କୃଷ୍ଣା ଓ ଗୋଦାବରୀ ମଧ୍ୟବର୍ତ୍ତୀ ରାଜ୍ୟାଂଶ ଗୋଲକଣ୍ଡାକୁ ଛାଡ଼ିଦେଇ ସନ୍ଧି ସ୍ଥାପନ କଲେ ଏବଂ ପ୍ରତାପରୁଦ୍ର ସ୍ୱୀୟ ରାଜଧାନୀକୁ ଫେରି ଆସିଲେ ।

ବୈଷ୍ଣବ ଧର୍ମ ଓ ଶ୍ରୀଚୈତନ୍ୟ— ପ୍ରତାପରୁଦ୍ରଙ୍କ ଜୀବନର ବିଶିଷ୍ଟ ଇତିହାସ ଉତ୍କଳରେ ବୈଷ୍ଣବଧର୍ମ ପ୍ରଚାର ସମ୍ପର୍କରେ ଦେଖାଯାଏ । ଏହାଙ୍କ ରାଜତ୍ୱରେ ଶ୍ରୀ ଚୈତନ୍ୟ ଉତ୍କଳରେ ଧର୍ମ ପ୍ରଚାର କରିଥିଲେ । ଶ୍ରୀଚୈତନ୍ୟ ୧୪୮୪ ଖ୍ରୀଷ୍ଟାବ୍ଦରେ ବଙ୍ଗଦେଶର ନଦିଆ ବା ନବଦ୍ୱୀପ ନଗରରେ ଜନ୍ମ ଗ୍ରହଣ କରିଥିଲେ । ତାହାଙ୍କ ପିତାଙ୍କ ନାମ ଥିଲା ଜଗନ୍ନାଥ ମିଶ୍ର ଏବଂ ତାଙ୍କ ଆଦିବାସ ସ୍ଥାନ ବାଲେଶ୍ୱର ଅଞ୍ଚଳରେ ଥିଲା । ନବଦ୍ୱୀପ ସେତେବେଳେ ବିଦ୍ୟାଚର୍ଚ୍ଚା ବିଶେଷତଃ ନ୍ୟାୟଶାସ୍ତ୍ର ଚର୍ଚ୍ଚା ନିମନ୍ତେ ବିଶେଷ ପ୍ରସିଦ୍ଧ ଥିଲା । ଜଗନ୍ନାଥ ମିଶ୍ର ପଣ୍ଡିତ ଥିଲେ । ନବଦ୍ୱୀପରେ ନ୍ୟାୟ ଶାସ୍ତ୍ରରେ ବିଶେଷ ପାଣ୍ଡିତ୍ୟଲାଭ ନିମନ୍ତେ ସେ ସପରିବାରରେ ଦେଶ ଛାଡ଼ି ନବଦ୍ୱୀପରେ ବାସ କରିଥିଲେ । ଚୈତନ୍ୟ ବାଲ୍ୟକାଳରୁ ବିଦ୍ୟାର୍ଜ୍ଜନ କରି କ୍ରମେ ନ୍ୟାୟଶାସ୍ତ୍ରରେ ବିଶେଷ ପାଣ୍ଡିତ୍ୟ ଲାଭ କରିଥିଲେ । ବୈଷ୍ଣବ ଧର୍ମର ଭକ୍ତି ଓ ପ୍ରେମ ପ୍ରତି ତାହାଙ୍କ ମନ ଅତ୍ୟନ୍ତ ଆକୃଷ୍ଟ ହୋଇଥିଲା । ପ୍ରେମରେ ବିଭୋଳହୋଇ ସେ ବୈଷ୍ଣବଧର୍ମ ପ୍ରଚାରରେ

ମାନୁଥିଲେ । ସେ ଜାତିଭେଦ ମାନୁ ନଥିଲେ । ଜାତି ଓ ଧର୍ମ ନିର୍ବିଶେଷରେ ସେ ହିନ୍ଦୁ ଓ ମୁସଲମାନମାନଙ୍କୁ ଅପଣା ଧର୍ମରେ ଦୀକ୍ଷିତ କରୁଥିଲେ । ଚୈତନ୍ୟଙ୍କ ପରବର୍ତ୍ତୀ ଜୀବନର ଅଧିକାଂଶ ଉତ୍କଳରେ ଅତିବାହିତ ହୋଇଥିଲା । ସେ ଉତ୍କଳରେ ପ୍ରାୟ ସର୍ବତ୍ର ଭ୍ରମଣ କରି ସକଳ ଦେବଦେବୀ ଓ ପୁଣ୍ୟସ୍ଥାନମାନ ଦର୍ଶନ କରୁଥିଲେ । ୧୫୧୦ ଖ୍ରୀଷ୍ଟାବ୍ଦରେ ଚୈତନ୍ୟ ଉତ୍କଳକୁ ଆସିଥିଲେ ।

ଚୈତନ୍ୟଙ୍କ ଆସିବା ପୂର୍ବରୁ ବୈଷ୍ଣବ ଧର୍ମପ୍ରତି ଉତ୍କଳବାସିଙ୍କ ମନ ବିଶେଷରେ ଆକୃଷ୍ଟ ହୋଇଥିଲା । ଉତ୍କଳ ଭାଗବତରଚୟିତା ମହାତ୍ମା ଜଗନ୍ନାଥ ଦାସ ଏବଂ ରାମାୟଣ ରଚୟିତା ମହାତ୍ମା ବଳରାମ ଦାସ ପ୍ରଭୃତି ମହାପୁରୁଷମାନେ ଉତ୍କଳବାସିଙ୍କ ପ୍ରାଣରେ ବୈଷ୍ଣବଧର୍ମର ପ୍ରେମ ଓ ଭକ୍ତିରସ ଢାଳିଦେଇଥିଲେ । ଜଗନ୍ନାଥଙ୍କ ମନ୍ଦିରରେ ଗୀତଗୋବିନ୍ଦ ଗାନ ନିତ୍ୟ ସେବାମଧ୍ୟରେ ରହିଥିଲା । ରାଜା ପ୍ରତାପରୁଦ୍ର ମଧ୍ୟ ପରମ ବୈଷ୍ଣବ ଥିଲେ ଏବଂ ତାହାଙ୍କ ଅଧୀନସ୍ଥ ଗୋଦାବରୀ ପ୍ରଦେଶର ଶାସନକର୍ତ୍ତା ରାୟ ରାମାନନ୍ଦ ରାଜାଙ୍କ ସଦୃଶ ବୈଷ୍ଣବ ଧର୍ମର ପ୍ରେମରେ ବିଶେଷ ଭୋଳ ହୋଇଥିଲେ । ଜଗନ୍ନାଥଙ୍କ ଭାଗବତ ଉତ୍କଳର ଜନସମାଜରେ ନିତ୍ୟ ପାଠ କରାଯାଉଥିଲା । ଏହିପରି ସମୟରେ ଚୈତନ୍ୟ ଆସି ଉତ୍କଳକୁ ଅପଣାର ଧର୍ମ ପ୍ରଚାରର ଉପଯୁକ୍ତ କ୍ଷେତ୍ର ପାଇଲେ । ଜଗନ୍ନାଥ ଦାସଙ୍କ ଧର୍ମମତଠାରୁ ଚୈତନ୍ୟ ମତରେ କିଛି ପ୍ରଭେଦ ଥିବାରୁ ଜଗନ୍ନାଥ ଦାସଙ୍କ ଶିଷ୍ୟମାନେ ଅପଣାର ଟେକ ରଖି ପୃଥକ ଭାବରେ ପରିଚିତ ହୁଅନ୍ତି । ଚୈତନ୍ୟ ଜଗନ୍ନାଥ ଦାସଙ୍କୁ ସାକ୍ଷାତ କଲାପରେ ତାଙ୍କ ଭକ୍ତି ଓ ପ୍ରେମରେ ମୁଗ୍ଧ ହୋଇ ତାଙ୍କୁ ଅତି ବଡ଼ବୋଲି ଜ୍ଞାନ କରି ଆଲିଙ୍ଗନ କରିଥିଲେ । ସେହି ଦିନଠାରୁ ଜଗନ୍ନାଥ ଦାସଙ୍କ ପନ୍ଥାବଲମ୍ବୀ ବୈଷ୍ଣବମାନେ "ଅତି ବଡ଼ୀ ଜଗନ୍ନାଥ ଦାସୀ ବୈଷ୍ଣବ" ବୋଲି ଅପଣାର ପରିଚୟ ଦିଅନ୍ତି । । "ଶ୍ରୀ ଚୈତନ୍ୟଚରିତାମୃତ" ଗ୍ରନ୍ଥରେ ଚୈତନ୍ୟଙ୍କ

ଜୀବନୀ ଯେପରି ବର୍ଣ୍ଣନା କରାଯାଇଛି; ଜଗନ୍ନାଥ ଦାସଙ୍କ ଜୀବନୀର ବର୍ଣ୍ଣନା ନିମନ୍ତେ 'ଶ୍ରୀ ଜଗନ୍ନାଥ ଚରିତାମୃତ' ନାମରେ ଗ୍ରନ୍ଥଟିଏ ସେହିପରି ଲେଖା ଯାଇଅଛି । ପୁରୀର 'ଓଡ଼ିଅମଠ' ଜଗନ୍ନାଥ ଦାସଙ୍କର ପୀଠଥିଲା, ଅଦ୍ୟାପି 'ଅତିବଡ଼ୀ' ବୈଷ୍ଣବମାନେ ଓଡ଼ିଅମଠ 'ଅଧିକାରୀ'ଙ୍କୁ ଜଗନ୍ନାଥ ଦାସଙ୍କ ପ୍ରତିନିଧିରୂପେ ମାନି ଚଳନ୍ତି ।

ଶ୍ରୀ ଚୈତନ୍ୟଙ୍କ ସହ ପ୍ରତାପରୁଦ୍ରଙ୍କ ସାକ୍ଷାତ ବିଶେଷ ହୃଦୟସ୍ପର୍ଶୀ । ଶ୍ରୀ ଚୈତନ୍ୟଙ୍କୁ କପରି ଅଭ୍ୟର୍ଥନା କରିବାକୁ ହେବ, ଏବଂ ରାଜା ନିଜେ କିପରି ଚୈତନ୍ୟଙ୍କ ଦର୍ଶନ-ସୁଖ ପାଇ ପାରିବେ, ଏଥିପାଇଁ ପରାମର୍ଶ ଦେବା, ଏବଂ ଚୈତନ୍ୟଙ୍କ ସାକ୍ଷାତର ସୁବିଧା କରାଇବା ନିମନ୍ତେ ପ୍ରତାପରୁଦ୍ର ସୁଦୂର ରାଜମହେନ୍ଦ୍ରୀ ନଗରରୁ ଭକ୍ତପ୍ରାଣ ବନ୍ଧୁ ରାମାନନ୍ଦଙ୍କୁ ଡ଼କାଇ ଆଣିଥିଲେ । ରାମାନନ୍ଦଙ୍କ ସାହାଯ୍ୟରେ ଚୈତନ୍ୟଙ୍କ ସହ ରାଜାଙ୍କର ପ୍ରଥମ ସାକ୍ଷାତ ହେଲା । ସେହିଦିନଠାରୁ ରାଜା ନିଜେ ଚୈତନ୍ୟଙ୍କ ପରମଭକ୍ତ ଶିଷ୍ୟ ହେଲେ । ଏବେ ଜଗନ୍ନାଥ ଦାସଙ୍କର ପ୍ରଭାବ ତାହାଉପରେ ପୁଣି ଶ୍ରୀଚୈତନ୍ୟଙ୍କ ଅଲୌକିକ ମାହାତ୍ମ୍ୟ ଏବଂ ରାଜାନୁଗ୍ରହ ବଳରେ ବୈଷ୍ଣବ ଧର୍ମର ପ୍ରେମଲହରୀ ସମଗ୍ର ଉତ୍କଳ ପ୍ରାଣରେ ଖେଳିଗଲା । ବର୍ତ୍ତମାନ ବ୍ରାହ୍ମଣମାନଙ୍କୁ ଛାଡ଼ି ଉତ୍କଳର ପ୍ରାୟ ସବୁବର୍ଣ୍ଣ ବୈଷ୍ଣବ ଅଟନ୍ତି ।

ଚୈତନ୍ୟ ଜୀବନର ଅବଶିଷ୍ଟ ଅଂଶ ପୁରୀଧାମରେ କଟାଇଥିଲେ । ପୁରୀର ରାଧାକାନ୍ତମଠ ଚୈତନ୍ୟଙ୍କର ପ୍ରଧାନ ପୀଠ । ରାଧାକାନ୍ତ-ମଠର 'ଗୋସ୍ୱାମୀ' ବୈଷ୍ଣବ ସମ୍ପ୍ରଦାୟର ପ୍ରଧାନଗୁରୁ । ପୁରୀର 'ଟୋଟାଗୋପୀନାଥ'ଙ୍କ ସ୍ଥାନରେ ଚୈତନ୍ୟ ତନୁ ତ୍ୟାଗ କରିଥିଲେ ।

ଶାସନ ଓ ରାଜସ୍ୱ — ପ୍ରତାପରୁଦ୍ର ପରମଭକ୍ତ ଓ ସୁଶାସକ ଥିଲେ । ଶାସନ ତନ୍ତ୍ର ତାହାଙ୍କ ମନ୍ତ୍ରୀପରିଷଦର ପରାମର୍ଶ ଅନୁସାରେ ପରିଚାଳିତ ହେଉଥିଲା । ରାଜା ନିଜେ କୌଣସି କାର୍ଯ୍ୟ କେବଳ ନିଜ ଇଚ୍ଛାନୁସାରେ କରି ଦେଉନଥିଲେ । ଏପରି କି ଚୈତନ୍ୟଙ୍କ ଅଭ୍ୟର୍ଥନା ନିମନ୍ତେ

ସେ ହେଲେ କିଛି କରି ନ ଦେଇ ମନ୍ତ୍ରୀ ରାମାନନ୍ଦଙ୍କ ସାହାଯ୍ୟ ଓ ପରାମର୍ଶ ନେଉଥିଲେ । ଶାସନର ଗୁରୁତର ବିଷୟମାନ ମନ୍ତ୍ରୀପରିଷଦର ପରାମର୍ଶ ଅନୁସାରେ ନିଷ୍ପତ୍ତି କରାଯାଉଥିଲା ।

ଆପଣାର ଧର୍ମଜୀବନ ଚରିତାର୍ଥ କରିବା ନିମନ୍ତେ ପ୍ରତାପରୁଦ୍ର ଦେଶ ମଧ୍ୟରେ ବହୁ ଦେବଦେବୀ ମନ୍ଦିର ନିର୍ମାଣ କରାଇଥିଲେ । ଯାଜପୁରରେ ବରାହନାଥଙ୍କ ମନ୍ଦିର ପ୍ରତାପରୁଦ୍ରଙ୍କର ପ୍ରଧାନ କୀର୍ତ୍ତି । ବୈତରଣୀନଦୀରେ ଯଯାତି ଯେଉଁ ଦଶାଶ୍ୱମେଧ ଘାଟ କରାଇଥିଲେ ତାହା ସ୍ଥଳରେ ଅତୀବ ବୃହତ୍ ଆକାରରେ ବର୍ତ୍ତମାନ ଦଶାଶ୍ୱମେଧଘାଟ ପ୍ରତାପରୁଦ୍ର ନିର୍ମାଣ କରାଇଥିଲେ । ଦେବ-ଦେବୀ ମନ୍ଦିର ଓ ଅନ୍ୟାନ୍ୟ ପୁଣ୍ୟକୀର୍ତ୍ତି ବ୍ୟତୀତ, ପ୍ରତାପରୁଦ୍ର ବ୍ରାହ୍ମଣମାନଙ୍କୁ ବହୁତ ଦାନ ଦେଇ ନିଜ ନାମରେ ଶାସନ ବସାଇଥିଲେ । ପୁରୀ ଅଞ୍ଚଳର ବୀରପ୍ରତାପପୁର ଶାସନ ଏବଂ ବାଇପାଟଣା ନିକଟବର୍ତ୍ତୀ ପ୍ରତାପଶାସନ ପ୍ରଭୃତି ପ୍ରତାପରୁଦ୍ରଙ୍କ କୀର୍ତ୍ତି ।

ପ୍ରତାପରୁଦ୍ରଙ୍କ ରାଜତ୍ୱରେ ଉତ୍କଳ ଇତିହାସରେ ଏକ ନବଯୁଗ ଆରମ୍ଭ ହେଲା । ବୈଷ୍ଣବଧର୍ମ ପ୍ରଚାର ଫଳରେ ଧର୍ମ ଜନସାଧାରଣଙ୍କ ମଧ୍ୟରେ ବିଶେଷ ଲୋକପ୍ରିୟ ହେଲା । ଏହି ଧର୍ମ ସମ୍ପର୍କରେ ଉତ୍କଳଭାଷା ଓ ସାହିତ୍ୟର ବହୁ ଉନ୍ନତି ସାଧିତହେଲା । ଲୋକେ ଏ ପର୍ଯ୍ୟନ୍ତ ଧର୍ମକୁ ସଂସ୍କୃତ ଭାଷାଠାରୁ ପୃଥକକରି ଦେଖିପାରୁ ନ ଥିଲେ । ସଂସ୍କୃତଭାଷା ଦେବଭାଷା, ସଂସ୍କୃତ ବ୍ୟତୀତ ଅନ୍ୟ କୌଣସି ଭାଷା କି ମାତୃଭାଷାରେ ଧର୍ମଶିକ୍ଷା ଯାହା ଦିଆଯାଏ ତାହା ଧର୍ମ ନୁହେଁ, ଅଧର୍ମ ; ଏହି ଭାବ ଲୋକମନରେ ଦୃଢ଼ ଥିଲା । ମାତ୍ର ପ୍ରତାପରୁଦ୍ରଙ୍କ ରାଜତ୍ୱକାଳରେ ଜଗନ୍ନାଥ ଦାସଙ୍କ ଭାଗବତ, ବଳରାମ ଦାସଙ୍କ ରାମାୟଣ ଲୋକଙ୍କ ମନରୁ ସେ ସଂସ୍କାର ଦୂର କଲା ; ଏବଂ ଧର୍ମସଂକ୍ରାନ୍ତ ଜଟିଳ ବିଷୟମାନ ମାତୃଭାଷାରେ ଅଧିକ ଲୋକପ୍ରିୟ ହୋଇଅସିଲା ।

ସଙ୍ଗେ ସଙ୍ଗେ ଉତ୍କଳ ଭାଷା ଓ ସାହିତ୍ୟର ଶ୍ରୀବୃଦ୍ଧି ସାଧିତ ହେଲା ।
ଜଗନ୍ନାଥ ଦାସଙ୍କ ଭାଗବତ ଭାଷା ଅଦ୍ୟାପି ଉତ୍କଳ ସାହିତ୍ୟର ଆଦର୍ଶ
ଭାଷା ହୋଇ ରହିଛି । ଆଧୁନିକ ଯୁଗ ପର୍ଯ୍ୟନ୍ତ ଉତ୍କଳ ସାହିତ୍ୟର ଗତି ଓ
ପ୍ରକୃତି ପ୍ରତାପରୁଦ୍ରଙ୍କ ରାଜତ୍ୱ କାଳର ସାହିତ୍ୟ ପ୍ରଭାବରେ ନିୟମିତ ଓ
ପ୍ରଭାବିତ ହୋଇ ଆସୁଛି । ଫଳତଃ, ଇଉରୋପ ଇତିହାସରେ ଯାହାକୁ
ସଂସ୍କାର ଯୁଗ ବୋଲି କୁହାଯାଏ, ଉତ୍କଳ ଇତିହାସରେ ସେହିପରି ସଂସ୍କାର
ନିମନ୍ତେ ପ୍ରତାପରୁଦ୍ରଙ୍କ ରାଜତ୍ୱ ପ୍ରସିଦ୍ଧି ଲାଭ କରିଛି ।

କେବଳ ଉତ୍କଳ ଭାଷା ଓ ଉତ୍କଳ ସାହିତ୍ୟର ଶ୍ରୀବୃଦ୍ଧି ନିମନ୍ତେ ପ୍ରତାପ-
ରୁଦ୍ରଙ୍କ ରାଜତ୍ୱ ପ୍ରସିଦ୍ଧ ହୋଇନାହିଁ । ସଂସ୍କୃତ ସାହିତ୍ୟରେ ସମଧିକ ଚେଷ୍ଟା
ସେହି ରାଜତ୍ୱର ଅନ୍ୟତମ ବିଶେଷତ୍ୱ । ତାହାଙ୍କ ଆଶ୍ରୟରେ ବହୁ ଖ୍ୟାତନାମା
ପଣ୍ଡିତ ନିଜ ନିଜର ଅଗାଧ ପାଣ୍ଡିତ୍ୟ ଓ ବହୁଦର୍ଶିତାର ପରିଚୟ ଦେଇଛନ୍ତି ।
କାବ୍ୟ, ବ୍ୟାକରଣ, ଧର୍ମ, ଦର୍ଶନ, ଜ୍ୟୋତିଷ, ବିଜ୍ଞାନ, କଳା ଓ ଯୁଦ୍ଧ ବିଦ୍ୟା
ପ୍ରଭୃତି ସଂସ୍କୃତ ସାହିତ୍ୟର ନାନା ବିଭାଗରେ ପ୍ରତାପରୁଦ୍ରଙ୍କ ପଣ୍ଡିତମାନେ
ଗ୍ରନ୍ଥ ପ୍ରଣୟନ କରି ଯାଇଛନ୍ତି । ଫଳତଃ, ରୋମ ଇତିହାସରେ ସମ୍ରାଟ
ଅଗଷ୍ଟସଙ୍କ ପରି, ଇଂଲଣ୍ଡ ଇତିହାସରେ ଏଲିଜାବେଥଙ୍କ ପରି, ଉତ୍କଳ
ଇତିହାସରେ ରାଜା ପ୍ରତାପରୁଦ୍ର ବହୁ ପଣ୍ଡିତ ସମାଗତ ରାଜସଭାରେ
ପାଣ୍ଡିତ୍ୟ ଓ ସାହିତ୍ୟର ସମଧିକ ଉନ୍ନତି କରାଇଥିଲେ ।

ପର୍ତ୍ତୁଗିଜ ବାଣିଜ୍ୟ—ପ୍ରତାପରୁଦ୍ରଙ୍କ ରାଜତ୍ୱର ଅନ୍ୟତମ ବିଶିଷ୍ଟ
ଘଟଣା ଉତ୍କଳରେ ପର୍ତ୍ତୁଗାଲବାସୀ ବଣିକମାନଙ୍କର ବାଣିଜ୍ୟର ସୂତ୍ରପାତ ।
ପର୍ତ୍ତୁଗାଲବାସୀ ସାହସୀ ନାବିକ ଭାସ୍କୋଡଗାମା ଇଉରୋପବାସିଙ୍କ
ମଧ୍ୟରେ ସର୍ବପ୍ରଥମେ ୧୪୯୮ ଖ୍ରୀଷ୍ଟାବ୍ଦରେ ଆଫ୍ରିକା ମହାଦେଶର
ଦକ୍ଷିଣ ଉପକୂଳ ବାଟେ ସମୁଦ୍ର-ପଥରେ ବାଣିଜ୍ୟ ନିମନ୍ତେ ଭାରତକୁ
ଆସିଥିଲେ । ଏହାର ୧୬ ବର୍ଷ ପରେ ଅର୍ଥାତ୍ ୧୫୧୪ ଖ୍ରୀଷ୍ଟାବ୍ଦରେ

ସେମାନେ ପ୍ରଥମେ ବାଣିଜ୍ୟ କରିବା ନିମନ୍ତେ ଉତ୍କଳରେ ପ୍ରବେଶ କଲେ । ଉତ୍କଳର ଲୁଗା ସେତେବେଳେ ଅନ୍ୟାନ୍ୟ ବାଣିଜ୍ୟ ପଦାର୍ଥ ମଧ୍ୟରେ ଇଉରୋପରେ ବିଶେଷ ଆଦର ପାଉଥିଲା । ଭାରତର ପୂର୍ବ ଉପକୂଳରେ ବାଣିଜ୍ୟ କୋଠି ସ୍ଥାପନ କରିବା ନିମନ୍ତେ ସୁବିଧା ଖୋଜି ଖୋଜି ସେମାନେ ଅବଶେଷରେ ଉତ୍କଳରେ ପଦାର୍ପଣ କଲେ । ମାନବ ହିତୈଷୀ ରାଜା ପ୍ରତାପରୁଦ୍ର ଉତ୍କଳରେ ବାଣିଜ୍ୟ କରିବା ନିମନ୍ତେ ପର୍ତ୍ତୁଗିଜ ବଣିକମାନଙ୍କୁ ଅନୁମତି ଦେଲେ । ସେମାନେ ସୁବର୍ଣ୍ଣରେଖା ନଦୀ ମୁହାଣବର୍ତ୍ତୀ ପିପିଲି ବନ୍ଦରରେ ବାଣିଜ୍ୟ କୋଠି ସ୍ଥାପନ କଲେ । ପର୍ତ୍ତୁଗିଜ ବଣିକମାନଙ୍କ ସମ୍ବନ୍ଧରେ ପରେ ପ୍ରସଙ୍ଗକ୍ରମେ କୁହାଯିବ ।

ଏହିରୂପେ ୩୭ ବର୍ଷ ବ୍ୟାପୀ ମହାଗୌରବମୟ ରାଜତ୍ୱ ପରେ ପ୍ରତାପରୁଦ୍ର ଦେବ ୧୫୩୨ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କଲେ । ଉତ୍କଳ ଇତିହାସରେ ତାହାଙ୍କ ବିୟୋଗ ଦ୍ୱାରା ଯେଉଁ ସ୍ଥାନ ଶୂନ୍ୟ ପଡ଼ିଗଲା, ତାହା ଅଦ୍ୟାବଧି ପୂରଣ ହୋଇନାହିଁ ।

## ସୂର୍ଯ୍ୟବଂଶର ଶେଷ ରାଜଗଣ

ଖ୍ରୀଷ୍ଟ ୧୫୩୨—୧୫୩୪ ଅବ୍ଦ ।

ସୂର୍ଯ୍ୟବଂଶର ଅବସାନ—ରାଜା ପ୍ରତାପରୁଦ୍ରଙ୍କର ମୃତ୍ୟୁ ହେବା ପରେ ଦେଶ କ୍ରମାଗତ ଅନେକ କାଳ ଅରାଜକ ହୋଇରହିଲା, ତାହାଙ୍କ ପୁତ୍ରମାନେ ଉତ୍କଳ ସିଂହାସନ ପ୍ରତି ଅଯୋଗ୍ୟ ପାତ୍ର ଥିଲେ । ପୂର୍ବରୁ କୁହାଯାଇଛି ପ୍ରତାପରୁଦ୍ରଙ୍କ ରାଜତ୍ୱ ବେଳେ ଗୋବିନ୍ଦ ବିଦ୍ୟାଧର ଦେଶର ପ୍ରଧାନ ମନ୍ତ୍ରୀ ହୋଇଥିଲେ । ତାହାଙ୍କ ମୃତ୍ୟୁ ପରେ ମଧ୍ୟ ସେହି ଲୋକ ଗୋବିନ୍ଦ ଶାସନତନ୍ତ୍ରର ପ୍ରଧାନ ନିୟନ୍ତା ହେଲେ । ପ୍ରତାପରୁଦ୍ରଙ୍କ ରାଜତ୍ୱର ବହୁକାଳ ଯୁଦ୍ଧ ଅଭିଯାନରେ ବିଦେଶରେ ଅତିବାହିତ ହୋଇଥିବାରୁ ଗୋବିନ୍ଦ ଅପଣାର ପ୍ରଭାବ ବଳରେ ଦେଶମଧ୍ୟରେ ବହୁ

ପ୍ରାଧାନ୍ୟ ଲାଭକରିପାରିଥିଲେ । ପ୍ରତାପରୁଦ୍ରଙ୍କ ପରେ ତାହାଙ୍କର ଦୁଇ ପୁତ୍ର ବର୍ଷେ ଲେଖାଏଁ ରାଜା ହେଲେ, ମାତ୍ର ଗୋବିନ୍ଦ ସେମାନଙ୍କ ଉପରେ ଅସନ୍ତୁଷ୍ଟ ହୋଇ ସେମାନଙ୍କୁ ନିହତ କଲେ । ସେହି ଦୁଇ ପୁତ୍ରଙ୍କ ବାଦ୍ ପ୍ରତାପରୁଦ୍ରଙ୍କର ଅନ୍ୟ ବଂଶଧରମାନେ ମଧ୍ୟ ରାଜା ହେବାକୁ ଚେଷ୍ଟା କଲେ । ସେମାନେ କିନ୍ତୁ ରାଜସିଂହାସନର ଉପଯୁକ୍ତ ନ ଥିଲେ । ଗୋବିନ୍ଦ ସେମାନଙ୍କୁ ମଧ୍ୟ ବଧକଲେ । ଏହିରୂପେ ଉତ୍କଳ ଇତିହାସରୁ ସୂର୍ଯ୍ୟବଂଶର ନାମ ଲୋପ ପାଇଲା, ଏବଂ ଉତ୍କଳରୁ ରାଜଶ୍ରୀ ଅନ୍ତର୍ହିତ ହେଲା । ଏହିଠାରୁ ଉତ୍କଳ କେବଳ ଅନ୍ତର୍ବିବାଦ ଓ ରକ୍ତପାତରେ କଳୁଷିତ ହେଲା ।



# ପଞ୍ଚମ ଅଧ୍ୟାୟ

## ସ୍ୱାଧୀନତାର ଅବସାନ

### ଖ୍ରୀଷ୍ଟ ୧୫୩୪—୧୫୬୮ ଅବ୍ଦ

ଅନ୍ତର୍ବିବାଦ—ପୂର୍ବେ କୁହାଯାଇଅଛି ପ୍ରତାପରୁଦ୍ର ଦେବଙ୍କ ଅନ୍ତେ ଉତ୍କଳରେ ଅନ୍ତର୍ବିବାଦର ସୂତ୍ରପାତ ହେଲା । ରାଜଶକ୍ତି ପ୍ରବଳ ଥିବାବେଳେ ଅନ୍ତର୍ବିବାଦ ସମ୍ଭବପର ନ ଥିଲା । ମାତ୍ର ପ୍ରତାପରୁଦ୍ରଙ୍କ ପରେ ସେପରି ପରାକ୍ରମଶାଳୀ ନରପତି କେହି ଉତ୍କଳ-ସିଂହାସନରେ ଅଭିଷିକ୍ତ ହୋଇ ନ ଥିଲେ । ଏବେ ଉତ୍କଳର ଚତୁର୍ଦ୍ଦିଗରେ ପ୍ରବଳ ମୁସଲମାନ ଶକ୍ତି ପ୍ରତି ମୁହୂର୍ତ୍ତରେ ଉତ୍କଳ ଗ୍ରାସ କରିବାକୁ ଉନ୍ମୁଖ ହୋଇ ରହିଥିଲା । ସେଥିରେ ପୁଣି ପ୍ରବଳ ରାଜଶକ୍ତି ଅଭାବରେ ସ୍ୱାଧୀନତାଲୋଲୁପ ପାତ୍ରାମନ୍ତ୍ରୀମାନେ ଆପଣା ଆପଣା ଅଦମ୍ୟ ଉଚ୍ଚାକାଙ୍କ୍ଷାର ବଶବର୍ତ୍ତୀ ହୋଇ ପରସ୍ପର ମଧ୍ୟରେ ବିବାଦ ସୃଷ୍ଟି କଲେ । ବିଗତ ତିନିଶତ ବର୍ଷ ଧରି ଉତ୍କଳର ଯେଉଁ ରାଷ୍ଟ୍ରଶକ୍ତି ସର୍ବଗ୍ରାସୀ ମୁସଲମାନଶକ୍ତିକୁ ବାରମ୍ବାର ବ୍ୟର୍ଥ ଓ ପର୍ଯ୍ୟୁଦସ୍ତ କରିଥିଲା, ବର୍ତ୍ତମାନ ସେହି ଶକ୍ତି ଦୁର୍ବଳ ହୋଇ ପଡିବାରୁ ଆକ୍ରମଣକାରୀମାନେ ଉତ୍କଳର ସ୍ୱାଧୀନତାଶକ୍ତି ଚିରକାଳ ନିମନ୍ତେ ଅପହରଣ କଲେ ।

## ଗୋବିନ୍ଦଦେବ

### ଖ୍ରୀଷ୍ଟ ୧୫୩୪—୧୫୪୧ ଅବ୍ଦ

ରାଜତ୍ୱ ଓ ବିପ୍ଳବ—ପୂର୍ବେ କୁହା ଯାଇଅଛି କେହି ଗୋବିନ୍ଦବିଦ୍ୟାଧର ପ୍ରତାପରୁଦ୍ରଦେବଙ୍କର ପ୍ରଧାନ ମନ୍ତ୍ରୀ ଥିଲେ । ସେ ପ୍ରତାପରୁଦ୍ର ଦେବଙ୍କର ଉତ୍ତରାଧିକାରୀ ପୁତ୍ରମାନଙ୍କୁ ବଧ କରି ନିଜେ ଗୋବିନ୍ଦଦେବ ନାମ ଧରି

୧୫୩୪ ଖ୍ରୀଷ୍ଟାବ୍ଦରେ ଉତ୍କଳ-ସିଂହାସନ ଅଧିରୋହଣ କଲେ । ଗୋବିନ୍ଦ ଦେବଙ୍କ ରାଜତ୍ୱ ମଧ୍ୟ ନିର୍ବିବାଦରେ ଅତିବାହିତ ହୋଇ ନ ଥିଲା । ଜନାର୍ଦ୍ଦନ ବିଦ୍ୟାଧର ଓ ମୁକୁନ୍ଦ ହରିଚନ୍ଦନ ନାମକ ତାହାଙ୍କର ଦୁଇଜଣ ମନ୍ତ୍ରୀ ରାଜ୍ୟ ମଧ୍ୟରେ ପ୍ରବଳ ହୋଇ ଉଠିଥିଲେ । ଜନାର୍ଦ୍ଦନ ପ୍ରଧାନ ମନ୍ତ୍ରୀ ଏବଂ ମୁକୁନ୍ଦ ହରିଚନ୍ଦନ ବାରବାଟୀ କଟକର ରକ୍ଷକ ଓ ପ୍ରଧାନ ଶାସନକର୍ତ୍ତାରୂପେ ନିଯୁକ୍ତ ହୋଇଥିଲେ । ଏହି ଦୁଇଜଣ ବିଶ୍ୱାସୀ ବିଚକ୍ଷଣ ଏବଂ ବିପୁଳ କ୍ଷମତାଶାଳୀ ପାତ୍ରଙ୍କ ଉପରେ ରାଜ୍ୟ ଶାସନର ସକଳ ଭାର ନ୍ୟସ୍ତକରି, ଗୋବିନ୍ଦ ଦାକ୍ଷିଣାତ୍ୟର ମୁସଲମାନଶକ୍ତି ବିରୁଦ୍ଧରେ ଯୁଦ୍ଧଅଭିଯାନରେ ବାହାରିଲେ । ଦାକ୍ଷିଣାତ୍ୟର ବାହାମଣୀ ରାଜ୍ୟ ଏତେ-ବେଳକୁ ବିଭକ୍ତ ହୋଇ ପାଞ୍ଚଟି ସ୍ୱାଧୀନ ମୁସଲମାନ ରାଜ୍ୟରେ ପରିଣତ ହୋଇଥିଲା । ସେମାନଙ୍କ ମଧ୍ୟରୁ ଅହମ୍ମଦନଗର, ଗୋଲକୁଣ୍ଡା ଓ ବିଜାପୁର ସର୍ବାପେକ୍ଷା ପ୍ରବଳ ଥିଲା । ଗୋଲକୁଣ୍ଡାର କୁତବସାହି ବଂଶ ଉତ୍କଳର ସୀମା ପର୍ଯ୍ୟନ୍ତ ବ୍ୟାପି ସ୍ୱାଧୀନରାଜ୍ୟ ସ୍ଥାପନ କରିଥିଲେ । ବହୁକାଳ ପର୍ଯ୍ୟନ୍ତ ଉତ୍କଳ ସୈନ୍ୟ ଓ ଗୋଲକୁଣ୍ଡା ସୈନ୍ୟଙ୍କ ମଧ୍ୟରେ ଯୁଦ୍ଧ ଚାଲି-ଥିଲା । କୁତବସାହୀ ସୈନ୍ୟ ଉତ୍କଳର ଦକ୍ଷିଣାଂଶ ଆକ୍ରମଣ କରିବାରୁ ଗୋବିନ୍ଦଦେବ ସସୈନ୍ୟରେ ମୁସଲମାନ ଆକ୍ରମଣକାରୀଙ୍କ ବିରୁଦ୍ଧରେ ଯୁଦ୍ଧରେ ଲିପ୍ତ ରହିଲେ ।

ଗୋବିନ୍ଦ ଦାକ୍ଷିଣାତ୍ୟରେ ଯୁଦ୍ଧରେ ଲିପ୍ତ ଥିବାବେଳେ ରଘୁରାମ ଛୋଟରାୟ ଓ ବାଲ୍ମିକି ଶ୍ରୀଚନ୍ଦନ ନାମରେ ଗୋବିନ୍ଦଙ୍କର ଦୁଇ ଭଣଜା ଦେଶ ମଧ୍ୟରେ ବିଦ୍ରୋହୀ ହୋଇ ଉଠିଲେ । ସେମାନେ ଜଗନ୍ନାଥ ଦେବଙ୍କ ବଡ଼ପଣ୍ଡାର ପ୍ରାଣ ନାଶକଲେ, ଏବଂ କଟକ ପର୍ଯ୍ୟନ୍ତ ଅଗ୍ରସର ହୋଇ ମୁକୁନ୍ଦ ଶ୍ରୀଚନ୍ଦନଙ୍କୁ ବାରବାଟୀ କଟକରୁ ତଡ଼ିଦେଲେ ଏବଂ ନିଜେ ନିଜେ ଦୁର୍ଗ ଅଧିକାର କରିବସିଲେ । ଗୋବିନ୍ଦ ଦାକ୍ଷିଣାତ୍ୟରେ ଏହି ଦୁଃସମ୍ବାଦ ପାଇ ସ୍ୱଦେଶକୁ ଫେରି ଆସିଲେ ଏବଂ

ବିଦ୍ରୋହୀ ଭଣଜାମାନଙ୍କୁ ପରାସ୍ତକରି ବୈତରଣୀ ନଦୀ ପର୍ଯ୍ୟନ୍ତ ସେମାନଙ୍କର ଅନୁଧାବନ କଲେ । ଭଣଜାମାନେ ନଦୀର ପରପାରରେ ଜଙ୍ଗଲମଧ୍ୟରେ ଅନ୍ତର୍ହିତ ହୋଇ ବଙ୍ଗଦେଶକୁ ପଳାୟନ କଲେ । ଗୋବିନ୍ଦ ମଧ୍ୟ ସେହି ଅନୁଧାବନରୁ ଆଉ ଫେରି ନ ଥିଲେ । ସାରା ଜୀବନବ୍ୟାପୀ କଠୋର ପରିଶ୍ରମ ଓ ଚିନ୍ତା; ଶେଷରେ ରାଜ୍ୟଭାର ପରିଚାଳନ, ଏବଂ ବୃଦ୍ଧ ବୟସରେ ଦାକ୍ଷିଣାତ୍ୟରେ ପ୍ରବଳ ମୁସଲମାନଶକ୍ତି ବିରୁଦ୍ଧରେ ଯୁଦ୍ଧକରି ତାଙ୍କ ଆୟୁ ବହୁତ କ୍ଷୟ ହୋଇଯାଇଥିଲା । ଶେଷରେ ଭଣଜାମାନଙ୍କ ବିଦ୍ରୋହାଚରଣରେ ସେ ଭଗ୍ନହୃଦୟହୋଇ ଜୀବନ ଆଶା ଛାଡିଲେ । ଭଣଜାମାନଙ୍କୁ ଦଣ୍ଡଦେଇ ସ୍ୱୀୟ ପ୍ରଭୁଙ୍କ ନିର୍ମିତ ଦଶାଶ୍ୱମେଧ-ଘାଟରେ ଗୋବିନ୍ଦ ୧୫୪୯ ଖ୍ରୀଷ୍ଟାବ୍ଦରେ ମାନବଲୀଳା ସାଙ୍ଗକଲେ ।

ଚରିତ୍ର— ଗୋବିନ୍ଦଦେବ ବହୁଗୁଣବାନ ରାଜପୁରୁଷଥିଲେ । ନିଜ ଯୋଗ୍ୟତାବଳରେ ସେ ଦେଶର ପ୍ରଧାନ ମନ୍ତ୍ରୀରୂପେ ପ୍ରତାପରୁଦ୍ର ଦେବଙ୍କର ପରମବିଶ୍ୱାସଭାଜନ ହୋଇ ପାରିଥିଲେ । ସେହି ପ୍ରଭୁ ପ୍ରତାପରୁଦ୍ରଙ୍କ ପୁତ୍ରମାନଙ୍କୁ ବଧକରି ସିଂହାସନ ଆରୋହଣ କରିଥିବାରୁ ଗୋବିନ୍ଦଙ୍କୁ କେହି କେହି ଦୋଷୀ ମନେ କରନ୍ତି । ଗୋବିନ୍ଦ ଯେ ବିଶେଷ କୌଶଳୀ, ବିଚକ୍ଷଣ ଓ ଶକ୍ତିଶାଳୀ ରାଜପୁରୁଷ ଥିଲେ, ସନ୍ଦେହ ନାହିଁ । ତାହାଙ୍କର ସାରା ଜୀବନ ରାଜକାର୍ଯ୍ୟରେ ବ୍ୟୟିତ ହୋଇଥିଲା । ପ୍ରତାପରୁଦ୍ରଙ୍କ ପୁତ୍ର-ମାନେ ଅବିବେକୀ ଓ ଅଯୋଗ୍ୟ ଥିଲେ; ଏବଂ ଗୋବିନ୍ଦଙ୍କ ଉପରେ ପିତାଙ୍କ ପରି ସେମାନଙ୍କର ବିଶ୍ୱାସ ମଧ୍ୟ ନ ଥିଲା । ସୁତରାଂ ଅଯୋଗ୍ୟ ରାଜାଙ୍କ ଅଧୀନରେ ଦେଶ ମଧ୍ୟରେ ଶାସନର କଷ୍ଟ ଦେଖି ଗୋବିନ୍ଦଙ୍କ ହୃଦୟ କଦାପି ଦମ୍ଭ ଧରି ରହି ପାରି ନ ଥିଲା । ସେଥିରେ ପୁଣି ଉତ୍ତର ଓ ଦକ୍ଷିଣରୁ ସର୍ବଗ୍ରାସୀ ମୁସଲମାନଶକ୍ତିର ଆକ୍ରମଣର ଆଶଙ୍କା ପୂର୍ଣ୍ଣମାତ୍ରାରେ ଥିଲା । ଏପରି ଅବସ୍ଥାରେ ଗୋବିନ୍ଦ ନିଷ୍କଣ୍ଟକ ଭାବରେ ନିଜ ହସ୍ତରେ ସକଳ ରାଜଶକ୍ତି ଗ୍ରହଣ କରିଥିଲେ । ଏହା ତାହାଙ୍କର ଅତ୍ୟଧିକ ଲୋଭ

ବା ଲାଳସାର କାର୍ଯ୍ୟ ହେଉ ଅଥବା ପ୍ରକୃତରେ ଦେଶର ହିତାକାଂକ୍ଷା ତାହାଙ୍କର ଉଦ୍ଦେଶ୍ୟ ଥାଉ; ସେଥିପାଇଁ ଇତିହାସର ବିଚାରରେ ସେ ନିତାନ୍ତ ଦୋଷୀ ନୁହନ୍ତି । ପୃଥିବୀରେ ଯୁଗେ ଯୁଗେ ଏହାଙ୍କ ପରି ରାଷ୍ଟ୍ରପତି-ମାନେ ଭୂମୂଳ ବିପ୍ଳବ ମଧ୍ୟରେ ନିଜ ନିଜ କର୍ତ୍ତବ୍ୟ ସାଙ୍ଗକରି ଇତିହାସରେ ବରଣୀୟ ହୋଇ ଅଛିଅଛନ୍ତି ।

## ଅରାଜକତା

### ଖ୍ରୀଷ୍ଟ ୧୫୬୧—୧୫୬୮ ଅବ୍ଦ

ବିପ୍ଳବ— ଜନାର୍ଦ୍ଦନ ବିଦ୍ୟାଧର ଗୋବିନ୍ଦ ଦେବଙ୍କର ପ୍ରଧାନ ବିଚକ୍ଷଣ ମନ୍ତ୍ରୀ ଥିଲେ । ଗୋବିନ୍ଦଙ୍କ ମୃତ୍ୟୁପରେ ସେ ପ୍ରତାପଚନ୍ଦ୍ର ଦେବଙ୍କୁ ରାଜା କଲେ । ଦାକ୍ଷିଣାତ୍ୟରେ ମୁସଲମାନ-ମାନଙ୍କ ଆକ୍ରମଣ ଚାଲିଥିବାରୁ ଜନାର୍ଦ୍ଦନ ପ୍ରତାପଚନ୍ଦ୍ର ଦେବଙ୍କୁ ସସୈନ୍ୟରେ ଦାକ୍ଷିଣାତ୍ୟ ପ୍ରେରଣ କଲେ । ମାତ୍ର ପ୍ରତାପ ଅତି ଦୁର୍ବଳ ଅଥଚ ଯଥେଚ୍ଛାଚାରୀ ରାଜା ଥିଲେ । ଏହିରୂପ ଅରାଜକ ଅବସ୍ଥାରେ ଓ ମୁସଲମାନ ଶକ୍ତି ବିରୁଦ୍ଧରେ ସେ ଯେ ଆଠ ବର୍ଷ ଉତ୍କଳ ସିଂହାସନରେ ବସି ରାଜ୍ୟ ଭୋଗକରି ପାରିଥିଲେ, ତାହାହିଁ ପ୍ରଭୁଭକ୍ତ ମନ୍ତ୍ରୀ ଜନାର୍ଦ୍ଦନଙ୍କ ଯଥେଷ୍ଟ ବିଚକ୍ଷଣତାର ପରିଚୟ ଦିଏ । ୮ବର୍ଷ ରାଜତ୍ୱପରେ ଦୈବାତ୍ ଦିନେ ଜଗନ୍ନାଥଙ୍କ ଦର୍ଶନ ବେଳେ ମନ୍ଦିର ମଧ୍ୟରେ ତାହାଙ୍କର ଅକାଳ ମୃତ୍ୟୁ ଘଟିଲା ।

ପ୍ରତାପଚନ୍ଦ୍ରଙ୍କର ଉତ୍ତରାଧିକାରୀ କେହି ନ ଥିଲେ । ନରସିଂହ ଜେନା ନାମରେ ଜଣେ ବିଚକ୍ଷଣ ସେନାପତି ୧୫୬୯ ଖ୍ରୀଷ୍ଟାବ୍ଦରେ ରାଜ-ସିଂହାସନରେ ଅଭିଷିକ୍ତ ହେଲେ । ଜନାର୍ଦ୍ଦନ ତଙ୍କେ ସେନାପତିଙ୍କୁ ଗ୍ରହଣ କରି ଗୋଲକୁଣ୍ଡା ବିରୁଦ୍ଧରେ ଦେଶରକ୍ଷା କରିବା ନିମନ୍ତେ ଦାକ୍ଷିଣାତ୍ୟରେ ଯୁଦ୍ଧରେ ଲିପ୍ତ ରହିଲେ । ଏହି ଯୁଦ୍ଧରେ ଜୟୀ ହେବାର ଦେଶମଧ୍ୟରେ

ଜନାର୍ଦ୍ଦନଙ୍କ ପ୍ରଭୁତ୍ୱ ବିଶେଷ ବଢ଼ି ଯାଇଥିଲା; ମାତ୍ର ତାହାଙ୍କର ପ୍ରଭାବରେ କାତର ହୋଇ ନରସିଂହ ସିଂହାସନରେ ଆପଣାକୁ ନିଷ୍କଣ୍ଟକ କରିବା ମାନସରେ ଜନାର୍ଦ୍ଦନ ବିଦ୍ୟାଧରଙ୍କୁ ବଧ କଲେ । ଏହାଦ୍ୱାରା ନରସିଂହ କେବଳ ନିଜର ଜିହ୍ୱା ଛେଦନ କଲେ ମାତ୍ର । ଜନାର୍ଦ୍ଦନଙ୍କ ଶକ୍ତି ଓ ମନ୍ତ୍ରଣାରୁ ବଞ୍ଚିତ ହୋଇ ନରସିଂହ ବହୁ ଦିନ ରାଜ୍ୟଭୋଗ କରି ପାରି ନ ଥିଲେ । ଦେଶରେ ଅରାଜକତା ବଢ଼ିଲା; ବିଦ୍ରୋହୀମାନେ ସିଂହାସନ ଲୋଭରେ ଦୁର୍ବଳ ରାଜଶକ୍ତି ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କଲେ । ଏହା ପୂର୍ବରୁ କୁହାଯାଇଅଛି ଗୋବିନ୍ଦଦେବଙ୍କ ଭଣଜା ରଘୁଭଞ୍ଜ ବା ରଘୁରାମ ଛୋଟରାୟ ଗୋବିନ୍ଦଙ୍କଦ୍ୱାରା ବିତାଡ଼ିତ ହୋଇ ବଙ୍ଗଦେଶକୁ ପଳାଇଯାଇଥିଲେ.

ବର୍ତ୍ତମାନ ଦେଶର ଏହି ଅରାଜକ ଅବସ୍ଥାରେ ସେ ବଙ୍ଗଦେଶରେ ବହୁ ପଠାଣ-ସୈନ୍ୟସଂଗ୍ରହ କରି ବୈତରଣୀ ପାରହୋଇ କଟକ ପର୍ଯ୍ୟନ୍ତ ଅଗ୍ରସର ହେଲେ । ସେ ନରସିଂହଙ୍କୁ ଆକ୍ରମଣ କରି ହତ୍ୟାକଲେ; ଏବଂ ସିଂହାସନ ଅଧିକାର କରି ରାଜା ହେଲେ । ମାତ୍ର ରଘୁଭଞ୍ଜ ବର୍ଷକରୁ ଅଧିକକାଳ ରାଜ୍ୟ ଭୋଗ କରିପାରିଲେ ନାହିଁ । ଏହି ସମସ୍ତ ଅରାଜକତା ଏବଂ ଜଳତରଙ୍ଗପରି ପତନ ଉତ୍ଥିତ ଅଦମ୍ୟ ଉଚ୍ଛାଭିଳାଷୀ ସାମନ୍ତମାନଙ୍କ ମଧ୍ୟରେ ମୁକୁନ୍ଦ ହରିଚନ୍ଦନ ବିଶେଷ କୌଶଳୀ, ବିଚକ୍ଷଣ ଓ ପରାକ୍ରମଶାଳୀ ଥିଲେ । ଗୋବିନ୍ଦଦେବଙ୍କ ରାଜତ୍ୱକାଳରେ ସେ କଟକର ଶାସନକର୍ତ୍ତା ଥାଇ ସୁଶାସନ ନିମନ୍ତେ ଖ୍ୟାତି ଅର୍ଜିଥିଲେ । ଶାସନ କୌଶଳ ଓ ଅନ୍ୟାନ୍ୟ ଗୁଣାବଳି ଯୋଗୁଁ ମୁକୁନ୍ଦ ଦେଶରେ ପ୍ରଜା ଓ ସୈନ୍ୟ-ସାମନ୍ତଙ୍କ ମଧ୍ୟରେ ବିଶେଷ ଲୋକପ୍ରିୟ ଏବଂ ପ୍ରଭାବଶାଳୀ ହୋଇ ଉଠିଥିଲେ । ଦେଶର ବର୍ତ୍ତମାନ ଅରାଜକ ଅବସ୍ଥାରେ ଆପଣା ଗୁଣରେ ବଶୀଭୂତ ସୈନ୍ୟସାମନ୍ତଙ୍କ ସାହାଯ୍ୟରେ ମୁକୁନ୍ଦ ହରିଚନ୍ଦନ ରଘୁଭଞ୍ଜଙ୍କୁ ବନ୍ଦୀ ଏବଂ ଅନ୍ୟାନ୍ୟ ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ବହିଷ୍କୃତ କରି ୧୫୫୧ ଖ୍ରୀଷ୍ଟାବ୍ଦରେ ସିଂହାସନ ଅଧିକାର କଲେ ।

# ମୁକୁନ୍ଦଦେବ

## ଖ୍ରୀଷ୍ଟ ୧୫୫୧—୧୫୬୮ ଅବ୍ଦ

ସିଂହାସନାରୋହଣ — ମୁକୁନ୍ଦ ହରିଚନ୍ଦନ ଦାକ୍ଷିଣାତ୍ୟର ତେଲିଙ୍ଗ ସୀମାନ୍ତଳବାସୀ ଥିବାରୁ ଉତ୍କଳ ଇତିହାସରେ ସେ 'ତେଲଙ୍ଗା ମୁକୁନ୍ଦ ଦେବ' ନାମରେ ପରିଚିତ। ପ୍ରତାପରୁଦ୍ରଙ୍କ ରାଜତ୍ୱକାଳରୁ ମୁକୁନ୍ଦ ରାଜକାର୍ଯ୍ୟରେ ପ୍ରବେଶ କରିଥିଲେ; ଏବଂ ଦାକ୍ଷିଣାତ୍ୟ ଅଭିଯାନରେ ସେ ପ୍ରତାପରୁଦ୍ରଦେବଙ୍କ ସୈନ୍ୟଶ୍ରେଣୀ-ଭୁକ୍ତଥିଲେ। ଆପଣାର ଶୌର୍ଯ୍ୟ ଓ ପ୍ରତିଭା ବଳରେ ସେ ଉନ୍ନୀତ ହୋଇ କ୍ରମେ ସେନାପତିରୂପେ ମନୋନୀତ ହୋଇଥିଲେ। ଗୋବିନ୍ଦ ଦେବଙ୍କ ରାଜତ୍ୱରେ ସେ ଏପରି ବିଶ୍ୱାସଭାଜନ ସେନାନାୟକ ହୋଇ ଉଠିଥିଲେ ଯେ ବାରବାଟୀ କଟକର ରକ୍ଷଣଭାର ଏବଂ ଦେଶଶାସନ ମଧ୍ୟ ତାହାଙ୍କ ହସ୍ତରେ ନ୍ୟସ୍ତ ରହିଥିଲା। ଏହି ସମୟରୁ ଦେଶଶାସନରେ ତାହାଙ୍କର ବିଚକ୍ଷଣତା ଜଣା ପଡିଥିଲା, ଏବଂ ସେଥିପାଇଁ ସେ ମଧ୍ୟ ବିଶେଷ ଲୋକପ୍ରିୟ ହୋଇଥିଲେ। ପୂର୍ବୋକ୍ତ ଚାଳୁକ୍ୟ ବୀରମାନେ ସିଂହାସନ ଲୋଭରେ ବିଦ୍ରୋହ ଓ ରାଜହତ୍ୟା ପ୍ରଭୃତି ଦୁରନ୍ତ କାର୍ଯ୍ୟରେ ଲିପ୍ତରହି ଉଦିତ ଓ ଅସ୍ତମିତ ହେଉଥିବାବେଳେ ମୁକୁନ୍ଦ ଆପଣାର ବଳ ଓ ଶକ୍ତି ସଂରକ୍ଷଣର କେବଳ ପରୀକ୍ଷା ଅପେକ୍ଷାରେ ରହିଥିଲେ। ଶେଷରେ ଉତ୍କଳର ରାଜଶ୍ରୀ ତାହାଙ୍କ ହସ୍ତରେ ଅର୍ପିତ ହେଲା ଏବଂ ରଘୁରାମ ଛୋଟରା ବନ୍ଦୀ ହୋଇ ରହିଲେ।

ଶାସନ— ସିଂହାସନ ଆରୋହଣ ପୂର୍ବରୁ ଦେଶ ଶାସନରେ ପାରଦର୍ଶୀ ହୋଇଥିବାରୁ ମୁକୁନ୍ଦଦେବଙ୍କ ଦେଶ ଶାସନ ସର୍ବଜନପ୍ରିୟ ହୋଇଥିଲା। ପୂର୍ବବର୍ତ୍ତୀ ଗଙ୍ଗ ଓ ସୂର୍ଯ୍ୟବଂଶୀ ରାଜାମାନଙ୍କର ଗୌରବ ପରମ୍ପରାରେ ସେ ଆପଣାକୁ ପରମ ଗୌରବାନ୍ୱିତ ମନେକରି ନିଜ ରାଜତ୍ୱରେ ଦେଶର ଶ୍ରୀବୃଦ୍ଧି

ସାଧନରେ ଲାଗିଲେ । ଉତ୍ତରରେ ଉତ୍କଳର ଶେଷସୀମା ହୁଗୁଳୀ ନଦୀରେ
ତ୍ରିବେଣୀ ପର୍ଯ୍ୟ ସ୍ଥାପନକରି ସେ ସେଠାରେ ସୁପ୍ରସିଦ୍ଧ ତ୍ରିବେଣୀଘାଟ ଓ ମନ୍ଦିର
ନିର୍ମାଣ କଲେ । ଭାରତବାସୀ ହିନ୍ଦୁସାଧାରଣ ପ୍ରୟାଗ ବା ଅଲ୍ଲାହାବାଦରେ
ତ୍ରିବେଣୀ ସ୍ନାନ କରି ପବିତ୍ର ହୁଅନ୍ତି, ମାତ୍ର ଉତ୍କଳବାସୀ ଆପଣାର ରାଜପ୍ରତିଷ୍ଠିତ
ତ୍ରିବେଣୀ ଘାଟରେ ସ୍ନାନକରି ଆପଣାକୁ ସମାନ ପବିତ୍ର ବୋଧ କରନ୍ତି ।
ମାତାଙ୍କ ଅନୁରୋଧ କ୍ରମେ ମୁକୁନ୍ଦଦେବ ତ୍ରିବେଣୀଠାରୁ ଗଙ୍ଗାର ଗୋଟିଏ
ଧାର କଟକ ମହାନଦୀ ପର୍ଯ୍ୟନ୍ତ ଖୋଲାଇ ଆଣିବାର କଳ୍ପନା କରିଥିଲେ ।
ଏହାଦ୍ୱାରା ଉତ୍କଳବାସୀ ଗଙ୍ଗାସ୍ନାନ ନିମନ୍ତେ ଦୂର ଦେଶକୁ ନ ଯାଇ ନିଜ
ଦେଶର ରାଜଧାନୀରେ ଗଙ୍ଗାସ୍ନାନ ପୁଣ୍ୟ ପାଇପାରିବେ ; ଏହା ମାତାଙ୍କ
ଅନୁରୋଧ କ୍ରମେ ମୁକୁନ୍ଦଦେବଙ୍କର କଳ୍ପନା ହୋଇଥିଲା । ମୁକୁନ୍ଦଦେବ
କେବଳ କଳ୍ପନାରେ ସ୍ଥିର ନ ରହି, କାର୍ଯ୍ୟ ମଧ୍ୟ ଆରମ୍ଭ କରିଥିଲେ ।
ତ୍ରିବେଣୀ ନିକଟରେ ସେପରି ଗୋଟିଏ ନାଳ ଖୋଳା ହୋଇଥିବାର
ସଙ୍କେତ ଅଦ୍ୟାପି ମଧ୍ୟ ଦେଖାଯାଏ । ମାତ୍ର ସେ କାର୍ଯ୍ୟ ଶେଷ କରିବାକୁ
କାଳ ତାଙ୍କୁ ସହ ନ ଥିଲା ।

ପୂର୍ବବର୍ତ୍ତୀ ରାଜାମାନଙ୍କ ପଦାଙ୍କ ଅନୁସରଣ କରି ମୁକୁନ୍ଦଦେବ ଦେଶ
ମଧ୍ୟରେ କେତେକ ଦେବ ମନ୍ଦିର ନିର୍ମାଣ, ବ୍ରାହ୍ମଣଶାସନ ସ୍ଥାପନ ଓ କୂପ
ପୁଷ୍କରିଣୀ ଖନନ କରାଇଥିଲେ; ଏବଂ ନଦୀ ପୁଷ୍କରିଣୀରେ ଘାଟ ବନ୍ଧାଇଥିଲେ ।
ସ୍ୱଗ୍ରଳ ପିପିଲି ନିକଟବର୍ତ୍ତୀ ମୁକୁନ୍ଦପୁର ଶାସନ ଓ ପୁଷ୍କରିଣୀ ତାହାଙ୍କର
କାର୍ଯ୍ୟ ।

ବାରବାଟୀ ଦୁର୍ଗ—ଅନ୍ୟାନ୍ୟ ସାଧାରଣ କାର୍ଯ୍ୟମଧ୍ୟରେ ବାରବାଟୀ
ଦୁର୍ଗର ସମୁନ୍ନତି ତାହାଙ୍କ ରାଜତ୍ୱର ବିରାଟ କାର୍ଯ୍ୟ । ବାରବାଟୀ ଦୁର୍ଗମଧ୍ୟରେ
ମୁକୁନ୍ଦଦେବ ଏକ ସୁରମ୍ୟ ଓ ସୁବିଶାଳ ନବତଳ ବିଶିଷ୍ଟ ପ୍ରାସାଦ
ନିର୍ମାଣ କରିଥିଲେ ଏବଂ ତାହାହିଁ ତାହାଙ୍କର ରାଜଭବନ ଥିଲା । ଦୁର୍ଗର
ପ୍ରାଚୀର ଓ ଅନ୍ୟାନ୍ୟ କାର୍ଯ୍ୟମାନଙ୍କର ନୂତନ ସଂସ୍କାର ବିଧାନ କରାଇଦେଇ

ସମୁଦାୟ ଦୁର୍ଗଟିକୁ ନୂତନ ଆକାର ଦେଇଥିଲେ । ମୁକୁନ୍ଦଦେବଙ୍କ ନବତଳ ପ୍ରାସାଦ ଏତେ ବିଶାଳ ଓ ସୁମନୋହର ଥିଲା ଯେ ପରବର୍ତ୍ତୀ କାଳରେ ପ୍ରାସାଦର ମାହାତ୍ମ୍ୟଯୋଗୁଁ ସମୁଦାୟ ଦୁର୍ଗଟି ମୁକୁନ୍ଦଦେବଙ୍କ ନାମାନୁସାରେ ଅଭିହିତ ହେଉଥିଲା । ପରବର୍ତ୍ତୀ ଶତାବ୍ଦୀରେ ଇଂରେଜ ବଣିକମାନେ ଏହି ଦେଶକୁ ଆସି ଦୁର୍ଗଟିକୁ 'ମାଲକାଣ୍ଡି' ବା ମୁକୁନ୍ଦଦେବ ବୋଲି କହୁଥିଲେ ।

ନବତଳ ପ୍ରାସାଦର ପ୍ରତ୍ୟେକ ତଳ ଭିନ୍ନ ଭିନ୍ନ କାର୍ଯ୍ୟରେ ଲାଗିଥିଲା । ପ୍ରଥମତଳ ଓଟ, ହାତୀ, ଘୋଡ଼ା ପ୍ରଭୃତି ପାଳିତ ପଶୁମାନଙ୍କ ନିମନ୍ତେ ନିର୍ଦ୍ଦିଷ୍ଟ ଥିଲା । ଦ୍ୱିତୀୟ ତଳରେ ଗୋଳାଗୁଳି, ଅସ୍ତ୍ରଶସ୍ତ୍ର ଓ ଅନ୍ୟାନ୍ୟ ଯୁଦ୍ଧୋପକରଣ ସଞ୍ଚିତ ଥିଲା; ଏହି ତଳରେ ଦୁର୍ଗରକ୍ଷକ ଓ ଅନ୍ୟାନ୍ୟ ପ୍ରହରୀମାନଙ୍କର ବାସସ୍ଥାନ ଥିଲା । ତୃତୀୟ ତଳରେ ଦ୍ୱାରୀ ଓ ଅନ୍ୟାନ୍ୟ ଆଜ୍ଞାବାହକ ପାରିଷଦମାନେ ରହୁଥିଲେ । ଚତୁର୍ଥତଳ ବିଭିନ୍ନ ଶ୍ରେଣୀର ଶିଳ୍ପୀ ଓ କାରିଗରମାନଙ୍କ ନିମନ୍ତେ ନିର୍ଦ୍ଦିଷ୍ଟ ରହିଥିଲା । ପଞ୍ଚମତଳରେ ରନ୍ଧନଶାଳା ଥିଲା । ବିଭିନ୍ନ ଶ୍ରେଣୀର ଭଦ୍ରବ୍ୟକ୍ତି ଓ ଅତିଥି ଆଗନ୍ତୁକମାନଙ୍କ ସଙ୍ଗେ ଦେଖା ସାକ୍ଷାତ କଥୋପକଥନ ଏବଂ ରାଜଦରବାର ପ୍ରଭୃତି ନିମନ୍ତେ ଷଷ୍ଠତଳ ବ୍ୟବହୃତ ହେଉଥିଲା । ସପ୍ତମ ତଳରେ ରାଜାଙ୍କର ପାରିବାରିକ ଏବଂ ରାଷ୍ଟ୍ର-ସମ୍ପର୍କୀୟ ଗୋପନୀୟ କାର୍ଯ୍ୟମାନ ସାଧିତ ହେଉଥିଲା । ଅନ୍ତଃପୁର ମହିଳା-ମାନେ ଅଷ୍ଟମ ତଳରେ ବାସକରୁଥିଲେ ; ଏବଂ ନବମ ତଳ ରାଜାଙ୍କର ଶୟନାଗାରରୂପେ ବ୍ୟବହୃତ ହେଉଥିଲା । * ସେହି ନବତଳ ପ୍ରାସାଦ ନିକଟରେ ଅତୁଳି ଗୋଟିଏ ସ୍ୱତନ୍ତ୍ର ସୁଧାର୍ସ ଏବଂ ପୂର୍ବବର୍ଣ୍ଣୀ ଅଟ୍ଟାଳିକା ନିର୍ମାଣ କରାଇଥିଲେ । ଉକ୍ତ ଅଟ୍ଟାଳିକା ସ୍ଥାନରେ ବର୍ତ୍ତମାନ ଦୁର୍ଗମଧ୍ୟରେ ଗୋଟିଏ

---

* ନବତଳ ପ୍ରାସାଦ ସମ୍ବନ୍ଧରେ ବିଶେଷ ବିବରଣ ଲେଖକଙ୍କ ବାରବାଟୀ ଦୁର୍ଗରେ ପ୍ରାପ୍ତବ୍ୟ ।

ସ୍ତୂପ ପର୍ବତାକାରରେ ରହନ୍ତୁ ଉତ୍କଳର ପୂର୍ବବର୍ତ୍ତୀ ଗୌରବମୟ ସ୍ୱାଧୀନତାର ଉଦ୍ଧାର ଏବଂ ମୁକୁନ୍ଦଦେବଙ୍କର ଶାସନ ପରମ୍ପରା ଓ ବଡ଼ଯନ୍ତା କେବଳ ନିର୍ବାଣୋନ୍ମୁଖ ପ୍ରଦୀପର ଶେଷବହ୍ନିଶିଖାପରି କ୍ଷଣେମାତ୍ର ଦେଦୀପ୍ୟମାନ ହୋଇ ଚିରକାଳ ନିମନ୍ତେ ନିର୍ବାପିତ ହେଲା ।

ମୁସଲମାନ ଆଶ୍ରୟ — ଶେରବଂଶର ଶେଷକାଳକୁ ଇବ୍ରାହିମସ୍ୱାମୀ ସିଂହାସନରେ ଅଳ୍ପକାଳ ପାଇଁ ଅଭିଷିକ୍ତ ହୋଇଥିଲେ । ଏଥିମଧ୍ୟରେ ମୋଗଲ ସମ୍ରାଟ ହୁମାୟୁନ ଭାରତରେ ପୁଣି ପ୍ରବେଶକରି ଦିଲ୍ଲୀ ଅଧିକାର କରିବାରୁ ଇବ୍ରାହିମ ପଳାଇ ଆସି ବଙ୍ଗ ଅଧିକାର କରି ନବାବ ହୋଇ ବସିଲେ । ମାତ୍ର ତାଙ୍କ ଦୁର୍ଭାଗ୍ୟକୁ ସେଠାରେ ମଧ୍ୟ ସେ ବେଶି ଦିନ ରାଜ୍ୟ ଭୋଗ କରିପାରିଲେ ନାହିଁ । ଅନ୍ୟ ଏକ ପଠାଣ ଦଳପତି ସୁଲେମାନ କରଣୀ ସସୈନ୍ୟରେ ବଙ୍ଗ ଆକ୍ରମଣ କରି ଇବ୍ରାହିମଙ୍କୁ ସେଠାରୁ ତଡ଼ିଦେଲେ । ଅଗତ୍ୟା ଇବ୍ରାହିମ ଆଶ୍ରୟ ନିମନ୍ତେ ଇତସ୍ତତଃ ହୋଇ ଅବଶେଷରେ ଉତ୍କଳ ଗଜପତି ମୁକୁନ୍ଦଦେବଙ୍କର ଆଶ୍ରୟ ଭିକ୍ଷା କଲେ । ଉତ୍କଳ ଏତେକାଳ ମୁସଲମାନମାନଙ୍କ ପ୍ରତି କେବଳ ଆକ୍ରମଣ ଲୁଣ୍ଠନ ଓ ଧ୍ୱଂସାତର ସ୍ଥଳ ଥିଲା । ବର୍ତ୍ତମାନ ତାହା ମୁସଲମାନ ପଳାତକ ସୁଲତାନଙ୍କର ଶେଷ ଆଶ୍ରୟ ସ୍ଥଳ ହେଲା । ମୁକୁନ୍ଦଦେବ ଆପଣାର ସହଜସ୍ୱଭାବ ବଦାନ୍ୟତାରେ ଇବ୍ରାହିମଙ୍କୁ ରାଜୋଚିତ ସମ୍ମାନ ଓ ଆଶ୍ରୟ ଦାନ କଲେ; ଏବଂ ଆପଣାର ରାଜଖାସ୍ ଜମିରୁ କେତେକ ତାହାଙ୍କ ଭରଣପୋଷଣ ନିମନ୍ତେ ଲେଖି ଦେଇଦେଲେ ।

ମୁସଲମାନ ଆକ୍ରମଣ—ପୂର୍ବରୁ କୁହାଯାଇଛି ଗୋଲକୁଣ୍ଡା ରାଜ୍ୟର କୁତୁବସାହିବଂଶ ରାଜ୍ୟ ବିସ୍ତାର ନିମନ୍ତେ ଦକ୍ଷିଣ ଦିଗରୁ ବାରମ୍ବାର ଉତ୍କଳ ଆକ୍ରମଣ କରୁଥିଲେ । ଗୋଲକୁଣ୍ଡାର ସୁଲତାନ ଇବ୍ରାହିମ ୧୫୬୪ ଖ୍ରୀଷ୍ଟାବ୍ଦରୁ ଉତ୍କଳର ଦକ୍ଷିଣାଞ୍ଚଳ ଆକ୍ରମଣ କରିବା ଆରମ୍ଭ କଲେ ।

ପ୍ରଥମେ ଇବ୍ରାହିମ ରାଜମହେନ୍ଦ୍ରୀ ଦୁର୍ଗ ଅବରୋଧ କଲେ । ମାତ୍ର ମୁକୁନ୍ଦଦେବଙ୍କ ସୈନ୍ୟମାନେ ବହୁଦିନ ଯୁଦ୍ଧ କରି ଗୋଲକୁଣ୍ଡା ସୈନ୍ୟଙ୍କୁ ଛତ୍ରଭଙ୍ଗ କରିଦେଲେ । ଇବ୍ରାହିମ ଏହି ପରାଜୟରେ ନିରସ୍ତ ନ ହୋଇ ବାରମ୍ବାର ଉତ୍କଳ ଆକ୍ରମଣ କରୁଥିଲେ । ଶେଷରେ ୧୫୬୨ ଖ୍ରୀଷ୍ଟାବ୍ଦରେ ମୁକୁନ୍ଦଦେବ ସୁଦୂର ବଙ୍ଗଦେଶରେ ଯୁଦ୍ଧରେ ମାତିଥିବା ବେଳେ ଇବ୍ରାହିମ ଦକ୍ଷିଣରୁ ଉତ୍କଳ ଆକ୍ରମଣ କରି ବର୍ତ୍ତମାନ ଗଞ୍ଜାମ ଜିଲ୍ଲାର ଚିକାକୋଲ ପର୍ଯ୍ୟନ୍ତ ଅଧିକାର କଲେ ।

ଦକ୍ଷିଣଦିଗରେ ରାଜମହେନ୍ଦ୍ରୀ ଅବରୋଧରେ ମୁକୁନ୍ଦଦେବ ଜୟୀ ହେଲେ ମଧ୍ୟ ଉତ୍ତରଦିଗରେ ମୁସଲମାନ ଆକ୍ରମଣର ଆଶଙ୍କା ଦିନକୁ ଦିନ ବଢିଲା । ଇବ୍ରାହିମଙ୍କୁ ବିତାଡିତ କରି ସୁଲେମାନ କରାଣି ବଙ୍ଗ ଦେଶର ସୁଲତାନ ହୋଇଥିଲେ । ପଳାତକ ସୁଲତାନ ଇବ୍ରାହିମଙ୍କୁ ଆଶ୍ରୟ ଦେଇ ଥିବାରୁ ମୁକୁନ୍ଦଦେବ ସୁଲେମାନଙ୍କ ଶତ୍ରୁତା ଲଭିଥିଲେ । ସୁଲେମାନ ଉତ୍କଳ ଅଧିକାର କରି ନିଜ ରାଜ୍ୟର ଅନ୍ତର୍ଭୁକ୍ତ କରିବା ଉଦ୍ୟମରେ ରହିଲେ ।

ପ୍ରବଳପ୍ରତାପ ଅକବର ଏତେବେଳେ ଦିଲ୍ଲୀର ସମ୍ରାଟ ଥିଲେ । ବଙ୍ଗଦେଶରେ ସୁଲେମାନ କରାଣିଙ୍କୁ ପ୍ରବଳ ଦେଖି ତାଙ୍କୁ ଦମନ କରି ବଙ୍ଗ ଅଧିକାର କରିବାପାଇଁ ଅକବରଙ୍କର ଉଦ୍ୟମ ହେଲା । ସେଥିପାଇ ସେ ଉତ୍କଳ ଗଜପତି ମୁକୁନ୍ଦଦେବଙ୍କର ସହାୟତା ଲୋଡିଲେ । ବଙ୍ଗ ଅଧିକାର ପାଇଁ ସାହାଯ୍ୟ ଆଶାରେ ୧୫୬୫ ଖ୍ରୀଷ୍ଟାବ୍ଦରେ ଅକବର ହାସାନଖାଁ ନାମକ ଜଣେ ରାଜଦୂତଙ୍କୁ ମୁକୁନ୍ଦଦେବଙ୍କ ସଙ୍ଗେ ସନ୍ଧି ସ୍ଥିର କରିବା ନିମନ୍ତେ ବାରବାଟୀ କଟକ ପଠାଇଲେ । ମହାପାତ୍ର ଉପାଧିଧାରୀ ଜଣେ ଉତ୍କଳବାସୀ ଗାୟକ ଅକବରଙ୍କ ଦରବାରରେ ପ୍ରଧାନ ଗାୟକରୂପେ ହୋଇ ଉଠିଥିଲେ । ହାସାନଖାଁ ଏବଂ ଉତ୍କଳ ରାଜାଙ୍କ ମଧ୍ୟରେ କଥାଭାଷାରେ ସାହାଯ୍ୟ କରିବା ନିମନ୍ତେ ଅକବର ସେହି ମହାପାତ୍ରଙ୍କୁ ମଧ୍ୟ ହାସାନଖାଁଙ୍କ ସଙ୍ଗେ କଟକ ପଠାଇଥିଲେ । ହାସାନଙ୍କୁ

ମୁକୁନ୍ଦଦେବ ମହାସମାରୋହରେ ଅଭ୍ୟର୍ଥନା ଓ ସତ୍କାର କଲେ । ସୁଲେମାନ ଏହି ସମୟରେ ଆପଣାର ବଳ ଦୃଢ଼ କରିବାନିମନ୍ତେ ଅନ୍ୟ ଏକ ବିଦ୍ରୋହୀ ଦଳପତି ତାମାନଶାଙ୍କ ସାହାଯ୍ୟ ପାଇଥିଲେ । ହାସାନଶାଁ ମୁକୁନ୍ଦଦେବଙ୍କ ସଙ୍ଗେ ଯେଉଁ ସନ୍ଧି ସ୍ଥିର କଲେ, ତାହା ଅନୁସାରେ ନିଷ୍ପତ୍ତି ହେଲା ଯେ ତାମାନଶାଁ ଯଦି ସୁଲେମାନଙ୍କ ସଙ୍ଗେ ମିଳିତ ହେବେ, ତାହାହେଲେ ମୁକୁନ୍ଦଦେବ ଦକ୍ଷିଣପଶ୍ଚିମ ଦିଗରୁ ଏବଂ ମୋଗଲବାହିନୀ ଉତ୍ତର-ପଶ୍ଚିମରୁ ବଙ୍ଗଦେଶ ଆକ୍ରମଣ କରିବେ । ଏଥିମଧ୍ୟରେ ସୁଲେମାନ ଏହି ସନ୍ଧିସମ୍ବାଦ ପାଇ ବହୁମୂଲ୍ୟ ଉପହାର ସାକ୍ଷୀ ପ୍ରେରଣ କରି ଅକ୍‌ବରଙ୍କ ଅଧୀନତା ସ୍ୱୀକାର କଲେ । ମାତ୍ର ମୁକୁନ୍ଦଦେବଙ୍କପ୍ରତି ତାହାଙ୍କର ଅକ୍ରୋଶ ଦ୍ୱିଗୁଣ ବଢ଼ିଲା । ଅକ୍‌ବର ମଧ୍ୟ ସୁଲେମାନଙ୍କୁ ଅଧୀନରେ ପାଇ, ମୁକୁନ୍ଦଦେବଙ୍କ ବିପଦବେଳେ ସାହାଯ୍ୟ କଲେନାହିଁ ।

ସ୍ୱାଧୀନତା ଲୋପ—ଏତେବେଳେ ଅକବର ଗୁଜରାଟ ବିଜୟରେ ବ୍ୟାପୃତ ରହିଥିବାରୁ ବଙ୍ଗଦେଶ ପ୍ରତି ତାହାଙ୍କର ଆଉ ଦୃଷ୍ଟି ପଡ଼ିଲା ନାହିଁ । ସୁଲେମାନ ଏହି ଅବକାଶରେ ଉତ୍କଳ ଆକ୍ରମଣ କଲେ । ମାତ୍ର ଆକ୍ରମଣକାରୀ ପଠାଣମାନେ ପରାସ୍ତହୋଇ ପଳାୟନକଲେ । ମୁକୁନ୍ଦଦେବ ସେହି ପଳାତକ ପଠାଣସୈନ୍ୟଙ୍କର ଅନୁଧାବନ କରି ବଙ୍ଗଦେଶ ଆକ୍ରମଣକଲେ । ସୁଲେମାନ କରାଣିଙ୍କ ପୁତ୍ର ଗଙ୍ଗାନଦୀ କୂଳରେ ମୁକୁନ୍ଦଦେବଙ୍କର ଗତିରୋଧ କଲେ । ମୁକୁନ୍ଦଦେବ ଅଗତ୍ୟା ଫେରିଆସି ଆପଣା ରାଜ୍ୟସୀମାନ୍ତବର୍ତ୍ତୀ ଗଙ୍ଗାକୂଳର କୋଟ-ସମାଦୁର୍ଗରେ ଆଶ୍ରୟ ନେଲେ । ଏଥିମଧ୍ୟରେ ଗୋଲକୁଣ୍ଡାର ସୁଲତାନ ଇବ୍ରାହିମ ସୁବିଧା ପାଇଁ ଚିକାକୋଲ ପର୍ଯ୍ୟନ୍ତ ଉତ୍କଳର ଦକ୍ଷିଣାଞ୍ଚଳ ଅଧିକାର କଲେ । ଏହିପରି ଉଭୟ ଅଞ୍ଚ ମୁସଲମାନ ଶକ୍ତି ଉତ୍କଳ ଗ୍ରାସ କରିବାକୁ ଉଦ୍ୟତ ଥିବାବେଳେ ସାରଙ୍ଗଗଡ଼ର ଅଧିପତି ରାମଚନ୍ଦ୍ର ଭଞ୍ଜ ଉତ୍କଳ ସିଂହାସନ ଅଧିକାର କରିବା ନିମନ୍ତେ ବିଦ୍ରୋହାଚରଣ କଲେ ।

ଏଥି ପୂର୍ବରୁ ମୁକୁନ୍ଦଦେବଙ୍କ ବିରୁଦ୍ଧରେ ସେ ବହୁଷଡ଼ଯନ୍ତ୍ର କରି ଜରସ୍ତ ହୋଇଥିଲେ । ବର୍ତ୍ତମାନ ମୁକୁନ୍ଦଦେବଙ୍କୁ ବଙ୍ଗଦେଶରେ ଯୁଦ୍ଧବ୍ୟସ୍ତ ଥିବାର ଏବଂ ଦକ୍ଷିଣରୁ ଗୋଲକୁଣ୍ଡାବାହିନୀ ରାଜ୍ୟ ଅଧିକାର କରି ଆସୁଥିବାର ଦେଖି ରାମଚନ୍ଦ୍ର ବାରବାଟୀ ଆକ୍ରମଣ କଲେ ।

ମୁକୁନ୍ଦଦେବ ଗଙ୍ଗାକୂଳ କୋଟସମା ଦୁର୍ଗରେ ଅବସ୍ଥାନ କାଳରେ ଦୁଷ୍ଟ ରାମଚନ୍ଦ୍ରଙ୍କର ବିଦ୍ରୋହ ବାର୍ତ୍ତା ଶୁଣି ଦେଶରକ୍ଷା ନିମନ୍ତେ କଟକ ଫେରି ଆସିଲେ । ବାରବାଟୀ ଉଦ୍ଧାର କରି ସଙ୍ଗେ ସଙ୍ଗେ ସେ ସାରଙ୍ଗଗଡ଼ ଅବରୋଧ କଲେ । ରାମଚନ୍ଦ୍ର ଦୁର୍ଗ ଉଦ୍ଧାର ନିମନ୍ତେ ମୁକୁନ୍ଦ ଦେବଙ୍କ ସଙ୍ଗେ ଘୋର ଯୁଦ୍ଧ ଆରମ୍ଭ କଲେ । ମୁକୁନ୍ଦଦେବ ବହୁକାଳ ଧରି ବଙ୍ଗ-ଅଭିଯାନରେ ହୀନବଳ ଓ କ୍ଳାନ୍ତ ହୋଇ ପଡିଥିଲେ । ରାମଚନ୍ଦ୍ରଙ୍କ ସଙ୍ଗେ ଯୁଦ୍ଧ କରୁ କରୁ ସେ ରାମଚନ୍ଦ୍ରଙ୍କ ଅସ୍ତ୍ରାଘାତରେ ପ୍ରାଣ ହରାଇଲେ । ୧୫୬୮ ଖ୍ରୀଷ୍ଟାବ୍ଦରେ ତାହାଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ଉତ୍କଳ ଗଗନରୁ ସ୍ୱାଧୀନତା ରବି ଚିରକାଳ ନିମନ୍ତେ ଅସ୍ତମିତ ହେଲା । ଯେଉଁ ରଘୁରାମ ଭଞ୍ଜଙ୍କୁ ମୁକୁନ୍ଦଦେବ ପରାସ୍ତ ଓ ବନ୍ଦୀ କରି ରାଜଶ୍ରୀ ଲାଭ କରିଥିଲେ,

ମୁକୁନ୍ଦ ଦେବଙ୍କ ମୃତ୍ୟୁ ପରେ ସେ ବନ୍ଦୀଶାଳାରୁ ଆପଣାକୁ ମୁକ୍ତ କରି ସିଂହାସନ ଅଧିକାର କରିବାକୁ ବସିଲେ । ମାତ୍ର ରାମଚନ୍ଦ୍ର ସେହି ସିଂହାସନ ଲୋଭରେ ମୁକୁନ୍ଦ ଦେବଙ୍କୁ ବଧ କରିଥିଲେ । ସୁତରାଂ ରାମଚନ୍ଦ୍ର ଓ ରଘୁଭଞ୍ଜଙ୍କ ମଧ୍ୟରେ ବିବାଦ ଘୋରତର ହେଲା ।

**କଳାପାହାଡ଼ ଆକ୍ରମଣ**—ଉତ୍କଳ ମଧ୍ୟରେ ଏହିରୂପ ଅନ୍ତର୍ବିବାଦର ସୁବିଧା ପାଇ ସୁଲେମାନ କିରାଣୀ ଉତ୍କଳ ଅଧିକାର କରିବା ମାନସରେ ଆପଣାର ସେନାପତି ଇଲାହାବାଦ କଳାପାହାଡଙ୍କୁ ପ୍ରେରଣ କଲେ । ୧୫୬୮ ଖ୍ରୀଷ୍ଟାବ୍ଦରେ କଳାପାହାଡ଼ ବହୁ ପଠାଣ ସୈନ୍ୟସହ ମୟୂରଭଞ୍ଜ ଓ କେନ୍ଦୁଝରର ଜଙ୍ଗଲ ପର୍ବତ ମଧ୍ୟ ଦେଇ ଯାଜପୁର ଅବରୋଧ ଏବଂ ଅଧିକାର କଲେ । ସେଠାରୁ କଟକ ପର୍ଯ୍ୟନ୍ତ ଅଗ୍ରସର ହୋଇ କଳାପାହାଡ

ବାରବାଟୀ ଅବରୋଧ କଲେ । ରାମଚନ୍ଦ୍ର ଭଞ୍ଜ ବାରବାଟୀ ଉଦ୍ଧାର ନିମନ୍ତେ ପଠାଣସୈନ୍ୟଙ୍କ ସଙ୍ଗେ ଘୋର ଯୁଦ୍ଧ ଆରମ୍ଭ କରି, ଶେଷରେ ନିହତ ହେଲେ । ରାମଚନ୍ଦ୍ରଙ୍କ ମୃତ୍ୟୁପରେ ରଘୁରାମ ଛୋଟରାୟ ଧମାପ୍ତ କାଳ ପଠାଣ ସୈନ୍ୟଙ୍କ ସଙ୍ଗେ ଯୁଦ୍ଧକରି ଶେଷରେ ନିହତ ହେଲେ । କଳାପାହାଡ଼ ବାରବାଟୀ କଟକ ଅଧିକାର କରି ଉତ୍କଳକୁ ବଙ୍ଗ ପଠାଣ ରାଜ୍ୟର ଅନ୍ତର୍ଭୁକ୍ତ କଲେ ।

କଳାପାହାଡ଼ର ଆକ୍ରମଣ ଓ ଅତ୍ୟାଚାର ଉତ୍କଳବାସିଙ୍କ ପ୍ରାଣରେ ମହା ଆତଙ୍କ ଜନ୍ମାଇଥିଲା । ସେହି ଅତ୍ୟାଚାରର କାହାଣୀ ଅଦ୍ୟାପି ଲୋକେ ଶିଶୁମାନଙ୍କ ଆଗରେ ଗାନ କରନ୍ତି । (*) ବାରବାଟୀ ଦୁର୍ଗ ପ୍ରାୟ ଅଭେଦ୍ୟ ଥିଲା । କଳାପାହାଡ଼ ସେ ଦୁର୍ଗ ଅଧିକାର କରି ମୁକୁନ୍ଦଦେବଙ୍କ ରାଣୀଙ୍କୁ ବନ୍ଦୀ କରିବାରୁ କଥିତ ଅଛି ରାଣୀ ସୁନା ଥାଳିରେ ଅତି ବହୁମୂଲ୍ୟ ହୀରା ଉପହାର ଦେଇ, କଳାପାହାଡ଼ର ପାଶବିକତା କିଞ୍ଚିତ୍ ଶାନ୍ତ କରିଥିଲେ ।

ବାରବାଟୀ କଟକ ଅଧିକାର କରି କଳାପାହାଡ଼ ଉତ୍କଳ ବିଜୟ ସଂପୂର୍ଣ୍ଣ କରିବା ନିମନ୍ତେ ଭୁବନେଶ୍ୱର ଓ ପୁରୀ ଆକ୍ରମଣ କଲା । ହିନ୍ଦୁ ଦେବଦେବୀଙ୍କୁ ଅପମାନ ଦେବା ଓ ହିନ୍ଦୁ ମନ୍ଦିରମାନ ଭାଙ୍ଗିବା କଳାପାହାଡ଼ର ମୁଖ୍ୟ ଉଦ୍ଦେଶ୍ୟ ହେଲା । ଭୁବନେଶ୍ୱରର ବହୁକାର୍ତ୍ତି-ପୂର୍ଣ୍ଣ ମନ୍ଦିର ଓ ମନୋହର ପ୍ରତିମୂର୍ତ୍ତିମାନ ସେ ଭାଙ୍ଗିଦେଲା । ଭୁବନେଶ୍ୱରର ଭଗ୍ନ ମୂର୍ତ୍ତିମାନ ବିକଳାଙ୍ଗ ଅବସ୍ଥାରେ ରହି ଅଦ୍ୟାପି କଳାପାହାଡ଼ର ପାଶବିକତାର ପରିଚୟ ଦେଉଅଛି । କଳାପାହାଡ଼ ପ୍ରଥମେ ବ୍ରାହ୍ମଣ ସନ୍ତାନ ଥିଲା । ପରେ ଜଣେ ପରମସୁନ୍ଦରୀ

---

(*) ଅଗର କଳା ପାହାଡ଼ ଭଙ୍ଗିଲ ଦୁହାର ବାଡ଼
ଟିଅର ମହାକଟୀପାଣି
ସୁବର୍ଣ୍ଣ ଥାଳୀରେ ହୀରା ପରଷିଲେ
ମୁକୁନ୍ଦ ଦେବଂକ ରାଣୀ

ମୁସଲମାନ ଧର୍ମର ପ୍ରେମରେ ସେ ମୁସଲମାନ ହୋଇ ହିନ୍ଦୁଧର୍ମ ଓ ଦେବ-
ଦେବୀଙ୍କ ଅପମାନନା କରିବା ଜୀବନର ପ୍ରଧାନ କାର୍ଯ୍ୟ ବୋଲି ଜ୍ଞାନ କରିଥିଲା
ଭୁବନେଶ୍ୱରରେ ଯଥେଚ୍ଛା ପାଶବିକତା ଅଭିନୟ କରି କଳାପାହାଡ଼
ପୁରୀ ଆକ୍ରମଣ କଲା । ପଣ୍ଡାମାନେ କଳାପାହାଡ଼ର ଦୁରନ୍ତ ଅଭିପ୍ରାୟ
ବୁଝି ପୂର୍ବରୁ ଜଗନ୍ନାଥ ଦେବଙ୍କୁ ସଙ୍ଗେ ଧରି ଚିଲିକା ମଧ୍ୟସ୍ଥ ପାରିକୁଦରେ
ଲୁଚାଇ ରଖିଲେ । କଳାପାହାଡ଼ ପଶ୍ଚାତେ ବହୁବିଧ ଅତ୍ୟାଚାରମାନ
କରି ଜଗନ୍ନାଥ ଅନ୍ୱେଷଣରେ ଗଲା । କୌଣସି ମତେ ଜଗନ୍ନାଥଙ୍କୁ
ପାଇ ଏକ ହାତୀ ଉପରେ ଲଦି ଗଙ୍ଗାକୂଳକୁ ଘେନିଗଲା । ସେଠାରେ
ଶ୍ମଶାନରେ ଏକ ଜ୍ୱଳନ୍ତ ଚିତାରେ ସେ ଜଗନ୍ନାଥଙ୍କୁ ନିକ୍ଷେପକଲା । ବିଶାର
ମହାନ୍ତି ନାମକ ଏକ ପରମଭକ୍ତ ଗୋପନରେ ଜଗନ୍ନାଥଙ୍କ ସଙ୍ଗେ ସଙ୍ଗେ
ଥିଲେ । ଜଗନ୍ନାଥ ସଂପୂର୍ଣ୍ଣ ଦଗ୍ଧ ନ ହେଉଣୁ ବିଶାର କୌଣସି ମତେ
ତାହାଙ୍କ ନାଭିସ୍ଥଳ ବ୍ରହ୍ମଙ୍କୁ ଉଦ୍ଧାର କରି ସ୍ୱଦେଶକୁ ଫେରି ଆସିଲେ ।
କୁଜଙ୍ଗ ରାଜା ସେ ବ୍ରହ୍ମ ପାଇ ନବ କଳେବର କରାଇ ପୁନର୍ବାର ଜଗନ୍ନାଥ
ପ୍ରତିଷ୍ଠା କରାଇଲେ ।

କେବଳ ଏତିକରେ କଳାପାହାଡ଼ର ପାଶବ ପ୍ରବୃତ୍ତି ଚରିତାର୍ଥ
ହୋଇ ନଥିଲା । ଉତ୍କଳର ସର୍ବଶ୍ରେଷ୍ଠ କୀର୍ତ୍ତି, ଉତ୍କଳ ଇତିହାସର ଅମୂଲ୍ୟ
ସମ୍ପଦ କୋଣାର୍କ କଳାପାହାଡ଼ର ପାଶବିକତାରେ ଚିରକାଳ ନିମନ୍ତେ
ଅସ୍ତମିତ ହେଲା । କୋଣାର୍କର ଶିଳ୍ପବିଭବରେ କଳାପାହାଡ଼ର ବିଦ୍ୱେଷ-
ବହ୍ନି ଜଳିଉଠିଲା । କୋଣାର୍କ ପରି ବିଶାଳ ମନ୍ଦିର ଭାଙ୍ଗିବା ତାହା ପକ୍ଷରେ
ଅସମ୍ଭବ ଥିଲା । ସୁତରାଂ, କେବଳ ବଡଦେଉଳ ଉପରୁ କଳସ ପ୍ରଭୃତି ସେ
କେବଳ ଭାଙ୍ଗିଦେଲା । ଉପରୁ ସ୍ତୂପ ଅଭାବରେ କାଳକ୍ରମେ ବଡଦେଉଳର
କାନ୍ଥ ଗୁଡିକ ଭାଙ୍ଗି ପଡିଲା, ଏବଂ କୋଣାର୍କ ଦେବ ସେଠାରୁ ଆଣି
ପୁରୀ ମନ୍ଦିର ମଧ୍ୟରେ ରଖାଗଲେ । କୋଣାର୍କବେଢା ମଧ୍ୟରେ ରାମଚଣ୍ଡୀ

ମଧ୍ୟର କଳାପାହାଡ଼ ସମ୍ପୂର୍ଣ୍ଣ ଭାଙ୍ଗି ଦେଇଥିଲା । କୋଣାର୍କ ପତନ ପଠାଣ ପାଶବିକତାର ଚୂଡ଼ାନ୍ତ ନିଦର୍ଶନ ।। ମୂଳତଃ କଳାପାହାଡ଼ ଉତ୍କଳର ସ୍ୱାଧୀନତା ଅପହରଣ କରିବା ସଙ୍ଗେ , ଯେଉଁ କ୍ଷତି ନିଚୟ ନସ୍କାର ଦେଇଗଲା , ଉତ୍କଳ ଇତିହାସରେ ତାହା କଦାପି ହେଲେ ପୂରଣ କରାଯାଇ ପାରିବ ନାହିଁ ।



# ଷଷ୍ଠ ଅଧ୍ୟାୟ

## ଦେଶର ଅବସ୍ଥା

### ଖ୍ରୀଷ୍ଟାଃ ୧୦୪୨—୧୫୬୮ ଅବ୍ଦ

ଉତ୍କଳର ବସ୍ତୁତ—ଗଙ୍ଗ ଓ ସୂର୍ଯ୍ୟବଂଶ ରାଜତ୍ୱ ଉତ୍କଳଇତିହାସରେ ସର୍ବଶ୍ରେଷ୍ଠ ଗୌରବମୟ ସମୟ । ଉତ୍କଳଇତିହାସର ଯାହା କିଛି ସମ୍ବଳ, ଶିଳ୍ପସାହିତ୍ୟ ଓ ଜାତୀୟତା ସବୁ ଏହି ପାଞ୍ଚଶତ ବର୍ଷବ୍ୟାପି ସ୍ୱାଧୀନ ଉତ୍କଳର କାର୍ଯ୍ୟ । କେଶରୀ ରାଜତ୍ୱରେ ଦେଶ ଅଧିକ ବସ୍ତୁତ ନ ଥିଲା । ବର୍ତ୍ତମାନ ଯାହା ଓଡ଼ିଶା ନାମରେ ପରିଚିତ ସେତିକି ପ୍ରାୟ କେଶରୀ ରାଜ୍ୟ ଥିଲା । ସେହି ରାଜ୍ୟଖଣ୍ଡରେ ଶାନ୍ତି ଓ ଧର୍ମର ପୂର୍ଣ୍ଣ ପ୍ରତିଷ୍ଠା ଥିଲା । ଯୁଦ୍ଧ ବିଗ୍ରହର ଅବସର ଏବଂ ସେଥିଯୋଗୁଁ ଦେଶମଧ୍ୟରେ ଶାନ୍ତିଭଙ୍ଗ କେଶରୀରାଜତ୍ୱରେ ପ୍ରାୟ ନ ଥିଲା । ଭାରତର ଅନ୍ୟାନ୍ୟ ରାଜ୍ୟ ସହିତ ଉତ୍କଳର ଅନ୍ତର୍ଜାତୀୟ ରାଷ୍ଟ୍ରୀୟ ସମ୍ବନ୍ଧ ସେତେ ଘନୀଭୂତ ହୋଇ ନ ଥିଲା । ମାତ୍ର ଗଙ୍ଗ ଓ ସୂର୍ଯ୍ୟବଂଶ ରାଜତ୍ୱରେ ସେହି ସମ୍ବନ୍ଧ ଘନୀଭୂତ ହୋଇ ବେଳେ ବେଳେ ଯେପରି ଘୋର ବିକଟ ଆକାର ଧାରଣ କରିଥିଲା, ପୂର୍ବବର୍ତ୍ତୀ ଅଧ୍ୟାୟମାନଙ୍କରେ ତାହା ବର୍ଣ୍ଣିତ ହୋଇଅଛି । ବିଦେଶୀ ଶତ୍ରୁସହ ଯୁଦ୍ଧ ଅଭିଯାନର ଘୋର ବିଭ୍ରାଟ ପ୍ରାୟ ପ୍ରତ୍ୟେକ ରାଜାଙ୍କ ରାଜତ୍ୱରେ ଘଟିଥିଲା । ବିଦେଶରେ ସ୍ୱରାଜ୍ୟ ଅଧିକାର କରି ନିଜ ରାଜ୍ୟ ବୃଦ୍ଧିକରିବା ଏବଂ ବୈଦେଶିକ ପଠାଣମାନଙ୍କର ବାରମ୍ବାର ଆକ୍ରମଣରୁ ଦେଶ ରକ୍ଷାକରିବା ପ୍ରୟାସରେ ଉତ୍କଳ ଇତିହାସର ବିଗତ ଅର୍ଦ୍ଧ ସହସ୍ର ବର୍ଷ ଅତିବାହିତ ହୋଇଥିଲା । ଏହିସବୁ ବୈଦେଶିକ ସଂଘର୍ଷ ସାତ ପ୍ରତିଘାତ ବିଦେଶ ଅଧିକାର ଓ ସ୍ୱଦେଶ ରକ୍ଷାରେ, ଉତ୍କଳର ଜାତୀୟ ଚରିତ୍ର ବିଶେଷ

ବିସ୍ତାରିତ ଓ ସଙ୍କୁଚିତ ହୋଇଥିଲା । ଉତ୍କଳ ଦେଶ ମଧ୍ୟ ଏହାଦ୍ୱାରା ବହୁଦୂର ବିସ୍ତାରିତ ହୋଇଥିଲା । ଉତ୍ତରରେ ହୁଗୁଳୀ ନଦୀଠାରୁ ଦକ୍ଷିଣରେ କୃଷ୍ଣା ନଦୀ ଓ କର୍ଣ୍ଣାଟ ଦେଶ, ଏବଂ ପୂର୍ବରେ ବଙ୍ଗୋପସାଗର କୂଳରୁ ପଶ୍ଚିମରେ ବସ୍ତର, କଳାହାଣ୍ଡି ପ୍ରଭୃତି ରାଜ୍ୟ ନେଇ ଉତ୍କଳ ବ୍ୟାପି ଥିଲା । ଏହି ସୀମା ଉତ୍କଳର ପ୍ରାୟ ସାଧାରଣ ସୀମା ଥିଲା । କୌଣସି କୌଣସି ରାଜାମାନେ ଏହି ସୀମା ଲଙ୍ଘନ କରି ରାଜ୍ୟ ବିସ୍ତାର କରିଥିବାର ବର୍ଣ୍ଣନା କରାଯାଉଛି । ନରସିଂହ ଦେବ କୋଲବର୍ଗ, ବିଦର ଏବଂ ଉତ୍ତରରେ ରାଢ଼ବରେନ୍ଦ୍ର ଦେଶ ଏବଂ କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଦେବ କର୍ଣ୍ଣାଟ ଦେଶ ଜୟ କରି ସେତୁବନ୍ଧ ଓ ପାକ୍ଷାର ଉପସାଗର ପର୍ଯ୍ୟନ୍ତ ଅଗ୍ରସର ହୋଇଥିବାର ଲେଖା ଯାଇଅଛି । ସ୍ଥୂଳତଃ ଖ୍ରୀଷ୍ଟ ଜନ୍ମ ପୂର୍ବରୁ କଳିଙ୍ଗ ସମ୍ରାଟ ଖାରବେଳ ଐରଙ୍କର ବିସ୍ତୃତ ସାମ୍ରାଜ୍ୟ ପରି ଗଙ୍ଗ ଓ ସୂର୍ଯ୍ୟ ବଂଶର ରାଜତ୍ୱ ସମୟରେ ଉତ୍କଳର ବିଜୟ ନିଶାଣ ହିମାଳୟର ପାଦଦେଶରୁ ପାକ୍ଷାର ଉପସାଗର ପର୍ଯ୍ୟନ୍ତ ଭାରତର ସମଗ୍ର ପୂର୍ବାଞ୍ଚଳରେ ଉଡ଼ୁଥିଲା ।

ରାଜ୍ୟ ଶାସନ—ଗଜପତିମାନଙ୍କ ରାଜତ୍ୱ କାଳରେ ରାଜ୍ୟ ଶାସନ ବିଶେଷ ଜଟିଳ ଅଥଚ ଶୃଙ୍ଖଳାଭାବରେ ଚାଲୁଥିଲା । ଏପରି କି ରାଜାମାନେ ଯୁଦ୍ଧ ଅଭିଯାନରେ ଦୂର ବିଦେଶରେ ବହୁକାଳ ଲିପ୍ତ ରହୁଥିଲେ ସୁଦ୍ଧା ଶାସନ ତନ୍ତ୍ରରେ କିଞ୍ଚିନ୍ମାତ୍ର ବ୍ୟତିକ୍ରମ ଘଟି ନଥିଲା । ସ୍ଥୂଳକଥା ଶାସନତନ୍ତ୍ରର ସକଳ ଦାୟିତ୍ୱ ରାଜାମାନଙ୍କ ହସ୍ତରେ କେନ୍ଦ୍ରୀଭୂତ ନ ଥାଇ ପାତ୍ରମନ୍ତ୍ରୀମାନଙ୍କ ହସ୍ତରେ ନ୍ୟସ୍ତ ଥିଲା । ରାଜା ଯଥେଚ୍ଛାଚାରୀ କ୍ଷମତାଭିଳାଷୀ ନଥିଲେ । ରାଜକାର୍ଯ୍ୟ ସାଧାରଣତଃ ୩୬ବିଭାଗରେ ବିଭକ୍ତ ଥିଲା, ଏବଂ ପ୍ରତ୍ୟେକ ବିଭାଗର ସୁଷ୍ଠୁ ଶାସନ ନିମନ୍ତେ ସେହି ବିଭାଗୀୟ ମନ୍ତ୍ରୀମାନେ ଦାୟୀ ଥିଲେ । ସେହି ୩୬ ବିଭାଗର ଶାସନ ପରିଚାଳନା ୧୬ଜଣ ମନ୍ତ୍ରୀ ବା ପାତ୍ରଙ୍କ ଉପରେ ନ୍ୟସ୍ତ ଥିଲା । କାର୍ଯ୍ୟର ଗୁରୁତ୍ୱ ଅନୁସାରେ ଏକ ବା ଏକାଧିକ ବିଭାଗ ଜଣେ ଜଣେ ମନ୍ତ୍ରୀଙ୍କ

ଦାୟୀତ୍ୱରେ ରହିଥିଲା । ସେହି ୧୬ ଜଣ ମନ୍ତ୍ରୀଙ୍କୁ ସାହାଯ୍ୟ କରିବା ନିମନ୍ତେ ୭୨ଜଣ ସହକାରୀ ମନ୍ତ୍ରୀ ନିଯୁକ୍ତ ଥିଲେ, ଅର୍ଥାତ୍ ପ୍ରତ୍ୟେକ ମନ୍ତ୍ରୀ ବା ପାତ୍ରଙ୍କ ଅଧୀନରେ କେତେକ ଜଣ ଲେଖାଏଁ ସହକାରୀ ପାତ୍ର ଥିଲେ । ସେହି ମନ୍ତ୍ରୀମାନଙ୍କର ଯେଉଁ ପରିଷଦ ଥିଲା, ରାଜା ତାହାର ସଭାପତି ମାତ୍ର ଥିଲେ । ପ୍ରତ୍ୟେକ ଶାସନ ବିଭାଗର କାର୍ଯ୍ୟ ଏବଂ ପ୍ରତ୍ୟେକ ମନ୍ତ୍ରୀଙ୍କର କାର୍ଯ୍ୟ ନିୟନ୍ତ୍ରିତ କରିବାର ଅଧିକାର ସେହି ମନ୍ତ୍ରୀପରିଷଦର ଥିଲା । ମନ୍ତ୍ରୀମାନେ ନିଜ ନିଜ ବିଭାଗୀୟ ଶାସନରେ ଯଥେଷ୍ଟ ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ପାଇଥିଲେ । ବର୍ତ୍ତମାନ ଭାରତ ଶାସନର ୯ ବିଭାଗ ଓ ୭ ମନ୍ତ୍ରୀ; ମାତ୍ର ଗଜପତିଙ୍କ ଉତ୍କଳ ଶାସନରେ ୩୬ ବିଭାଗ ଏବଂ ୧୬ ମନ୍ତ୍ରୀ ଓ ୭୨ ସହକାରୀ ମନ୍ତ୍ରୀ ଥିଲେ । ଏଥିରୁ ଉତ୍କଳ ଶାସନର ଜଟିଳତା ଓ ଶୃଙ୍ଖଳା ଅନୁମାନ କରାଯାଏ । ପୁଣି ବର୍ତ୍ତମାନ ଜଣେ କମିସନରଙ୍କ ଶାସନ ବ୍ୟୟ ଚଳାଇବାକୁ ଉତ୍କଳର ରାଜସ୍ୱ ଯଥେଷ୍ଟ ହେଉ ନ ଥିବା ସ୍ଥଳେ, ଗଜପତିଙ୍କ ଉତ୍କଳରେ ଏତେ ଆଡମ୍ବରମୟ ରାଜଦରବାର ଏବଂ ଏତେ ଜଟିଳ ଶାସନ ତନ୍ତ୍ରର ବ୍ୟୟ କିପରି ଚଳୁଥିଲା ତାହା କିଁ ଅଳ୍ପ ଆଶ୍ଚର୍ଯ୍ୟର ବିଷୟ ନୁହେଁ ।

ଶାସନର ସୁବିଧା ଓ ଆବଶ୍ୟକତା ଅନୁସାରେ ଦେଶ ସାଧାରଣତଃ ଦୁଇଭାଗରେ ବିଭକ୍ତ ଥିଲା । ଏକ ଭାଗ ସାମନ୍ତ ରାଜାମାନଙ୍କର ରାଜ୍ୟ, ଅର୍ଥାତ୍ ବର୍ତ୍ତମାନ ଗଡଜାତ ଏବଂ ଅପର ଭାଗ ନିଜେ ଗଜପତିଙ୍କର ରାଜାବର ବା ଖାସ ଦଖଲ ରାଜ୍ୟ, ଅର୍ଥାତ୍ ମୋଗଲବନ୍ଦୀ । ପ୍ରଥମ ଭାଗରେ ଉତ୍କଳର ପଶ୍ଚିମାଞ୍ଚଳବର୍ତ୍ତୀ ପାର୍ବତ୍ୟ ରାଜ୍ୟ ସମୂହ, ଏବଂ ସମୁଦ୍ର କୂଳବର୍ତ୍ତୀ କେତେକ ଅଞ୍ଚଳ ଥିଲା । ସାମନ୍ତ ରାଜାମାନେ ସେହି ସବୁ ରାଜ୍ୟ ଭୋଗ କରୁଥିଲେ । ନିଜ ନିଜ ରାଜ୍ୟ ଶାନ୍ତି ଓ ଶୃଙ୍ଖଳାରେ ଶାସନ କରିବା, ବୈଦେଶିକ ଆକ୍ରମଣରୁ ଦେଶରକ୍ଷା କରିବା, ଏବଂ ଯୁଦ୍ଧବିବାଦବେଳେ ଆବଶ୍ୟକ ମତେ ଗଜପତିମାନଙ୍କୁ ସୈନ୍ୟବଳ ଯୋଗାଇବା ସେହିମାନଙ୍କର କାର୍ଯ୍ୟ ଥିଲା । ସେହି ରାଜାମାନେ ନିଜ ନିଜ ରାଜ୍ୟର ପ୍ରଜା ଓ ଯାଜକମାନଙ୍କ

ମଧ୍ୟରେ ଜମି ବଣ୍ଟନ କରି ଦେଉଥିଲେ । ସେମାନେ ଶାନ୍ତି ସମୟରେ ଜମି ଚାଷବାସ କରୁଥିଲେ, ଏବଂ ଯୁଦ୍ଧ ଉପସ୍ଥିତ ହେଲେ ଅସ୍ତ୍ର ଶସ୍ତ୍ର ଧରି ନିଜ ନିଜ ରାଜାଙ୍କ ଆଦେଶ ମତେ ସମରକ୍ଷେତ୍ରରେ ଦଣ୍ଡାୟମାନ ହେଉଥିଲେ । ଏହି ସବୁ ରାଜ୍ୟର ସାଧାରଣ ଶାସନ ପ୍ରଣାଳୀ ଗଜପତିଙ୍କର ସ୍ୱୀୟ ରାଜ୍ୟ ଶାସନ ଅନୁସାରେ ଚଳନ୍ତ ହେଉଥିଲା ।

ଗଜପତିଙ୍କ ନିଜ ରାଜ୍ୟ ୩୧ ବିଭାଗରେ ବିଭକ୍ତ ଥିଲା । ସେହି ବିଭାଗ ଗୁଡ଼ିକ ଦଣ୍ଡପାଟ ବା ଦେଶ ନାମରେ ପରିଚିତ ଥିଲା । ଦଣ୍ଡପାଟ ଗୁଡ଼ିକ ଜଣେ ଶାସନକର୍ତ୍ତା ବା ଦେଶପତି ବା ଦେଶପାଣ୍ଡ୍ୟାଙ୍କ ଅଧୀନରେ ଥିଲା । ନିଜ ନିଜ ଦଣ୍ଡପାଟରେ ଶାନ୍ତି ଶୃଙ୍ଖଳାରେ ଶାସନ କରିବା ନିମନ୍ତେ ସେମାନେ ଦାୟୀ ଥିଲେ । ପ୍ରତ୍ୟେକ ଦଣ୍ଡପାଟ ପୁଣି କେତେ ଗୁଡ଼ିଏ 'ବିଷି' ବା 'ଖଣ୍ଡ'ରେ ବିଭକ୍ତ ଥିଲା । ପ୍ରତ୍ୟେକ 'ଖଣ୍ଡ' ବା 'ବିଷି'ରେ ସାଧାରଣତଃ ୩ ଜଣ କର୍ମଚାରୀ ଥିଲେ । ଜଣେ ଥିଲେ 'ବିଷୟୀ' ବା 'ବିଶୋୟୀ' ବା 'ଖଣ୍ଡପତି' ବା 'ଖଣ୍ଡାଧିପତି' । ଖଣ୍ଡର ସାଧାରଣ ଶାସନ କାର୍ଯ୍ୟ, ଏବଂ ଶାନ୍ତିରକ୍ଷା ଓ ରାଜସ୍ୱ ଆଦାୟ ଭାର ଖଣ୍ଡପତିଙ୍କ ଉପରେ ନ୍ୟସ୍ତ ଥିଲା । ସେଥିପାଇଁ ତାହାଙ୍କର ଅନ୍ୟ ୨ ଜଣ ସହକାରୀ ଥିଲେ । ଜଣେ 'ଖଣ୍ଡାୟତ', ତାହାଙ୍କ ଅଧୀନରେ ଖଣ୍ଡର ସକଳ ପାଇକ ଓ କଟୁଆଳ ଦଳ ଥିଲେ; ଶାନ୍ତିରକ୍ଷା ଓ ଯୁଦ୍ଧ ବିଦ୍ୟାରେ ପାଇକମାନଙ୍କୁ ଧୁରୀଣ କରାଇବା ତାହାଙ୍କର ପ୍ରଧାନ କାର୍ଯ୍ୟ ଥିଲା । ଖଣ୍ଡପତିଙ୍କ ଅପର ସହକାରୀ 'ଭୋଇମୂଳ'। ଖଣ୍ଡର ରାଜସ୍ୱ-ସଂକ୍ରାନ୍ତ ସକଳଭାର ତାହାଙ୍କ ଉପରେ ନ୍ୟସ୍ତ ଥିଲା । ସେ ଖଣ୍ଡ ମଧ୍ୟରୁ ରାଜସ୍ୱ ଅଦାୟ କରି ରାଜକୋଷକୁ ପଠାଉଥିଲେ; ଖଣ୍ଡ ମଧ୍ୟରେ ଜମିବାଡ଼ିର ଉତ୍ପନ୍ନ ଶସ୍ୟର ପରିମାଣ ନିରୂପଣ କରି ତଦନୁସାରେ ବାର୍ଷିକ କର ଧାର୍ଯ୍ୟ କରୁଥିଲେ, ଏବଂ ପ୍ରତ୍ୟେକ ଜମିର ବିବରଣ ଲେଖି ରଖୁଥିଲେ । ଦେଶର ଶାସନ ତନ୍ତ୍ରରେ ଭୋଇମୂଳମାନେ ରାଜସ୍ୱ ସଂକ୍ରାନ୍ତରେ ପ୍ରକୃତ ଦାୟୀ କର୍ମଚାରୀ ଥିଲେ ।

ପ୍ରତ୍ୟେକ ବିଷି ବା ଖଣ୍ଡ ପୁଣି ବହୁ ସଂଖ୍ୟକ ଗ୍ରାମ ବା ଜନପଦ ସମଷ୍ଟିରେ ଗଢ଼ା ହୋଇଥିଲା । ଗ୍ରାମ ଗୁଡ଼ିକ ସମଗ୍ର ଦେଶର ଶାସନ ତନ୍ତ୍ରର ମୂଳ ପତ୍ତନ ସ୍ୱରୂପ ଥିଲା । ରାଜ୍ୟ ଶାସନର ସକଳ କାର୍ଯ ଗ୍ରାମ ମଧ୍ୟରେ ଥିଲା । ଶିକ୍ଷା, ସ୍ୱାସ୍ଥ୍ୟ, ଶାନ୍ତି ଶୃଙ୍ଖଳା ସ୍ଥାପନ, ବିବାଦ ମେଣ୍ଟାଣ ଏବଂ ଗ୍ରାମବାସିଙ୍କର ଆର୍ଥିକ ନୈତିକ ଅବ ସର୍ବବିଧ ଉନ୍ନତି ବିଧାନ ନିମନ୍ତେ ଗ୍ରାମବାସିମାନେ ଦାୟୀ ଥିଲେ । ଗ୍ରାମମାନଙ୍କରେ ଜାନପଦ ନାମରେ ଏକ ଗ୍ରାମପଞ୍ଚ ବା ସଭା ଥିଲା । ସେଥିରେ ଗ୍ରାମ-ବୃଦ୍ଧଜନମାନେ ବସି ଗ୍ରାମଗତ ସକଳ ବିଷୟ ଜବାବ କରୁଥିଲେ । 'ପ୍ରଧାନ' ବା 'ଦଳବେହେରା' ସେହି ଗ୍ରାମପଞ୍ଚର ସଭାପତି ଥିଲେ । ବିଷିର ଅନୁକରଣରେ ଗ୍ରାମ ଶାସନ ଗଠିତ ଥିଲା । ଖଣ୍ଡପତି ସ୍ଥଳରେ ପ୍ରଧାନ ବା ଦଳବେହେରା; ଖଣ୍ଡାୟତ ସ୍ଥଳରେ ଗ୍ରାମ କଣ୍ଟିଆଳ ବା ପାଇକ; ଏବଂ ଭୋଇମୂଳ ସ୍ଥଳରେ 'ଭୋଇ' ଗ୍ରାମ ଶାସନର ପ୍ରତିନିଧି ଥିଲେ । ସାଧାରଣ ଶାସନ ପ୍ରଧାନଙ୍କ ହସ୍ତରେ ଥିଲା ; ପାଇକ ଶାନ୍ତିରକ୍ଷା ନିମନ୍ତେ ନିଯୁକ୍ତ ଥିଲେ ; ଏବଂ ରାଜସ୍ୱ ଆଦାୟ ଗ୍ରାମର ପ୍ରତ୍ୟେକ କୃଷିଙ୍କର ଜମିର ଉତ୍ପାଦିକା ଶକ୍ତି ନିରୂପଣ କରି ତଦନୁସାରେ କର ଧାର୍ଯ କରିବା ଭୋଇଙ୍କର ପ୍ରଧାନ କାର୍ଯ ଥିଲା । ଭୋଇମୂଳ ଖଣ୍ଡ ମଧ୍ୟରେ ଗ୍ରାମମାନଙ୍କ ଉପରେ ଏକତ୍ରରେ ଯେଉଁ କର ଧାର୍ଯ୍ୟ କରୁଥିଲେ, ଭୋଇମାନେ ଜମିର ଭଲ ମନ୍ଦ ଦେଖି ଗ୍ରାମମଧ୍ୟରେ ପ୍ରତି ଜମି ଉପରେ ତାହା ବଣ୍ଟନ କରି, ଉତ୍ପନ୍ନ ଶସ୍ୟରୁ ଶସ୍ୟ ଆକାରରେ ବା ନଗଦ ରୂପରେ କର ଆଦାୟ କରୁଥିଲେ । ସଂଗୃହୀତ କର ଭୋଇ ନେଇ ଭୋଇମୂଳଙ୍କଠାରେ ଅଦାୟ ଦେଉଥିଲେ । ଗ୍ରାମ ଶାସନରେ ପୂର୍ଣ୍ଣସ୍ୱାତନ୍ତ୍ର୍ୟ ବା ସ୍ୱାଧୀନତା ରହିଥିଲା । ଗ୍ରାମର ସକଳ କର୍ମଚାରିମାନେ ବେତନ ବା ହେତା ରୂପରେ ଜମି ଭୋଗ କରୁଥିଲେ । ରାଜସ୍ୱ ଅଦାୟ ଦେଉଥିବା ପର୍ଯ୍ୟନ୍ତ ଏବଂ ଖଣ୍ଡ ବା ଦେଶର ସାଧାରଣ ଶାସନର ପ୍ରତିକୂଳ ନ ହେଉଥିବା ପର୍ଯନ୍ତ ଗ୍ରାମ ଶାସନର ସ୍ୱାତନ୍ତ୍ର୍ୟ ଉପରେ କେହି ହସ୍ତକ୍ଷେପ କରୁ ନ ଥିଲେ । ଗ୍ରାମପତି ଗ୍ରାମ ଶାସନ ନିମନ୍ତେ

ଗ୍ରାମବାସିଙ୍କଠାରେ ଦାୟୀ, ଏବଂ ପୁଣି ଗଣ୍ତପତିଙ୍କଠାରେ ମଧ୍ୟ ଦାୟୀ ଥିଲେ । ଗ୍ରାମରେ ସେ ରାଜାଙ୍କର ପ୍ରତିନିଧି ; ସୁତରାଂ ଗ୍ରାମ ମଧ୍ୟରେ ତାହାଙ୍କ କ୍ଷମତା ବିଶେଷ ଥିଲା । ସ୍ଥାନେ ସ୍ଥାନେ ବଂଶାନୁକ୍ରମେ ଦଳବେହେରା ହେଉଥିବାର ଦେଖାଯାଏ । ମାତ୍ର ଏହି ପଦ ବଂଶାନୁଗତ ହେବା ପୂର୍ବରୁ ସେ ଗ୍ରାମବାସିଙ୍କ ଦ୍ୱାରା ନିର୍ବାଚିତ ହୋଇ ରାଜ ଦରବାରରେ ମନୋନୀତ ହେଉଥିଲେ ।

ଶାସନ ତନ୍ତ୍ରରେ ସକଳ କର୍ମଚାରୀମାନେ ବେତନ ପରିବର୍ତ୍ତେ ତାଙ୍କର କାର୍ଯ୍ୟର ଗୁରୁତ୍ୱ ଏବଂ ପଦମର୍ଯ୍ୟାଦା ଅନୁସାରେ ଜମି ଜାଗିର ବା ବେତନ ସ୍ୱରୂପ ଭୋଗ କରୁଥିଲେ । ରାଜାର ପ୍ରଧାନ ରାଜମନ୍ତ୍ରୀ ବା 'ମହାପାତ୍ର'ଙ୍କ ଠାରୁ ଆରମ୍ଭ କରି ଗ୍ରାମର ସାଧାରଣ ଚୌକିଦାର ପର୍ଯ୍ୟନ୍ତ ସକଳ କର୍ମଚାରୀମାନେ ବେତନ ଜମିର ଭାବରେ ଭୋଗ କରୁଥିଲେ । ଏମାନଙ୍କ ଛଡ଼ା, ବ୍ରାହ୍ମଣ, ସାମନ୍ତ ରାଜା, ଦେବଦେବୀ, ସୈନ୍ୟ ସାମନ୍ତ ବହୁତ ଜମି ଜମିର ଭୋଗ ଦଖଲ କରୁଥିଲେ । ଅନଙ୍ଗଭୀମ ଦେବଙ୍କ ରାଜସ୍ୱ ବନ୍ଦୋବସ୍ତ ସଂପର୍କରେ କୁହାଯାଇଛି ରାଜକାର୍ଯ୍ୟ ପରିଚାଳନା ନିମନ୍ତେ ୨୪୩୦,୦୦୦ ବାଟୀ ଉପରେ କର ଧାର୍ଯ୍ୟ କରାଯାଇ, ବାକି ୨୩୯୮୦୦୦ ବାଟୀ ଜମିର ଭାବରେ ରାଜକର୍ମଚାରୀ, ବ୍ରାହ୍ମଣ ପ୍ରଭୃତିଙ୍କୁ ଦାନ କରାଯାଇ ଥିଲା ।

ସାମରିକ ଶାସନ — ବିଗତ ପଞ୍ଚଶତ ବର୍ଷକାଳ ସ୍ୱାଧୀନତା କ୍ରମାଗତ ଲାଗିରହି ଥିବାରୁ ଦେଶରେ ସୈନ୍ୟ ସାମନ୍ତ ବହୁତ ରଖାଯାଇ ଥିଲେ । ପୂର୍ବେ ଅନଙ୍ଗଭୀମଦେବଙ୍କ ରାଜତ୍ୱର ସୈନ୍ୟ ସଂଗଠନର ପରିଚୟ ଦିଆ ଯାଇଛି । ତହିଁରୁ ଦେଖାଯାଏ ଦେଶର ସର୍ବତ୍ର ଗ୍ରାମେ ଗ୍ରାମେ ସୈନ୍ୟମାନେ ଯୁଦ୍ଧ ଶିକ୍ଷା କରୁଥିଲେ । ସାମରିକ ଆବଶ୍ୟକତା ଅନୁସାରେ ଦେଶରେ ସ୍ଥାନେ ସ୍ଥାନେ ବହୁତ ଦୁର୍ଭେଦ୍ୟ ଦୁର୍ଗ ବା କିଲ୍ଲା ଥିଲା ; ସେଥି

ଦଣ୍ଡଦାରମାନଙ୍କ ଅଧୀନରେ ପାଇକମାନେ ଯୁଦ୍ଧ ଶିକ୍ଷା କରି ଶାନ୍ତିବେଳେ ଗୃହ ବାସ, ଏବଂ ଯୁଦ୍ଧବେଳେ ହାତ ହତିଆର ଧରି ଯୁଦ୍ଧ ବେଶରେ ଉପସ୍ଥିତ ହେଉଥିଲେ ।

ପୂର୍ବେ କୁହାଯାଇଛି ଓଡ୍ରମାନେ ଗଙ୍ଗବଂଶର ସୈନ୍ୟ ଶ୍ରେଣୀଭୁକ୍ତ ଥିଲେ । ଗଙ୍ଗମାନେ ଉତ୍କଳରେ ରାଜ୍ୟପଣ କରିବା ସଙ୍ଗେ ଓଡ୍ର ପାଇକମାନେ କ୍ରମେ ଉତ୍କଳକୁ ଆସି ଜମି ଜାୟଗିର ପାଇ ବାସକଲେ । ମୁସଲମାନମାନେ ସେହି ଓଡ୍ରସୈନ୍ୟଙ୍କ ସଙ୍ଗେ ଯୁଦ୍ଧ କରୁଥିବାରୁ ପରେ ଉତ୍କଳକୁ ସେମାନେ ଓଡିଶା ଏବଂ ଉତ୍କଳବାସୀଙ୍କୁ 'ଓଡିଆ' ବୋଲି କହିଲେ ।

ଶାସନର ଏହି ସବୁ ବିରାଟ ସଂଗଠନ, ଏତେ ଭାଗ ବିଭାଗ ଓ ଉପବିଭାଗ ବିଶେଷ ବ୍ୟୟ ସଙ୍କୋଚରେ ନିର୍ବାହିତ ହେଉଥିଲା । ଦେଶ ମଧ୍ୟରୁ ବହୁତ ଅଂଶ ନିଷ୍କର ଜାଗିରରେ ଯାଇ ଅବଶିଷ୍ଟ ଅଂଶରୁ ଯେଉଁ କର ଆଦାୟ ହେଉଥିଲା, ତହିଁରୁ ସମ୍ବାଦ ବ୍ୟୟ ଯାଇ ରାଜକୋଷରେ ବହୁତ ଅର୍ଥ ସଞ୍ଚିତ ରହୁଥିଲା । ନିଜେ ଅନଙ୍ଗଭୀମ ଦେବ ବାରବର୍ଷ ରାଜତ୍ୱ ପରେ ରାଜକୋଷରେ ୪୭ ଲକ୍ଷ ୯୮ ହଜାର ମାଢ ସୁନା ସଞ୍ଚୟ କରିଥିଲେ । ତହିଁରୁ ୧ ଲକ୍ଷ ୯୮ ହଜାର ମାଢ଼ସ୍ୱର୍ଣ୍ଣ ସେ ପୁରୀ ମନ୍ଦିରରେ ବ୍ୟୟ କରିଥିଲେ । ତାହାଙ୍କର ପୁତ୍ର ନରସିଂହଦେବ ବିରାଟ ଯୁଦ୍ଧ ଅଭିଯାନ ମଧ୍ୟରେ ଦେଶର ୧୨ବର୍ଷର ରାଜସ୍ୱ କୋଣାର୍କ ମନ୍ଦିରରେ ବ୍ୟୟ କରିବାକୁ ସମର୍ଥ ହୋଇଥିଲେ । ଏଥିରୁ ଶାସନର ବ୍ୟୟ ସଙ୍କୋଚ ସଙ୍ଗେ ଦେଶବାସିଙ୍କ ସଚ୍ଛଳ ଆର୍ଥିକ ଅବସ୍ଥାର ଯଥେଷ୍ଟ ପରିଚୟ ମିଳେ ।

ଦେଶବାସିଙ୍କ ଅବସ୍ଥା – ଗଙ୍ଗ ଏବଂ ସୂର୍ଯ୍ୟବଂଶୀୟ ରାଜାମାନେ ଯୁଦ୍ଧରେ ଏତେ ଲିପ୍ତ ଥିଲେ ସୁଦ୍ଧା ଦେଶବାସୀ ସାଧାରଣତଃ ଘର ଶାନ୍ତିରେ କାଳ କଟାଉଥିଲେ । ମୁସଲମାନମାନେ ଗତ ସାଢେ ଛଅଶହ ବର୍ଷ ଧରି

ବାରମ୍ବାର ଉତ୍କଳ ଆକ୍ରମଣ କରିଥିଲେ । ତଥାପି ଦେଶର ସାଧାରଣ ଶାନ୍ତିରେ ବ୍ୟତିକ୍ରମ ଘଟି ନ ଥିଲା । ଏହାର ପ୍ରଧାନ କାରଣ ଗ୍ରାମଶାସନର ସ୍ୱତନ୍ତ୍ର ଶାସନ ତନ୍ତ୍ର । ଗ୍ରାମମାନ ଶାସନ ସମ୍ବନ୍ଧରେ ସ୍ୱତନ୍ତ୍ର ଏବଂ ସ୍ୱାଧୀନ ଥିବାରୁ କେବଳ ସୈନ୍ୟ ଯୋଗାଇବା ବ୍ୟତୀତ ଯୁଦ୍ଧର ଅନ୍ୟ କୌଣସି ବାଧା ଭୋଗ କରୁ ନ ଥିଲା । କୌଣସି ଗ୍ରାମ ବା ଦେଶର କୌଣସି ଅଂଶ ବୈଦେଶିକ ଆକ୍ରମଣରେ ପୀଡ଼ିତ ହେଉଥିଲେ, ଦେଶର ଅନ୍ୟାନ୍ୟ ଅଂଶ ସେ ବାଧାରୁ ମୁକ୍ତ ରହି ଶାନ୍ତିରେ ରହୁଥିଲା । ଏହାର ଅନ୍ୟ କାରଣ ଗ୍ରାମ-ଜୀବନର ଆର୍ଥିକ ବା ବୈଷୟିକ ସ୍ୱାତନ୍ତ୍ର୍ୟ । ଗ୍ରାମ-ଜୀବନର ଯାବତୀୟ ଅଭାବ ଗ୍ରାମବାସିଙ୍କ ଉତ୍ପନ୍ନ ପଦାର୍ଥରେ ପୂରଣ ହେଉଥିଲା । ସେଥି ନିମନ୍ତେ ଏକ ଗ୍ରାମ ଅନ୍ୟ ଗ୍ରାମ ବା ଦୂର ବିଦେଶର ଉତ୍ପନ୍ନ ପଦାର୍ଥ ଉପରେ ନିର୍ଭର କରୁ ନ ଥିଲା । ସୁତରାଂ ଯୁଦ୍ଧ ବିଗ୍ରହାଦି ଦ୍ୱାରା ଆର୍ଥିକ କ୍ଳେଶ ଗ୍ରାମବାସୀ ଭୋଗ ନ କରି ଶାନ୍ତିରେ ଜୀବନ ନିର୍ବାହ କରୁଥିଲେ ।

•

ଶାନ୍ତିର ସହିତର ଶିଳ୍ପ, ସାହିତ୍ୟ ଦେଶମଧ୍ୟରେ ଉତ୍ତରୋତ୍ତର ଉନ୍ନତି କରୁଥିଲା । ଶିଳ୍ପକଳାର ସର୍ବୋତ୍କୃଷ୍ଟ ନିଦର୍ଶନ କୋଣାର୍କ ଏହି ଯୁଗର କୀର୍ତ୍ତି । ପୁରୀର ବିରାଟ ମନ୍ଦିର, ଯାଜପୁରର ବିରଜାନାଥଙ୍କ ମନ୍ଦିର ଓ ଦେଶ ମଧ୍ୟରେ ଅନ୍ୟାନ୍ୟ ଦେବଦେବୀ ମନ୍ଦିର ନିର୍ମାଣ ନିମନ୍ତେ ଗଙ୍ଗ ଓ ସୂର୍ଯ୍ୟବଂଶ ଉତ୍କଳ ଇତିହାସରେ ପ୍ରସିଦ୍ଧ ହୋଇଛନ୍ତି । ସେହିସବୁ ମନ୍ଦିର ଦେଶର ଆର୍ଥିକ ଅବସ୍ଥା ସଚ୍ଛଳ ଥିବାର ଜଣାଇ ଦିଏ । ମନ୍ଦିର ନିର୍ମାଣ ବ୍ୟତୀତ ରାଜାମାନେ କୂଅ ପୋଖରୀ ଖୋଳାଇବା, ସେତୁ ବାନ୍ଧିବା, ଘାଟ ନିର୍ମାଣ କରାଇବା ପ୍ରଭୃତି ନାନା ସାଧାରଣ ହିତକର କାର୍ଯ୍ୟରେ ଦେଶର ଉଦ୍‌ବୃତ୍ତ ରାଜସ୍ୱ ବ୍ୟୟ କରୁଥିଲେ । ଦେଶର ନାନା ଶ୍ରେଣୀର ବ୍ୟବସାୟୀମାନେ ସେହି ସବୁ କାର୍ଯ୍ୟ ଦ୍ୱାରା ବିଶେଷ ଲାଭବାନ ହେଉଥିଲେ । ସୁତରାଂ ଦେଶବାସୀ ବିଶେଷ ସୁଖ ସ୍ୱାଚ୍ଛନ୍ଦ୍ୟ ଭୋଗ କରୁଥିଲେ ।

ଖାଦ୍ୟଦ୍ରବ୍ୟ ଦେଶରେ ବିଶେଷ ପ୍ରଚୁର ଥିଲା । ଶସ୍ୟ ଓ ଫଳ ମୂଳ ପ୍ରଚୁର ଉତ୍ପନ୍ନ ହେଉଥିଲା । କଉଡ଼ି ସାଧାରଣ ମୁଦ୍ରାରୂପେ ପ୍ରଚଳିତ ଥିଲା । ୪ କାହାଣ କଉଡ଼ି ବର୍ତ୍ତମାନ ଟଙ୍କାରେ ଏକ ଟଙ୍କା ସଙ୍ଗେ ସମାନ ଥିଲା; ଅର୍ଥାତ୍ ଏକ ପଇସାକୁ ଏକପଣ କଉଡ଼ି ଥିଲା । ଗୁଡ଼ୁଲ କଟକୀ ୧ ସେରର ମୂଲ୍ୟ ୧୦ କଡ଼ା କଉଡ଼ି ଏବଂ ଚୂନା ୧ ସେରକୁ ୧ ପଣ ୧୦ ଗଣ୍ଡା କଉଡ଼ି ଥିଲା । ଜଣେ ମୁସଲମାନ ଲେଖକ ଲେଖିଛନ୍ତି ଯେ ଘୋଡ଼ା ଗାଈଗୋରୁ ଦେଶରେ ଏତେ ଥିଲେ ଯେ ପ୍ରତିଘୋଡ଼ାର ମୂଲ୍ୟ ୨ କହାଲ ଏବଂ ଗାଈଗୋରୁ କେହି ମୂଲ୍ୟ ଦେଇ କିଣୁ ନ ଥିଲେ । ଲୋକେ ଜୀବନର ଆବଶ୍ୟକୀୟ ସକଳ ଜିନିଷ ପ୍ରାୟ ବିନାମୂଲ୍ୟରେ ପାଉଥିଲେ । ଖାଦ୍ୟପେୟର ଏତେ ପ୍ରଚୁରତା ସତ୍ତ୍ୱେ ବେଳେ ବେଳେ ଦୁର୍ଭିକ୍ଷ ଦେଶରେ ପଡ଼ୁଥିଲା । କପିଳେନ୍ଦ୍ର ଦେବଙ୍କ ରାଜତ୍ୱରେ ଦୁଇଥର ଦୁର୍ଭିକ୍ଷ ହୋଇଥିଲା । ତହିଁରେ ଧାନ ଭରଣକୁ ୧୦॥ କାହାଣ କଉଡ଼ି ହୋଇଥିଲା । ପ୍ରତାପରୁଦ୍ର ଦେବଙ୍କ ବେଳେ ଦୁର୍ଭିକ୍ଷ ପଡ଼ି ଧାନ ଭରଣକୁ ୧୨॥ କାହାଣ କଉଡ଼ି ହୋଇଥିଲା । ମାତ୍ର ସେହିଭଳି ଦୁର୍ଭିକ୍ଷ ବଡ଼ କ୍ୱଚିତ୍ ହେଉଥିଲା, ଏବଂ ହେଲେ ମଧ୍ୟ ଅନ୍ୟାନ୍ୟ ଜୀବିକା ଅର୍ଜନରେ ଲୋକେ ଦୁର୍ଭିକ୍ଷ କଷ୍ଟ ସେତେ ଭୋଗ କରୁ ନ ଥିଲେ ।

ଶିଳ୍ପ ବ୍ୟବସାୟ—ଦେଶ ସମୃଦ୍ଧିର ପ୍ରଧାନ ସହାୟ ଶିଳ୍ପ ବ୍ୟବସାୟ । କେଶରୀ ରାଜତ୍ୱ ଏବଂ ତାହା ପୂର୍ବରୁ ଉତ୍କଳର ଯେଉଁ ଶିଳ୍ପ ବାଣିଜ୍ୟର ପରିଚୟ ଦିଆ ଯାଇଛି; ଗଙ୍ଗ ଓ ସୂର୍ଯ୍ୟବଂଶ ରାଜତ୍ୱରେ ସେ ସବୁ ଉତ୍ତରୋତ୍ତର ଉନ୍ନତି କରିଥିଲା । ବାସ୍ତବିକ ଏହି ସମୟରେ ଶିଳ୍ପ ବାଣିଜ୍ୟ ଉତ୍କଳରେ ଚୂଡ଼ାନ୍ତ ଅବସ୍ଥାରେ ପହଞ୍ଚିଥିଲା । ଲୁହା ଓ ପଥରର କାରଖାନାମାନ ଦେଶର ନାନା ସ୍ଥାନରେ ଥିଲା ; ଏବଂ ସେଥିରୁ ଉତ୍ପନ୍ନ ପଦାର୍ଥମାନ ଦେଶ ବିଦେଶର ବିପଣୀରେ ବିକ୍ରି ହେଉଥିଲା । କେଶରୀ ରାଜତ୍ୱରେ ଭୁବନେଶ୍ୱରର ଯେଉଁ ଲୁହା କଡ଼ିମାନ ନିର୍ମିତ ହେଉଥିଲା, ଗଙ୍ଗବଂଶ ରାଜତ୍ୱରେ

ତାହା ଅପେକ୍ଷା ଅଧିକ ଆଶ୍ଚର୍ଯ୍ୟଜନକ କଡ଼ମାନ ଉତ୍କଳର ଭଗ୍ନମାନଙ୍କରୁ ବାହାରୁ ଥିଲା । କୋଣାର୍କରେ ବର୍ତ୍ତମାନ ଯେଉଁ ଲୁହା କଡ଼ମାନ ପଡ଼ିଛି; ସେଥି ମଧ୍ୟରୁ ଗୋଟିଏ ଗୋଟିଏ କଡ଼ ଲମ୍ବାରେ ୩୫ ଫୁଟ ୯ ଇଞ୍ଚ; ଏବଂ ଉଚ୍ଚତା ଓ ବେଧରେ ଯଥାକ୍ରମେ ୧୦ ଓ ୮ ଇଞ୍ଚ । ଏତେ ବୃହତ୍ ଲୌହ କଡ଼ ଅତି ଅଳ୍ପକାଳ ପୂର୍ବେ ଇଉରୋପ ଓ ଆମେରିକାର କାରଖାନାମାନଙ୍କରେ ପ୍ରସ୍ତୁତ ହୋଇ ପାରୁ ନ ଥିଲା । ଉତ୍କଳୀୟ ଶିଳ୍ପୀମାନେ କିପ୍ରକାରରେ ଏପରି ଅଚଳ କଡ଼ିମାନ ପ୍ରସ୍ତୁତ କରୁଥିଲେ, ତାହା ବଡ଼ ଆଶ୍ଚର୍ଯ୍ୟଜନକ କଥା । ମାତ୍ର ଗଙ୍ଗବଂଶ ରାଜତ୍ୱ କାଳରେ, ଏହା ଉତ୍କଳର ସାଧାରଣ ବସ୍ତୁ ଥିଲା * । ଲୁହାଖଣି ଏ ଦେଶରେ ଥିଲା, ଏବଂ ବର୍ତ୍ତମାନ ମଧ୍ୟ ଲୁହା ଓ ପଥର କୋଇଲା ଖଣିମାନଙ୍କରୁ ବାହାରୁଛି । ଯେଉଁ କାରଖାନାମାନଙ୍କରୁ କୋଣାର୍କର କଡ଼ ପରି ବିରାଟ କଡ଼ମାନ ପ୍ରସ୍ତୁତ ହେଉଥିଲା, ତହିଁରେ କ୍ଷୁଦ୍ର ଓ ବୃହତ୍ ଲୁହାର କେତେ କେତେ ଯେ କାମ ହେଉଥିଲା, ସନ୍ଦେହ ନାହିଁ । ବର୍ତ୍ତମାନ ଓଡ଼ିଶାରେ ସ୍ଥାନେ ସ୍ଥାନେ ଲୁହାର ଯେଉଁ କ୍ଷୁଦ୍ର କ୍ଷୁଦ୍ର କାମ ହେଉଅଛି ତାହା ବିରାଟ ଲୌହ କାରଖାନାମାନଙ୍କର ନିର୍ଜୀବ ସ୍ମାରକ ବୋଲିବାକୁ ହେବ ।

ଲୁଗା ପୂର୍ବପରି ଉତ୍କଳର ପ୍ରଧାନ ଶିଳ୍ପଜାତ ପଣ୍ୟ ଥିଲା, ଏବଂ ବୈଦେଶିକ ବଣିକମାନଙ୍କ ପ୍ରଚୁର ପରିମାଣରେ ରପ୍ତାନି ହେଉଥିଲା । ଏପରି କି ଉତ୍କଳବାସୀ ସ୍ୱାଧୀନତା ହରାଇବାର ୧୦୦ ବର୍ଷ ପରେ ମଧ୍ୟ ଇଂରେଜ, ଫରାସୀ, ଡଚ, ଦିନାମାର ପ୍ରଭୃତି ଇଉରୋପୀୟ ବଣିକମାନେ ଉତ୍କଳର ବସ୍ତ୍ର ବାଣିଜ୍ୟ ନିମନ୍ତେ ଭାରତର ପୂର୍ବ ଉପକୂଳରେ ପ୍ରଥମେ ଉତ୍କଳରେ ବାଣିଜ୍ୟ କୋଠି ସ୍ଥାପନ କରିଥିଲେ । ରାଜା ପ୍ରତାପରୁଦ୍ରଙ୍କ ଶାସନ କାଳରେ ପର୍ତ୍ତୁଗିଜ ବଣିକମାନେ ଏହି ବାଣିଜ୍ୟ ଲୋଭରେ ପିପିଲି ଦୁର୍ଗସ୍ଥ ବନ୍ଦରରେ ବାଣିଜ୍ୟ ଚଳାଉ ଥିଲେ ।

* । ଲେଖକଙ୍କ 'କୋଣାର୍କ' ପୃ ୩୧୩ ।-୩୧୫ ରେ ଉତ୍କଳର ଲୌହ କାରୁକ ବର୍ଣ୍ଣନା କରାଯାଇଛି ।

ଅନ୍ୟାନ୍ୟ ଧାତୁର ଖଣି ମଧ୍ୟରେ ସମ୍ବଲପୁରର ହୀରାଖଣି ମଧ୍ୟ ପ୍ରାଚୀନ ଅବସ୍ଥାରେ ଥିଲା ଏବଂ ହୀରାର ପ୍ରଚୁର କାରବାର ହେଉଥିଲା । ଏପରିକି ଉତ୍କଳ ସ୍ୱାଧୀନତା ହରାଇବାର ଦୁଇଶତାଧିକ ବର୍ଷ ପରେ ହିଁ, ମୋଟ୍ ନାମକ ଜଣେ ଇଂରେଜବଣିକ ସୁଦୂର କଲିକତାରୁ କଟକ ଓ ମହାନଦୀ ବାଟେ ସମ୍ବଲପୁର ଯାଇଥିଲେ । ହୀରା ବ୍ୟବସାୟୀମାନଙ୍କ ସଙ୍ଗେ ଇଂରେଜ ବଣିକମାନଙ୍କର ସାକ୍ଷାତ କାରବାର ସ୍ଥାପନ କରିବା ମୋଟ୍‌ଙ୍କ ସମ୍ବଲପୁର ଯିବାର ଏକମାତ୍ର ଲକ୍ଷ୍ୟ ଥିଲା । ଗଙ୍ଗ ରାଜତ୍ୱକାଳରେ ସେହି ହୀରା ବାଣିଜ୍ୟ ଅବଶ୍ୟ ଅଧିକ ଉନ୍ନତ ଅବସ୍ଥାରେ ଥିଲା । ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ଗ୍ରୀକ ଲେଖକ ଟୋଲେମୀ ସମ୍ବଲପୁରରେ ହୀରାର ପ୍ରାଚୁର୍ଯ୍ୟ ସମ୍ବନ୍ଧରେ ଯେଉଁ ସାକ୍ଷ୍ୟ ଦେଇଥିଲେ ଖ୍ରୀଷ୍ଟ ଷୋଡଶ ଓ ସପ୍ତଦଶ ଶତାବ୍ଦିରେ ଫରାସୀ ପର୍ଯ୍ୟଟକ ଟାଭର୍ଣ୍ଣିଅର ମଧ୍ୟ ତାହାର ଅଧିକ ପ୍ରଶଂସା କରିଥିଲେ । ଟାଭର୍ଣ୍ଣିଅର ଲେଖିଛନ୍ତି, " ସମ୍ବଲପୁରରେ ହୀରା ପ୍ରଚୁର ମିଳେ । ଭାରତ ମଧ୍ୟରେ ସର୍ବାପେକ୍ଷା ପ୍ରାଚୀନତମ ହୀରାଖଣି ସମ୍ବଲପୁରରେହିଁ ଅଛି । ହୀରାର ଆକାର ମଧ୍ୟ କ୍ଷୁଦ୍ର ନ ଥିଲା । ସମ୍ବଲପୁରର ହୀରା କାରବାର ବନ୍ଦ ହେବାର ଅବ୍ୟବହିତ ପୂର୍ବେ ଇଂରେଜ ଅଧିକାରର ପ୍ରଥମାବସ୍ଥାରେ ଯେଉଁ ହୀରାମାନ ସମ୍ବଲପୁରରୁ ମିଳୁଥିଲା, ତହିଁରୁ ଖଣ୍ଡିଏ ଖଣ୍ଡିଏ ହୀରା ୨୭୨ ଗ୍ରେନ୍ ବା ଅନ୍ୟୂନ ତୋଳା ଓଜନର ଥିଲା । ଏହା ହୀରା ବ୍ୟବସାୟର ଅନ୍ତିମ ଅବସ୍ଥା । ଏହାର ତିନି ଚାରି ଶତ ବର୍ଷ ପୂର୍ବେ ସମ୍ବଲପୁରର ହୀରା ବ୍ୟବସାୟର ଉନ୍ନତ ଅବସ୍ଥା ସମ୍ବନ୍ଧରେ ଅନୁମେୟ । ମଧ୍ୟପ୍ରଦେଶ ଓ ଉତ୍କଳ ବାଣିଜ୍ୟର ସମ୍ବଲପୁର କେନ୍ଦ୍ରସ୍ଥଳ ଥିଲା । ଉତ୍କଳ ବଣିକମାନେ ଲୁଣ, ନଡ଼ିଆ, ତୁଳା, ଲୁଗା, ମସଲା, ପିତଳକଂସାମାନ ମହାନଦୀ ବକ୍ଷରେ ସମ୍ବଲପୁର ନେଇ ମଧ୍ୟପ୍ରଦେଶର ବଣିକମାନଙ୍କ ଠାରୁ ଗହମ, ବୁଟ, ଲାଖ, ସୁନା ଏବଂ ହୀରା ବିନିମୟରେ ଆଣୁଥିଲେ । କଟକ, ଭଦ୍ରଖ, ନାଗପୁର, ଭୂପାଳ, ଛତିଶଗଡ଼ ଏବଂ ସରଗୁଜାର ବଣିକମାନେ ସମ୍ବଲପୁରରେ ଏକତ୍ରିତ ହେଉଥିଲେ ।

ଏହାବ୍ୟତୀତ ସୁନା, ରୁପା, କାଠ, ପଥର, ତମ୍ବା, ପିତଳ, କଂସା ପ୍ରଭୃତିର କାମ ଦେଶରେ ପ୍ରଚୁର ହେଉଥିଲା । କଟକର ତାରକସି କାମ କଣ୍ଢେଇ, ବାଲକାଟି ଓ ବାଲେଶ୍ୱରର କଂସା ପିତଳ କାମ, ଖଳିଗାଁରର ପଥର ବାସନ ପ୍ରଭୃତି ବିବିଧ ପଣ୍ୟସାମଗ୍ରୀ ଉତ୍କଳରୁ ସ୍ଥାନାନ୍ତରକୁ ରପ୍ତାନି ହେଉଥିଲା । ଉତ୍କଳର ବନ୍ଦରମାନ ବହିର୍ବାଣିଜ୍ୟରେ ପରିପୂର୍ଣ୍ଣ ଥିଲା । ଇଟାଲୀୟ ପର୍ଯ୍ୟଟକ ମାର୍କୋପୋଲୋ ଏହି ସମୟରେ ଭାରତ ଭ୍ରମଣକରି, ଉତ୍କଳ ବନ୍ଦରମାନଙ୍କରେ ବାଣିଜ୍ୟ ତରୀ ନିର୍ମାଣ ଦେଖିଥିଲେ ଏବଂ ପୂର୍ବ ପରୁ ଉତ୍କଳୀୟ ବଣିକମାନେ ଦୂର ବିଦେଶକୁ ବାଣିଜ୍ୟ ତରୀ ଚଳାଉଥିଲେ ! ଏହିସବୁ ଶିଳ୍ପ ବ୍ୟବସାୟ ଧନ ଦୌଲତରେ ଉତ୍କଳ ବିଂଶେଷ ସମୃଦ୍ଧିଶାଳୀ ଥିଲା ; ସୁତରାଂ ବର୍ତ୍ତମାନ ଶାସନରେ ଉତ୍କଳର ଦରିଦ୍ରତା ଉଦ୍‌ଘୋଷିତ ହେଉଥିବା ସ୍ଥଳେ ଗୃହ ପାଞ୍ଚଶତ ବର୍ଷପୂର୍ବେ ଉତ୍କଳର ସାଡ଼ମ୍ବରମୟ ରାଷ୍ଟ୍ର-ଶକ୍ତି ବିପୁଳ ଅର୍ଥ ସଞ୍ଚୟ କରି କୋଣାର୍କ ଓ ପୁରୀ ମନ୍ଦିର ପରି ବିରାଟ କାର୍ଯ୍ୟମାନ କରିବାକୁ ସମର୍ଥ ହେଉଥିଲେ ।

କଳା କୌଶଳ— ବିଶେଷ ଧନ ଦୌଲତ ମଧ୍ୟରେ ଥାଇ ଏବଂ ପ୍ରଜାବତ୍ସଳ ରାଜାମାନଙ୍କର ଆଶ୍ରୟ ପାଇ ଉତ୍କଳବାସିମାନେ ନିଶ୍ଚିନ୍ତ ଜୀବନରେ ସ୍ୱାଧୀନ ଜୀବନ ଅବଲମ୍ବନ କରୁଥିଲେ । ସେହିକାଳ ନିଶ୍ଚିନ୍ତ ଓ ସ୍ୱାଧୀନ ଜୀବନ ପକ୍ଷରେ ଶିଳ୍ପକଳା ଓ ସାହିତ୍ୟର ସମୁନ୍ନତି ସମ୍ଭବ । ପଥର ଶିଳ୍ପକଳାର ଉତ୍କର୍ଷତା କୋଣାର୍କରେ ଯେପରି ପ୍ରତିଫଳିତ ହୋଇଛି, ଏକା ଉତ୍କଳ କାହିଁକି ଭାରତରେ ମଧ୍ୟ ତାହା ଦେଖାଯାଏ ନାହିଁ । ପୁଣି ଏହାର ଅଧିକ ବିଶେଷତ୍ୱ ଯେ ଭାରତରେ ଆର୍ଯ୍ୟକଳା ବୈଦେଶିକ ଶକ୍ତି ପ୍ରଭାବରେ ବିକୃତ ହୋଇଥିବାବେଳେ କୋଣାର୍କରେ ଉତ୍କଳୀୟ ଶିଳ୍ପୀମାନେ ଭାରତୀୟ ଅଦ୍ଭୁତ ଆର୍ଯ୍ୟକଳାର ବିଶୁଦ୍ଧତା ସମ୍ପୂର୍ଣ୍ଣ ଦେଖାଇ ପାରିଥିଲେ । ଏହା ବ୍ୟତୀତ କଳାର ଉତ୍କର୍ଷତା, କାରୁକାର୍ଯ୍ୟର ସୂକ୍ଷ୍ମତା ଓ ସୌନ୍ଦର୍ଯ୍ୟ, ଏବଂ

କାର୍ଯ୍ୟର ବିଶାଳତା ଦୃଷ୍ଟିରେ କୋଣାର୍କ ଅତୁଳନୀୟ । ବାସ୍ତବିକ ଉତ୍କଳ ତତ୍କାଳ ବିବର୍ଦ୍ଧିତ ସମୃଦ୍ଧି ଏବଂ ଉତ୍କର୍ଷତା ନିମନ୍ତେ ଉତ୍କଳଶିଳ୍ପିର ଯୁଗ ଯୁଗ ବ୍ୟାପୀ ସାଧନା ଏହା କୋଣାର୍କରେ ପୁଞ୍ଜୀଭୂତ ହୋଇଅଛି ।

ଶିଳ୍ପକଳାପରି ସାହିତ୍ୟ-କଳାର ଉନ୍ନତି ମଧ୍ୟ ଏହି ଯୁଗର ଅନ୍ୟ-ତମ ବିଶେଷତ୍ୱ । ରାଜାମାନଙ୍କ ରାଜତ୍ୱ ବର୍ଣ୍ଣନରେ ବିଖ୍ୟାତ ଗ୍ରନ୍ଥ ଓ ଗ୍ରନ୍ଥକାର-ମାନଙ୍କର ପରିଚୟ ଦିଆଯାଇଛି । ରାଜାମାନଙ୍କ ମଧ୍ୟରେ ଅନେକେ ପଣ୍ଡିତ ଥିଲେ ଏବଂ ସେମାନେ ବିଦ୍ୟା ଓ ପାଣ୍ଡିତ୍ୟର ବିଶେଷ ଆଦର କରୁଥିଲେ । ସେହି ରାଜାଶ୍ରୟ ଯୋଗୁଁ ଉତ୍କଳୀୟ ପଣ୍ଡିତମାନେ ସଂସ୍କୃତ ସାହିତ୍ୟରେ କାବ୍ୟ, ବ୍ୟାକରଣ, ଦର୍ଶନ, ସଙ୍ଗୀତ, ଅଳଙ୍କାର, ଅଭିଧାନ, ଜ୍ୟୋତିଷ, ସ୍ମୃତି, ଆୟୁର୍ବେଦ ଏବଂ ଯୁଦ୍ଧ-ବିଦ୍ୟାରେ ଉତ୍କୃଷ୍ଟ ଓ ଆଦରଣୀୟ ଗ୍ରନ୍ଥମାନ ପ୍ରଣୟନ କରିଥିଲେ ।

ଉତ୍କଳର ଏହି ଉନ୍ନତି 'ସାହିତ୍ୟ-ଯୁଗରେ' ସଂସ୍କୃତ ସାହିତ୍ୟ ସଙ୍ଗେ ଉତ୍କଳ ଭାଷା ଓ ସାହିତ୍ୟର ଆରମ୍ଭ ଓ ବହୁ ଉନ୍ନତି ମଧ୍ୟ ହୋଇଥିଲା । ଗଙ୍ଗବଂଶର ଆରମ୍ଭ ପୂର୍ବରୁ ଉତ୍କଳ ଭାଷାର ସୃଷ୍ଟି ହୋଇଥିଲା । ପୁରୀ ମନ୍ଦିରର ମାଦଳାପାଞ୍ଜି ଗଙ୍ଗବଂଶର ରାଜତ୍ୱ ଆରମ୍ଭରୁ ଉତ୍କଳ ଭାଷାରେ ଲେଖା ଯାଉଥିଲା । କପିଳେନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ଉତ୍କଳର ବ୍ୟାସ କବି ସାରଳାଦାସ ଏକ ବିରାଟ ମହାଭାରତ ଗ୍ରନ୍ଥ ପଦ୍ୟାକାରରେ ଲେଖିଥିଲେ । 'କୋଇଲି'ର ସୁମଧୁର ସ୍ୱର ଉତ୍କଳ-ସାହିତ୍ୟ-କାନନରେ ଏହା ପୂର୍ବରୁ ଶୁଣା ଯାଇଥିଲା । ଉତ୍କଳ ସାହିତ୍ୟ ଇତିହାସରେ ପ୍ରତାପରୁଦ୍ରଙ୍କ ରାଜତ୍ୱ କାଳ ବିଶେଷ ମୂଲ୍ୟବାନ ସମୟ । କବି ବଳରାମ ଦାସ ରାମାୟଣ ମହାଭାରତ ଏବଂ ଅନ୍ୟାନ୍ୟ ଅନେକ ସ୍ତୁତି ଓ ଭକ୍ତି ଗ୍ରନ୍ଥ ଉତ୍କଳ ଭାଷାରେ ଲେଖିଥିଲେ । ତାହାଙ୍କ ଗ୍ରନ୍ଥମାନଙ୍କ ମଧ୍ୟରୁ ୨୩ଟି ଗ୍ରନ୍ଥର ନାମ ମିଳେ । ମହାତ୍ମା ଜଗନ୍ନାଥ ଦାସଙ୍କ ଭାଗବତ, ଭାଷାର ସରଳତା, କବିତାର ହୃଦୟସ୍ପର୍ଶିତା ଯୋଗେ ବର୍ତ୍ତମାନ ଚାରିଶତ ବର୍ଷ ପରେ ମଧ୍ୟ ଉତ୍କଳ ସାହିତ୍ୟସେବକମାନଙ୍କର ଆଦର୍ଶ

ସ୍ଥାୟୀ ହୋଇ ରହିଛି । ଜଗନ୍ନାଥ ଭାଗବତ ଅଦ୍ୟାପି ଉତ୍କଳର ପୁର ପଲ୍ଲୀରେ ଲକ୍ଷ ଲକ୍ଷ ଭକ୍ତପ୍ରାଣରେ ପ୍ରେମାମୃତ ସିଞ୍ଚୁଅଛି । ଜଗନ୍ନାଥ ଓ ବଳରାମ ପ୍ରଭୃତି ସେ ଯୁଗରେ ଯେଉଁ ଭକ୍ତି ସାହିତ୍ୟ ସୃଷ୍ଟି କଲେ, ତାହା ପରବର୍ତ୍ତୀ ତିନିଶତ ବର୍ଷ ଧରି ଉତ୍କଳ ସାହିତ୍ୟର ଗତି ଓ ପ୍ରକୃତି ନିୟମିତ କରିଥିଲା ।



# ସପ୍ତମ ଅଧ୍ୟାୟ

## ସାମନ୍ତ ରାଜ୍ୟ

ସାମନ୍ତ ରାଜା— ପୂର୍ବେ ଲେଖା ଯାଇଛି ଗଜପତିମାନେ ସମଗ୍ର ଦେଶକୁ ସାଧାରଣତଃ ଦୁଇ ଭାଗ କରି ଏକ ଭାଗ ନିଜର ଖାସ ଦଖଲରେ ରଖି ତହିଁର ରାଜସ୍ୱ ଆଦାୟ, ରାଜ୍ୟର କର୍ମଚାରୀମାନଙ୍କୁ ଦେବା ପାଇଁ ଜାଗିରି ଦାନ ଏବଂ ଦେବୋତ୍ତର ଓ ବ୍ରହ୍ମୋତ୍ତର ଖଞ୍ଜା କରୁଥିଲେ । ରାଜ୍ୟର ଅନ୍ୟ ଅଂଶ ସେ ସାମନ୍ତରାଜାମାନଙ୍କ ମଧ୍ୟରେ ବଣ୍ଟନ କରି ଦେଇଥିଲେ । ଅନଙ୍ଗଭୀମଦେବ ୧୬ ଜଣ ସାମନ୍ତରାଜା ସୃଷ୍ଟି କରିଥିଲେ । ପୁଣି କପିଳେନ୍ଦ୍ର ଦେବଙ୍କ ପୁତ୍ରମାନେ ମଧ୍ୟ ସାମନ୍ତ ରାଜା ରୂପେ ଭିନ୍ନ ଭିନ୍ନ ରାଜ୍ୟ ଭୋଗ କରୁଥିଲେ । ସେହି ସାମନ୍ତ ରାଜାମାନଙ୍କର କାର୍ଯ୍ୟ ଥିଲା ନିଜ ନିଜ ରାଜ୍ୟରେ ଶାନ୍ତି ଶୃଙ୍ଖଳାରେ ଶାସନ ଚଳାଇବା, ବୈଦେଶିକ ଆକ୍ରମଣରୁ ଦେଶରକ୍ଷା କରିବା ଏବଂ ଗଜପତିଙ୍କ ଆଦେଶ କ୍ରମେ ସୈନ୍ୟ ସାମନ୍ତ ଧରି ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ହେବା । ଉତ୍କଳର ପାର୍ବତ୍ୟ ଅଞ୍ଚଳ ପର୍ଯ୍ୟନ୍ତ ଭିନ୍ନ ଭିନ୍ନ ସାମନ୍ତ ରାଜାମାନଙ୍କ ମଧ୍ୟରେ ବିଭକ୍ତ ହୋଇଥିଲା । ଏହି ରାଜାମାନଙ୍କ ମଧ୍ୟରୁ କେତେକ ଗଜପତିଙ୍କ ଭିନ୍ନ ଭିନ୍ନ ସେବାରେ ନିଯୁକ୍ତ ଥିଲେ । ସବୁ ରାଜ୍ୟ ଯେ ଗଜପତିମାନଙ୍କ ଅନୁଗ୍ରହରେ ସୃଷ୍ଟ ହୋଇଥିଲା, ଏପରି ନୁହେଁ । କେତେକ ରାଜ୍ୟ ସେମାନଙ୍କର ସୃଷ୍ଟି, କେତେକ ପୂର୍ବରୁ ସ୍ଥାପିତ ହୋଇଥିଲା । ଗଜପତିମାନେ ଯେଉଁ ରାଜ୍ୟ ସୃଷ୍ଟି କରିଥିଲେ, ସେମାନଙ୍କର ସାମନ୍ତ ରାଜାମାନେ ଯୁଦ୍ଧ ସାହାଯ୍ୟ ବ୍ୟତୀତ ଗଜପତିମାନଙ୍କର ଭିନ୍ନ ଭିନ୍ନ ସେବା ମଧ୍ୟ କରୁଥିଲେ । ଆଠଗଡ଼ର ବେବର୍ତ୍ତା ପଟ୍ଟନାୟକ ଗଜପତିଙ୍କର ମନ୍ତ୍ରୀକାର୍ଯ୍ୟ କରୁଥିଲେ; ଦର୍ପଣୀର ରାଜା ଅଭିଷେକବେଳେ ଗଜପତିଙ୍କ ସମ୍ମୁଖରେ

ଦର୍ପଣ ଧରୁଥିଲେ । କେହି ଚାମର ଧରିବା, କେହି ବା ପିକଦାନି ଧରିବା ଇତ୍ୟାଦି ନାନାଭାବରେ ସାମନ୍ତରାଜାମାନେ ଗଜପତିଙ୍କର ସେବା କରୁଥିଲେ । ବର୍ତ୍ତମାନ ମଧ୍ୟ ପୁରୀ ରାଜାଙ୍କ ପ୍ରତି ସେହି ସେବାର ସ୍ମୃତି ଓଡ଼ିଶା ଗଡ଼ଜାତମାନଙ୍କରେ ଅଛି । ମାତ୍ର ସକଳ ସେବା ମଧ୍ୟରେ ଯୁଦ୍ଧବେଳେ ଗଜପତିଙ୍କ ସହାୟ ହୋଇ ସସୈନ୍ୟରେ ଯୋଗଦେବା ସାମନ୍ତ ରାଜାମାନଙ୍କର ପ୍ରଧାନ ସେବା ଥିଲା । ସେହି ରାଜାମାନେ ନିଜ ନିଜ ରାଜ୍ୟ ମଧ୍ୟରୁ କେତେକ ନିଜ ଖାସ ଦଖଲରେ ରଖି ରାଜ୍ୟର ଅଧିକାଂଶ ପାଇକ, ଖଣ୍ଡାୟତ, ଦଳାଦାର ପ୍ରଭୃତିଙ୍କ ମଧ୍ୟରେ ଜାଗିର ସ୍ୱରୂପ ବାଣ୍ଟିଦେଇଥିଲେ । ସେମାନେ ଶାନ୍ତି ବେଳେ ଜମି ଚାଷକରି ଜୀବିକା ଚଳାଉଥିଲେ; ମାତ୍ର ଯୁଦ୍ଧ ଉପସ୍ଥିତ ହେଲେ ଆପଣା ଆପଣା ରାଜାଙ୍କ ଆଦେଶ ମତେ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହେଉଥିଲେ ।

ସାମନ୍ତ ରାଜ୍ୟମାନ ଅବସ୍ଥିତି ଅନୁସାରେ ସାଧାରଣତଃ ତିନି ଶ୍ରେଣୀରେ ବିଭକ୍ତ କରାଯାଇପାରେ;—ଓଡ଼ିଶା ଗଡ଼ଜାତ, ସମ୍ବଲପୁର ଗଡ଼ଜାତ ଏବଂ ଗଞ୍ଜାମ ଗଡ଼ଜାତ ।

## ଓଡ଼ିଶା ଗଡ଼ଜାତ

ମୟୂରଭଞ୍ଜ— ଓଡ଼ିଶା ଗଡ଼ଜାତମାନଙ୍କ ମଧ୍ୟରେ ମୟୂରଭଞ୍ଜ ପ୍ରାଚୀନତମ ଏବଂ ପ୍ରଧାନ ରାଜ୍ୟ ଥିଲା । ଦୁଇସହସ୍ରାଧିକ ବର୍ଷ ପୂର୍ବେ ରାଜପୁତନାର ଜୟପୁର ରାଜବଂଶର ଜଣେ ଆଦି ପୁରୁଷ ମୟୂରଭଞ୍ଜ ସ୍ଥାପନ କରି ରାଜତ୍ୱ କରୁଥିଲେ । ଏହାର ନାମ ହରିହରପୁର ଥିଲା ଏବଂ ପରେ ମୟୂର ରାଜବଂଶର ସଙ୍କେତ ଥିବାରୁ ଏବଂ ରାଜାମାନେ ଭଞ୍ଜ ବଂଶୀୟ ଥିବାରୁ ରାଜ୍ୟ ମୟୂରଭଞ୍ଜ ନାମରେ ପରିଚିତ ହେଲା । ମୟୂରଭଞ୍ଜ ମଧ୍ୟରେ ଗଜପତିମାନଙ୍କ ରାଜତ୍ୱରେ ନୀଳଗିରି, ସିଂହଭୂମି, ବରାହଭୂମି, ପଞ୍ଚକୋଟ, ନରସିଂହପୁର, ଜମକୁଣ୍ଡା, ତେଲମୁଣ୍ଡ, ସାରଣ୍ଡା, ଢାରାଶୁନି ଏବଂ କେନ୍ଦୁଝର

ଅବ ଓଡ଼ିଶା ସିଂହଭୂମି ଓ ମାନଭୂମିର ଅଞ୍ଚଳମାନ ରହିଥିଲା । କାଳକ୍ରମେ ସେସବୁ ରାଜ୍ୟମାନ ମୟୂରଭଞ୍ଜରୁ ବିଛିନ୍ନ ହୋଇଥିଲା । ଦୁଇ ଶତାଧିକ ବର୍ଷ ପୂର୍ବେ କେନ୍ଦୁଝରର ପ୍ରଜାମାନେ ଏତେ ଜଙ୍ଗଲ ପାହାଡ଼ ପାରହୋଇ ମୟୂରଭଞ୍ଜ ଯିବା ଅସୁବିଧା ଦେଖି, ମୟୂରଭଞ୍ଜ ରାଜବଂଶରୁ ଜଣେ ରାଜ-ପୁତ୍ରଙ୍କୁ ନେଇ ଆଣି କେନ୍ଦୁଝରର ରାଜା କଲେ । ସେହିଦିନଠାରୁ କେନ୍ଦୁଝର ସ୍ୱତନ୍ତ୍ର ରାଜ୍ୟ ହେଲା । ଛୋଟନାଗପୁରର ଜଣେ ରାଜପୁତ୍ର ପ୍ରତାପରୁଦ୍ର ଦେବଙ୍କ କନ୍ୟାର ପାଣି ଗ୍ରହଣ କରି ନୀଳଗିରିରାଜ୍ୟ ସ୍ଥାପନ କରିଥିଲେ । ମୟୂରଭଞ୍ଜ ବଂଶୀୟ ରାଜାମାନେ ତାମ୍ରଲିପ୍ତରେ ରାଜତ୍ୱ ବହୁକାଳ କରିବା ପରେ କେଶରୀ ରାଜତ୍ୱରେ କୈବର୍ତ୍ତ ବଂଶୀୟ ରାଜାମାନେ ସେଠାରେ ରାଜତ୍ୱ କଲେ ।

ଢେଙ୍କାନାଳ—ଢେଙ୍କା ନାମରେ ଜଣେ ଆରଣ୍ୟକ ରାଜା ଏହି ରାଜ୍ୟ ସ୍ଥାପନ କରିଥିଲେ । ବର୍ତ୍ତମାନ ରାଜବଂଶ ଆରଣ୍ୟକ ରାଜବଂଶ ବହିଷ୍କୃତ କରି ଖ୍ରୀଷ୍ଟ ଚତୁର୍ଦ୍ଦଶ ଶତାବ୍ଦୀରେ ରାଜ୍ୟ ଅଧିକାର କଲେ । ସେହି କାଳରୁ ବର୍ତ୍ତମାନ ରାଜବଂଶରେ ପ୍ରାୟ ୨୫ଜଣ ରାଜା ରାଜତ୍ୱ କରିଆସିଛନ୍ତି ।

ତାଳଚେର—ତାଳଚେର ପ୍ରଥମେ ଢେଙ୍କାନାଳ ପରି ଅଦମ ରାଜ୍ୟ ଥିଲା । ପ୍ରାୟ ଚତୁର୍ଦ୍ଦଶ ଶତାବ୍ଦିରେ ଅଯୋଧ୍ୟା ରାଜବଂଶର ଜଣେ ରାଜପୁରୁଷ ଗଜପତିଙ୍କ ଆଶ୍ରୟରେ ରାଜ୍ୟରେ ରାଜା ହେଲେ । କଥିତ ଅଛି ସେହି ରାଜା ଅନେକ ତାଳଗଛ ତାଡ଼ି ରାଜ୍ୟ ପ୍ରସ୍ତୁତ କରିଥିବାରୁ ରାଜ୍ୟର ଏପରି ନାମ ହୋଇଛି । ସେହିକାଳରୁ ୨୦ ଜଣ ରାଜା ତାଳଚେରରେ ରାଜତ୍ୱ କରି-ଆସିଅଛନ୍ତି ।

ଅନୁଗୋଳ—ଅନୁ ନାମରେ ଜଣେ ଶବର ରାଜ୍ୟ ସ୍ଥାପନ କରି ଏଠାରେ ରାଜତ୍ୱ କରୁଥିଲେ । ଜଣେ ବଣିକ ବାଣିଜ୍ୟ ସୂତ୍ରରେ ସେଠାରେ ବସତି କରି କାଳକ୍ରମେ ଶବର ରାଜବଂଶ ନିପାତ କରି ନିଜେ ରାଜା ହେଲେ ।

**ହିନ୍ଦୋଳ—** ହିନ୍ଦୋଳ ପ୍ରଥମରୁ ଭିନ୍ନ ରାଜ୍ୟ ଥିଲା । ଶେମଣ୍ଡି ରାଜବଂଶୀୟ ଜଣେ ରାଜା ୩ ରାଜ୍ୟ ଏକତ୍ର କରି ରାଜା ହେଲେ । ସେହି ରାଜବଂଶରେ ଆଜକୁ ୨୭ଜଣ ରାଜା ରାଜତ୍ୱ କରିଛନ୍ତି ।

**ବଡ଼ାମ୍ବା—** ଜଣେ ବିଖ୍ୟାତ ମଲ୍ଲଯୋଦ୍ଧା ଉତ୍କଳ ଗଜପତିଙ୍କୁ ଆପଣାର ବୀରତ୍ୱରେ ସନ୍ତୁଷ୍ଟ କରି ଦୁଇଖଣ୍ଡ ଗ୍ରାମ ପାଇଥିଲେ । କନ୍ଧମାନେ ସେହି ଗ୍ରାମର ଅଧିବାସୀ ଥିଲେ । ମାତ୍ର ମଲ୍ଲ ଗଜପତିଙ୍କ ଅଣ୍ଡସ୍ୱରେ ସେମାନଙ୍କୁ ତଡ଼ିଦେଇ ପ୍ରାୟ ୫୦୦ ବର୍ଷ ପୂର୍ବେ ବଡ଼ାମ୍ବା ରାଜ୍ୟ ସ୍ଥାପନ କଲେ । କ୍ରମେ ସେ ରାଜ୍ୟବୃଦ୍ଧି କରିଥିଲେ । ତାହାଙ୍କ ବଂଶରେ ଆଜକୁ ୨୧ଜଣ ରାଜା ହୋଇଛନ୍ତି ।

**ନରସିଂହପୁର—** ନରସିଂହ ଏବଂ ପୁର ନାମରେ ଦୁଇ କନ୍ଧରାଜା ରାଜ୍ୟର ଅଧିକାରୀ ଥିଲେ । ପ୍ରାୟ ପଞ୍ଚଦଶ ଶତାବ୍ଦିରେ ଜଣେ ରାଜପୁତ କନ୍ଧ ରାଜାମାନଙ୍କୁ ତଡ଼ିଦେଇ ରାଜତ୍ୱ କଲେ । ତାହାଙ୍କ ବଂଶରେ ଆଜକୁ ୨୭ଜଣ ରାଜା ହୋଇଛନ୍ତି ।

**ଆଠଗଡ଼—** ଆଠଗଡ଼ ଗଜପତିଙ୍କ ଖାସ ଦଖଲ ରାଜ୍ୟ ମଧ୍ୟରେ ଥିଲା । ଶେଷ କାଳକୁ ପ୍ରାୟ ଷୋଡଶ ଶତାବ୍ଦିରେ ଉତ୍କଳ ରାଜା ଆପଣାର ବେବର୍ତ୍ତା ବା ପ୍ରଧାନ ମନ୍ତ୍ରୀଙ୍କ କନ୍ୟାର ପାଣି ଗ୍ରହଣ କରି ମନ୍ତ୍ରୀଙ୍କୁ ରାଜ୍ୟ-ଖଣ୍ଡ ଦାନ କରିଥିଲେ । ଆଠଗଡ଼ ରାଜବଂଶ ବେବର୍ତ୍ତା ପଟ୍ଟନାୟକ ଉପାଧି-ଧାରୀ ଏବଂ ଜାତିରେ କରଣ । ଉକ୍ତ ରାଜବଂଶରେ ୧୩ ଜଣ ରାଜା ହୋଇଛନ୍ତି ।

**ତିଗିରିଆ—** ଏହା ପ୍ରଥମେ ତିନୋଟି ଗଡ଼ ମିଶି ରାଜ୍ୟ ହୋଇ-ଥିବାରୁ ଏପରି ନାମ ପାଇଥିଲା । ପ୍ରାୟ ୫୦୦ ବର୍ଷ ପୂର୍ବେ ସୁର ତୁଙ୍ଗ ସିଂହ ଉତ୍ତର ଭାରତରୁ ପୁରୀକୁ ପର୍ଯ୍ୟଟନରେ ଆସୁ ଆସୁ ପଥ ମଧ୍ୟରେ ଆଦିମ ଅଧିବାସିଙ୍କୁ ତଡ଼ି ରାଜ୍ୟ ସ୍ଥାପନ କରିଥିଲେ । ତାହାଙ୍କ ବଂଶରେ ଆଜକୁ ୨୧ଜଣ ରାଜା ହୋଇଛନ୍ତି ।

ବୌଦ—ପ୍ରଥମରୁ ବୌଦ ସମ୍ବଲପୁର ଗଡ଼ଜାତ ଶ୍ରେଣୀ ମଧ୍ୟରେ ଥିଲେ ସୁଦ୍ଧା ବର୍ତ୍ତମାନ ତାହା ଓଡ଼ିଶା ଗଡ଼ଜାତ ମଧ୍ୟରେ ଗଣ୍ୟ ହୁଏ । ବୌଦ ଅଦ୍ୟମ ଅବସ୍ଥାରୁ ବଡ଼ ରାଜ୍ୟ ଥିଲା । ମାତ୍ର କାଳକ୍ରମେ ସହସ୍ରାଧିକ ବର୍ଷ ପୂର୍ବେ ଜଣେ ବ୍ରାହ୍ମଣ ରାଜ୍ୟ ଅଧିକାର କରି କନ୍ଧମାନଙ୍କୁ କ୍ରମେ ଦକ୍ଷିଣ ଅଞ୍ଚଳକୁ ତଡ଼ିଦେଲେ । ସେହି ବ୍ରାହ୍ମଣ ବଂଶରେ ପ୍ରାୟ ୭୨ଜଣ ରାଜା ଅଦ୍ୟାବଧି ରାଜତ୍ୱ କରିଛନ୍ତି । ବୌଦ ପୂର୍ବେ ବଡ଼ ରାଜ୍ୟ ଥିଲା । କାଳକ୍ରମେ ପାର୍ଶ୍ୱବର୍ତ୍ତୀ ରାଜାମାନେ ସେଥିରୁ ଖଣ୍ଡେ ଖଣ୍ଡେ ଅଧିକାର କରି ନେଇଥିଲେ । ବୌଦ ରାଜବଂଶ ଭଞ୍ଜ ଉପାଧିଧାରୀ । ଏମାନେ ଜଙ୍ଗଲ ଭାଙ୍ଗି ରାଜ୍ୟ ସ୍ଥାପନ କରିଥିବାରୁ ଭଞ୍ଜ ଉପାଧି ପାଇଥିଲେ । ମାତ୍ର ମୟୂରଭଞ୍ଜ ରାଜବଂଶ ସହିତ ଏମାନଙ୍କର ବଂଶଗତ ସମ୍ପର୍କ ନାହିଁ ।

ଦଶପଲ୍ଲା— ପ୍ରଥମେ ଏହା ବୌଦ ରାଜ୍ୟ ମଧ୍ୟରେ ଗୋଟିଏ କନ୍ଧ ରାଜ୍ୟ ଥିଲା । ବୌଦର ଜଣେ ରାଜପୁତ୍ର ୫୦୦ ବର୍ଷ ପୂର୍ବେ ଏହି ରାଜ୍ୟ ସ୍ୱତନ୍ତ୍ର ଶାସନ କଲେ । ଦଶପଲ୍ଲା ଗାଦିରେ ଅଜକୁ ୧୬ଜଣ ପର୍ଯ୍ୟନ୍ତ ରାଜା ରାଜତ୍ୱ କଲେଣି । ରାଜ୍ୟ ମଧ୍ୟରେ ଦଶପଲ୍ଲା ଓ ଜୁଡ଼ୁମ ଦୁଇ ବିଭାଗ । ଜୁଡ଼ୁମ ପୂର୍ବେ ଅନୁଗୁଳ ରାଜ୍ୟ ମଧ୍ୟରେ ଥିଲା । ଦଶପଲ୍ଲା ରାଜା ତାହା ଜୟ କରି ନିଜ ରାଜ୍ୟ ମଧ୍ୟରେ ମିଶାଇଥିଲେ । ଦଶପଲ୍ଲା ରାଜବଂଶ ବୌଦ ରାଜବଂଶ ପରି ଭଞ୍ଜ ନାମରେ କଥିତ । ରାଜବଂଶର ସଙ୍କେତ ମୟୂର । କଥିତ ଅଛି ଏହି ବଂଶର ପ୍ରଥମ ରାଜା ଏକ ମୟୂର ଡିମ୍ବରୁ ଜାତ ହୋଇ ଥିଲେ ।

ନୟାଗଡ଼ — ଖ୍ରୀଷ୍ଟ ଚତୁର୍ଦ୍ଦଶ ଶତାବ୍ଦି ବା କିଞ୍ଚିତ୍ ପୂର୍ବରୁ ରେବା ରାଜବଂଶର ଜଣେ ରାଜପୁତ୍ର ମହାଜନ୍ମା ବାଟେ ଜଗନ୍ନାଥ ଦର୍ଶନକୁ ଆସୁଥିଲେ । ପଥରେ ଏହି ଅଞ୍ଚଳର ଲୋକେ ବ୍ୟାଘ୍ର ଦଉରେ ବଡ଼ ଅକୁଳ ହେଉଥିବାର ଦେଖି ରାଜପୁତ୍ର ବ୍ୟାଘ୍ର ବଧକଲେ । ଅଦ୍ୟମ ଅଧିବାସିମାନେ କୃତଜ୍ଞତା ସ୍ୱୀକାର କରି ସେମାନଙ୍କର ରାଜା ହେବାକୁ ଅନୁରୋଧ

କରିବାରୁ, ରାଜପୁତ୍ର ସେହି ନୟାଗଡ଼ ରାଜ୍ୟର ରାଜା ହେଲେ । ନୟାଗଡ଼ ରାଜବଂଶର ସଙ୍କେତ ବର୍ତ୍ତମାନ ମଧ୍ୟ ବ୍ୟାଘ୍ର ମସ୍ତକ ଅଛି । ପୂର୍ବେ ନୟାଗଡ଼ ମଧ୍ୟରେ ଖଣ୍ଡପଡ଼ା ଅନ୍ତର୍ଭୁକ୍ତ ଥିଲା । ନୟାଗଡ଼ର ଜଣେ ରାଜଭ୍ରାତା ପ୍ରାୟ ୩୦୦ ବର୍ଷ ପୂର୍ବେ ଖଣ୍ଡପଡ଼ାକୁ ସ୍ୱତନ୍ତ୍ର ରାଜ୍ୟ କରି ରାଜତ୍ୱ କଲେ । ନୟାଗଡ଼ରେ ଆଜିକି ୨୩ ଜଣ ରାଜତ୍ୱ କରିଛନ୍ତି ଏବଂ ଖଣ୍ଡପଡ଼ା ଗାଦିରେ ୯ ଜଣ ରାଜା ବସିଛନ୍ତି ।

ରଣପୁର — ଅତି ପ୍ରାଚୀନ କାଳରେ 'ରଣାସୁର' (ଗୋଷ୍ଠୀ ଋଷିପ) ଏଠାରେ ବାସ କରୁଥିବାରୁ ରାଜ୍ୟର ନାମ ରଣପୁର ହୋଇଥିଲା । ପ୍ରବାଦ ଅଛି ବାସୁର ବାସୁକ ନାମରେ ଜଣେ ଶିକାରୀ ୩୬୦୦ ବର୍ଷ ପୂର୍ବେ ଏହି ରାଜ୍ୟ ସ୍ଥାପନ କରିଥିଲେ । ସେହି କାଳରୁ ୯୯୬ ଜଣ ରାଜା ରଣପୁର ଗାଦିରେ ବସିଛନ୍ତି । ରାଜ୍ୟଟି ପୂର୍ବେ ଅତି କ୍ଷୁଦ୍ର ଥିଲା; ମାତ୍ର ଏଠାର ରାଜାମାନେ ନିକଟବର୍ତ୍ତୀ ରାଜ୍ୟ ଅଧିକାର କରି ରାଜ୍ୟ ବଢ଼ାଇଥିଲେ ।

କନିକା — କନିକା ଏବଂ କୁଜଙ୍ଗ ପ୍ରଭୃତି ଆଧୁନିକ ଗଡ଼ଜାତ ମଧ୍ୟରେ ନ ଥିଲେ ମଧ୍ୟ ପୂର୍ବେ ଗଡ଼ଜାତ ପରି କ୍ଷମତାଶାଳୀ ରାଜ୍ୟ ଥିଲା । ସମୁଦ୍ରଉପକୂଳରୁ ଜଳଦସ୍ୟୁ ଦମନ ଏବଂ ଶତ୍ରୁ ଆକ୍ରମଣରୁ ଦେଶରକ୍ଷା ଏହି ରାଜାଙ୍କର କାର୍ଯ୍ୟ ଥିଲା । କନିକା ରାଜ୍ୟ ମଧ୍ୟରେ କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ଥିଲା ଏବଂ ପ୍ରତ୍ୟେକରେ ଜଣେ ଜଣେ ରାଜା ଥିଲେ । ପ୍ରାୟ ୧୬୦୦ ଖ୍ରୀଷ୍ଟାବ୍ଦରେ ଅନଙ୍ଗଭୀମ ଦେବଙ୍କ ରାଜତ୍ୱ କାଳରେ ମୟୂରଭଞ୍ଜର ଜଣେ ରାଜଭ୍ରାତା ବର୍ତ୍ତମାନ ଇଲାକା ଛମୁକାରେ ପ୍ରଥମେ ରାଜତ୍ୱ ଆରମ୍ଭକଲେ । ପରବର୍ତ୍ତୀ କାଳରେ ତାହାଙ୍କ ବଂଶଧରମାନେ ଅନ୍ୟାନ୍ୟ ଇଲାକାମାନ ହସ୍ତଗତକରି ରାଜ୍ୟ ବଢ଼ାଇଥିଲେ ।

କୁଜଙ୍ଗ—ଏହି ରାଜବଂଶ ଧୋବେଇଗଡ଼ ରାଜବଂଶରୁ ସମ୍ଭୂତ । ଖ୍ରୀଷ୍ଟ ଷୋଡ଼ଶ ଶତାବ୍ଦୀରେ ସେମାନେ କନିକା ରାଜାଙ୍କ ସାହାଯ୍ୟରେ ସେହି ଅଞ୍ଚଳର କଲଦାରମାନଙ୍କୁ ବଶୀଭୂତକରି କୁଜଙ୍ଗ ରାଜ୍ୟ ସ୍ଥାପନ କରିଥିଲେ ।

# ସମ୍ବଲପୁର ଗଡ଼ଜାତ

ସମ୍ବଲପୁରରାଜ୍ୟ — ସମ୍ବଲପୁର ରାଜ୍ୟ ଅଠରଗୋଷ୍ଠି ଗଡ଼ଜାତ ରାଜ୍ୟର ସମଷ୍ଟି — ଯଥା — ପାଟଣା, ସମ୍ବଲପୁର, ସୋନପୁର, ଶକ୍ତିଗଡ଼, ବାମଣ୍ଡା, ବଣେଇ, ବୌଦ, ଅଠମଲ୍ଲିକ, ବରଗଡ଼, ବୃଢ଼ାସମ୍ବର, ଗାଙ୍ଗପୁର, ଫୁଲଝର, ଚନ୍ଦ୍ରପୁର, ରାୟଗଡ଼, ସାରଙ୍ଗଗଡ଼, ରେଢ଼ାଖୋଲ, ଖଡ଼ିଅଲ ଓ ନୂଆଗଡ଼। ପାଟଣା ଓ ସମ୍ବଲପୁରର ରାଜାମାନେ ଏକ ବଂଶରୁ ଜାତ। ପାଟଣାର ମହାରାଜା ପ୍ରଥମେ ସମ୍ବଲପୁର ମଧ୍ୟସ୍ଥ ଅଠର ଗଡ଼ଜାତ ଉପରେ ରାଜତ୍ୱ କରୁଥିଲେ। ପ୍ରାଚୀନ ରତ୍ନପୁର ରାଜ୍ୟର ପୂର୍ବବର୍ତ୍ତୀ ସକଳରାଜ୍ୟ ପାଟଣ ଅଧୀନରେ ଥିଲା। ମଇନପୁରୀ ରାଜ୍ୟର ଜଣେ ରାଜପୁତ ମୁସଲମାନମାନଙ୍କ ଦ୍ୱାରା ବିତାଡ଼ିତ ହୋଇ ପାଟଣା ଅଧିକାର କରିବାକୁ ବସିଲେ। ମାତ୍ର ଯୁଦ୍ଧରେ ସେ ନିହତ ହେବାପରେ ତାହାଙ୍କର ଗର୍ଭବତୀ ସ୍ତ୍ରୀ ରମାଇଦେବଙ୍କୁ ଜନ୍ମଦେଲେ। ରମାଇଦେବ ପାଟଣା ଅଧିକାରକରି ରାଜତ୍ୱ କଲେ। ଖ୍ରୀଷ୍ଟ ପଞ୍ଚଦଶ ଶତାବ୍ଦିରେ ପାଟଣା ରାଜବଂଶର ଦ୍ୱାଦଶ ରାଜା ନରସିଂହ ଦେବ ସ୍ୱୀୟ ଭ୍ରାତା ବଳରାମଦେବଙ୍କୁ ତେଲ, ଅଙ୍ଗ, ଇବ୍ ଏବଂ ମହାନଦୀ ମଧ୍ୟସ୍ଥ ଜଙ୍ଗଲ ରାଜ୍ୟର ଭାଗ କଲେ। ବଳରାମ ପ୍ରଥମେ ନୂଆଗଡ଼ ପରେ ବରଗଡ଼ ଏବଂ ଶେଷରେ ସମ୍ବଲପୁରରେ ରାଜଧାନୀ କଲେ। ସମ୍ବଲପୁର ରାଜ୍ୟ କ୍ରମେ କ୍ଷମତାଶାଳୀ ହୋଇଉଠିଲା, ଏବଂ ପାଟଣାର ପ୍ରଭୁତ୍ୱ କ୍ରମେ ହ୍ରାସପାଇଲା। ବଳରାମଙ୍କ ପରେ ତୃତୀୟ ରାଜାଙ୍କର ଦ୍ୱିତୀୟ ପୁତ୍ର ମଦନଗୋପାଳ ସୋନପୁରର ରାଜାହେଲେ। ତାଙ୍କ ବଂଶଧରମାନେ ଅଦ୍ୟାବଧି ସୋନପୁରରେ ରାଜତ୍ୱ କରୁଅଛନ୍ତି। ଷୋଡ଼ଶ ଶତାବ୍ଦିରେ ବଳିଆର ସିଂହ ସମ୍ବଲପୁର ରାଜା ଥିଲେ। ଉମାକ-

ଦେବ ଚୌହାନ ବଂଶୀୟ ଥିବାରୁ ପାଟଣା, ସମ୍ବଲପୁର ଓ [illegible] ରାଜବଂଶ ଚୌହାନ ଷତ୍ରିୟ ।

ପ୍ରାଚୀନ କାଳରେ ଏ ସବୁ ରାଜ୍ୟ କୋଶଳ ଦେଶ ଏବଂ ପରେ ସୋମବଂଶ କେଶରୀ[illegible] ଉତ୍କଳରେ ରାଜତ୍ୱ କରବାରୁ ସେ ସବୁ ମଧ କେଶରୀରାଜାମାନଙ୍କର ଏବଂ ପରେ ଚୋଡ଼ଗଙ୍ଗଦେବଙ୍କ ଉତ୍କଳ ଜୟ କରବା ବେଳେ ବା ତତ୍‌ପୂର୍ବରୁ ଗଙ୍ଗ ଓ ସୂର୍ଯ୍ୟବଂଶର ଅଧୀନସ୍ଥ ବା ମିତ୍ର ରାଜ୍ୟରୂପେ ଥିଲା । ଚୌହାନବଂଶ ସହତ ଗଙ୍ଗବଂଶର ବୈବାହକ ସମ୍ବନ୍ଧ ଥିଲା । ପାଟଣାର ଏକ ଶିଳାଲିପିରୁ ଜଣାଯାଏ, ୧୩୫୧ ଖ୍ରୀଷ୍ଟାବ୍ଦରେ ପାଟଣା ଗଙ୍ଗ-ବଂଶର ଗଜପତମାନଙ୍କ ଅଧୀନରେ ଥିଲା । ସେତେବେଳେ ଗଙ୍ଗବଂଶର ଅସ୍ତକାଳ ସୁତରାଂ ଏହାର ବହୁ ପୂର୍ବରୁ ପ୍ରବଳ ଗଜପତମାନଙ୍କ ରାଜତ୍ୱରେ ଉତ୍କଳର ପୂର୍ବବର୍ତ୍ତୀ ପାଟଣା ଓ ଅଧୀନସ୍ଥ ରାଜ୍ୟମାନ ଉତ୍କଳର ଅଙ୍ଗୀଭୂତ ଥିଲା । ପାଟଣାର ଜନମାନଙ୍କ ମଧରେ ପ୍ରବାଦ ଅଛି ଯେ ସେମାନେ ପୂର୍ବେ କଳଙ୍ଗରାଜାଙ୍କୁ କର ଦେଉଥିଲେ । ବୋଧହୁଏ, ରମାଇଦେବଙ୍କ ପୂର୍ବରୁ ଅତ ପ୍ରାଚୀନ କାଳରୁ କଳଙ୍ଗ ରାଜବଂଶର କେହ ସେଠାରେ ରାଜତ୍ୱ କରୁଥିଲେ । ସମ୍ବଲପୁରର ବଳଅର ସିଂହ ଉତ୍କଳ ଗଜପତଙ୍କଠାରୁ ହୀରାଖଣ୍ଡ ଛତ୍ରପତ ମହାରାଜ ଉପାଧି ପାଇଥିଲେ ଏବଂ ସମ୍ବଲପୁରର ୧୮ ଗଡଜାତର ଅଧିନାୟକ ବା ଛତ୍ରପତ ଥିଲେ ।

ପୂର୍ବେ କୁହାଯାଇଅଛି, କପିଳେନ୍ଦ୍ର ଦେବଙ୍କ ପୁତ୍ରମାନେ ପୁରୁଷୋତ୍ତମ ଦେବଙ୍କ ସଙ୍ଗେ ବଦ୍ରୋହ କର ଶେଷରେ ଏକ ଏକ ରାଜ୍ୟପାଇ ସାମନ୍ତ ରାଜା ସ୍ୱରୂପ ରହଲେ । ବାମଣ୍ଡା, ବଉଦ ପ୍ରଭୃତର ରାଜାମାନେ ଆପଣାକୁ ଗଙ୍ଗ ବଂଶୀୟ ବୋଲ ପରଚୟ ଦଅନ୍ତି ।

କଳାହାଣ୍ଡି—କଳାହାଣ୍ଡି ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ଥିଲା । କଳଙ୍ଗ ଗଙ୍ଗ ରାଜା କେହ ଏହ ରାଜ୍ୟ ଜୟକର ରାଜତ୍ୱ କରୁଥିଲେ । ଗଙ୍ଗବଂଶ

୧୦୦୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କଲା ପରେ, ଶେଷ ରାଜା ଅପୁତ୍ରିକ ହେବାରୁ ଉତ୍ତରାଞ୍ଚଳବାସୀ କୌଣସି ରାଜପୁତ୍ରଙ୍କୁ ଆପଣାର କନ୍ୟା ଓ ରାଜ୍ୟଭାର ଦାନ କରି ଥିଲେ । କଳାହାଣ୍ଡି ଅଧୀନରେ ମଧ୍ୟ ୧୮ ସାମନ୍ତ ରାଜା ଥିଲେ ।

୨. ୪ ବସ୍ତର—ପ୍ରଥମେ ନାଗବଂଶୀ ରାଜାମାନେ ଏଠାରେ ରାଜତ୍ୱ କରୁଥିଲେ । ଏହି ବଂଶର ପ୍ରଥମ ରାଜା ଚକ୍ରକୋଟ ଥିଲେ । ସେହି ବଂଶର ସର୍ବଶ୍ରେଷ୍ଠ ରାଜା ସୋମେଶ୍ୱର ଦେବ କଳିଙ୍ଗ ଗଙ୍ଗ ରାଜାଙ୍କ କନ୍ୟା ଗଙ୍ଗା-ମହାଦେବୀଙ୍କୁ ବିବାହ କରିଥିଲେ । ନାଗବଂଶ ପରେ କାକତୀୟ ବଂଶ ବସ୍ତରରେ ରାଜା ହେଲେ । ଏମାନେ ସୋମବଂଶୀ କ୍ଷତ୍ରିୟ ଥିଲେ । ଉତ୍କଳ ଗଜପତିମାନଙ୍କ ସଙ୍ଗେ ଏମାନଙ୍କର ବୈବାହିକ ସମ୍ପର୍କ ଲାଗିରହି-ଥିଲା । ବସ୍ତର ପ୍ରଜା ବହୁତ ଅନାର୍ଯ୍ୟ । ଆର୍ଯ୍ୟମାନଙ୍କ ମଧ୍ୟରେ ଓଡ୍ର ବା ଓଡଥମାନେ ପ୍ରଧାନ । ସେମାନେ ଭଦ୍ରଗ୍ ଓ ହାଲବା ଏହି ଦୁଇ ଶ୍ରେଣୀରେ ବିଭକ୍ତ । ବସ୍ତର ମଧ୍ୟରେ ୪୮ ଟି ଗଡ଼ ଥିଲା । ବସ୍ତର ରାଜା ଭୈରବ ଦେବ ତାଙ୍କ କନିଷ୍ଠ ଭ୍ରାତାଙ୍କୁ ୧୮ଟି ଗଡ଼ ଦେଇ ତାଙ୍କୁ ଏକ ସାମନ୍ତ ରାଜା କରିଥିଲେ ।

## ଗଞ୍ଜାମ ଗଡଜାତ

ଜୟପୁର—ଗଞ୍ଜାମ ଓ ବିଶାଖାପତ୍ତନ ଜିଲାର ପାର୍ବତ୍ୟ ଅଞ୍ଚଳରେ ଯେଉଁ ସାମନ୍ତ ରାଜାମାନେ ଗଜପତିଙ୍କ ଅଧୀନରେ ରାଜତ୍ୱ କରୁଥିଲେ, ଜୟପୁର ସେମାନଙ୍କ ମଧ୍ୟରେ ସର୍ବାପେକ୍ଷା ବୃହତ୍ । ଜୟପୁରର ପ୍ରଥମ ନାମ ନନ୍ଦପୁର ଥିଲା । ଏଠାରେ ଶୈଳବଂଶ ରାଜାମାନେ ରାଜତ୍ୱ କରୁଥିଲେ । ପ୍ରତାପରୁଦ୍ର ଦେବଙ୍କର ଜଣେ ପୁତ୍ର ବିନାୟକ ଦେବ ବା ଶ୍ରମ ଦେବ ଶୈଳବଂଶର ଶେଷ ରାଜାଙ୍କ କନ୍ୟାଙ୍କର ବିବାହ କରି ଜୟପୁରର ରାଜା ହେଲେ । ଜୟପୁର ସେତେବେଳେ ଅତ୍ୟନ୍ତ ବିସ୍ତୀର୍ଣ୍ଣ ରାଜ୍ୟ ଥିଲା । ସାଲୁର, କୁରୁପମ, କାଶୀପୁର, ମେରଙ୍ଗ, ମାଡଗୋଲ, ପାର୍ବତୀପୁର,

ବିଜୟନଗରର କେତେକାଂଶ ଜୟପୁର ମଧ୍ୟରେ ଥିଲା । ଜୟପୁର ଗଙ୍ଗବଂଶ ଅଧୀନରେ ଚିରକାଳ ଥାଇ ଶେଷରେ ୧୫୭୧ ଖ୍ରୀଷ୍ଟାବ୍ଦରେ ଗୋଲକୁଣ୍ଡାର ଅଧୀନସ୍ଥ ହୋଇ ରହିଲା ।

ଖେମଣ୍ଡି—ବର୍ତ୍ତମାନ ପାରଳାଖେମଣ୍ଡି, ବଡ଼ ଖେମଣ୍ଡି, ଓ ସାନ ଖେମଣ୍ଡି ଏବଂ ଚିକାମର ମାଳ ପ୍ରଦେଶ ନେଇ ଖେମଣ୍ଡି ରାଜ୍ୟ ଗଠିତ ଥିଲା । ଗଙ୍ଗ ବଂଶର ରାଜପୁରୁଷମାନେ ଏଠାରେ ରାଜତ୍ୱ କରୁ ଥିଲେ । ଏହି ସବୁ ରାଜ୍ୟର ରାଜାମାନେ ବର୍ତ୍ତମାନ ଗଜପତି ଆଖ୍ୟା ଧାରଣ କରନ୍ତି । ଏଠାରେ ପ୍ରଥମେ ଅନାର୍ଯ୍ୟମାନେ ଥିଲେ । ପାରଳା ଖିମୁଣ୍ଡି ନାମକ ଜଣେ ଅନାର୍ଯ୍ୟ ପ୍ରଥମେ ପାରଳାଖେମଣ୍ଡିର ରାଜା ଥିଲେ । କପିଳେନ୍ଦ୍ର ଦେବଙ୍କର ବିଦ୍ରୋହୀ ପୁତ୍ରମାନଙ୍କ ମଧ୍ୟରୁ ଜଣେ ଦକ୍ଷିଣକୁ ଯାଇ ଅନାର୍ଯ୍ୟମାନଙ୍କୁ ପରାସ୍ତ କରି ଖେମଣ୍ଡି ଅଧିକାର କଲେ । ୧୬୦୭ ଖ୍ରୀଷ୍ଟାବ୍ଦରେ ପାରଳାଖେମଣ୍ଡି ରାଜା ତାଙ୍କର ଏକ ପୁତ୍ରଙ୍କୁ ଅନଙ୍ଗ ଭୀମ ଖେମଣ୍ଡି ନାମକ ରାଜ୍ୟ ଦେଇଥିଲେ । ସେହି ରାଜ୍ୟ ପରେ ଦୁଇ ଭାଇଙ୍କ ମଧ୍ୟରେ ବିଭକ୍ତ ହୋଇ ବଡ଼ ଖେମଣ୍ଡି ଓ ସାନ ଖେମଣ୍ଡି ରାଜ୍ୟ ହେଲା ।

ଘୁମସର—ବୌଦ୍ଧ ଓ ଦଶପଲ୍ଲାରେ ଯେଉଁ ଭଞ୍ଜମାନେ ରାଜା ଥିଲେ । ଘୁମସରରେ ସେହି ବଂଶ ରାଜାମାନେ ରାଜତ୍ୱ କରୁଥିଲେ । ଏମାନେ କିନ୍ତୁ ମୟୂର ଭଞ୍ଜ ରାଜ ବଂଶୀୟ ନଥିଲେ ।

ଏହି ସବୁ ଅଞ୍ଚଳର ରାଜାମାନେ ଉତ୍କଳ ଗଜପତିଙ୍କର କରଦ ଓ ମିତ୍ର ରାଜା ରୂପେ ଥାଇ ଯୁଦ୍ଧସମୟରେ ସୈନ୍ୟ ସାମନ୍ତ ଓ ଯୁଦ୍ଧୋପକରଣ ଯୋଗାଉଥିଲେ । ଉତ୍କଳ ଏହିରୂପେ ଏକ ରାଜାମୟ ସାମ୍ରାଜ୍ୟ ଥିଲା । ଗଜପତିଙ୍କ ଖାସ ଦଖଲ ରାଜ୍ୟ ମଧ୍ୟରେ ଗ୍ରାମେ ଗ୍ରାମେ ସମର ଶିକ୍ଷା ଚାଲିଥିଲା । ଉତ୍କଳ-ବୀରଭୂମି ଏବଂ ଉତ୍କଳ ଜନନୀଗଣ ବୀରପ୍ରସବିନୀ ଥିଲେ । ଏଥିନିମନ୍ତେ

ମୁସଲମାନମାନେ ସମଗ୍ର ଭାରତବର୍ଷ ଅଧିକାର କରିଥିଲେ ସୁଦ୍ଧା ପଞ୍ଚଶତ ବର୍ଷ ବ୍ୟାପୀ ବାରମ୍ବାର ଆକ୍ରମଣ କରି ଉତ୍କଳ ଅଧିକାର କରିପାରି ନ ଥିଲେ । ଉତ୍କଳରେ ଅନ୍ତର୍ବିବାଦ ଉପସ୍ଥିତ ହେଲା; ଉତ୍କଳର ସ୍ୱାଧୀନତା ଏବଂ ଗୌରବ ଚିରକାଳ ନିମନ୍ତେ ଅସ୍ତମିତ ହେଲା ।



# ଚତୁର୍ଥ ଭାଗ

## ଓଡ଼ିଶା

## ପ୍ରଥମ ଅଧ୍ୟାୟ

### ମୋଗଲ ରାଜତ୍ୱ

### ଖ୍ରୀଷ୍ଟ ୧୫୬୮—୧୭୫୧ ଅବ୍ଦ

ଓଡ଼ିଶା —ପୂର୍ବରୁ କୁହାଯାଇଛି ଏହି ଦେଶର ନାମ କଳିଙ୍ଗ ବା ଉତ୍କଳ; ଓଡ଼ିଶା ନୁହେଁ । ଓଡ୍ରମାନେ ଏହି ଦେଶବାସୀ ନ ଥିଲେ । ଓଡ୍ରମାନଙ୍କର ବାସସ୍ଥାନ ବର୍ତ୍ତମାନ ବସ୍ତର ଜୟପୁର ପ୍ରଭୃତି ଅଞ୍ଚଳ । ଗଙ୍ଗବଂଶ ରାଜାମାନେ ଖ୍ରୀଷ୍ଟୀୟ ୭ମ ଶତାବ୍ଦିରେ ଦକ୍ଷିଣ କଳିଙ୍ଗ ମଧ୍ୟରେ ଗଙ୍ଗବାଡ଼ି ରାଜ୍ୟ ଅଧିକାର କରି ରାଜତ୍ୱ କଲେ । ସେତେବେଳେ ଉତ୍କଳର କେଶରୀ ରାଜତ୍ୱର ପୂର୍ଣ୍ଣ ମଧ୍ୟାହ୍ନ ସମୟ । ଗଙ୍ଗମାନେ ଗଙ୍ଗବାଡ଼ିରେ ରାଜତ୍ୱ କରିବା ବେଳେ ଓଡ୍ରମାନେ ସେମାନଙ୍କର ଶ୍ରେଣୀଭୁକ୍ତ ହୋଇଥିଲେ । ଓଡ୍ରମାନେ କ୍ଷତ୍ରିୟ ଥିଲେ । ଯୁଦ୍ଧ ସେମାନଙ୍କର ଆବହମାନ କାଳରୁ ବଂଶଗତ ବ୍ୟବସାୟ ପରି ଥିଲା । ସୁତରାଂ ଗଙ୍ଗବଂଶର ରାଜାମାନେ ସେହି ଯୁଦ୍ଧପ୍ରିୟ ଓଡ୍ରମାନଙ୍କୁ ପାଇ ଆପଣାର ସୈନ୍ୟ-ବଳ ବିଶେଷ ବଢ଼ାଇ ଥିଲେ । ସେହିମାନଙ୍କ ବଳରେ ଉକ୍ତ ରାଜାମାନେ ସମୁଦାୟ ଦକ୍ଷିଣ କଳିଙ୍ଗ ଅଧିକାର କରି ପରେ ପୁଣି ଏକାଦଶ ଶତାବ୍ଦିରେ ଉତ୍କଳ ରାଜ୍ୟ ଅଧିକାର କଲେ । ଉତ୍କଳର ରାଜା ହେବାରୁ ଓଡ୍ରଯାଇକମାନେ ଉତ୍କଳ ଗଜପତିଙ୍କର ସୈନ୍ୟ ଶ୍ରେଣୀଭୁକ୍ତ ହେଲେ; ଏବଂ ସେମାନଙ୍କ ଆଶ୍ରୟରେ ଉତ୍କଳର ନାନା ସ୍ଥାନରେ ବସତି କରି ଜାଗିର ସ୍ୱରୂପ ଜମି ବାଡ଼ୀ ପାଇଲେ ।

ମୁସଲମାନମାନେ ଏ ଦେଶ ଆକ୍ରମଣ କରିବାରୁ ଗଜପତିଙ୍କ ଓଡ୍ର ସୈନ୍ୟମାନେ ସେମାନଙ୍କୁ ବାରମ୍ବାର ପରାସ୍ତ ଓ ବହିଷ୍କୃତ କରିଥିଲେ । ବିଶେଷରେ ସେହି ଓଡ୍ର ସୈନ୍ୟମାନଙ୍କ ପରାକ୍ରମରେ ମୁସଲମାନ ଶକ୍ତି ସମଗ୍ର ଭାରତ ଗ୍ରାସ କରିବାକୁ ସମର୍ଥ ହୋଇଥିଲେ ହେଁ ବା ସାଢ଼େ ତିନିଶହ ବର୍ଷ ପର୍ଯ୍ୟନ୍ତ ଉତ୍କଳ ବାରମ୍ବାର ଆକ୍ରମଣ କରି ପରାସ୍ତ ହୋଇଥିଲେ । ଉତ୍କଳର ସୈନ୍ୟ ଶ୍ରେଣୀ ମଧ୍ୟରେ ଓଡ୍ର ପାଇକ ବିଶେଷ ପରାକ୍ରମୀ ଓ ବଳଶାଳୀ ଥିବାରୁ ଅନ୍ୟ ସୈନ୍ୟମାନଙ୍କୁ ମଧ୍ୟ ମୁସଲମାନମାନେ ସାଧାରଣତଃ ଓଡ୍ର ନାମରେ ଅଭିହିତ କରୁଥିଲେ, ଏବଂ ଦେଶକୁ ଓଡ୍ରଦେଶ ବା ଓଡିଶା ବୋଲି ଡାକୁଥିଲେ । ସୁତରାଂ ମୁସଲମାନମାନେ ଏହି ଦେଶ ଅଧିକାର କରିବା ଦିନଠାରୁ ଦେଶର ଉତ୍କଳ ନାମ ପରିବର୍ତ୍ତରେ ଓଡିଶା ନାମ ଇତିହାସରେ ପ୍ରସିଦ୍ଧ ହୋଇ ଅଦ୍ୟାବଧି ଚଳୁଅଛି ।

## ମୋଗଲ ଅଧିକାର

୧୫୬୮—୧୭୫୮

ପଠାଣ ଓ ମୋଗଲ—ଆରବ ଦେଶରେ ପୌତ୍ତଳିକ ଧର୍ମ ଦେଖି ଏବଂ ଧର୍ମ ଅବମାନନାରେ ବ୍ୟଥିତ ହୋଇ ମହାପୁରୁଷ ମହମ୍ମଦ ୬୨୨ ଖ୍ରୀଷ୍ଟାବ୍ଦରେ ମୁସଲମାନ ଧର୍ମ ପ୍ରଚାର କଲେ । ତାହାଙ୍କ ମୃତ୍ୟୁର ଅଳ୍ପକାଳ ମଧ୍ୟରେ ମୁସଲମାନ ଧର୍ମ ଆସିଆ ମହାଦେଶର ଦକ୍ଷିଣ ପଶ୍ଚିମାଞ୍ଚଳ ଆସିଆମାଇନର ସିରିଆ, ମେସୋପଟେମିଆ, ଆରବ, ପାରସ୍ୟ, ଅଫଗାନିସ୍ଥାନ ଓ ବେଲୁଚିସ୍ଥାନ, ଅଫ୍ରିକା ମହାଦେଶର ଉତ୍ତରାଂଶ ଏବଂ ଇଉରୋପର ଦକ୍ଷିଣାଂଶ ବ୍ୟାପିଗଲା । ଖ୍ରୀଷ୍ଟାବ୍ଦ ୭୧୧ରୁ ମୁସଲମାନମାନେ ନାନା ପ୍ରକାରରେ ବାରମ୍ବାର ଭାରତ ଆକ୍ରମଣ କରି ପରିଶେଷରେ ଆଫଗାନିସ୍ଥାନର ଅଧିପତି ମହମ୍ମଦ ଘୋରି ଭାରତର ପଶ୍ଚିମାଞ୍ଚଳ ଅଧିକାର କଲେ । ୧୨୦୬ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀରେ ରାଜଧାନୀ ସ୍ଥାପନ କରି ଅଫଗାନ ବା ପଠାଣମାନେ ଭାରତରେ ରାଜପଣ

ଅନ୍ତ କଲେ । ୧୫୨୬ ଖ୍ରୀଷ୍ଟାବ୍ଦପର୍ଯ୍ୟନ୍ତ ପଠାଣମାନେ ପ୍ରାୟ ସମଗ୍ର ଭାରତ ଅଧିକାର କରି ରାଜ୍ୟଶାସନ ଚଳାଇଲେ ।

ମଧ୍ୟ ଏସିଆ-ନିବାସୀ ମୋଗଲ ଜାତି ମୁସଲମାନ ଧର୍ମ ଗ୍ରହଣ କରିଥିଲେ । ପଠାଣ ରାଜତ୍ୱ ବେଳେ ସେମାନେ ବାରମ୍ବାର ଭାରତ ଆକ୍ରମଣ କରିଥିଲେ । ପରିଶେଷରେ ମୋଗଲ ଅଧିପତି ବାବର ଅଫଗାନିସ୍ଥାନ ଅଧିକାର କରି ୧୫୨୬ ଖ୍ରୀଷ୍ଟାବ୍ଦରେ ଭାରତ ଆକ୍ରମଣ କଲେ । ପଠାଣମାନେ ପାନିପଥ ଯୁଦ୍ଧରେ ପରାଜିତ ହେଲେ । ଭାରତରେ ମୋଗଲ ରାଜତ୍ୱ ସ୍ଥାପିତ ହେଲା । ପଠାଣମାନେ ଦିଲ୍ଲୀ ସିଂହାସନରୁ ବିତାଡ଼ିତ ହୋଇ ଭାରତର ବଙ୍ଗଦେଶ ପ୍ରଭୃତି ଭିନ୍ନ ଭିନ୍ନ ପ୍ରଦେଶରେ ମୋଗଲ ସମ୍ରାଟମାନଙ୍କ ଅଧୀନରେ ଶାସନକର୍ତ୍ତା ହୋଇ ରହିଲେ ।

ମୁସଲମାନ ଅଧିକାର—ଅଫଗାନମାନେ ତିନିଶତ ବର୍ଷରୁ ଅଧିକକାଳ ଦିଲ୍ଲୀ ସମ୍ରାଟ ଥାଇ, ସମସ୍ତ ଭାରତରେ ପଠାଣ ସାମ୍ରାଜ୍ୟ ବିସ୍ତାର କରିଥିଲେ ସୁଦ୍ଧା ଉତ୍କଳ ଅଧିକାର କରିବାକୁ ସମର୍ଥ ହୋଇ ନ ଥିଲେ । ଅନ୍ତର୍ବିବାଦରେ ଉତ୍କଳ ହୀନବଳ ହୋଇ ପଡ଼ିଲା । ବଙ୍ଗ ସୁଲତାନ ସୁଲେମାନ କରାଣୀ ମୋଗଲ ରାଜତ୍ୱ ବିରୁଦ୍ଧରେ ନିଜକୁ ସ୍ୱାଧୀନ ସୁଲତାନ କରି ୧୫୬୮ ଖ୍ରୀଷ୍ଟାବ୍ଦରେ ଉତ୍କଳ ଆକ୍ରମଣ କରି ଅଧିକାର କଲେ । ଏହି ଶେଷ ଆକ୍ରମଣ ବିଷୟ ଏବଂ ପଠାଣ ସେନାପତି କଳାପାହାଡ଼ର ନୃଶଂସ ଅତ୍ୟାଚାର ଓ ପାଶବିକ ବ୍ୟବହାର ପୂର୍ବବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ।

ଯେଉଁ ମୋଗଲ ସମ୍ରାଟ ଅକବର ସୁଲେମାନଙ୍କ ବିଦ୍ରୋହ ଦମନ କରିବା ନିମନ୍ତେ ଉତ୍କଳ ଗଜପତି ମୁକୁନ୍ଦଦେବଙ୍କର ସାହାଯ୍ୟ ନେଇ ସନ୍ଧି ବନ୍ଧନ କରିଥିଲେ ; ସୁଲେମାନ ଓଡ଼ିଶା ଅଧିକାର କରି ସେହି ଅକବରଙ୍କ ମିତ୍ର ମୁକୁନ୍ଦଦେବଙ୍କ ରାଜ୍ୟ ଅପହରଣ କଲେ, ଅଥଚ ଅକବର ସୁଲେମାନଙ୍କୁ ଦମନ କରିବା ଏବଂ ଉତ୍କଳକୁ ରକ୍ଷା କରିବା ନିମନ୍ତେ କୌଣସି ଚେଷ୍ଟା କଲେ ନାହିଁ ।

ଓଡ଼ିଶା ବିଜୟ ପରେ ଆପଣାର ଶକ୍ତି ଓ ଶାସନ ଦୃଢ଼ ଭାବରେ ଚଳାଇବା ନିମନ୍ତେ ସୁଲେମାନ ଓଡ଼ିଶା ଆସିଲେ । ସେ ଆପଣାର ମନ୍ତ୍ରୀ ବା ଉଜୀରଖାଁ ଜାହାନଲୋଦୀଙ୍କୁ କଟକର ଏବଂ କଲେଖାଁ ନାମକ ଅନ୍ୟ ଜଣେ କର୍ମଚାରୀଙ୍କୁ ପୁରୀର ଶାସନକର୍ତ୍ତା ନିଯୁକ୍ତ କରି ବଙ୍ଗଦେଶକୁ ଫେରିଗଲେ । ସେ ଦୁଇଜଣ ଉପଯୁକ୍ତ ଶାସନକର୍ତ୍ତା ନଥିଲେ, ଏବଂ ଉତ୍କଳବାସୀ ଯେଉଁ କ୍ଷଣରେ ହଠାତ୍ ସ୍ୱାଧୀନତା ହରାଇ, ତାହାର ପୁନରୁଦ୍ଧାର ନିମନ୍ତେ ପିପାସା ଛାଡ଼ି ନଥିଲେ । ସୁଲେମାନ ବଙ୍ଗକୁ ଫେରିଯିବା ମାତ୍ରେ ଓଡ଼ିଆମାନେ ସ୍ୱାଧୀନ ହେବା ଉଦ୍ଦେଶ୍ୟରେ ବିଦ୍ରୋହୀ ହୋଇ ଉଠିଲେ ସୁଲେମାନ ଏହି ସଂବାଦ ପାଇ ଓଡ଼ିଶା ଆକ୍ରମଣ କଲେ । ଓଡ଼ିଶାବାସିଙ୍କର ସ୍ୱାଧୀନତା ଉଦ୍ୟମ ପୁନର୍ବାର ବିଫଳ ହେଲା ।

ଦାଉଦଙ୍କ ବିଦ୍ରୋହ— ପୂର୍ବରୁ କୁହାଯାଇଅଛି ସୁଲେମାନଙ୍କୁ ଦମନ କରିବା ନିମନ୍ତେ ଅକବର ରାଜା ମୁକୁନ୍ଦଦେବଙ୍କ ସାହାଯ୍ୟ ଲୋଡ଼ିବା ସମୟରୁ ସୁଲେମାନ ଭୟରେ ଅକବରଙ୍କ ଅଧୀନତା ସ୍ୱୀକାର କରି ଦିଲ୍ଲୀ ସମ୍ରାଟଙ୍କ ଅଧୀନରେ ବଙ୍ଗର ଶାସନକର୍ତ୍ତା ଥିଲେ । ସୁଲେମାନ କୌଶଳୀ; ସୁତରାଂ ସେ ଅକବରଙ୍କ ଅଧୀନତା ଫିଙ୍ଗି ଦେବାକୁ ପ୍ରସ୍ତୁତ ନ ଥିଲେ । ୧୫୭୩ ଖ୍ରୀଷ୍ଟାବ୍ଦରେ ତାହାଙ୍କର ମୃତ୍ୟୁ ହେଲା । ତାହାଙ୍କର ଜ୍ୟେଷ୍ଠ ପୁତ୍ର ଆଉ ଥାଉଁ ପଠାଣ ସରଦାରମାନଙ୍କ ସାହାଯ୍ୟରେ କନିଷ୍ଠ ଦାଉଦ ଖାଁ ବଙ୍ଗଦେଶର ସୁଲ-ତାନ ହେଲେ । ଦାଉଦ ଅତି ଉଦ୍ଧତ ଯୁବକ ଏବଂ ବଡ଼ ଅହଂକାରୀ ଥିଲେ । ତାହାଙ୍କର ବହୁ ସୈନ୍ୟବଳ ଥିଲା—୧ ଲକ୍ଷ ୪୦ ହଜାର ପଦାତିକ, ୪୦ ହଜାର ଅଶ୍ୱାରୋହୀ, ୨୦ ହଜାର ତୋପ ଏବଂ ୩ ହଜାର ୬ ଶହ ହସ୍ତୀ-ସୈନ୍ୟ ଥିଲା । ବଙ୍ଗ ସିଂହାସନରେ ବସିବା ମାତ୍ରେ ସେ ଆପଣାକୁ ବିଶେଷ ବଳୀୟାନ ମନେକରି ଅକବରଙ୍କ ଅଧୀନତା ଫିଙ୍ଗି ଦେଇ ସ୍ୱାଧୀନତା ଘୋଷଣା କଲେ । ସୁଲେମାନ ଆପଣା ରାଜ୍ୟର ଯେଉଁ ପଷ୍ଟିମାଂଶ ଦାନ କରି ଅକବରଙ୍କ ଅଧୀନତା ସ୍ୱୀକାର କରିଥିଲେ, ଦାଉଦ ୧୫୭୪ ଖ୍ରୀଷ୍ଟାବ୍ଦରେ ତାହା ଅଧିକାର

କରି ବସିଲେ । ବିଦ୍ରୋହୀ ଦାଉଦଙ୍କୁ ଦମନ କରିବା ନିମନ୍ତେ ଆକବର ସେନାପତି ମୁନିମ ଖାଁ ଏବଂ ଆପଣାର ରାଜସ୍ୱ-ମନ୍ତ୍ରୀ ସ୍ୱନାମଧନ୍ୟ ରାଜା ତୋଡ଼ରମଲ୍ଲଙ୍କୁ ବହୁ ସୈନ୍ୟବଳ ଦେଇ ପଠାଇଲେ । ମୁନିମ ବିହାର ଆକ୍ରମଣ କରି ଦାଉଦଙ୍କୁ ପାଟଣାରେ ଅବରୋଧ କଲେ । ବହୁକାଳ ଅବରୋଧ ପରେ ମୁନିମ ଦାଉଦଙ୍କୁ ପରାସ୍ତ କରି ନ ପାରିବାରୁ ଆକବର ନିଜେ ସସୈନ୍ୟରେ ପାଟଣାରେ ଉପସ୍ଥିତ ହେଲେ । ଦାଉଦ ଭୟଭୀତ ହୋଇ ବଙ୍ଗ ଓ ବିହାର ମୋଗଲମାନଙ୍କୁ ଛାଡ଼ି ଦେଇ ଓଡ଼ିଶାରେ ଆସି ଆଶ୍ରୟ ଗ୍ରହଣ କଲେ । ମୁନିମ ଖାଁ ଓ ତୋଡରମଲ୍ଲ ଦାଉଦଙ୍କର ଅନୁଧାବନ କରି ଜଳେଶ୍ୱର ପର୍ଯ୍ୟନ୍ତ ଅଗ୍ରସର ହେଲେ । ଜଳେଶ୍ୱରର ୬ ମାଇଲ ପଶ୍ଚିମରେ ସୁବର୍ଣ୍ଣରେଖା କୂଳରେ ବର୍ତ୍ତମାନ ତୁରକୁଆଚଉର ପାଖରେ ୧୫୭୫ ଖ୍ରୀଷ୍ଟାବ୍ଦରେ ଘୋର ଯୁଦ୍ଧ ହେଲା । ମୋଗଲ ସଙ୍ଗେ ଦାଉଦଙ୍କର ଏହା ପ୍ରଥମ ଯୁଦ୍ଧ । ଏହି ଯୁଦ୍ଧରେ ଜଣେ ମୋଗଲ ସେନାପତି ହତ ହେଲେ, ଏବଂ ଅନ୍ୟ ଜଣେ ଆହତ ହୋଇ ପଳାୟନ କଲେ । ମୁନିମ ଖାଁ ନିଜେ ଆହତ ହୋଇ ହତୋତ୍ସାହ ହୋଇ ପଡ଼ିଲେ । ମୋଗଲବାହିନୀ ମଧ୍ୟରେ ଘୋର ଆତଙ୍କ ଉପସ୍ଥିତ ହେଲା, ଏବଂ ସେମାନେ କ୍ରମେ ଛତ୍ରଭଙ୍ଗ ହେବାକୁ ବସିଲେ । ମାତ୍ର ରାଜା ତୋଡରମଲ୍ଲ ଅସାଧାରଣ କୌଶଳ, ଧୈର୍ଯ୍ୟ ଓ ଉତ୍ସାହରେ ସୈନ୍ୟମାନଙ୍କୁ ପୁଣି ଏକତ୍ରିତ କରି ପଠାଣସୈନ୍ୟଙ୍କୁ ପରାସ୍ତ କଲେ । ବହୁତ ପଠାଣ ସୈନ୍ୟ ଓ ସେନାପତି ମୋଗଲମାନଙ୍କ ଦ୍ୱାରା ନିହତ ହୋଇ ଥିବାରୁ ଯୁଦ୍ଧକ୍ଷେତ୍ର ଅଦ୍ୟାପି 'ମୋଗଲମାରି' ନାମରେ ପରିଚିତ ହୁଏ ।

ମୋଗଲମାରି ଯୁଦ୍ଧରେ ସଂପୂର୍ଣ୍ଣ ପରାସ୍ତ ହୋଇ ଦାଉଦ ପ୍ରାଣ-ଭୟରେ କଟକ ପଳାଇ ଆସିଲେ । ତୋଡ଼ରମଲ୍ଲ ତାହାଙ୍କର ଅନୁଧାବନ କରି ଶେଷରେ କଟକରେ ତାହାଙ୍କୁ ଅବରୋଧ କଲେ । ଦାଉଦ ଉପାୟାନ୍ତର ନ ଦେଖି ତୋଡରମଲ୍ଲଙ୍କଠାରେ ଆତ୍ମସମର୍ପଣ କଲେ । କଟକରେ ଦାଉଦ

ଓ ତୋଡରମଲ୍ଲଙ୍କ ମଧ୍ୟରେ ସନ୍ଧି ହେଲା (୧୫୭୬)। ସେହି ସନ୍ଧି ଅନୁସାରେ ଦାଉଦ ସମୁଦାୟ ବଙ୍ଗ ଦେଶ ମୋଗଲ ଅଧିକାରରେ ଛାଡ଼ିଦେଇ କେବଳ ଓଡ଼ିଶାର ସ୍ୱାଧୀନ ନବାବ ସ୍ୱରୂପ ରାଜତ୍ୱ କରିବାକୁ ସ୍ୱୀକୃତ ହେଲେ। (ମୁନିମ ଖାଁ ସେହି ସନ୍ଧିବେଳେ କଟକ ଆସିଥିଲେ। କଟକରୁ ସେ ଭୁବନେଶ୍ୱର ଯାଇଥିଲେ। ଭୁବନେଶ୍ୱରର ବିରାଟ ମନ୍ଦିର, ଅଦ୍ଭୁତ ଶିଳ୍ପକଳା ଓ ବିଚିତ୍ର ଦୃଶ୍ୟ ଦେଖି ତାହାଙ୍କ ହୃଦୟ ବିଗଳିତ ହୋଇଥିଲା। ମୁସଲମାନ ହୋଇ ମଧ୍ୟ ସେ କହିଥିଲେ, ଏହି ଦେଶ ମନୁଷ୍ୟ ଅଧିକାର କରିବାର ଦେଶ ନୁହେଁ; ଏହା ସମ୍ପୂର୍ଣ୍ଣ ଭାବରେ ଈଶ୍ୱରଙ୍କର ପୁଷ୍ପ; ହିନ୍ଦୁସ୍ଥାନ ମଧ୍ୟରେ ଏହା ଏକା ମନୁଷ୍ୟ ପକ୍ଷରେ ତୀର୍ଥାଟନର ଏକମାତ୍ର ସ୍ଥଳ।)।

ଅଫଗାନ ବିଦ୍ରୋହ ଏବଂ ମୋଗଲ ଅଧିକାର—କଟକ ସନ୍ଧି ପରେ ମୁନିମ ଖାଁ ବଙ୍ଗଦେଶର ଶାସନକର୍ତ୍ତା ହୋଇ ଗୌଡ଼ନଗରରେ ରାଜଧାନୀ ସ୍ଥାପନ କଲେ। ଦେଶ ଶାନ୍ତ ହେବାର ଦେଖି ରାଜା ତୋଡରମଲ୍ଲ ଦିଲ୍ଲୀ ଫେରିଗଲେ।

ଦାଉଦ ବଙ୍ଗଦେଶ ହରାଇ କଟକ ସନ୍ଧିରେ ନିତାନ୍ତ ସନ୍ତୁଷ୍ଟ ନ ଥିଲେ। କଟକ ସନ୍ଧିର ଅଳ୍ପକାଳ ମଧ୍ୟରେ ବଙ୍ଗ ନବାବ ମୁନିମ ଖାଁଙ୍କର ମୃତ୍ୟୁ ହେଲା। ଦାଉଦ ଏହି ଅବସରରେ ସ୍ୱାଧୀନତାର ପୁନରୁଦ୍ଧାର ନିମନ୍ତେ ଶେଷ ଉଦ୍ୟମ ସ୍ୱରୂପ ବଙ୍ଗଦେଶ ଆକ୍ରମଣ କଲେ। ଅକବର ହୋସେନ-କୁଲିଖାଁ ନାମକ ଜଣେ ପ୍ରଧାନ ସେନାପତିଙ୍କୁ ବଙ୍ଗଦେଶର ଶାସନକର୍ତ୍ତା ସ୍ୱରୂପ ଏବଂ ବଙ୍ଗ-ଉତ୍କଳ-ବିଜେତା ରାଜା ତୋଡ଼ରମଲ୍ଲଙ୍କୁ ଦାଉଦଙ୍କ ଦମନ ନିମନ୍ତେ ପଠାଇଲେ। ୧୫୭୬ ଖ୍ରୀଷ୍ଟାବ୍ଦରେ ଆଗମହଲଠାରେ ଘୋର ଯୁଦ୍ଧ ହେଲା। ପଠାଣସୈନ୍ୟ ବହୁତ ନିହତ ହେଲେ, ଅବଶିଷ୍ଟ ଛତ୍ରଭଙ୍ଗ ହେଲେ। ଦାଉଦ ଖାଁ ପ୍ରାଣ ନେଇ ପଳାଇ ଯାଉଯାଉ ଧରାପଡ଼ି ମୋଗଲ ହସ୍ତରେ ପ୍ରାଣ ହରାଇଲେ। ଦାଉଦଙ୍କ ମୃତ୍ୟୁରେ (୧୫୭୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ମୋଗଲ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା।

# ଅକବରଙ୍କ ଶାସନ

## ଖ୍ରୀଷ୍ଟ ୧୫୭୮—୧୬୦୫ ଅବ୍ଦ

ମସୁମ ଖାଁ—ଓଡ଼ିଶା ଅକବରଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା, ଏବଂ ବଙ୍ଗ-ସୁବାର ଅନ୍ତର୍ଗତ ହେଲା; ମାତ୍ର ଅକବରଙ୍କ ଶାସନ ଶାନ୍ତିରେ ଚଳପାରି ନ ଥିଲା । ପଠାଣମାନେ ବାରମ୍ବାର ବିଦ୍ରୋହୀ ହୋଇ ଅକବରଙ୍କ ମୃତ୍ୟୁକାଳ ପର୍ଯ୍ୟନ୍ତ ତାହାଙ୍କ ସୁଶାସନରୁ ଓଡ଼ିଶାକୁ ବଞ୍ଚିତ ରଖିଲେ । ରାଜା ତୋଡରମଲ୍ଲ ଦାଉଦଙ୍କ ମୃତ୍ୟୁପରେ ଶାନ୍ତି ଓ ଶାସନ ବ୍ୟବସ୍ଥା କରି ଏବଂ ସମ୍ରାଟଙ୍କ ନିମନ୍ତେ ଓଡ଼ିଶାରୁ ବହୁସଂଖ୍ୟକ ହାତୀ ଧରି ଦିଲ୍ଲୀକୁ ଫେରିଗଲେ । ତୋଡରମଲ୍ଲ ଫେରି ଯିବା ସଙ୍ଗେ ସଙ୍ଗେ ପଠାଣମାନେ ବଙ୍ଗଦେଶରେ ପୁଣି ବିଦ୍ରୋହାଚରଣ କଲେ । ବଙ୍ଗ ସୁବାଦାର ହୋସେନକୁଲିଖାଁ ବିଦ୍ରୋହୀ ପଠାଣମାନଙ୍କୁ ସପ୍ତଗ୍ରାମ ଯୁଦ୍ଧରେ ପରାସ୍ତ କଲେ । ବଙ୍ଗଦେଶରୁ ବିତାଡ଼ିତ ହୋଇ ପଠାଣମାନେ ଆଶ୍ରୟ ନିମନ୍ତେ ଓଡ଼ିଶାକୁ ପଳାଇ ଆସିଲେ । ଦୁଇ ବର୍ଷକାଳ ହୋସେନକୁଲିଖାଁ ସେମାନଙ୍କ ବିଦ୍ରୋହ ଦମନରେ ଲାଗି କଣ୍ଟକଦମନ ପାଇଁ ଶାନ୍ତି ଆଣିଲେ । ୧୫୭୮ ଖ୍ରୀଷ୍ଟାବ୍ଦରେ ହୋସେନକୁଲୀଙ୍କର ମୃତ୍ୟୁ ହେଲା । ମୁଜାଫରଖାଁ ତାହାଙ୍କ ପଦରେ ବଙ୍ଗ ଶାସନକର୍ତ୍ତା ନିଯୁକ୍ତ ହେଲେ; ଏବଂ ତାହାର ପରବର୍ଷ (୧୫୭୯) ଅଫଗାନ ମସୁମଖାଁଙ୍କୁ ଅକବର ଓଡ଼ିଶାର ଶାସନକର୍ତ୍ତା ନିଯୁକ୍ତ କରି ପଠାଇଲେ ।

ଏଥିମଧ୍ୟରେ ପଠାଣ କେତେକ ମୋଗଲ ଶାସନକର୍ତ୍ତାମାନଙ୍କଠାରୁ ଓଡ଼ିଶାରେ ଜାଗିର ଜମି ପାଇ ମୋଗଲ ଶାସନକାର୍ଯ୍ୟରେ ସାହାଯ୍ୟ କରୁଥିଲେ । ମୋଗଲ କର୍ମଚାରୀମାନେ ସେହି ଜାଗିରଦାରଙ୍କ ଉପରେ ନାନା ଘୋର ଜୁଲୁମ କରି ବେଳେବେଳେ ବହୁ ଧନ ଧାନ୍ୟ ଏବଂ ଜାଗିରି ଜମିକୁ

ଖଣ୍ଡେ ଖଣ୍ଡେ ଅତ୍ୟାଚାର୍ କରୁଥିଲେ । ଏଥିରେ ଜାଗିରଦାରମାନେ ଅସନ୍ତୁଷ୍ଟ ଥିଲେ । ବଙ୍ଗ-ଶାସନକର୍ତ୍ତା ମୁଜାଫର ସେମାନଙ୍କ ଆୟବ୍ୟୟ ହିସାବ ମାଗିବାରୁ ସେମାନେ ଏକବରେ ବିଦ୍ରୋହୀ ହୋଇ ଉଠିଲେ । ଓଡ଼ିଶା-ଶାସନକର୍ତ୍ତା ମୁଖୁମ ଖାଁ ସେହି ହିସାବ ଦେବାକୁ ବାଧ୍ୟ ହେବାରୁ ସେ ଏହି ବିଦ୍ରୋହର ଅଧିନାୟକ ହେଲେ । ଓଡ଼ିଶାରୁ ସମସ୍ତ ମୋଗଲ କର୍ମଚାରୀମାନଙ୍କୁ ସେ ତଡ଼ିଦେଇ ରୂପନାରାୟଣ ନଦୀ ପର୍ଯ୍ୟନ୍ତ ସମୁଦାୟ ଦେଶ ଅଧିକାର କରି ବସିଲେ । ବଙ୍ଗ ଶାସନକର୍ତ୍ତା ମୁଜାଫର ଏହି ବିଦ୍ରୋହ ଦମନରେ ମାଇ ଶେଷରେ ବିଦ୍ରୋହୀମାନଙ୍କ ହସ୍ତରେ ପ୍ରାଣତ୍ୟାଗ କଲେ; ଏବଂ ବିହାର ମଧ୍ୟ ବିଦ୍ରୋହୀମାନଙ୍କ ହସ୍ତଗତ ହେଲା ।

ଅକବର ଏହି ସମ୍ବାଦ ପାଇବା ମାତ୍ରେ ୧୫୮୦ ଖ୍ରୀଷ୍ଟାବ୍ଦରେ ରାଜା ତୋଡ଼ରମଲ୍ଲଙ୍କୁ ବଙ୍ଗ ବିହାରର ଶାସନକର୍ତ୍ତା ସ୍ୱରୂପ ପଠାଇଲେ । ତୋଡ଼ରମଲ୍ଲ ବିଦ୍ରୋହୀ ଦଳକୁ ପରାଜୟ କରି ସେମାନଙ୍କର ଅନୁଧାବନ କଲେ । ପଳାତକ ପଠାଣମାନେ ଆଶ୍ରୟ ଖୋଜି ଓଡ଼ିଶା ମଧ୍ୟକୁ ପୁନର୍ବାର ପଳାଇ ଆସି ବନ ପର୍ବତ ମଧ୍ୟରେ ଲୁଚି ରହିଲେ ।

ତୋଡ଼ରମଲ୍ଲଙ୍କ ଓଡ଼ିଶା ବନ୍ଦୋବସ୍ତ—ଯୁଦ୍ଧକ୍ଷେତ୍ର ଅପେକ୍ଷା ଶାସନ-ସମ୍ବନ୍ଧ ବିଷୟରେ ତୋଡ଼ରମଲ୍ଲ ସୁପ୍ରସିଦ୍ଧ ଥିଲେ । ଅକବର ଯେଉଁ ହିନ୍ଦୁ ସେନାପତି ଓ ସାଧୁ ମନ୍ତ୍ରୀଙ୍କ ବଳରେ ଆପଣାର ଉଦାର ନୀତି ଦ୍ୱାରା ସୁବିଶାଳ ମୋଗଲ ସାମ୍ରାଜ୍ୟ ସ୍ଥାପନ କରି ଉଦାର ଶାସନ ପରିଚାଳନା କରଥିଲେ, ରାଜା ତୋଡ଼ରମଲ୍ଲ ସେମାନଙ୍କ ମଧ୍ୟରେ ଜଣେ ଥିଲେ । ତୋଡ଼ର ମଲ୍ଲ ମୋଗଲସାମ୍ରାଜ୍ୟର ପ୍ରଧାନ ରାଜସ୍ୱ ସଚିବ ଥିଲେ । ମୋଗଲସାମ୍ରାଜ୍ୟର ଶାସନଶୃଙ୍ଖଳା ବହୁ ପରିମାଣରେ ତାଙ୍କର ଅସାଧାରଣ ବୁଦ୍ଧି ବିଚକ୍ଷଣତା ବଳରେ ସାଧିତ ହୋଇଥିଲା । ଅକବର ସେହି ବିଚକ୍ଷଣ ହିନ୍ଦୁ ମନ୍ତ୍ରୀ ଏବଂ ସେନାପତିମାନଙ୍କ ଉପରେ ଯେପରି ଅପାର ବିଶ୍ୱାସ ରଖିଥିଲେ,

ସେମାନେ ସେହିପରି ଅକବରଙ୍କ ପ୍ରତି ଅଚଳ ଭକ୍ତି ବିଶ୍ୱାସ ରଖି ସାମ୍ରାଜ୍ୟ ବୃଦ୍ଧି ଓ ଶାସନରେ ସହାୟତା କରୁଥିଲେ । ବର୍ତ୍ତମାନ ଯୁଗରେ ଏହା ଅସମ୍ଭବ ଓ ଆଶ୍ଚର୍ଯ୍ୟଜନକ ବୋଧ ହୋଇପାରେ; ମାତ୍ର ଅକବରଙ୍କ ବିଶାଳହୃଦୟ ଓ ହିନ୍ଦୁ ପାତ୍ରମନ୍ତ୍ରୀମାନଙ୍କର ସ୍ୱାଭାବିକ ପ୍ରଭୁଭକ୍ତି ବିଗ୍ରହ ବଳେ, ଏହା ଅତି ସହଜ କାର୍ଯ୍ୟ ହୋଇଥିଲା । ରାଜା ତୋଡ଼ରମଲ୍ଲ ସମଗ୍ର ମୋଗଲ ସାମ୍ରାଜ୍ୟରେ ଜମାବ ବନ୍ଦୋବସ୍ତ ଯେପରି କରାଇଥିଲେ ଓଡ଼ିଶା ଜୟ କରିବା ପରେ ସେହିପରି ଜମିଜମା ବନ୍ଦୋବସ୍ତ କରି ଅରାଜକ ଅବସ୍ଥାରୁ ଓଡ଼ିଶାରେ ଶାସନଶୃଙ୍ଖଳା ସ୍ଥାପନ କରିଥିଲେ ।

୧୫୮୨ ଖ୍ରୀଷ୍ଟାବ୍ଦରେ ରାଜା ତୋଡ଼ରମଲ୍ଲ ଓଡ଼ିଶାର ବନ୍ଦୋବସ୍ତ ଶେଷ କଲେ । ୧୨ ଦସ୍ତି ପଦ୍ଧତିରେ ସମଗ୍ର ଦେଶ ଜମାବ କରାଗଲା । ପ୍ରଦେଶଟି ପାଞ୍ଚ ସରକାରରେ ବିଭକ୍ତ ହେଲା ; ଯଥା—ଜଲେଶ୍ୱର ସରକାର ରୂପନାରାୟଣ ନଦୀ କୂଳରୁ ବଇତରଣୀ ନଦୀ ପର୍ଯ୍ୟନ୍ତ ; ଭଦ୍ରକ ସରକାର ବଇତରଣୀକୂଳରୁ ବ୍ରାହ୍ମଣୀ ପର୍ଯ୍ୟନ୍ତ ; କଟକ ସରକାର ବ୍ରାହ୍ମଣୀ କୂଳରୁ ଚିଲିକା ପର୍ଯ୍ୟନ୍ତ ; କଳିଙ୍ଗ ଦଣ୍ଡପାଟ ଓ ରାଜମହେନ୍ଦ୍ରୀ ସରକାରରେ ଚିଲିକା କୂଳରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ବିଭକ୍ତ ହେଲା । ଏଥିମଧ୍ୟରୁ ଦକ୍ଷିଣ ଓଡ଼ିଶା ଅର୍ଥାତ୍ କଳିଙ୍ଗ ଦଣ୍ଡପାଟ ଓ ରାଜମହେନ୍ଦ୍ରୀ ସରକାର ନାମକୁ ଓଡ଼ିଶା ମଧ୍ୟରେ ରହିଲା । ଫଳତଃ ଅଫଗାନମାନେ ଓଡ଼ିଶା ଅଧିକାର କରିବା ପରେ ୧୫୭୧ ଖ୍ରୀଷ୍ଟାବ୍ଦରେ ଗୋଲକୁଣ୍ଡାର ସୁଲତାନ ୪ର୍ଥ ଇବ୍ରାହିମ ଚିକାକୋଲ ପର୍ଯ୍ୟନ୍ତ ସମସ୍ତ ଉତ୍କଳଦେଶ ଦକ୍ଷିଣ ଦିଗରୁ ଅଧିକାର କରିନେଇଥିଲେ । ଅକବରଙ୍କ ଓଡ଼ିଶା ଦକ୍ଷିଣରେ କେବଳ ଚିଲିକାର ରଘୁନାଥପୁରର ଦକ୍ଷିଣସୀମା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଉତ୍ତର ଓଡ଼ିଶାର ୩ ସରକାର ମଧ୍ୟରୁ ମେଦିନୀପୁର ଓ ନାରାୟଣପୁର ଜଲେଶ୍ୱର ସରକାର ମଧ୍ୟରେ, ବାଲେଶ୍ୱର ମୟୂରଭଞ୍ଜ

ପ୍ରବୃତ ରାଜ୍ୟମାନ ଉଡ଼ିଶା ସରକାର ମଧ୍ୟରେ, ଏବଂ କଟକ ଓ ପୁରୀବାଲା ଓ ଅନ୍ୟାନ୍ୟ ଗଡ଼ଜାତ ରାଜ୍ୟମାନ କଟକ ସରକାର ମଧ୍ୟରେ ରହିଲା । ପୂର୍ବବର୍ତ୍ତୀ ହିନ୍ଦୁ ରାଜତ୍ୱକାଳରେ ଯେଉଁ ସାମନ୍ତ ରାଜାମାନେ ଅର୍ଦ୍ଧ ସ୍ୱାଧୀନଭାବରେ ରାଜ୍ୟ ଭୋଗ କରୁଥିଲେ, ତୋଡରମଲ୍ଲ ସେମାନଙ୍କ ରାଜ୍ୟ ଏକାବେଳକେ ଅପହରଣ ନ କରି କେବଳ କରଦ ସାମନ୍ତ ରାଜାରୂପେ ପୂର୍ବପରି ନିଜ ନିଜ ରାଜ୍ୟରେ ରାଜତ୍ୱ କରିବାକୁ ଛାଡ଼ିଦେଲେ । ସେହିସବୁ ରାଜ୍ୟ ସେହି ଦିନରୁ ଗଡଜାତ ନାମରେ ଅଭିହିତ ହେଲା । ମୋଗଲ ଶାସନର ଏବଂ ପୂର୍ବବର୍ତ୍ତୀ ହିନ୍ଦୁ ରାଜାମାନଙ୍କର ଖାସ ଦଖଲରେ ଯେଉଁସବୁ ରାଜ୍ୟ ଥିଲା, ତାହା ମୋଗଲବନ୍ଦୀ ନାମରେ କଥିତ ହେଲା । ଅଦ୍ୟାପି ଗଡଜାତ ଓ ମୋଗଲ-ବନ୍ଦୀ ଓଡ଼ିଶାର ଦୁଇ ବିଭାଗ ହୋଇ ରହିଛି ।

ତୋଡରମଲ୍ଲଙ୍କ ଓଡ଼ିଶା ବନ୍ଦୋବସ୍ତ ମୋଟ ଉପରେ ବିଶେଷ କିଛି ନୂତନ ନ ଥିଲା । ପୂର୍ବରୁ ଗଜପତିମାନଙ୍କ ସମୟରେ ଯେପରି ରାଜସ୍ୱ ବିଭାଗ ଓ ଆଦାୟ ପ୍ରଣାଳୀ ଥିଲା ; ତହିଁରେ କେତେକ ନାମ ପରିବର୍ତ୍ତନ ବ୍ୟତୀତ ତୋଡରମଲ୍ଲ ବିଶେଷ କିଛି ପରିବର୍ତ୍ତନ କରି ନ ଥିଲେ । ତୋଡରମଲ୍ଲଙ୍କ ବନ୍ଦୋବସ୍ତ ବିଧାନମାନ ମୋଗଲ ରାଜତ୍ୱ ଶେଷ ପର୍ଯ୍ୟନ୍ତ ପ୍ରାୟ ସେହିପରି ଚାଲିଥିଲା । ପରେ ପ୍ରସଙ୍ଗ କ୍ରମେ ଏହାର ସବିଶେଷ ବିବରଣ ଦିଆଯିବ ।

ଭୋଇବଂଶ ପ୍ରତିଷ୍ଠା — ତୋଡରମଲ୍ଲଙ୍କ ଉଦାର ଶାସନ ନୀତି କେବଳ ଏତିକିରେ ସମ୍ପୂର୍ଣ୍ଣ ଦେଖାଯାଇ ନ ଥିଲା । ତାହାଙ୍କର ଉଦାରତାର ଉତ୍କୃଷ୍ଟ ଦୃଷ୍ଟାନ୍ତ ଓଡିଶାରେ ଭୋଇବଂଶର ରାଜତ୍ୱ ପ୍ରତିଷ୍ଠା । ଏଥିପାଇଁ ତୋଡରମଲ୍ଲ ଓଡିଶାରେ ସ୍ମରଣୀୟ ହୋଇଛନ୍ତି । ମୁକୁନ୍ଦ ଦେବଙ୍କ ମୃତ୍ୟୁ ପରେ ଉତ୍କଳ ସିଂହାସନ ରାଜଶୂନ୍ୟ ହେଲା । ସେହି ଅରାଜକ ଅବସ୍ଥାରେ ଗୋବିନ୍ଦ ଦେବଙ୍କର ପ୍ରଧାନ ମନ୍ତ୍ରୀ ଭୋଇ ଜନାର୍ଦ୍ଦନ ବିଦ୍ୟାଧରଙ୍କ ପୁତ୍ର

ଜମାଇ ରାଜ୍ୟର ଦକ୍ଷିଣରୁ ଆସି ୧୫୬୮ ଖ୍ରୀଷ୍ଟାବ୍ଦରେ ଖୋରଧା ଅଧିକାର କଲେ, ଏବଂ ଖୋରଧାରେ ଆପଣାର ରାଜଧାନୀ ସ୍ଥାପନ କରି ରାମଚନ୍ଦ୍ର ଦେବ ନାମରେ ସ୍ୱାଧୀନ ରାଜତ୍ୱ ଚଳାଇଲେ । ରାମଚନ୍ଦ୍ର ଦେବ ଆପଣାକୁ ପୂର୍ବ ଗଜପତିମାନଙ୍କର ଉତ୍ତରାଧିକାରୀ ଜ୍ଞାନ କରି ନିଜେ ଗଜପତି ଆଖ୍ୟା ଧାରଣ କଲେ । ଜନାର୍ଦ୍ଦନ ବିଦ୍ୟାଧର ଗଜପତିଙ୍କ ରାଜଦରବାରରେ ଭୋଇ ବା ପ୍ରଧାନ ରାଜସ୍ୱ-ସଚିବ ଥିଲେ । ସେହି ପଦ ଅନୁସାରେ ରାମଚନ୍ଦ୍ରଦେବ ଏବଂ ଖୋରଧା ସିଂହାସନରେ ତାଙ୍କର ଉତ୍ତରାଧିକାରୀମାନେ ଭୋଇବଂଶୀୟ ରାଜା ବୋଲି ପରିଚିତ ହେଲେ । ଭୋଇ ବଂଶ ଯଦୁବଂଶ ନାମରେ ମଧ୍ୟ ପରିଚିତ । ପରବର୍ତ୍ତୀ ଅଧ୍ୟାୟରେ ଏହି ବଂଶର ବିଶେଷ ବିବରଣ ଦିଆଯିବ ।

ରାଜା ତୋଡରମଲ୍ଲ ଓଡ଼ିଶା ବିଜୟ ସମ୍ପୂର୍ଣ୍ଣ କଲେ ମଧ୍ୟ ରାମଚନ୍ଦ୍ରଦେବଙ୍କ ରାଜତ୍ୱ ଅସ୍ୱୀକାର କରି ପାରିଲେ ନାହିଁ । ବରଂ ୧୫୮୨ ଖ୍ରୀଷ୍ଟାବ୍ଦରେ ସେ ରାମଚନ୍ଦ୍ର ଦେବଙ୍କୁ ଓଡ଼ିଶାର ସ୍ୱାଧୀନ ରାଜା ବୋଲି ସ୍ୱୀକାର କଲେ; ଏବଂ ସମସ୍ତ ଖୋରଧା, ରହାଙ୍ଗ, ଚଉଦଶକୁଦ, ସିରାଇ, ଲେମ୍ବାଇ ପ୍ରଗଣାମାନ ଧରି ସମସ୍ତ ରାଜ୍ୟ ନିଷ୍କର ଭାବରେ ତାଙ୍କୁ ଛାଡ଼ିଦେଲେ । ରାମଚନ୍ଦ୍ରଙ୍କ ଅଧୀନରେ ୭୧ ଦୁର୍ଗ ରହିଲା ।

କୁତୁଲଖାଁଙ୍କ ବିଦ୍ରୋହ—ଓଡ଼ିଶା ଶାସନ ନିୟମିତ କରି ରାଜା ତୋଡ଼ରମଲ୍ଲ ୧୫୮୨ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ଫେରିଗଲେ । ସେ ଫେରିଯିବା ସଙ୍ଗେ ସଙ୍ଗେ ପଠାଣମାନେ ପୁଣି ପାହାଡ଼ ଜଙ୍ଗଲ ମଧ୍ୟରୁ ବାହାରି କୁତୁଲଖାଁଙ୍କ ନେତୃତ୍ୱରେ ବିଦ୍ରୋହ ଆରମ୍ଭ କଲେ । କୁତୁଲ ଖୋରଧାରେ ରାମଚନ୍ଦ୍ର ଦେବଙ୍କୁ ପରାଜୟ କରି ପୁରୀ ଅଧିକାର କଲେ । ଉତ୍ତର ଦିଗରେ ବିଦ୍ରୋହୀମାନେ ବଙ୍ଗ ଦେଶ ପର୍ଯ୍ୟନ୍ତ ଅଗ୍ରସର ହୋଇ ବଙ୍ଗର ମୋଗଲ ସୁବାଦାରଙ୍କୁ ପରାସ୍ତ କଲେ । ଉତ୍କଳର ସର୍ବଧ୍ୱଂସୀ କଳାପାହାଡ଼

ମଧ୍ୟ ଏହି ବିଦ୍ରୋହରେ ଯୋଗ ଦେଇଥିଲେ । ଦାମୋଦର ନଦୀ କୂଳରେ ମୋଗଲମାନେ ନିକଟରେ ୧୫୮୩ ଖ୍ରୀଷ୍ଟାବ୍ଦରେ ମୋଗଲ ସୈନ୍ୟ ଅଫଗାନମାନଙ୍କୁ ଆକ୍ରମଣ କଲେ । ଏହି ଯୁଦ୍ଧରେ କୁତୁଲଖାଁ ପରାସ୍ତ ହେଲେ, ଏବଂ କଳାପାହାଡ଼ ନିହତ ହେଲେ । ମୋଗଲମାନଙ୍କର ଜୟ ହେଲେ ସୁଦ୍ଧା, ଅଫଗାନମାନଙ୍କୁ ଚିରକାଳ ନିମନ୍ତେ ପରାସ୍ତ ଓ ଶାନ୍ତ କରିବା ଅସାଧ୍ୟ ମଣି ବଙ୍ଗ ସୁବାଦାର ସେମାନଙ୍କ ସଙ୍ଗେ ସନ୍ଧି ସ୍ଥାପନ କଲେ । ଏହି ସନ୍ଧିରେ ସ୍ଥିର ହେଲା ଯେ କୁତୁଲଖାଁ ଓଡ଼ିଶାରେ ସ୍ୱାଧୀନ ରାଜାରୂପେ ରାଜତ୍ୱ କରିବେ ଏବଂ ଆଉ ବଙ୍ଗ ଆକ୍ରମଣ କରିବେ ନାହିଁ ।

ରାଜା ମାନସିଂହ—ସମ୍ରାଟ ଆକବର ଏହି ସନ୍ଧି କନ୍ତୁ ସ୍ୱୀକାର କଲେ ନାହିଁ । ସେ ବଙ୍ଗ ସୁବାଦାରଙ୍କୁ ପଦଚ୍ୟୁତ କରି ୧୫୮୭ ଖ୍ରୀଷ୍ଟାବ୍ଦରେ ଅପଣାର ଅନ୍ୟତମ ବିଶ୍ୱାସୀ ହିନ୍ଦୁ ସେନାପତି ରାଜା ମାନସିଂହଙ୍କୁ ବଙ୍ଗର ସୁବାଦାର ନିଯୁକ୍ତ କରି ପଠାଇଲେ । ରାଜା ମାନସିଂହ ୧୫୯୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଆକ୍ରମଣ କଲେ । ତାହାଙ୍କ ପୁତ୍ର ଜଗତ୍‌ସିଂହ ମେଦିନୀପୁର ମଧ୍ୟସ୍ଥ ଧାରପୁରଠାରେ କୁତୁଲଖାଁଙ୍କ ସଙ୍ଗେ ଯୁଦ୍ଧକରି ପରାସ୍ତ ଓ ବନ୍ଦୀ ହେଲେ । କୁତୁଲ ବିଜୟ-ଗର୍ବ-ଉନ୍ମତ୍ତ ହୋଇ ବିଷ୍ଣୁପୁର ଅଧିକାର କଲେ । ମାନସିଂହ ସମ୍ବାଦ ପାଇବା ମାତ୍ରେ କୁତୁଲଙ୍କୁ ପୁଣି ସେହି ଧାରପୁରଠାରେ ଆକ୍ରମଣ କରି ନିହତ କଲେ । କୁତୁଲଙ୍କ ଉଜୀର ବା ମନ୍ତ୍ରୀ ସିଆନ ଇଶାଖାଁ ମାନସିଂହଙ୍କୁ ୧୫୦ ହସ୍ତୀ ଉପହାର ଦେଇ ସନ୍ଧି କଲେ । ସେହି ସନ୍ଧି ଅନୁସାରେ ଜଗତ ସିଂହ ମୁକ୍ତ ହେଲେ । ଆକବରଙ୍କୁ ସମ୍ରାଟ ମାନି ତାହାଙ୍କ ଅଧୀନରେ ପଠାଣମାନେ ଓଡ଼ିଶା ଶାସନ କରିବେ ଏବଂ ଆକବରଙ୍କ ନାମରେ ସମସ୍ତ ବିଜ୍ଞପ୍ତି ଘୋଷଣା ପ୍ରଚାର କରିବେ । ଶେଷରେ ସ୍ଥିର ହେଲା ଯେ ଇଶା ଏବଂ ତାହାଙ୍କର ପଠାଣ ସୈନ୍ୟମାନେ

ଜଗନ୍ନାଥଙ୍କ ପବିତ୍ରଭୂମି ପୁରୀ ଏବଂ ଖୋରଧାର ରାଜା ରାମଚନ୍ଦ୍ର ଦେବଙ୍କ ଉପରେ କଦାପି ହସ୍ତକ୍ଷେପ କରିବେ ନାହିଁ ।

ସେହି ସନ୍ଧି ଅନୁସାରେ ଇଶା ସଫଳ ପଠାଣମାନଙ୍କୁ ଶାନ୍ତ କରି ଦୁଇ ବର୍ଷକାଳ ଓଡ଼ିଶା ଶାନ୍ତିରେ ଶାସନ କଲେ । ମାତ୍ର ୨ ବର୍ଷ ପରେ ୧୫୯୨ ଖ୍ରୀଷ୍ଟାବ୍ଦରେ ଇଶାଙ୍କର ମୃତ୍ୟୁ ହେବାରୁ ଦୁର୍ଦ୍ଧାନ୍ତ ପଠାଣମାନେ କୁତୁଲୁଖାଁଙ୍କ ଦୁଇ ପୁତ୍ରଙ୍କ ନେତୃତ୍ୱରେ ଜଗନ୍ନାଥଙ୍କ ସଂପତ୍ତି ଅପହରଣ କରିବା ନିମନ୍ତେ ପୁରୀ ଆକ୍ରମଣ କଲେ । ରାଜା ମାନସିଂହ ଅକବରଙ୍କ ଅନୁମତି କ୍ରମେ ଦ୍ୱିତୀୟ ବାର ଓଡ଼ିଶା ଆକ୍ରମଣରେ ବାହାରିଲେ । ପଠାଣମାନେ ମାନସିଂହଙ୍କ ଗତିରୋଧ ନିମନ୍ତେ ଉତ୍ତର ଦିଗକୁ ଅଗ୍ରସର ହେଲେ । ସୁବର୍ଣ୍ଣରେଖା କୂଳବର୍ତ୍ତୀ ବନାପୁରଠାରେ ମାନସିଂହଙ୍କ ସଙ୍ଗେ ପଠାଣମାନଙ୍କର ଯୁଦ୍ଧ ହେଲା । ପଠାଣମାନେ ସମ୍ପୂର୍ଣ୍ଣ ପରାସ୍ତ ହୋଇ ପଳାୟନ କଲେ । ମାନସିଂହ ଓଡ଼ିଶା ମଧ୍ୟକୁ ଅଗ୍ରସର ହୋଇ ଜଳେଶ୍ୱର, କଟକ ଓ ଅଳି ଦୁର୍ଗମାନ ଅଧିକାର କଲେ । ଅଫଗାନମାନେ ଖୋରଧା ରାମଚନ୍ଦ୍ର ଦେବଙ୍କୁ ପରାଜୟ କରି ତାଙ୍କ ଅଧୀନସ୍ଥ ସାରଙ୍ଗଗଡ଼ ଅବରୋଧ କରିଥିଲେ । ମାନସିଂହ କଟକ ଅଧିକାର ପରେ ସାରଙ୍ଗଗଡରେ ପଠାଣମାନଙ୍କୁ ଆକ୍ରମଣ କଲେ । ପଠାଣମାନେ ସମ୍ପୂର୍ଣ୍ଣରୂପେ ପରାସ୍ତ ହୋଇ ପଳାୟନ କଲେ । ଏହି ପରାଜୟ ପରେ ପଠାଣମାନେ ବହୁକାଳ ନିମନ୍ତେ ଶାନ୍ତ ହୋଇ-ଗଲେ, ଏବଂ ଓଡ଼ିଶା ଅକବରଙ୍କ ସୁଶାସନ ବହୁକାଳ ଶାନ୍ତିରେ ଭୋଗ କରି ପାରିଲା । ତୋଡରମଲ୍ଲ ଓଡ଼ିଶା ରାଜସ୍ୱର ବନ୍ଦୋବସ୍ତ କରିଥିଲେ ସତ୍ୟ, ବାରମ୍ବାର ପଠାଣ ବିଦ୍ରୋହ ହେତୁ ଅକବର ଓଡ଼ିଶାରୁ ରାଜସ୍ୱ ନିୟମିତରୂପେ ଆଦାୟ ପାଉ ନ ଥିଲେ । ସାରଙ୍ଗଗଡ ଯୁଦ୍ଧରେ ପଠାଣମାନେ ଶାନ୍ତ ହେବା ପରେ ରାଜସ୍ୱ ନିୟମିତ ଆଦାୟର ସୂତ୍ରପାତ ହେଲା । ରାଜା ମାନସିଂହ ଏବଂ ପରବର୍ତ୍ତୀ ବଙ୍ଗ ସୁବାଦାରମାନେ ବଙ୍ଗ ବିହାର ଏବଂ

ଓଡ଼ିଶାର ସୁବାଦାର ହୋଇ ନିଯୁକ୍ତ ହେଲେ । ପଠାଣ ଦୌରାତ୍ମ୍ୟରୁ ଓଡ଼ିଶାକୁ ମୁକ୍ତ କରିବା ଏବଂ ସେମାନଙ୍କ ବଳ ହ୍ରାସ କରିବା ଉଦ୍ଦେଶ୍ୟରେ ମାନସିଂହ ପଠାଣମାନଙ୍କୁ ଓଡ଼ିଶାରୁ ନେଇ ବଙ୍ଗ ଦେଶର ଯଶୋର ଜିଲ୍ଲାରେ ରଖାଇଲେ ।

ରାଜା ମାନସିଂହ ଏବଂ ଖୋର୍ଦ୍ଧାବଂଶ—ପଠାଣମାନଙ୍କ ବ୍ୟତୀତ ଓଡ଼ିଶାର ହିନ୍ଦୁ ରାଜା ପ୍ରଜା ପ୍ରାୟ ସମସ୍ତେ ମୋଗଲ ଶାସନର ପକ୍ଷପାତୀ ଥିଲେ । ପଠାଣମାନଙ୍କ ଅତ୍ୟାଚାର ଓ ଲୁଣ୍ଠନରେ ସେମାନେ ବାରମ୍ବାର ପୀଡ଼ିତ ଓ ଧ୍ୱଂସପ୍ରାପ୍ତ ହୋଇ ସେମାନଙ୍କର ଉଚ୍ଛେଦ ସାଧନରେ ମାନସିଂହଙ୍କୁ ସାହାଯ୍ୟ କରୁଥିଲେ । ଆଫଗାନମାନେ ଓଡ଼ିଶାରୁ ଅନ୍ତରିତ ହେବା ପରେ ଓଡ଼ିଶାବାସୀ ଆଶ୍ୱସ୍ତ ହେଲେ । ରାମଚନ୍ଦ୍ରଦେବ ରାଜା ତୋଡ଼ରମଲ୍ଲଙ୍କ ଦ୍ୱାରା ଖୋର୍ଦ୍ଧାର ସ୍ୱାଧୀନ ରାଜାରୂପେ ସ୍ୱୀକୃତ ହୋଇଥିଲେ । ମାନସିଂହ ତାହାଙ୍କର ରାଜ୍ୟ ବହୁତ ବଢ଼ାଇ ଦେଲେ । ଖୋର୍ଦ୍ଧାର ୭୧ ଦୁର୍ଗ ବା କିଲା ତୋଡ଼ରମଲ୍ଲ ରାମଚନ୍ଦ୍ରଦେବଙ୍କୁ ଛାଡ଼ି ଦେଇଥିଲେ । ମାତ୍ର ମାନସିଂହ ତାହା ବାଦ ଅଧିକ ୧୨୯ ଟି ଦୁର୍ଗର ପ୍ରଭୁତ୍ୱ ରାମଚନ୍ଦ୍ରଦେବଙ୍କୁ ଦାନ କଲେ । ଖଲ୍ଲିକୋଟ ଆଠଗଡ଼, ସୁମସର, ରଣପୁର, ନୂଆଗଡ଼, ଖଣ୍ଡପଡ଼ା, ଡୋମପଡ଼ା, ବାଙ୍କି, ଦଶପଲ୍ଲା, ନରସିଂହପୁର, ବଡ଼ାମ୍ବା, ଅଠଗଡ଼, ଢେଙ୍କାନାଳ, ତାଳଚେର, ଅନୁଗୁଳ, ହିନ୍ଦୋଳ, ତିଗିରିଆ ପ୍ରଭୃତି ଗଡ଼ଜାତମାନ ଏବଂ ପୁରୀରେ ଝାଙ୍କଡ଼, ବରୁଣୋଟ ପ୍ରଭୃତି କିଲ୍ଲାମାନ ରାମଚନ୍ଦ୍ରଦେବଙ୍କ ହାତରେ ରହିଲା । ବର୍ତ୍ତମାନ ହିସାବରେ ସେ ସବୁ ରାଜ୍ୟର ପରିମାଣ ପ୍ରାୟ ୧୪୦୦୦ ବର୍ଗମାଇଲ ଏବଂ ବାର୍ଷିକ ଆଦାୟ ୩୦ ଲକ୍ଷ ଟଙ୍କା । ରାମଚନ୍ଦ୍ର ମହାରାଜା ଉପାଧି ପାଇଲେ ଏବଂ ଆକବରଙ୍କ ଦରବାରରେ ତିନହଜାର ପାଞ୍ଚଶତ ଅଶ୍ୱସେନାର ଅଧିନାୟକ ସ୍ୱରୂପ ମାନସବଦାର ଉପାଧିରେ ଭୂଷିତ ହେଲେ । ମୋଗଲ

ଦରବାରରେ ଏହା ବିଶେଷ ଉଚ୍ଚ ଓ ସମ୍ମାନାସ୍ପଦ ଉପାଧି ଥିଲା। ରାମଚନ୍ଦ୍ର ଏତେ ସମ୍ମାନରେ ଭୂଷିତ ହୋଇ ଆଉ ଓଡ଼ିଶାର ମୋଗଲ ଶାସନକର୍ତ୍ତାଙ୍କ ଅଧୀନରେ ନ ରହି ଦିଲ୍ଲୀ ବାଦସାହଙ୍କ ସାକ୍ଷାତ ଅଧୀନରେ ରହିଲେ, ଏବଂ ଅପଣାର ଦେୟ ରାଜସ୍ୱ ଦିଲ୍ଲୀ ରାଜକୋଷକୁ ପଠାଇଲେ। ଜଗନ୍ନାଥ ମନ୍ଦିରର ସକଳ ଭାର ରାମଚନ୍ଦ୍ରଙ୍କ ହସ୍ତରେ ରହିଲା।

ଉତ୍କଳର ଶେଷ ହିନ୍ଦୁ ରାଜା ମୁକୁନ୍ଦ ଦେବଙ୍କର ଦୁଇ ପୁତ୍ର ଥିଲେ। ରାମଚନ୍ଦ୍ରଙ୍କ ପରିବର୍ତ୍ତିରେ ସେହିମାନେ ଓଡ଼ିଶା ରାଜସିଂହାସନର ପ୍ରକୃତ ଉତ୍ତରାଧିକାରୀ ବୋଲି ମାନସିଂହଙ୍କ ନିକଟରେ ଅଭିଯୋଗ କଲେ। ମାନସିଂହ ସେମାନଙ୍କର ଦାବୀ ଏକାବେଳକେ ଉପେକ୍ଷା ନ କରି, ସେମାନଙ୍କୁ ରାଜା ଉପାଧି ଦେଇ ଜଣଙ୍କୁ ଆଲିର ଏବଂ ଅନ୍ୟଜଣଙ୍କୁ ପଞ୍ଚୁଥର ରାଜା କରିଦେଲେ। ମୋଗଲ ଦରବାରରେ ସେମାନେ ପ୍ରତ୍ୟେକେ ୫ ଶତ ଅଶ୍ୱସେନାର ଅଧିନାୟକ ସ୍ୱରୂପ ମାନସବଦାର ଉପାଧି ପାଇଲେ। ଅଦ୍ୟାପି ସେମାନଙ୍କ ବଂଶଧରମାନେ ସେହି ରାଜ୍ୟମାନ ଭୋଗ କରୁ ଅଛନ୍ତି।

ମାନସିଂହଙ୍କ ସମ୍ମାନ— ଏହି ସବୁ କାର୍ଯ୍ୟ ଦ୍ୱାରା ଧର୍ମପରାୟଣ ରାଜା ମାନସିଂହ ଓଡ଼ିଶାବାସିଙ୍କୁ ଯେପରି ଆପ୍ୟାୟିତ କରିଥିଲେ, ତାଙ୍କୁ ମଧ୍ୟ ସେହିପରି ଓଡ଼ିଶାରେ ଚିରସ୍ମରଣୀୟ କରି ଯାଇଥିଲେ। ମୋଗଲ ଶାସନ ଓଡ଼ିଶାରେ ବିଶେଷ ଲୋକପ୍ରିୟ ହେଲା ଏବଂ ଅକବର ଏହିରୂପ ଉଦାର ଶାସନ ନୀତି ଯୋଗେ 'ଦିଲ୍ଲୀଶ୍ୱରୋ ବା ଜଗଦୀଶ୍ୱରୋ ବା' ବୋଲି ଓଡ଼ିଶା ବାସିଙ୍କର ଭକ୍ତି ଓ ପ୍ରୀତି ଆକର୍ଷଣ କରିଥିଲେ। ଅଫଗାନ ବିଦ୍ରୋହୀମାନଙ୍କ ଠାରୁ ଚିରକାଳ ପୃଥକ୍ ଭାବରେ ରହି ଓଡ଼ିଶାବାସୀ ମୋଗଲ ଶାସନରେ ସମ୍ପୂର୍ଣ୍ଣ ସହାନୁଭୂତି କରୁଥିଲେ। ହିନ୍ଦୁ ପ୍ରଜାମାନଙ୍କ ସହାୟତାରେ ପଠାଣ-ମାନଙ୍କୁ ଦମନ କରିବା ଉଦ୍ଦେଶ୍ୟରେ ଅକବର ରାଜା ତୋଡରମଲ୍ଲ ଏବଂ

ଶେଷରେ ରାଜା ମାନସିଂହଙ୍କୁ ପଠାଇଥିଲେ । ସେମାନେ ଅକବରଙ୍କ ଉଦ୍ଦେଶ୍ୟ ଯଥାର୍ଥ ସାଧନ କରିଥିଲେ । ମାନସିଂହ ଏଥି ନିମନ୍ତେ ଆକବରଙ୍କ ଠାରୁ ବହୁ ସମ୍ମାନ ପାଇଲେ । ସାତ ହଜାର ଅଶ୍ୱାରୋହୀ ସେନାର ଅଧିନାୟକ ରୂପେ ସେ ମାନସବ୍‌ଦାର ପଦ ପାଇଲେ । କେବଳ ମୋଗଲ ରାଜପୁରୁଷମାନଙ୍କ ବ୍ୟତୀତ ଅନ୍ୟ କେହି ମୋଗଲ ମଧ୍ୟ ଏପରି ଉଚ୍ଚ ପଦ ପାଇ ନ ଥିଲେ । ସେ ପୁଣି ଅକବରଙ୍କର ପ୍ରଧାନ ଉଜୀର ବା ମନ୍ତ୍ରୀ ଥିଲେ ଏବଂ ଫରଜାନ୍ଦ ବା ସମ୍ରାଟପୁତ୍ର ଉପାଧିରେ ଭୂଷିତ ହେଲେ । ଉଚ୍ଚପଦଧାରୀ ମୋଗଲମାନେ ଏଥିରେ ଈର୍ଷାନ୍ୱିତ ହୋଇଥିଲେ । ଅକବରଙ୍କ ଉଦାରତା ସେମାନଙ୍କଠାରେ କାହିଁ ସମ୍ଭବ ହୋଇପାରେ ?

ଓସମାନଙ୍କ ବିଦ୍ରୋହ— ମାନସିଂହ ୧୫୯୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବଙ୍ଗ-ସୁବାଦାର କାର୍ଯ୍ୟ ଶାନ୍ତିରେ ଚଲାଇ ଦିଲ୍ଲୀ ଫେରିଲେ । ତାହାଙ୍କ ଅନୁପସ୍ଥିତିରେ ତାହାଙ୍କ ପୁତ୍ର ଜଗତ୍ ସିଂହ ବଙ୍ଗ ଶାସନ ଭାର ପାଇଲେ । ଏହି ଅବସରରେ ଆଫଗାନମାନେ ଓସମାନ ନାମକ ଜଣେ ଦଳପତିଙ୍କୁ ନେତା କରି ପୁଣି ବିଦ୍ରୋହ ଆରମ୍ଭ କଲେ । ମାନସିଂହଙ୍କର ଅନ୍ୟ ଏକ ପୁତ୍ର ମହାସିଂହ ଭଦ୍ରକଠାରେ ଓସମାନଙ୍କ ଦ୍ୱାରା ପରାସ୍ତ ହେଲେ । ଏହି ସମୟରେ ଜଗତ୍‌ସିଂହଙ୍କର ମୃତ୍ୟୁ ହେଲା । ମାନସିଂହ ଏତେବେଳେ ଆଜମିରଠାରେ ବିଦ୍ରୋହ ଦମନରେ ଲାଗିଥିଲେ । ବଙ୍ଗ ବିଦ୍ରୋହର ସମ୍ବାଦ ପାଇ ମାନସିଂହ ପୁଣି ବଙ୍ଗ ସୁବାଦାର ହୋଇ ଆସିଲେ । ଓଡ଼ିଶା ହିନ୍ଦୁ-ରାଜାମାନଙ୍କ ସାହାଯ୍ୟରେ ସେ ଖାରଭୂମ ଜଲାର ଯୁଗ୍ମ ନିକଟସ୍ଥ ଶେରପୁର ଏବଂ ବିଷ୍ଣୁପୁର ନିକଟବର୍ତ୍ତୀ ମହେଶପୁରଠାରେ ଅଫଗାନମାନଙ୍କୁ ସମ୍ପୂର୍ଣ୍ଣ ପରାସ୍ତ କଲେ [୧୫୯୯] । ଏହି ଯୁଦ୍ଧ ପରେ ମାନସିଂହ ଅଫଗାନ-ମାନଙ୍କୁ ଦମନ କଲେ । ଓଡ଼ିଶାର ଉତ୍ତର ଓ ଦକ୍ଷିଣାଞ୍ଚଳରେ ଅକବରଙ୍କର ସଂପୂର୍ଣ୍ଣ ଅଧୀନତା ସ୍ୱୀକାର କରି ଅଫଗାନମାନେ ଶାନ୍ତିରେ ରହିବାକୁ ବାଧ୍ୟ ହେଲେ ।

# ଜାହାଙ୍ଗୀର

## ଖ୍ରୀଷ୍ଟ ୧୬୦୫—୧୬୨୭ ଅବ୍ଦ

ଜାହାଙ୍ଗୀର—୧୬୦୫ ଖ୍ରୀଷ୍ଟାବ୍ଦରେ ଅକବରଙ୍କ ମୃତ୍ୟୁ ହେବାରୁ ତାହାଙ୍କ ଜ୍ୟେଷ୍ଠପୁତ୍ର ଓ ମାନସିଂହଙ୍କ ଭଗିନୀପତି ସେଲିମ ଜାହାଙ୍ଗୀର ନାମ ଧରି ଦିଲ୍ଲୀର ବାଦଶାହ ହେଲେ । ଜାହାଙ୍ଗୀର ମାନସିଂହଙ୍କୁ ବଙ୍ଗ, ବିହାର ଓ ଓଡ଼ିଶାର ସୁବାଦାର ନିଯୁକ୍ତ କଲେ । ମାତ୍ର ବର୍ଷକ ମଧ୍ୟରେ ମାନସିଂହ ପୁଣି ଦିଲ୍ଲୀ ଫେରିଗଲେ । ଜାହାଙ୍ଗୀରଙ୍କର ଧସ୍ଦର ଭାଇ କୁତୁବୁଦ୍ଦିନ ସୁବାଦାର ହୋଇ ଆସିଲେ । ମାତ୍ର ନୂରଜାହାନଙ୍କ ସ୍ୱାମୀ ଶେରଖାଁ କୁତୁବୁଦ୍ଦିନଙ୍କୁ ମାରିଦେଲେ । ୧୬୦୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ବଙ୍ଗସୁବାରୁ ପୃଥକ୍ ହୋଇ ଗୋଟିଏ ସ୍ୱତନ୍ତ୍ର ସୁବା ହେଲା ଏବଂ ହାସିମ ଖାଁ ଓଡ଼ିଶାର ପ୍ରଥମ ମୋଗଲ ସୁବାଦାର ନିଯୁକ୍ତ ହେଲେ ।

ଓସମାନଙ୍କ ଦ୍ୱିତୀୟ ବିଦ୍ରୋହ—୧୬୧୧ ଖ୍ରୀଷ୍ଟାବ୍ଦରେ ହାସିମ କାଶ୍ମୀର ପରିବର୍ତ୍ତିତ ହେବାରୁ ରାଜା କଲ୍ୟାଣ ମଲ୍ଲ ଓଡ଼ିଶାର ସୁବାଦାର ନିଯୁକ୍ତ ହେଲେ । ସମ୍ରାଟ ହେବା ପୂର୍ବରୁ ଜାହାଙ୍ଗୀର କଲ୍ୟାଣ ସାହଙ୍କ ଝିଅସଙ୍କୁ ବିବାହ କରିଥିଲେ । ସୁତରାଂ ନୂତନ ସମ୍ରାଟଙ୍କ ରାଜତ୍ୱର ପ୍ରଥମ ଅବସ୍ଥାରେ ଦିଲ୍ଲୀ ଦରବାରରେ କଲ୍ୟାଣମଲ୍ଲଙ୍କର କ୍ଷମତା ବଢ଼ିଥିଲା । କଲ୍ୟାଣ ମଲ୍ଲ ସୁବାଦାର ହୋଇ ଆସିବା ସଙ୍ଗେ ସଙ୍ଗେ ଓଡ଼ିଶାରେ ଯେଉଁ ପଠାଣ ଜାଗିରଦାରମାନେ ଅବଶିଷ୍ଟ ଥିଲେ ସେମାନଙ୍କୁ ଧରି ଓସମାନ ଦ୍ୱିତୀୟବାର ବିଦ୍ରୋହ ଆରମ୍ଭ କଲେ । ସୁଜାଏତ ଖାଁ ନାମକ ଜଣେ ମୋଗଲ ସେନାପତି ଓସମାନଙ୍କ ବିଦ୍ରୋହ ଦମନରେ ନିଯୁକ୍ତ ହେଲେ । ସୁଜାଏତ ପ୍ରଥମେ ଜଣେ ସୁଦକ୍ଷ ଦୂତ ପଠାଇ ବହୁ ଧର୍ମକର୍ମର ଦୋହାଇ ଦେଇ ଓସମାନଙ୍କୁ ଯୁଦ୍ଧରୁ ଓ ବିଦ୍ରୋହରୁ ନିବର୍ତ୍ତାଇବା ପାଇଁ ଚେଷ୍ଟା କଲେ । ମାତ୍ର ଦୁର୍ଦ୍ଦାନ୍ତ

ଓସମାନ ତାହା ଶୁଣିବାର ଲୋକ ନ ଥିଲେ । ସୁବର୍ଣ୍ଣରେଖା ନଦୀ କୂଳରେ ଘୋର ଯୁଦ୍ଧ ହେଲା ; ତହିଁରେ ଓସମାନ ଏବଂ ବହୁ ପଠାଣବିଦ୍ରୋହୀ ନିହତ ହେଲେ , ଏବଂ ଅବଶିଷ୍ଟ ବିଦ୍ରୋହୀ ସମ୍ପୂର୍ଣ୍ଣ ପରାସ୍ତ ହୋଇ ଇତସ୍ତତଃ ପଳାୟନ କଲେ । ସୁଜାଏତ ସେମାନଙ୍କୁ ଧରି ଏକତ୍ର କରି, ସେମାନଙ୍କ ଦଳ ଭାଙ୍ଗିଦେଲେ, ଓଡ଼ିଶାର ଗ୍ରାମମାନଙ୍କରେ ସେମାନେ ହିନ୍ଦୁପ୍ରଜାଙ୍କ ମଧ୍ୟରେ ଭିନ୍ନ ଭିନ୍ନ ହୋଇ ଯଥୋଚିତ ଜମିବାଡ଼ି ପାଇ ରହିଲେ । ସୁତରାଂ ଆଉ ଦଳବଦ୍ଧ ହୋଇ ପାରିବା ସେମାନଙ୍କ ପକ୍ଷେ ସହଜ ହେଲା ନାହିଁ । ଅଳ୍ପକାଳ ମଧ୍ୟରେ ସେମାନେ ଶାନ୍ତିରେ ଜମିବାଡି ଭୋଗକରି ଓଡ଼ିଶା ଜମିଦାରମାନଙ୍କ ସଙ୍ଗେ ମିଶିଗଲେ । ଓଡ଼ିଶାବାସିଙ୍କ ମଧ୍ୟରେ ସେମାନେ ଏପରି ଖେଳେଇ ହୋଇଗଲେ ଯେ ପ୍ରାୟ ୨୦ବର୍ଷ ପରେ ଜଣେ 'ଡଚ' ବଣିକ ସେଠ ସମଗ୍ର ଓଡ଼ିଶାବାସିଙ୍କୁ ମୁସଲମାନ ବୋଲି କହିଥିଲେ । କାଳକ୍ରମେ ସେହି ପଠାଣମାନଙ୍କ ସଂଖ୍ୟା ଓ ଅବସ୍ଥା ଅତି ହୀନ ହୋଇଗଲା । ବର୍ତ୍ତମାନ କଟକ ଜିଲ୍ଲାରେ ଲୋକସଂଖ୍ୟା ଛଅଭାଗରୁ ପଠାଣ ମୋଟେ ଏକ ଭାଗ; ବାଲେଶ୍ୱର ଜିଲ୍ଲାରେ ୧୯୬ ଜମିଦାରୀ ମଧ୍ୟରୁ କେବଳ ୯ଟି ପଠାଣ ଜମିଦାରୀ । ପୁରୀରେ ସେମାନଙ୍କ ସଂଖ୍ୟା ସର୍ବାପେକ୍ଷା ଅଳ୍ପ, ଶତକଡ଼ା ଜଣକରୁ ବି ଅଳ୍ପ । ରାଜା କଲ୍ୟାଣମଲ୍ଲଙ୍କ ବିଚକ୍ଷଣତା ବଳରେ ପଠାଣମାନଙ୍କ ଉପଦ୍ରବ ଓ ଅତ୍ୟାଚାରରୁ ଓଡ଼ିଶା କିଛିକାଳ ଶାନ୍ତି ପାଇଲା ।

ଯୁବରାଜ ଖୁରମ—ଜାହାଙ୍ଗୀରଙ୍କ ରାଜତ୍ୱକାଳରେ ତାହାଙ୍କର ଜ୍ୟେଷ୍ଠ-ପୁତ୍ର ଖୁରମ (ପରେ ସମ୍ରାଟ ସାଜାହାନ) ଦାକ୍ଷିଣାତ୍ୟ ବିଜୟରେ ଲାଗିଥିଲେ । ପୂର୍ବରୁ କୁହାଯାଇଛି ଉତ୍କଳର ଦକ୍ଷିଣାଂଶ ଚିକାକୋଲ ଜିଲ୍ଲା କୁତ୍ତବସାହୀ ସୁଲତାନମାନଙ୍କ ଅଧୀନରେ ଥିଲା । ସୁତରାଂ ନାମକୁ ମାତ୍ର ଟିସ ପରି ଅକବରଙ୍କ ଓଡ଼ିଶା ମଧ୍ୟରେ ଥିଲା । ଖୁରମ ୧୬୩୨ ଖ୍ରୀଷ୍ଟାବ୍ଦରେ ଅହମଦନଗର ଜୟ କରି ଗୋଲକୁଣ୍ଡାର ସୁଲତାନଙ୍କୁ ଦିଲ୍ଲୀ ସମ୍ରାଟଙ୍କର କରଦ ହୋଇ ରହିବାକୁ ବାଧ୍ୟକଲେ । ସେହି ସମୟରୁ ଉତ୍କଳର ଦକ୍ଷିଣାଂଶ ଅର୍ଥାତ୍ ଚିକାକୋଲ

କଲ ନିମନ୍ତେ ଗୋଲକୁଣ୍ଡା ସୁଲତାନ ଦିଲ୍ଲୀ ସମ୍ରାଟଙ୍କୁ ବାର୍ଷିକ ୨୦ ହଜାର ଟଙ୍କା * କର ଦେବାକୁ ବାଧ୍ୟ ହେଲେ । ସେହି ବାର୍ଷିକ କର ସେ ଓଡ଼ଶାର ମୋଗଲ ସୁବାଦାରଙ୍କୁ ଦେଉଥିଲେ ।

ଖୁରମଙ୍କ ବିଦ୍ରୋହ—ଅଫଗାନ ବିଦ୍ରୋହରୁ କିଞ୍ଚିତ୍ ମୁକ୍ତ ଲଭିବା ମଙ୍ଗେ ଓଡ଼ିଶା ପୁଣି ଥରେ ସମ୍ରାଟପୁତ୍ର ଖୁରମଙ୍କର ବିଦ୍ରୋହର ପ୍ରଧାନ ରଙ୍ଗସ୍ଥଳ ହେଲା । ଅତି ପ୍ରାଚୀନ କାଳରୁ ଓଡ଼ିଶା ବହୁ ନିରାଶ୍ରୟ ରାଜପୁରୁଷମାନଙ୍କର ପ୍ରଧାନ ଆଶ୍ରୟସ୍ଥଳ ହୋଇ ଆସିଥିଲା । ପୂର୍ବରୁ କୁହାଯାଇଛି, ୧୨୦୩ ଖ୍ରୀଷ୍ଟାବ୍ଦରେ ବଙ୍ଗଦେଶର ଶେଷ ହିନ୍ଦୁ ରାଜା ଲକ୍ଷ୍ମଣସେନ ଅଫଗାନ ସୈନ୍ୟଦ୍ୱାରା ବିତାଡ଼ିତ ହୋଇ ଉତ୍କଳ ଗଜପତି ଅନଙ୍ଗଭୀମ ଦେବଙ୍କ ଆଶ୍ରୟରେ ବଳୀସ୍ୱାବଭୂକ ଜଗନ୍ନାଥଙ୍କ କ୍ଷେତ୍ରରେ ଶେଷ ଜୀବନ ନିର୍ଗପଦରେ ଯାପନ କରିଥିଲେ । ତିନିଶହ ବର୍ଷ ପରେ ଦିଲ୍ଲୀରୁ ବିତାଡ଼ିତ ସମ୍ରାଟ ସୁଲତାନ ଇବ୍ରାହିମ ବଙ୍ଗ ସିଂହାସନରୁ ମଧ୍ୟ ସୁଲେମାନକରାଣୀଙ୍କଦ୍ୱାରା ବିତାଡ଼ିତ ହୋଇ ଆଶ୍ରୟ ଖୋଜି ଖୋଜି ଶେଷରେ ଗଜପତି ମୁକୁନ୍ଦଦେବଙ୍କ ଆଶ୍ରୟରେ ଶାନ୍ତି ଭୋଗକଲେ । ମୁସଲମାନମାନେ ତିନିଶତ ବର୍ଷକାଳ ଯେଉଁ ଓଡ଼ିଶାକୁ କେବଳ ଅକ୍ରମଣ ଓ ଲୁଣ୍ଠନ କରିବାର ଦେଶ କରି ପାଇଥିଲେ, ସେହି ଓଡ଼ିଶା ଯେ ଶେଷରେ ପଳାତକ ଓ ହତଭାଗା ମୁସଲମାନ ନବାବମାନଙ୍କର ଶେଷ ଆଶ୍ରୟ ହୋଇଥିଲା, ଏହାହିଁ ପ୍ରକୃତିର ପ୍ରକୃତ ପ୍ରତିଶୋଧ । କେବଳ ଇବ୍ରାହିମ ନୁହନ୍ତି, ଦାଉଦ ଖାଁ ବଙ୍ଗ ସିଂହାସନରୁ ବହିଷ୍କୃତ ହୋଇ ଶେଷରେ ଓଡ଼ିଶାକୁ ଏକମାତ୍ର ଆଶ୍ରୟ ମନେ କରିଥିଲେ । ଏହାଙ୍କ ପରେ ଯେଉଁସବୁ ଅଫଗାନ ବିଦ୍ରୋହର ବିବରଣ ଦିଆଗଲା, ସେହି ଅଫଗାନମାନେ ଭାରତର ରାଜଭୋଗରୁ ବଞ୍ଚିତ ଏବଂ ଭାରତବର୍ଷରୁ ବିତାଡ଼ିତ ହୋଇ ମୋଗଲ ବିରୁଦ୍ଧରେ

* ସେ କାଳରେ ଟଙ୍କା ବର୍ତ୍ତମାନ ଟଙ୍କାର ପ୍ରାୟ ୧୬ ଗୁଣ ଅଧିକ ମୂଲ୍ୟବାନ ଥିଲା ।

ବିଦ୍ରୋହୀ ହେବା ନିମନ୍ତେ ଓଡ଼ିଶାକୁ ପରମ ନିରାପଦ ସ୍ଥଳ ବୋଧ କରିଥିଲେ । ଶେଷରେ ଦିଲ୍ଲୀର ଭାବୀ ବାଦଶାହ ଏବଂ ବର୍ତ୍ତମାନ ସମ୍ରାଟ ପୁତ୍ର ସାହାଜାହାନ ପିତାଙ୍କ ବିରୁଦ୍ଧରେ ବିଦ୍ରୋହୀ ହୋଇ ସମଗ୍ର ଭାରତବର୍ଷ ମଧ୍ୟରେ ଓଡ଼ିଶାକୁହିଁ ଏକମାତ୍ର ଆଶ୍ରୟ ସ୍ଥଳ କରି ପାଇଲେ ।

ସାହାଜାହାନ ବିଦ୍ରୋହୀ ହୋଇ ଓଡ଼ିଶାକୁ ଆସିବାବେଳେ ଅହମ୍ମଦ ବେଗ ଓଡ଼ିଶାରେ ମୋଗଲ ସୁବାଦାର ଥିଲେ । ସାହାଜାହାନଙ୍କ ପ୍ରବେଶ ଖବର ପାଇ ଅହମ୍ମଦ ତାଙ୍କ ଗତିରୋଧ ନିମନ୍ତେ ଦକ୍ଷିଣକୁ ଯାତ୍ରାକଲେ, ମାତ୍ର ପରାସ୍ତହୋଇ ପ୍ରଥମେ ପିପିଲୀ ଏବଂ ପରେ କଟକ ପଳାଇଲେ ଏବଂ ଶେଷରେ ନିରାଶ୍ରୟହୋଇ ବର୍ଦ୍ଧମାନ ମଧ୍ୟରେ ଆଶ୍ରୟ ନେଲେ । ଓଡ଼ିଶାବାସୀ ଅଫଗାନମାନଙ୍କର ସାହାଯ୍ୟ ଏବଂ ଓଡ଼ିଶାସ୍ଥ ଇଉରୋପୀୟ ବଣିକମାନଙ୍କଠାରୁ ତୋପ ଓ ଗୋଳାଗୁଳି କେତେକ ପାଇ ସାହାଜାହାନ ୧୬୨୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରୁ ଅଗ୍ରସର ହୋଇ ବଙ୍ଗଦେଶ ଆକ୍ରମଣ କଲେ । ବଙ୍ଗ ସୁବାଦାର ଇବ୍ରାହୀମ ଖାଁ ଯୁଦ୍ଧରେ ହତ ହେଲେ । ସାହାଜାହାନ ଦୁଇ ବର୍ଷକାଳ ସ୍ୱାଧୀନଭାବରେ ବଙ୍ଗ ଶାସନ କଲେ । ଶେଷରେ ଜାହାଙ୍ଗୀରଙ୍କ ସେନାପତି ମହାବତ ଖାଁଙ୍କଦ୍ୱାରା ସାହାଜାହାନ ପରାସ୍ତ ହୋଇ ବଙ୍ଗଦେଶରୁ ପଳାୟନ କଲେ । ମାତ୍ର ପଳାତକ ନିରାଶ୍ରୟ ସମ୍ରାଟପୁତ୍ରଙ୍କର ଆଶ୍ରୟ ଆଉ କେଉଁଠାରେ ? ଓଡ଼ିଶାହିଁ ତାହାଙ୍କର ଏକମାତ୍ର ଆଶ୍ରୟସ୍ଥଳ ହେଲା । ଶେଷରେ ଆତ୍ମସମର୍ପଣ କରି ପିତାଙ୍କଠାରୁ କ୍ଷମା ପାଇବା ପର୍ଯ୍ୟନ୍ତ ଓଡ଼ିଶାରେ ସେ ଆଶ୍ରୟ ପାଇଥିଲେ । ୧୬୨୭ ଖ୍ରୀଷ୍ଟାବ୍ଦରେ ଜାହାଙ୍ଗୀରଙ୍କ ମୃତ୍ୟୁହେଲା । ଖୁରମ ସାହାଜାହାନ ନାମ ଧରି ଦିଲ୍ଲୀ ସିଂହାସନରେ ଅଭିଷିକ୍ତ ହେଲେ ।

# ସାଜାହାନ

## ଖ୍ରୀଷ୍ଟ ୧୬୨୭—୧୬୫୮ ଅବ୍ଦ

ବାଖର ଖାଁ—୧୬୨୮ରୁ ୧୬୩୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବାଖର ଖାଁ ଓଡ଼ିଶାର ସୁବାଦାର ହୋଇଥିଲେ । ଗୋଲକୁଣ୍ଡା ସୁଲତାନଙ୍କ ସଙ୍ଗେ ଯୁଦ୍ଧ ବାଖର ଖାଁଙ୍କ ସୁବାଦାରୀର-ପ୍ରଥମ ଘଟଣା । ଗୋଲକୁଣ୍ଡା ଓଡ଼ିଶା-ସୁବାଦାରଙ୍କୁ ଚିକାକୋଲ ଜିଲ୍ଲା ନିମନ୍ତେ ଯେଉଁ ୨୦ ହଜାର ଟଙ୍କା ବାର୍ଷିକ କର ଦେଉଥିଲେ, ତାହା ଗୋଲକୁଣ୍ଡା ସୁଲତାନ ବନ୍ଦ କରିଦେଲେ । ଗୋଲକୁଣ୍ଡାର ସେନାପତି ମନସୁର ଚିକାକୋଲଠାରୁ ଉତ୍ତର ଅଭିମୁଖେ ଅଗ୍ରସର ହୋଇ ବ୍ରହ୍ମପୁରର ୮ ମାଇଲ ପୂର୍ବବର୍ତ୍ତୀ ମନସୁରକୋଟା ପର୍ଯ୍ୟନ୍ତ ଅଧିକାର କରିବସିଲେ । ମନସୁର ନିଜ ନାମରେ ସେଠାରେ ଗୋଟିଏ ଦୁର୍ଗ ନିର୍ମାଣ କଲେ; ତାହା 'ମନସୁର ଗଡ଼' ବର୍ତ୍ତମାନ ମନସୁର କୋଟା ନାମରେ ପରିଚିତ । ସେହି ସମୟରେ ମହେନ୍ଦ୍ରୀ ରାଜ୍ୟ (ବର୍ତ୍ତମାନ ମଞ୍ଜୁଷା) ଏବଂ ଖୋରଧା—ଏହି ଦୁଇଟି ହିନ୍ଦୁରାଜ୍ୟ ମଧ୍ୟରେ ଚିକାକୋଲ ଜିଲ୍ଲା ରହିଲା । ବାଖର ଖାଁ ୧୬୨୯ ଖ୍ରୀଷ୍ଟାବ୍ଦରେ ମନସୁର ଦୁର୍ଗ ପ୍ରଥମେ ଅବରୋଧ କଲେ । ପ୍ରଥମ ଅବରୋଧରେ ବାଖର ଖାଁ ଦୁର୍ଗ ଅଧିକାର କରି ନ ପାରି ଅବରୋଧ ଉଠାଇଦେଲେ । ପରବର୍ଷ କୋଦଲା ଓ ଅଲ୍ଲା ଜମିଦାରମାନଙ୍କ ସାହାଯ୍ୟ ପାଇ ବାଖର ଖାଁ ୨ୟ ବାର ଦୁର୍ଗ ଅବରୋଧ କଲେ । ଦୁର୍ଗ ତାହାଙ୍କର ହସ୍ତଗତ ହେଲା । ଗୋଲକୁଣ୍ଡା ନୂତନ ଅଧିକାର ଛାଡ଼ିଗଲେ ଏବଂ ଓଡ଼ିଶା ସୁବାଦାରଙ୍କୁ ପୂର୍ବପରି କର ଦେବାକୁ ବାଧ୍ୟ ହେଲେ ।

ଏହି ବିଜୟସତ୍ତ୍ୱେ ଶାସନରେ ଅନ୍ୟାୟ ଓ ଅତ୍ୟାଚାର ଯୋଗେ ବାଖର ଖାଁ ସାଜାହାନଙ୍କର ଅପ୍ରୀତିଭାଜନ ହୋଇଥିଲେ । ଅର୍ଥ ଲୋଭରେ

ଥରେ ସେ ଦେଶର ନାନା ସ୍ଥାନରୁ ଜମିଦାରମାନଙ୍କୁ କଟକ ଧରଆଣି ଜେଲ ମଧ୍ୟରେ ବନ୍ଦୀ କରି ବହୁ ଯନ୍ତ୍ରଣା ଦେଲେ । ତାହାଙ୍କ ଆଦେଶରେ ପାଞ୍ଚଶତ ବନ୍ଦୀ ନିର୍ଦ୍ଦୟଭାବରେ ନିହତ ହେଲେ । କେବଳ ଜଣେ ମାତ୍ର ବନ୍ଦୀ ଗୋପନରେ ବନ୍ଦୀଶାଳାରୁ ବାହାରି ଯାଇ ସାହାଜାହାନଙ୍କ ସମ୍ମୁଖରେ ସେହି ପାଶବ ଅତ୍ୟାଚାର ଓ ହତ୍ୟାକାଣ୍ଡର ବିବରଣ ଦେଲା । ବାଖର ଖାଁ ୪୦ ଲକ୍ଷ ଟଙ୍କା ଆଦାୟ କରି ଆତ୍ମସାତ୍ କରିଥିବାର ସେହି ପଳାତକ ବନ୍ଦୀଙ୍କଠାରୁ ପ୍ରମାଣ ପାଇ ସାହାଜାହାନ ବାଖର ଖାଁଙ୍କୁ ଓଡ଼ିଶାରୁ ଡ଼କାଇନେଲେ, ଏବଂ ମୁତାକଦଖାଁଙ୍କୁ ତାହାଙ୍କ ସ୍ଥାନରେ ଓଡ଼ିଶା ସୁବାଦାର ନିଯୁକ୍ତ କଲେ । ମୁତାକଦ ୧୮ ବର୍ଷକାଳ ଓଡ଼ିଶା ସୁଶାସନ କରି ବୃଦ୍ଧ ବୟସରେ ୧୬୬୧ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କଲେ ।

ଇଂରେଜ ବଣିକଙ୍କ ଆଗମନ—ଓଡ଼ିଶାରେ ବାଖରଖାଁଙ୍କର ଫଳଳ ଅତ୍ୟାଚାର ଓ ଉତ୍ପୀଡ଼ନର ଅବ୍ୟବହିତ ପରେ ଇଂରେଜ ବଣିକଙ୍କ ଆଗମନ ଉତ୍କଳ ଇତିହାସର ଗୋଟିଏ ଅଭିବଣୀୟ ଘଟଣା । ଏଥି ପୂର୍ବରୁ ବହୁକାଳ ଭାରତର ସର୍ବବିଧ ଇଉରୋପୀୟ ବାଣିଜ୍ୟ ଇଟାଲୀ ଅନ୍ତର୍ଗତ ଭିନସ ବାସିଙ୍କ ହସ୍ତରେ ଥିଲା । ଦୁଇଟି ପଥରେ ସର୍ବବିଧ ବଣିଜ ଭାରତରୁ ଇଉରୋପକୁ ଯାଉଥିଲା । ଗୋଟିଏ ପଥ ଇଜିପ୍ଟର ଅଲେକଜାଣ୍ଡ୍ରିଆ ବନ୍ଦର ବାଟେ; ଅପର ବାଣିଜ୍ୟ ପଥ ତୁରସ୍କର କନଷ୍ଟାଣ୍ଟିନୋପଲ ବନ୍ଦରବାଟେ ଥିଲା । ମାତ୍ର କନଷ୍ଟାଣ୍ଟିନୋପଲ ବନ୍ଦର ୧୪୫୩ ଖ୍ରୀଷ୍ଟାବ୍ଦରେ ମୁସଲମାନମାନଙ୍କଦ୍ୱାରା ଅଧିକୃତ ହେବାରୁ ଇଉରୋପୀୟ ଅନ୍ୟାନ୍ୟ ଜାତିମାନେ ସେହି ପଥରେ ଭାରତ ବଣିଜ ନେଇ ପାରିଲେ ନାହିଁ । ଭିନସବାସୀ ଇଜିପ୍ଟ ଏବଂ ସିରିଆ ରାଜାମାନଙ୍କ ସଙ୍ଗେ ବନ୍ଧବନ୍ଦନ କରି ଆଲେକଜାଣ୍ଡ୍ରିଆ ବାଟେ ଭାରତ ବାଣିଜ୍ୟରେ ଏକାଧିପତ୍ୟ ପାଇଗଲେ । ବହୁକାଳବ୍ୟାପୀ ସେହି ଏକାଧିପତ୍ୟ ବଳରେ ଭିନସବାସୀ ବେଲଜିୟମର ବ୍ରୁଜେସ ନଗରରେ ଭାରତ ବଣିଜ ଜମା ରଖି ଇଚ୍ଛାନୁସାରେ ମୂଲ୍ୟ ବସାଇ ଇଉରୋପୀୟ

ବଯଣୀମାନଙ୍କରେ ବିକ୍ରୟ କରୁଥିଲେ । ଏହାଦ୍ୱାରା ଭେନିସ୍ ସହର ଧନ-ଶାଳୀ ହୋଇ ଉଠିଲା ଯେ ଭାରତ ବାଣିଜ୍ୟ ଚଳାଇବା ନିମନ୍ତେ ତାହାର ୩୩୪୫ ବାଣିଜ୍ୟ-ତରୀ ଯାତାୟତ କରୁଥିଲା, ଏବଂ ୧୬ ହଜାର କାରିଗର ଭେନିସ ବନ୍ଦରମାନଙ୍କରେ ବାଣିଜ୍ୟତରୀ ତିଆରରେ ଅନବରତ ଲାଗିଥିଲେ । ଇଉରୋପର ଅନ୍ୟାନ୍ୟ ଜାତିମାନେ ଭେନିସ ହସ୍ତରୁ ମୁକ୍ତି ପାଇ ଭାରତ ସହିତ ସାକ୍ଷାତ ଓ ସ୍ୱାଧୀନ ବାଣିଜ୍ୟରେ ଲାଭବାନ ହେବା ନିମନ୍ତେ ସ୍ଥଳପଥର ସୁବିଧା ନପାଇ ଜଳପଥ ଆବିଷ୍କାରରେ ଲାଗିଲେ । ୧୪୯୨ ଖ୍ରୀଷ୍ଟାବ୍ଦରେ କଲମ୍ବସ ଭାରତକୁ ଜଳଯାତ୍ରା କରି କରି ପଶ୍ଚିମ ଦିଗରେ ଯାଇ ଆମେରିକା ଆବିଷ୍କାର କରି ଆସିଲେ । ଦଳେ ପୁଣି ଉତ୍ତର-ମହାସାଗର ବାଟେ ପଥ ଆବିଷ୍କାରରେ ଯାଇ ବରଫ ମଧ୍ୟରେ ପ୍ରାଣ ହରାଇଲେ । ଶେଷକୁ ୧୪୯୮ ଖ୍ରୀଷ୍ଟାବ୍ଦରେ ପର୍ତ୍ତୁଗାଲର ନାବିକ ଭାସ୍କୋଡଗାମା ଆଫ୍ରିକା ମହାଦେଶର ଦକ୍ଷିଣ-ଉପକୂଳ ବାଟେ ଭାରତର ପଶ୍ଚିମ ପ୍ରାନ୍ତରେ ପ୍ରବେଶ କଲେ । ପର୍ତ୍ତୁଗିଜମାନଙ୍କର ବିସ୍ତର ବାଣିଜ୍ୟ ଚାଲିଲା । ସେମାନଙ୍କ ଆଦର୍ଶ ଦେଖି ଫ୍ରାନ୍‌ସ, ଇଂଲଣ୍ଡ, ହଲାଣ୍ଡ ଏବଂ ଡେନମାର୍କବାସୀ ଭାରତ ସହିତ ସ୍ୱତନ୍ତ୍ର ବାଣିଜ୍ୟ ଚଳାଇଲେ । ପର୍ତ୍ତୁଗିଜ ବଣିକମାନେ ୧୫୧୪ ଖ୍ରୀଷ୍ଟାବ୍ଦରେ ଉତ୍କଳମଧ୍ୟରେ ପ୍ରବେଶ କରି ଉତ୍କଳ-ଗଜପତି ରାଜା ପ୍ରତାପରୁଦ୍ର ଦେବଙ୍କ ଅନୁମତି କ୍ରମେ ସୁବର୍ଣ୍ଣରେଖା କୂଳବର୍ତ୍ତୀ ପିପିଲି ବନ୍ଦରରେ ପ୍ରଥମ ବାଣିଜ୍ୟ କୋଠି ସ୍ଥାପନ କରିଥିଲେ । ଇଂରେଜ ଇଷ୍ଟଇଣ୍ଡିଆ କୋମ୍ପାନୀ ୧୬୦୦ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡ ରାଣୀ ଏଲିଜାବେଥଙ୍କଠାରୁ ପ୍ରାଚ୍ୟ-ବାଣିଜ୍ୟର ସନନ୍ଦ ପାଇ ଭାରତକୁ ବାଣିଜ୍ୟ ଉଦ୍ଦେଶ୍ୟରେ ଆସିଥିଲେ । ସୁରଟ ଏବଂ କରମଣ୍ଡଳ ଉପକୂଳର ମସଲିପଟ୍ଟମ ବନ୍ଦରରେ ସେମାନଙ୍କର ପ୍ରଥମ ବାଣିଜ୍ୟକୋଠି ବସିଥିଲା । ଓଡ଼ିଶାର ସୂକ୍ଷ୍ମବସ୍ତ୍ର ଆଦି ବଣିକମାନ ଓଡ଼ିଆ ନାବିକମାନେ ସମୁଦ୍ରବାଟେ ନେଇ ପୂର୍ବ-ଉପକୂଳର ବନ୍ଦର-ମାନଙ୍କରେ ବାଣିଜ୍ୟ କରୁଥିଲେ ।

ମସଲିପଟ୍ଟମଠାରେ ଓଡ଼ିଶାବଣିକପ୍ରତି ଆକୃଷ୍ଟ ହୋଇ ଓଡ଼ିଶାରେ ସାକ୍ଷାତବାଣିଜ୍ୟ ଉତ୍ତର ଭାବରେ ଚଳାଇବାର ସୁବିଧା କରିବା ନିମନ୍ତେ ଇଂରେଜବଣିକମାନେ ଓଡ଼ିଶା ଆସିଲେ । କାପ୍ତେନ କାର୍ଟରାଇଟ୍ ୮ ଜଣ ଇଂରେଜବଣିକଙ୍କ ସଙ୍ଗେ ଓଡ଼ିଶା ସୁବାଦାର ନିମନ୍ତେ ବହୁ ମୂଲ୍ୟବାନ ଉପହାର ଧରି ୧୬୩୩ ଖ୍ରୀଷ୍ଟାବ୍ଦରେ 'ସ୍ୱାନ' ନାମକ ଜାହାଜରେ ପଟୁଆ ନଦୀ ମୁହାଣବର୍ତ୍ତୀ ହରିଶପୁର ବନ୍ଦରରେ ପହଞ୍ଚିଲେ । ପର୍ତ୍ତୁଗିଜମାନେ ଇଂରେଜ ବଣିକମାନଙ୍କ ଆଗମନରେ ଈର୍ଷାକାତର ଇଂରେଜ ଜାହାଜ ଆକ୍ରମଣ କଲେ । ହରିଶପୁର ଦୁର୍ଗର ରାଜା "ଲକ୍ଷ୍ମୀପ" ସସୈନ୍ୟରେ ପର୍ତ୍ତୁଗିଜ ମାନଙ୍କୁ ପରାସ୍ତ ଓ ବନ୍ଦୀ କରି ଇଂରେଜ ବଣିକମାନଙ୍କୁ ରକ୍ଷାକଲେ । ସେ ଯୁଦ୍ଧରେ ଦୁଇ ଜଣ ଇଂରେଜ ବଣିକ ଏବଂ ଜଣେ ଓଡ଼ିଆ ବଣିକ ଆହତ ଓ ମୂର୍ଚ୍ଛା ପ୍ରାପ୍ତ ହୋଇଥିଲେ । ଇଂରେଜ ବଣିକମାନେ ନିଜେ ସ୍ୱୀକାର କରିଥିଲେ ଯେ ହରିଶପୁର ରାଜା ସେମାନଙ୍କୁ ରକ୍ଷା କରି ନ ଥିଲେ, ସେମାନେ ପର୍ତ୍ତୁଗିଜ ଆକ୍ରମଣକାରୀଙ୍କ ହସ୍ତରେ ଧନଜୀବନ ସମସ୍ତ ହରାଇଥାନ୍ତେ ।

ହରିଶପୁର ରାଜାଙ୍କ ଆଶ୍ରୟରେ ବଣିକମାନେ ପଟୁଆ ନଦୀ ବାଟେ କଟକ ଅଡ଼କୁ ଯାତ୍ରାକଲେ । ହୋଶିଦା ଦେଇ ସେମାନେ ବାଲିକୁଦାରେ ପହଞ୍ଚିଲେ । ବାଲିକୁଦା ଗୋଟିଏ ବଡ଼ ସହର ଥିଲା । ବାଲିକୁଦାର ଶାସନକର୍ତ୍ତାଙ୍କର ସାହାଯ୍ୟ ଓ ଆତିଥ୍ୟ ପାଇ ବଣିକମାନେ ହରିହରପୁର ଆସିଲେ । ହରିହରପୁର ଗୋଟିଏ ପ୍ରଧାନ ସହର ଓ ବାଣିଜ୍ୟସ୍ଥଳୀ ଥିଲା । ହରିହରପୁରର ଶାସନକର୍ତ୍ତା ଇଂରେଜମାନଙ୍କୁ ବହୁ ଆଦର ଓ ଆତିଥ୍ୟ ସହକାରେ ସମ୍ବର୍ଦ୍ଧନା କଲେ । ଇଂରେଜମାନଙ୍କ ପ୍ରତି ତାହାଙ୍କର ବିରକ୍ତି ଓ ବିଦ୍ୱେଷ ଜନ୍ମାଇବା ପାଇଁ ପର୍ତ୍ତୁଗିଜମାନେ ବହୁ ଚେଷ୍ଟାକଲେ, ମାତ୍ର ତାହାଙ୍କ ମନ ଭୁଲାଇ ପାରିଲେ ନାହିଁ ।

ହରିହରପୁର ରାଜାଙ୍କ ଆଶ୍ରୟରେ ଇଂରେଜମାନେ କଟକ ଆସିଲେ । ଏହାର ଅତି ଅଳ୍ପକାଳପୂର୍ବରୁ ବାଖର ଖାଁଙ୍କ ପରବର୍ତ୍ତିରେ ମୁତାକଦ ଖାଁ ନୂତନ ସୁବାଦାର ହୋଇ ଆସିଥିଲେ । କାଟରାଇଟ 'ମାଲକାଣ୍ଡୀ' ବା ବାରବାଟୀ ମଧ୍ୟରେ ତାହାଙ୍କୁ ସାକ୍ଷାତ କରି ସାଙ୍ଗରେ ଆଣିଥିବା ବହୁ ମୂଲ୍ୟବାନ ସୁନା, ରୁପା ବସ୍ତ୍ର ଓ ମସଲାଦ ଉପହାର ଦେଲେ । ପର୍ତ୍ତୁଗିଜମାନେ ସୁବାଦାରଙ୍କୁ ଇଂରେଜ ବଣିକମାନଙ୍କ ବିରୁଦ୍ଧରେ ଉତ୍ତେଜିତ କରିବାପାଇଁ ବାଲେଶ୍ୱରର ଶାସନକର୍ତ୍ତା ମିର କାସିମଙ୍କୁ ସଙ୍ଗରେ ଧରି କଟକ ଆସିଥିଲେ । ମାତ୍ର ସୁବାଦାର ପର୍ତ୍ତୁଗିଜ ଓ ମିର କାସିମଙ୍କ ଆପତ୍ତି ଅଭିଯୋଗରେ ବିଚଳିତ ନ ହୋଇ ଇଂରେଜମାନଙ୍କୁ ଓଡ଼ିଶା ମଧ୍ୟରେ ସ୍ୱାଧୀନ-ବାଣିଜ୍ୟ ଚଳାଇବାର ଅଧିକାର ଦାନ କଲେ ।

ଓଡ଼ିଶାରେ ପ୍ରଥମ ବାଣିଜ୍ୟକୋଠି ହରିହରପୁରରେ ସ୍ଥାପିତ ହେଲା । ହରିହରପୁର (ବର୍ତ୍ତମାନ କଟକ ଜିଲାର ଜଗତସିଂହପୁର) ଅତି ଜନାକୀର୍ଣ୍ଣ ସହର ଥିଲା । ଅନେକ ବଣିକ ସେଠାରେ ଥିଲେ ; ଏବଂ ବହୁବିଧ ପଦାର୍ଥର ବ୍ୟବସାୟ ଚାଲୁଥିଲା । ସହର ମଧ୍ୟରେ ୩ ହଜାର ତନ୍ତୀଘର ଥିଲା, ଏବଂ ନାନା ପ୍ରକାରର ବସ୍ତ୍ର ପ୍ରଚୁର ପ୍ରସ୍ତୁତ ହୋଇ ଦେଶ ବିଦେଶକୁ ପଠାଯାଉଥିଲା । ଓଡ଼ିଶାରେ ବାଣିଜ୍ୟ ଆରମ୍ଭର ଏକମାସ ମଧ୍ୟରେ ହରିହରପୁର ଏବଂ ବାଲେଶ୍ୱରରେ ଦୁଇଟି ବାଣିଜ୍ୟକୋଠି ସ୍ଥାପନ କରାଗଲା । ଯେଉଁ ମିର କାସିମ ଇଂରେଜ ବିରୁଦ୍ଧରେ ସୁବାଦାରଙ୍କୁ କହିବାକୁ ଆସିଥିଲେ, ସେ ପୁଣି କାଟରାଇଟଙ୍କୁ ଆଦର ସମ୍ଭାବନାରେ ଡାକିନେଇ ବାଲେଶ୍ୱରର ବାରବାଟୀରେ ବାଣିଜ୍ୟକୋଠି ସ୍ଥାପନ କରିବାରେ ସାହାଯ୍ୟ କଲେ । ବାଲେଶ୍ୱର ପ୍ରଧାନ ଜନାକୀର୍ଣ୍ଣ ବନ୍ଦର ଥିଲା । ବହୁ ବାଣିଜ୍ୟତରୀ ସେଠାରେ ନିର୍ମିତ ହେଉଥିଲା । ଏହା ବାଦ୍ ପୁରୀ, ସୁବର୍ଣ୍ଣରେଖାକୂଳ ପିପିଲୀ ଏବଂ ମେଦିନୀପୁର ଅନ୍ତର୍ଗତ ହିଜଳୀ ବନ୍ଦରରେ ବାଣିଜ୍ୟକୋଠିମାନ ସ୍ଥାପିତହେଲା ।

ଅନ୍ୟାନ୍ୟ ଇଉରୋପୀୟ ବଣିକ—ପର୍ତ୍ତୁଗିଜ ଏବଂ ଇଂରେଜବଣିକ-ମାନଙ୍କର ପଥ ଅନୁସରଣ କରି ଫ୍ରାନ୍ସ, ହଲାଣ୍ଡ ଏବଂ ଡେନମାର୍କର ବଣିକମାନେ ବାଲେଶ୍ୱରରେ ବାଣିଜ୍ୟକୋଠି ସ୍ଥାପନ କଲେ । ସେମାନଙ୍କ ବାଣିଜ୍ୟ ଅଳ୍ପକାଳ ମଧ୍ୟରେ ମ୍ଳାନ ହେଲା । ମାତ୍ର ବାଣିଜ୍ୟକୋଠିମାନଙ୍କର ସ୍ଥାନ ଅଦ୍ୟାପି ବାଲେଶ୍ୱରରେ ପରିଚିତ ହୁଏ । ଏଥିମଧ୍ୟରୁ ହଲଣ୍ଡ କୋଠିର ସ୍ଥାନ ୧୮୨୫ ଖ୍ରୀଷ୍ଟାବ୍ଦରେ ଏବଂ ଦିନାମାରଡ଼ଙ୍ଗା ବା ଡେନମାର୍କ ବଣିକମାନଙ୍କ ବସତି ୧୮୪୬ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ପାଇଲେ । ଫରାସୀଡଙ୍ଗା ଫ୍ରାନସର ରହିଅଛି ।

ଶାସନ ପରିବର୍ତ୍ତନ—ଏହି ସମୟରେ ପର୍ତ୍ତୁଗିଜ ଜଳଦସ୍ୟୁମାନେ ବଙ୍ଗ ଓ ଓଡ଼ିଶା ଉପକୂଳମାନ ଲୁଣ୍ଠନ କରୁଥିଲେ । ଏଥିରେ ବାଣିଜ୍ୟରେ ବହୁତ ବାଧା ପଡ଼ୁଥିଲା । ସୁତରାଂ ଜଣେ ଉପଯୁକ୍ତ ଓ ଦଣ୍ଡାପୀ ଶାସନକର୍ତ୍ତା ସ୍ୱରୂପ ସାଜାହାନ ଆପଣାର ଦ୍ୱିତୀୟ ପୁତ୍ର ସୁଜାଙ୍କୁ ବଙ୍ଗର ନୂତନ ସୁବାଦାର କରି ପଠାଇଲେ (୧୬୪୮-୫୮) । ଢାକା ସୁଜାଙ୍କ ରାଜଧାନୀ ହେଲା । ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ସୁବା ନ ରହି ସୁଜାଙ୍କ ଅଧୀନରେ ବଙ୍ଗସୁବାର ଅନ୍ତର୍ଗତ ହେଲା ।

## ଆଓରଙ୍ଗଜେବ

### ଖ୍ରୀଷ୍ଟ ୧୬୫୮—୧୭୦୭ ଅବ୍ଦ

ଓଡ଼ିଶା ବିଦ୍ରୋହ—୧୬୫୭ ଖ୍ରୀଷ୍ଟାବ୍ଦରେ ସାଜାହାନ ରୋଗରେ ପଡ଼ିବାରୁ ତାହାଙ୍କର ପୁତ୍ରମାନଙ୍କ ମଧ୍ୟରେ ସିଂହାସନ ନିମନ୍ତେ ବିବାଦ ଲାଗିଲା । ସେହି ବିବାଦ ପ୍ରାୟ ୩ ବର୍ଷ ଧରି ଚାଲିଲା । ରାଜପୁତ୍ର-ମାନଙ୍କ ମଧ୍ୟରେ ବିବାଦର ସୁବିଧା ପାଇ ମୋଗଲ ସାମ୍ରାଜ୍ୟ ମଧ୍ୟରେ ନାନା ସ୍ଥାନରେ ବିଦ୍ରୋହ ଓ ଅରାଜକତା ଘଟିଲା । ବିଦ୍ରୋହ ଓ ଅତ୍ୟାଚାରରେ ଚିରପ୍ରପୀଡ଼ିତ ଓଡ଼ିଶାରେ ମଧ୍ୟ ବିଦ୍ରୋହ ସର୍ବତ୍ର ବ୍ୟାପିଲା । ଆଓରଙ୍ଗଜେବ

ସବୁ ଭାଇମାନଙ୍କୁ ମାରି ଓ ପିତାଙ୍କୁ ବନ୍ଦୀକରି ଦିଲ୍ଲୀରେ ବାଦଶାହ ହେବା ମାତ୍ରେ ପ୍ରଧାନ ସେନାପତି ମିର ଜୁମ୍ଲାଙ୍କୁ ବଙ୍ଗର ସୁବାଦାର କରି ପଠାଇଲେ; ଏବଂ ଖାନ ଦଉରାଣୀ ଓଡ଼ିଶା ସୁବାଦାର ନିଯୁକ୍ତ ହେଲେ । ସେ ଆସି ଦେଖିଲେ ଯେ ତାହାଙ୍କ ପୂର୍ବବର୍ତ୍ତୀ ସୁବାଦାରମାନଙ୍କ ଶାସନରେ ଶିଥିଳତା ଯୋଗୁଁ ଓଡ଼ିଶାର ସବୁ ଜମିଦାରମାନେ ଅବାଧ ଏବଂ ବିଦ୍ରୋହୀ ହୋଇ ଉଠିଥିଲେ । କାଠଯୋଡ଼ୀର ଦକ୍ଷିଣବର୍ତ୍ତୀ ଜମିଦାର ରାଜା ନୀଳକଣ୍ଠ ଦେବ ଏବଂ ରାଜାମୁକୁନ୍ଦଦେବ ରାଜସ୍ବଦେବା ବନ୍ଦକରି ମୋଗଲ ଶାସନ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ । ଯୁଦ୍ଧ ନିମନ୍ତେ ସେମାନେ ବଳ ସଂଗ୍ରହ କରୁଥିଲେ ଏବଂ ସେମାନଙ୍କ ସଙ୍ଗେ ରଣପୁର, ସାରଙ୍ଗଯୋଡ଼ୀ, କୁମ୍ଭପଡ଼ା, ଖଲ୍ଲିକୋଟ ପ୍ରଭୃତି ରାଜାମାନେ ଯୋଗ ଦେଇଥିଲେ । ହରିହରପୁର (ବା ମୟୂରଭଞ୍ଜ) ରାଜା କୃଷ୍ଣ ଭଞ୍ଜ ମେଦିନୀପୁରଠାରୁ ଭଦ୍ରଖ ପର୍ଯ୍ୟନ୍ତ ୫୦।୬୦ କୋଶ ରାଜ୍ୟ ଅଧିକାର କରି ବସିଥିଲେ । କେନ୍ଦୁଝର ରାଜା ଲକ୍ଷ୍ମୀନାରାୟଣ ଭଞ୍ଜ ମୋଗଲ ସୈନ୍ୟଙ୍କୁ ପରାସ୍ତ କରି ଭଦ୍ରଖର ୨୪ ମାଇଲ ପଶ୍ଚିମବର୍ତ୍ତୀ ପଞ୍ଚିରା ନାମକ ଦୁର୍ଗ ଅଧିକାର କରିଥିଲେ । ହିଜଲୀର ଜମିଦାର ବାହାଦୁର ମଧ୍ୟ ବିଦ୍ରୋହୀ ହୋଇ ଉଠିଥିଲେ ।

ବିଦ୍ରୋହ ଦମନ— ଖାନ ଦଉରାଣୀ ସୁବାଦାର ହୋଇ ମେଦିନୀପୁରରେ ପହଞ୍ଚିଲେ । ସେଠାରେ ରାଜସ୍ବ ଆଦାୟ ଓ ଶାସନ ଶୃଙ୍ଖଳା ନିମନ୍ତେ ନୂତନ ଫୌଜଦାର ନିଯୁକ୍ତ କରି ନାରାୟଣ ଗଡ଼ ବାଟେ ଜଳେଶ୍ବର ଆସିଲେ । ସେଠାରୁ ସୁବାଦାରଙ୍କ ଅଧୀନତା ସ୍ୱୀକାର କରି ସାକ୍ଷାତରେ ତାହାଙ୍କୁ ସମ୍ମାନ ଦେଖାଇବା ନିମନ୍ତେ ସେ ଜଳେଶ୍ବରରୁ ହିଜଲୀ ଜମିଦାର ବାହାଦୁର ଏବଂ ହରିହରପୁର ରାଜା କୃଷ୍ଣ ଭଞ୍ଜଙ୍କ ନିକଟକୁ ଆଦେଶ ପଠାଇଲେ । କୃଷ୍ଣଭଞ୍ଜ ସୁବାଦାରଙ୍କ ସାକ୍ଷାତ କଲେ; ମାତ୍ର କଥୋପକଥନ ମଧ୍ୟରେ ସୁବାଦାରଙ୍କ କଥାରେ ଉତ୍ୟକ୍ତ ହୋଇ ତାହାଙ୍କୁ ହାଣିଦେବା ପାଇଁ ଖଣ୍ଡା ଉଠାଇଲେ । ସୁବାଦାରଙ୍କ ଆଦେଶରେ କୃଷ୍ଣ ଭଞ୍ଜ ଓ

ତାହାଙ୍କର କେତେକ ଅନୁଚର ନିହତ ହେଲେ; ଏବଂ ଅନ୍ୟାନ୍ୟମାନେ ପଳାଇଲେ । ନରସିଂହପୁର ଜମିଦାର ରୁଦଣ୍ତ୍ର, ସାଠିଶିଳାର ଜମିଦାର ଛତ୍ରେଶ୍ୱର ଧଳ ନୀଳଗିରିର ଜମିଦାର ହରଚନ୍ଦନ କୃଷ୍ଣ ଭଞ୍ଜଙ୍କୁ ସାହାଯ୍ୟ କରୁଥିବାରୁ ଅଧିକନ୍ତୁ ତ୍ୟାଗକରି ସୁବେଦାରଙ୍କ ଆଦେଶରେ ବନ୍ଦୀ ହେଲେ । କୃଷ୍ଣଭଞ୍ଜଙ୍କ ବଂଶଧରମାନେ ଆପଣାର ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରି ଅଶାନ୍ତି ଘଟାଇଲେ । ସେମାନଙ୍କୁ ଦମନ କରିବା ନିମନ୍ତେ ସୁବାଦାର ରେମୁଣା ଆସିଲେ । କୃଷ୍ଣ ଭଞ୍ଜଙ୍କ ଭାଇ ଜୟ ଭଞ୍ଜ ବଶ୍ୟତା ସ୍ୱୀକାରକରି କ୍ଷମା ଭିକ୍ଷା କଲେ । ୩ ହାତୀ ଏବଂ ପେସକସ ସ୍ୱରୂପ କିଛି ଅର୍ଥ ଦେବାରୁ ସେ କ୍ଷମା ପାଇଲେ; ଏବଂ ତାହାଙ୍କୁ ରାଜା ଓ ତାହାଙ୍କ ପୁତ୍ରଙ୍କୁ 'କୁମାରପତି' କରାଗଲା ।

ମୁକୁନ୍ଦଦେବଙ୍କ ବିଦ୍ରୋହ ଦମନ — ଖୋରଧାର ଭୋଇ ବଂଶୀୟ ରାଜାମାନେ ମୁସଲମାନ ରାଜତ୍ୱକାଳରେ କିପରି ପ୍ରପୀଡ଼ିତ ହେଉଥିଲେ ପରବର୍ତ୍ତୀ ଅଧ୍ୟାୟରେ ତାହାର ବର୍ଣ୍ଣନା ଦିଆଯିବ । ସେହିପରି ଲୁଣ୍ଠନ ଅତ୍ୟାଚାର ବିଧ୍ୱଂସିତାରୁ ସ୍ୱାଧୀନ ହେବାପାଇଁ ଖୋରଧାର ରାଜା ଓ ପ୍ରଜାମାନେ ଅବକାଶ ଖୋଜୁଥିଲେ । ବର୍ତ୍ତମାନ ମୋଗଲ ସାମ୍ରାଜ୍ୟରେ ଅରାଜକତା ଦେଖି ଖୋରଧାରାଜା ମୁକୁନ୍ଦଦେବ କେତେକ ସାମନ୍ତ ରାଜାମାନଙ୍କ ସହ ମୋଗଲ ସମ୍ରାଟଙ୍କୁ ଦେୟ ରାଜସ୍ୱ ବନ୍ଦ କରିଦେଲେ; ଏବଂ ଭାବୀ ଯୁଦ୍ଧ ଆଶଙ୍କାରେ ସୈନ୍ୟ ସଂଗ୍ରହରେ ଲାଗିଲେ । ରଣପୁର, ବାଙ୍କି, ଡ଼ୋମପଡ଼ା ଆଠଗଡ଼ ପ୍ରଭୃତି ରାଜାମାନେ ମୁକୁନ୍ଦଦେବଙ୍କ ସଙ୍ଗେ ସେହି ବିଦ୍ରୋହରେ ଯୋଗ ଦେଲେ ।

ଖାନ ଦଉରାଣୀ ଉତ୍ତରରେ ବିଦ୍ରୋହ ଦମନକରିବା ମାତ୍ରେ ରେମୁଣାରୁ କଟକ ଆସିଲେ; ଏବଂ ୧୬୬୧ ଖ୍ରୀଷ୍ଟାବ୍ଦରେ ବିପୁଳ ବାହିନୀ ଧରି ବିଦ୍ରୋହ ଦମନ ନିମନ୍ତେ ଖୋରଧା ଅଭିମୁଖେ ଅଗ୍ରସର ହେଲେ । ଖୋରଧା ନିକଟବର୍ତ୍ତୀ ବେଗୁନିଆ ଗଡ଼, ବୋରଡ଼ଅ ପ୍ରଭୃତି ଦୟାନଦୀ କୂଳବର୍ତ୍ତୀ ଅଞ୍ଚଳରେ

କାଳୁପଡ଼ା, ମୁଗୁସ, କରକାଣ୍ଡା, ବେଗୁନିଆ, ଗୋଲଣ୍ଡିଆ ପ୍ରଭୃତି ୭ ଗୋଟି ଦୁର୍ଗ ପରସ୍ପର ନିକଟରେ ଥିଲା । ସେହି ଦୁର୍ଗମାନ ରକ୍ଷାକରିବା ପାଇଁ ଖୋରଧାର ସକଳ ଜମିଦାର ଏବଂ ରଣପୁର, ବାଙ୍କି ପ୍ରଭୃତି ରାଜାମାନେ ସସୈନ୍ୟରେ ଆସି ଉପସ୍ଥିତ ଥିଲେ । ଖାନ ଦଉରାଣୀ ଖୋରଧା ଆସି ପ୍ରଥମେ ସେହି ସବୁ ଦୁର୍ଗମଣ୍ଡଳ ଆକ୍ରମଣ କଲେ । ପାଇକ, ଖଣ୍ଡାଏତ, "ଭୂମିହା"ମାନେ ବନ୍ଧୁକ, ଧନୁଶର, ଖଣ୍ଡା, ଶାବଳ ପ୍ରଭୃତି ଧରି ଘୋର ଯୁଦ୍ଧକଲେ । ଶେଷରେ ବିଦ୍ରୋହୀ ସୈନ୍ୟସାମନ୍ତମାନେ ପରାସ୍ତ ହେଲେ । ସୁବାଦାର ବିଦ୍ରୋହିମାନଙ୍କୁ ଏପରି ପ୍ରବଳ ଦେଖିଥିଲେ ଯେ ଯୁଦ୍ଧରେ ଜୟକରି ସେ ବାଦଶାହଙ୍କ ପାଖକୁ ଲେଖିଲେ ଏହିଯୁଦ୍ଧରେ ଯେ ଜୟହେଲା ପୂର୍ବବର୍ତ୍ତୀ କୌଣସି ସୁବାଦାରମାନେ ଏପରି ଯୁଦ୍ଧରେ ଜୟକରି ନ ଥିଲେ ।

ଦୁଇ ଦିନ ଘୋର ଯୁଦ୍ଧପରେ ଉକ୍ତ ସପ୍ତ ଦୁର୍ଗ ଖାନି ଦଉରାଣୀଙ୍କର ହସ୍ତଗତ ହେଲା । ସେଠାରୁ ସେ ଖୋରଧା ଆକ୍ରମଣ କରିବାକୁ ବାହାରିଲେ । ରାଜା ମୁକୁନ୍ଦଦେବ ଉକ୍ତ ସପ୍ତ ଦୁର୍ଗର ପତନ ବାର୍ତ୍ତା ପାଇ ମନରେ ଭୟ ପାଇ ଯାଇଥିଲେ । ମୋଗଲ ସୈନ୍ୟ ଖୋରଧା ଦୁର୍ଗ ଆକ୍ରମଣ କରିବାରୁ ରଜା ଦୁର୍ଗମଧ୍ୟରୁ ପଳାୟନ କଲେ । ମୋଗଲମାନେ ବହୁ ଧନ-ରତ୍ନ ହସ୍ତଗତ କଲେ; ଏବଂ ଅତି ନିର୍ଦ୍ଦୟଭାବରେ ବହୁତ ପାଇକମାନଙ୍କର ପ୍ରାଣହତ୍ୟା କଲେ । ଖାନି ଦଉରାଣୀ ରାଜା ମୁକୁନ୍ଦଦେବଙ୍କ କନିଷ୍ଠ ଭ୍ରମରବରଙ୍କୁ ଖୋରଧା ସିଂହାସନରେ ରାଜାକଲେ । ନିଜେ ସେ ଖୋରଧାରେ ବହୁଦିନ ରହି ସବୁ ବିଦ୍ରୋହ ଶାନ୍ତରେ ଲାଗିଲେ । ବାଙ୍କି, ଡମପଡ଼ା, ରଣପୁର ପ୍ରଭୃତି ଶାନ୍ତ ହେଲା, ଏବଂ ରାଜସ୍ୱ ଆଦାୟର ସୁବ୍ୟବସ୍ଥା ହୋଇଗଲା । ମାସେକାଳ ମୁକୁନ୍ଦଦେବ ଲୁଚିରହି ଶେଷରେ ସୁବାଦାରଙ୍କ ହସ୍ତରେ ଆତ୍ମସମର୍ପଣ କଲେ । ଭରତ ପଟ୍ଟନାୟକ ନାମକ ଜଣେ ବିଦ୍ରୋହୀ ଜମିଦାର ମଧ୍ୟ ସେହିପରି ଆତ୍ମସମର୍ପଣ କରି ଥିଲେ । ମୁକୁନ୍ଦଦେବ ବନ୍ଦୀଶାଳାରେ ପଡ଼ି ରହିଲେ ।

ଅନ୍ୟାନ୍ୟ ବିଦ୍ରୋହଦମନ—ଖୋରଧା ଶାନ୍ତକରି ଖାନି ଦଉରାଣୀ କଟକ ଆସିଲେ; ଏବଂ କେନ୍ଦୁଝରର ବିଦ୍ରୋହ ଦମନ ନିମନ୍ତେ ସୈନ୍ୟ ସଂଗ୍ରହ କରି ଯାତ୍ରାକଲେ (୧୬୬୧) । କେନ୍ଦୁଝର ରାଜା ଲକ୍ଷ୍ମୀନାରାୟଣ ଭଞ୍ଜ ବଙ୍ଗ ସୁବାଦାର ସୁଜାଙ୍କ ସୈନ୍ୟଙ୍କୁ ପରାଜିତ କରି ପାଞ୍ଚୁର ନାମକ ଦୁର୍ଗ ଅଧିକାର କରିଥିଲେ । ଖାନି ସମସ୍ତ କେନ୍ଦୁଝରରାଜ୍ୟ ଲୁଣ୍ଠନ କରି ପାଞ୍ଚୁର ଅବରୋଧ କଲେ । ଦୁର୍ଗ ଖାନଙ୍କର ହସ୍ତଗତ ହେଲା ; ଏବଂ ବିଦ୍ରୋହ ସମ୍ପୂର୍ଣ୍ଣ ଶାନ୍ତ ହେଲା । ଏହାର କେତେକ ଦିନ ପରେ ହିଜଲୀର ବିଦ୍ରୋହୀ ଜମିଦାର ବାହାଦୁର ସଲୁଟ୍ନୁରେ ଧରା ହୋଇ ବନ୍ଦୀ ହେଲେ । ଉତ୍ତରାଞ୍ଚଳରେ ଏହିରୂପେ ଶାନ୍ତି ସ୍ଥାପନ କରି ସୁବାଦାର ପୁଣି କଟକ ଫେରିଲେ ।

କଟକ ଅଞ୍ଚଳରେ ମଧ୍ୟ ବିଦ୍ରୋହ ସମ୍ପୂର୍ଣ୍ଣ ଶାନ୍ତ ହୋଇ ନ ଥିଲା । ଡୋମପଡ଼ା, ମାଲପଡ଼ା ଓ ରଣପୁର ରଜା ଖଣ୍ଡ ନରେନ୍ଦ୍ର ସୁବାଦାରଙ୍କ ବଶୀଭୂତ ହୋଇ କର ଦେବାକୁ ସ୍ୱୀକୃତ ହେଲେ । କାଠଯୋଡ଼ିର ଦକ୍ଷିଣକୂଳବର୍ତ୍ତୀ ଦଣ୍ଡଅ, ସାରଙ୍ଗଗଡ଼ର ରଜା ଓ ଦଳପତିମାନେ ମୋଗଲ ସୈନ୍ୟଙ୍କଦ୍ୱାରା ପରାଜିତ ହୋଇ ଅଧୀନତା ସ୍ୱୀକାର କଲେ । ଦକ୍ଷିଣରେ ମାଲୁଦର ଜମିଦାର କୁମାର ଗୁରୁ ଏବଂ ଅଣ୍ଡିଆଗ୍ରାର ଜମିଦାର ପିତ୍ତମଙ୍କ ବିଦ୍ରୋହ ଦମନରେ ମାଲୁଦର ମୋଗଲ ଫୌଜଦାର ନିଯୁକ୍ତ ରହିଲେ । ସେ ଦିଗରୁ ଅଞ୍ଚଳରେ ଶାନ୍ତି ସ୍ଥାପିତ ହେଲା ।

କନିକାର ରଜା ବିଦ୍ରୋହୀ ହୋଇଥିବାରୁ ମିଅଦ ମହମ୍ମଦଜାନ ନାମକ ଜଣେ ସେନାପତି କନିକା ପ୍ରେରିତହେଲେ । ରଜା ସେନାପତିଙ୍କଦ୍ୱାରା ପରାଜିତ ହୋଇ ରାଜ୍ୟଛାଡ଼ି ସମୁଦ୍ରମଧ୍ୟସ୍ଥ ରକା ନାମକ ଗୋଟିଏ ଦୁର୍ଗରେ ଆଶ୍ରୟନେଲେ । ସେଠାରେ ମଧ୍ୟ ସେ ନିରାପଦ ହୋଇ ନ ଥିଲେ । ତାହାଙ୍କୁ ଧରି ଦମନ କରିବା ନିମନ୍ତେ କୁଜଙ୍ଗ ରାଜା ଗୋପାଳଙ୍କ ସାହାଯ୍ୟରେ ମହମ୍ମଦ ଜାନ ମହାନଦୀର ନୌକାରେ ବହୁସୈନ୍ୟ ନେଇ ରକା ଦୁର୍ଗ ଅବରୋଧ କରି କନିକା ରାଜାଙ୍କୁ ପରାସ୍ତ ଓ ବନ୍ଦୀକଲେ । କୁଜଙ୍ଗ ରାଜା ଗୋପାଳ ଏଥି

ପୂର୍ବରୁ ପରାସ୍ତ ହୋଇ ମୋଗଲ ଅଧୀନତା ସ୍ୱୀକାର କରିଥିଲେ, ଏବଂ ଜନତାବିଦ୍ରୋହ ଦମନରେ ମହମ୍ମଦଜମାନଙ୍କୁ ବହୁ ସାହାଯ୍ୟ ଦେଇଥିଲେ ।

ଜନତା ଶାନ୍ତ ହେବାପରେ କୋଇଲି ମଧୁପୁର ରାଜାଙ୍କ ପାଳି ପଡ଼ିଲା । ରାଜା ପରାସ୍ତ ହୋଇ ବନ୍ଦୀହେଲେ । ମଧୁପୁରରେ ଶାନ୍ତି ସ୍ଥାପିତ ହେଲା । କଟକର ୮ ମାଇଲ ଦକ୍ଷିଣ ପୂର୍ବ କୁଲଗ୍ର (କୁଲର୍ଦା) ଦୁର୍ଗର ଅଧିପତି ରାଜା ଶ୍ରୀ ହରିଚନ୍ଦନଙ୍କ ବିଦ୍ରୋହ ଦମନ ନିମନ୍ତେ ମୋଗଲ ସୈନ୍ୟମାନେ କୁଲଗ୍ରଦୁର୍ଗ ଅବରୋଧ କଲେ । କିଲ୍ଲାଦାର ହରିଚନ୍ଦନ ପରାସ୍ତ ହୋଇ ଆଶ୍ରୟ ପ୍ରାର୍ଥନା କଲେ । ତାହାଙ୍କର ଜୀବନ ରକ୍ଷା କରାଗଲା ; ମାତ୍ର ସେ କାରାରୁଦ୍ଧ ରହିଲେ ଏବଂ ତାହାଙ୍କ କିଲ୍ଲା ସୁବାଦାରଙ୍କ ଖାସ ଦଖଲରେ ରହିଲା । କଟକାଲି କିଲ୍ଲା ମଧ୍ୟ ସେହିଦଶା ଭୋଗିଲା ।

ଖଲିକୋଟର ରାଜା ଛତ୍ରଭୂଜଙ୍କ ବିଦ୍ରୋହ ଶାନ୍ତ ହେବାପରେ ତାଙ୍କ ପୁତ୍ରମାନେ ବନ୍ଦୀ ହେଲେ, ଏବଂ ରାଜା ନିଜେ ବଶ୍ୟତା ସ୍ୱୀକାର କରି ରାଜସ୍ୱ ନିୟମିତ ଆଦାୟ ଦେବାକୁ ପ୍ରତିଶ୍ରୁତ ହେଲେ ।

ଚିକାକୋଲ୍ କିଲ୍ଲାର ରାଜା ନୀଳକଣ୍ଠଦେବ ମୋଗଲମାନଙ୍କ ପ୍ରତି ଏହି ବିଦ୍ରୋହ ପୂର୍ବରୁ ବିଶେଷ ରାଜଭକ୍ତି ରଖିଥିଲେ; ଏବଂ ମୋଗଲକ୍ଷମତା ବିସ୍ତାର କରିବା ନିମନ୍ତେ ନିଜ ସୈନ୍ୟ ସାମନ୍ତ ଧରି ମୋଗଲବାହିନୀଙ୍କ ସାହାଯ୍ୟରେ ଗୋଲକୁଣ୍ଡାର କୁତବସାହୀ ସୁଲତାନମାନଙ୍କ ବିରୁଦ୍ଧରେ ବହୁଯୁଦ୍ଧ କରିଥିଲେ । ଗଞ୍ଜାମର କୁତୁବସାହୀ ପ୍ରଗନା ବା ଚିକାକୋଲ୍ ମୋଗଲମାନେ ଜୟକରି ନୀଳକଣ୍ଠଙ୍କୁ ଜାଗିର ସ୍ୱରୂପ ଦେଇଥିଲେ । ବର୍ତ୍ତମାନ ଓଡ଼ିଶାବ୍ୟାପୀ ବିଦ୍ରୋହରେ ମାତି ନୀଳକଣ୍ଠ ମଧ୍ୟ ଆପଣାର ସ୍ୱାତନ୍ତ୍ର୍ୟ ଦେଖେଇନାହିଁ । ଖାନ ଦଉରାଣୀ ନୀଳକଣ୍ଠଙ୍କ ଆକ୍ରମଣକରି ପରାସ୍ତ କଲେ । ନୀଳକଣ୍ଠଙ୍କ ଭାଇମାନେ ବନ୍ଦୀ ହେଲେ ଏବଂ ପୂର୍ବ ରାଜଭକ୍ତି ଦୃଷ୍ଟିରେ ନୀଳକଣ୍ଠ କ୍ଷମା ପାଇଲେ । ତାହାଙ୍କଠାରୁ ତାଙ୍କ

ରାଜସ୍ୱ ୪୪ ହଜାର ଟଙ୍କା ଅଦାୟ କରାଗଲା ଏବଂ ଭବିଷ୍ୟତରେ ଯଥାରୀତିରେ ରାଜସ୍ୱ ଅଦାୟ ଦେବାପାଇଁ ସେ ସ୍ୱୀକୃତ ହେଲେ ।

ଓଡ଼ିଶାବ୍ୟାପୀ ସକଳ ବିଦ୍ରୋହୀ ରାଜାମାନେ ଏହିପରି ସ୍ୱତନ୍ତ୍ର-ଭାବରେ ବିଦ୍ରୋହ ଅଚରଣ ନ କରି ପରସ୍ପରସହ ଯୋଗ ଦେଇଥିଲେ ବିଦ୍ରୋହ ଶାନ୍ତ କରିବା ଖାନ ଦଉରାଣୀଙ୍କ ପକ୍ଷରେ ଦୁଃସାଧ ହୋଇ ଥାନ୍ତା । ମାତ୍ର ସେ ସଙ୍ଗତି ସମ୍ଭବ ହୋଇ ନ ଥିଲା; ଖାନ ଦଉରାଣୀ ଦୁଇବର୍ଷ ମଧ୍ୟରେ ସକଳ ବିଦ୍ରୋହ ଦମନକରି ଦ୍ୱିତୀୟ ଓଡ଼ିଶା ବିଜେତା-ରୂପେ ମୋଗଲ ଦରବାରରେ ବହୁଳ ସମ୍ମାନ ପାଇଲେ । ରାଜସ୍ୱ ନିୟମିତ ଅଦାୟ କରାଗଲା , ଏବଂ ମୋଗଲରାଜତ୍ୱ କେତେକାଳ ନିମନ୍ତେ ଶାନ୍ତିରେ ଚାଲିଲା ।

ଇଁରେଜ ବାଣିଜ୍ୟ ବିପତ୍ତି—ପୂର୍ବେ କୁହାଯାଇଛି ଓଡ଼ିଶା ସୁବାଦାର ମୃତାକିଦଖାଁଙ୍କଠାରୁ ଅନୁମତି ପାଇ ଇଁରେଜ ବଣିକମାନେ ପୁରୀ, ହରିହରପୁର ବାଲେଶ୍ୱର, ପିପିଲି, ହୁଗଲୀ ପ୍ରଭୃତି ବାଣିଜ୍ୟ କେନ୍ଦ୍ରମାନଙ୍କରେ ବାଣିଜ୍ୟକୋଠି ସ୍ଥାପନ କରିଥିଲେ । ଓଡ଼ିଶାର ଜଳବାୟୁ ଏବଂ ମାଲେରିଆରେ ବଣିକମାନେ ବିଶେଷ ଯନ୍ତ୍ରଣା ପାଉଥିଲେ । ଏହି ଦୈବୀ ବିପତ୍ତି ଉପରେ ପୁଣି ମାନବୀ ବିପତ୍ତି ବାରମ୍ବାର ପଡ଼ିଲା । ପର୍ତ୍ତୁଗିଜ ଜଳଦସ୍ୟୁମାନେ ବଙ୍ଗୋପସାଗରରେ ସକଳ ବାଣିଜ୍ୟ ଲୁଣ୍ଠନରେ ମାତିଥିଲେ; ଏବଂ ଓଡ଼ିଶା ଉପକୂଳରେ ଇଂରେଜ ବାଣିଜ୍ୟ ବହୁବାର ଲୁଣ୍ଠିତ ହେଉଥିଲା । ଏଥିମଧ୍ୟରେ ହଲାଣ୍ଡର ଗୋଟିଏ ରଣତରୀ ଓଡ଼ିଶା ଉପକୂଳ ବନ୍ଦରମାନ ଆକ୍ରମଣ କରି ଲୁଣ୍ଠନ କଲା । ଏହି ସବୁ ବିପତ୍ତି ମଧ୍ୟରେ ଇଂରେଜ ବଣିକମାନେ ପୁରୀ, ପିପିଲି, ହରିହରପୁର ପ୍ରଭୃତି ସ୍ଥାନମାନଙ୍କରୁ ବାଣିଜ୍ୟକୋଠି ଉଠାଇ ଦେଇ କେବଳ ବାଲେଶ୍ୱରରେ ସକଳ ବାଣିଜ୍ୟ କେନ୍ଦ୍ରୀଭୂତ କଲେ ।

ବାଲେଶ୍ୱର ସେହି ସମୟରେ ସମସ୍ତ ବଙ୍ଗୋପସାଗର ଉପକୂଳର ପ୍ରଧାନ ବନ୍ଦର ଥିଲା , ଏବଂ ତାମ୍ରଲିପ୍ତ ପତନ ପରେ ବାଲେଶ୍ୱର ସାଗରଗାମୀ ଦେଶୀ ବିଦେଶୀ ସକଳ ପୋତମାନଙ୍କର ପ୍ରଧାନ ସମାଗମ ସ୍ଥଳ ଥିଲା । ବାଲେଶ୍ୱର ବ୍ୟତୀତ ବଙ୍ଗଦେଶରେ ହୁଗୁଳୀ ଏବଂ ବିହାରରେ ପାଟଣା ଇଂରେଜ ବାଣିଜ୍ୟ କେନ୍ଦ୍ର ଥିଲା । ମାତ୍ର ସେ ସ୍ଥାନମାନଙ୍କରେ ବଣିକମାନେ ମୋଗଲମାନଙ୍କ ହସ୍ତରେ ବହୁ ନିର୍ଯ୍ୟାତନା ସହୁଥିଲେ । ବିଧର୍ମୀ ହୋଇଥିବାରୁ ସେମାନଙ୍କୁ ହିନ୍ଦୁ ପ୍ରଜାମାନଙ୍କ ପଡି କରଠାରୁ ଅଧିକ କର ଦେବାକୁ ପଡୁଥିଲା । ତାହା ଉପରେ ପୁଣି ପଥକର, ପଣ୍ୟକର ଇତ୍ୟାଦି ଏବଂ ବେଳେ ବେଳେ ମୋଗଲ ହାକମମାନଙ୍କର ଅଯଥା ଦାବୀ ବକ୍ସିସ, ଘୋଡା ପ୍ରଭୃତି ବହୁତ ବଣିକମାନେ ଦେବାକୁ ବାଧ୍ୟ ହେଉଥିଲେ । ଏଥିରେ ପୁଣି ହୁଗୁଳୀ ନଦୀରେ ଜାହାଜ ଯିବା ବଡ ବିପଦଜନକ ଥିଲା । ସୁତରାଂ ଇଂରେଜମାନେ ବାଲେଶ୍ୱର ବନ୍ଦରକୁ ଏକମାତ୍ର ଆଶ୍ରୟ କରି ସେଠାରେ ବାଣିଜ୍ୟ ଦୃଢ଼ୀଭୂତ କଲେ । ଓଡିଶା ସୂକ୍ଷ୍ମବସ୍ତ୍ର ନିମନ୍ତେ ଇତିହାସରେ ଚିର ପ୍ରସିଦ୍ଧ, ପ୍ରଧାନତଃ ସେହି ବସ୍ତ୍ର ବାଣିଜ୍ୟରେ ଉତ୍କଳ ବଣିକମାନେ ଦେଶ ବିଦେଶର ବିପଣୀମାନଙ୍କରେ କର୍ତ୍ତୃତ୍ୱ କରୁଥିଲେ , ଏବଂ ସେହି ବସ୍ତ୍ର ବାଣିଜ୍ୟ-ଲୋଭରେ ଇଂରେଜମାନେ ଓଡିଶାରେ ବାଣିଜ୍ୟକୋଠି ସ୍ଥାପନ କରିଥିଲେ । ଇଂରେଜ ବଣିକମାନେ ଓଡିଶାର ସବୁ ସ୍ଥାନରୁ ବସ୍ତ୍ରମାନ ଅତି ଅଳ୍ପ ମୂଲ୍ୟରେ ପାଉଥିଲେ । ପଥମଧ୍ୟରେ କର ପ୍ରଭୃତି ଏତେ ଦେବାକୁ ପଡୁଥିଲା ଯେ ବାଲେଶ୍ୱର କୋଠିରେ ପହଞ୍ଚିଲା ବେଳକୁ ବିକ୍ରୟ ମୂଲ୍ୟର ଶତକଡା ୩୨ ପର୍ଯ୍ୟନ୍ତ କର ଧରା ଯାଉଥିଲା । ତଥାପି ଓଡିଶା ବାଣିଜ୍ୟ ଲୋଭ ଏବଂ ବାଲେଶ୍ୱର ବନ୍ଦରର ସୁବିଧା ଯୋଗୁଁ ଇଂରେଜମାନେ ବାଲେଶ୍ୱର ଛାଡିବାକୁ ପ୍ରସ୍ତୁତ ନ ଥିଲେ । ମୋଗଲ ଅତ୍ୟାଚାର ଭୟରେ ସେମାନେ ବାଲେଶ୍ୱର କୋଠି ଦୃଢ଼ୀଭୂତ କରିବାର ଉଦ୍ୟମ କଲେ । ବାଣିଜ୍ୟ କୋଠି ଗୋଟିଏ ନିର୍ମାଣ ଗଠିତ ସୁଦୃଢ଼ ଦୁର୍ଗରେ ପରିଣତ ହେଲା । ଇଂରେଜ ବାଣିଜ୍ୟ

କୋଠିପାଖରେ ବହୁ ତନ୍ତୀ ବସତି କରିଥିଲେ । ଅନ୍ୟାନ୍ୟ ଶିଳ୍ପିମାନେ
ମଧ୍ୟ ବସୁତି ଥିଲେ । ମୋଗଲ ଓ ଅଫଗାନମାନେ ସେହି ବସ୍ତ୍ର ଓ ଅନ୍ୟାନ୍ୟ
ଶିଳ୍ପିମାନଙ୍କ ଉପରେ ଅତ୍ୟାଚାର ବିଶେଷ ଭାବରେ କରୁଥିଲେ । ଥରେ
ଦଳେ ଅଫଗାନ ଗୋଟିଏ ତନ୍ତୀ ବସତି ସଂପୂର୍ଣ୍ଣ ପୋଡ଼ିଦେଲେ ଏବଂ
ଅନ୍ୟାନ୍ୟ ଶିଳ୍ପୀ କେତେକଙ୍କୁ ବର୍ଚ୍ଛାରେ ମାରି ଦେଲେ । ଏହାଦ୍ୱାରା ଇଂରେଜ
ବଣିକମାନଙ୍କର ଅଗ୍ରିମ ଦିଆଯାଇଥିବା ବହୁତ ଧନ କ୍ଷତି ହୋଇଥିଲା, ଏବଂ
ବହୁବିଧ ଅତ୍ୟାଚାର ଯୋଗୁଁ ଏହିପରି କ୍ଷତି ବାରମ୍ବାର ସହିବାକୁ ପଡୁଥିଲା ।
ତଥାପି ବାଣିଜ୍ୟ ଏପରି ଲାଭଜନକ ଥିଲା ଯେ ବଣିକମାନେ ଓଡ଼ିଶା
ବାଣିଜ୍ୟ ଛାଡ଼ି ନ ଥିଲେ । ୧୬୮୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଇଂରେଜ ବଣିକମାନେ
ନୀରବ ଭାବରେ ସକଳ ଲୁଣ୍ଠନ ଓ ଅତ୍ୟାଚାର ସହି କେବଳ ବାଣିଜ୍ୟରେ
ମନ ଦେଇଥିଲେ । ଏହିଠାରୁ ଆଉ ଅଧିକ କ୍ଷତି ସହ୍ୟ ନ କରି ଆପଣାର
କମାଣ ମୁଖରେ ପ୍ରତିବାଦ କରିବା ନିମନ୍ତେ ବଣିକମାନେ ସ୍ଥିରକଲେ ।

ବଙ୍ଗଦେଶର ମୋଗଲ ସୁବାଦାର ଶାଏସ୍ତା ଖାଁଙ୍କ ଅତ୍ୟାଚାରରେ
ବଣିକମାନେ ପ୍ରପୀଡ଼ିତ ହୋଇ ବଙ୍ଗଦେଶ ଛାଡ଼ି ୧୬୮୭ ଖ୍ରୀଷ୍ଟାବ୍ଦରେ
ହିଜଲିରେ ଆଶ୍ରୟ ନେଲେ । ସେଠାରୁ ଆସି ଗୃଣ୍ଡକଙ୍କ ନେତୃତ୍ୱରେ ବଣିକ-
ମାନେ ୧୬୮୮ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରରେ ମୋଗଲମାନଙ୍କ ହେଉ
ଆଶ୍ରୟ ନେଲେ । ବାଲେଶ୍ୱର କୋଠିରେ କେତେକ କମାଣ ଖଞ୍ଜାହୋଇ
ସୁଦୃଢ଼ କରାଯାଇଥିଲା । କୋଠିର ଏକପାଖରେ ବଳଙ୍ଗ ନଦୀ ଏବଂ ଅନ୍ୟ
ପାଖରେ ଲୁଣିଅଯୋଡ଼ୀ ଗଭୀର ଓ ପ୍ରଶସ୍ତ କରାଯାଇ ଦୁର୍ଗପ୍ରାୟ ପରିଖା
ସ୍ୱରୂପ ହୋଇଥିଲା । ବଳଙ୍ଗ ନଦୀ ମଧ୍ୟରେ ଏବଂ ମୁହାଣରେ ରଣତରୀ
ରଖାଯାଇ ଉପକୂଳରୁ ୧୬ ମାଇଲ ଦୂର ପର୍ଯ୍ୟନ୍ତ ସମୁଦ୍ରଉପର ନିରାପଦ
କରାଯାଇଥିଲା । ଏଥିମଧ୍ୟରେ ବଙ୍ଗଦେଶରେ ମୋଗଲମାନେ ଇଂରେଜ
ବଣିକଙ୍କ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କରିବାରୁ ବାଲେଶ୍ୱରର ମୋଗଲ
ଫୌଜଦାର ଇଂରେଜମାନଙ୍କୁ ଆକ୍ରମଣ କଲେ । ବଣିକସରଦାର

କାପ୍ଟେନ ହୁଥ ବନ୍ଦରରୁ ଆସି ବାଲେଶ୍ୱର ସହର ଲୁଣ୍ଠନ କଲେ । ତାହାଙ୍କ ସଙ୍ଗେ ୧୬୦ ଇଂରେଜସୈନ୍ୟ ଥିଲେ । ସେମାନେ ଫୌଜଦାରଙ୍କ ରାଜକାଛାରୀ ଏବଂ ଯେତେ ମୋଗଲ ଘର ଥିଲା, ତାହା ସବୁ ଲୁଣ୍ଠନ କଲେ । ଦେଶୀ ବଣିକମାନଙ୍କର ବାଣିଜ୍ୟମାନ ମଧ୍ୟ ସେହି ଲୁଣ୍ଠନରୁ ରକ୍ଷାପାଇ ନଥିଲା । ଦୁଇଦିନ ପର୍ଯ୍ୟନ୍ତ ଏହିପରି ଲୁଣ୍ଠନ ଚାଲିଲା । ଶେଷରେ ନଦୀ ମୁହାଣରେ ହାତୀ ଲଦାହୋଇ ଦୁଇଟି ଜାହାଜ ପହଞ୍ଚିଲା । ସେ ଦୁଇଟି ମଧ୍ୟ ଲୁଣ୍ଠିତ ହେଲା । ଏହି ଲୁଣ୍ଠନ ପରେ ମୋଗଲ ନୌସୈନ୍ୟ ଜାହାଜରେ ଆସି ଇଂରେଜମାନଙ୍କୁ ବନ୍ଦୀ କଲେ; ଏବଂ ୩ ଜଣ ବନ୍ଦୀଙ୍କର ଶିର ଛେଦନ କରିଦେଲେ ।

ଲୁଣ୍ଠିତ ପରଦିନ ମୁହାଣରୁ ନଗର ମଧ୍ୟକୁ ଆସି ମୋଗଲ ସୈନ୍ୟଙ୍କୁ ପରାସ୍ତ କଲେ । ବିଜୟୀ ଇଂରେଜମାନେ ପୂର୍ବରୁ ଯେ ଧନ ଦୌଲତ ନଷ୍ଟ କରିଥିଲେ ସେଥିରେ ସନ୍ତୁଷ୍ଟ ନରହି ଶତ୍ରୁ ବା ମିତ୍ର, ସ୍ୱଧର୍ମୀ ବା ବିଧର୍ମୀ, ପୁରୁଷ ବା ସ୍ତ୍ରୀ କିଛି ବିଗ୍ଭର ନ କରି ସକଳ ସହରବାସୀଙ୍କ ଉପରେ ଘୋର ଅତ୍ୟାଚାର କଲେ । ମୋଗଲ ଫୌଜଦାର ଏହା ପୂର୍ବରୁ ଇଂରେଜ କୋଠି ପୋଡିଦେଇ ବଣିକମାନଙ୍କୁ ବନ୍ଦୀ କରି ନେଇ ଯାଇଥିଲେ, ସୁତରାଂ ଏତେ ଅତ୍ୟାଚାର ସତ୍ତ୍ୱେ ଇଂରେଜସୈନ୍ୟମାନେ ଆପଣାର ବଣିକମାନଙ୍କୁ ରକ୍ଷା କରି ପାରିଲେ ନାହିଁ ।

ଏହାପରେ ବାଲେଶ୍ୱର ଇଂରେଜ-ବଣିକମାନଙ୍କଦ୍ୱାରା କେତେକାଳ ପରିତ୍ୟକ୍ତ ହେଲା । ୧୬୯୦ ଖ୍ରୀଷ୍ଟାବ୍ଦରେ ଅଉରଙ୍ଗଜେବ ନୂତନ ଫର୍ମାନ ବା ସନଦ ଦେବାରୁ ଇଂରେଜମାନେ ବଙ୍ଗଦେଶ ଓ ଓଡିଶା ବାଣିଜ୍ୟର ପୁନରୁଦ୍ଧାର କଲେ ।

ଶେଷ ଅଫଗାନ ବିଦ୍ରୋହ—୧୬୯୫ ଖ୍ରୀଷ୍ଟାବ୍ଦରେ ମେଦିନୀପୁରର ଘାଟାଲ ଅନ୍ତର୍ଗତ ଜମିଦାର ଶୋଭାସିଂହ ମୋଗଲଶାସନ ବିରୁଦ୍ଧରେ ବିଦ୍ରୋହୀ ହୋଇ ଉଠିଲେ । ରହିମ ଖାଁ ନାମକ ଓଡିଶାର ଅନ୍ୟ ଜଣେ

ଦଳପତି ବିଦ୍ରୋହ କରି ଶୋଭାସିଂହଙ୍କ ସଙ୍ଗେ ଯୋଗ ଦେଲେ । ବର୍ଦ୍ଧମାନ ଠାରୁ କଟକ ପର୍ଯ୍ୟନ୍ତ ସମଗ୍ର ରାଜ୍ୟ ବିଦ୍ରୋହିମାନଙ୍କ ଦୌରାତ୍ମ୍ୟରେ ଉତ୍ପୀଡିତ ହେଲା । ବଙ୍ଗର୍ଷ ପର୍ଯ୍ୟନ୍ତ ବିଦ୍ରୋହ କ୍ରମଶଃ ଜଳି ଉଠିଲା । ଶୋଭା ସିଂହ ବର୍ଦ୍ଧମାନ ଆକ୍ରମଣ କରି ହୁଗୁଲୀ ଦୁର୍ଗ ଅଧିକାର କଲେ । ବର୍ଦ୍ଧମାନ ଦୁର୍ଗ ଅବରୋଧବେଳେ ରାଜବାଟୀର ସକଳ ରାଜମହିଳାମାନେ ବିଷ ପାନରେ ପ୍ରାଣ ହରାଇଲେ । ଜଣେ ସୁନ୍ଦରୀ ଯୁବତୀ ମରି ନ ପାରି ରହିଗଲେ । ଶୋଭାସିଂହ ତାହାଙ୍କ ମନ ହରଣ କରିବାକୁ ନାନା ପ୍ରଲୋଭନ ଦେଖାଇ ଶେଷରେ ବଳ ପ୍ରୟୋଗ କରିବାରୁ ଯୁବତୀ ଏକ ଛୁରିକାରେ ଶୋଭାସିଂହଙ୍କୁ ହତ୍ୟାକଲେ ଏବଂ ନିଜ ବକ୍ଷରେ ମଧ୍ୟ ସେ ରକ୍ତାକ୍ତ ଛୁରିକା ବିଦ୍ଧକରି ପ୍ରାଣ ହରାଇଲେ । ବର୍ଦ୍ଧମାନ ରାଜବାଟୀରେ ସେହି ରମଣୀମାନଙ୍କ ସ୍ମାରକସ୍ୱରୂପ ଅଦ୍ୟାପି ଗୋଟିଏ ବାସନ୍ତୀଉତ୍ସବ ଅନୁଷ୍ଠିତ ହୁଏ ।

ଶୋଭାସିଂହଙ୍କ ମୃତ୍ୟୁପରେ ବିଦ୍ରୋହିମାନେ ରହିମଙ୍କୁ ପ୍ରଧାନ ନାୟକ କଲେ । ଅଫଗାନ ବଳ ମୁର୍ଶିଦାବାଦ ଆକ୍ରମଣ କଲେ । ରହିମଙ୍କ ହସ୍ତରେ ମୁର୍ଶିଦାବାଦ ନବାବଙ୍କର ମୃତ୍ୟୁ ହେଲା ; ଏବଂ ବିଦ୍ରୋହିମାନେ ଦେଶ ଲୁଣ୍ଠନ କଲେ । ଆଓରଙ୍ଗଜେବ ଏହି ସମ୍ବାଦ ପାଇ ଜବରଦସ୍ତ ଖାଁ ନାମକ ଜଣେ ସାହସୀ ସେନାପତିଙ୍କୁ ଫୌଜଦାର କରି ପଠାଇଲେ । ରହିମ ପରାଜିତ ହୋଇ ଭାଗୀରଥୀ ନଦୀ ପାରହୋଇ ପଳାଇ ଅସିଲେ । ମାତ୍ର ତାହାଙ୍କର ଲୁଣ୍ଠନ ଅତ୍ୟାଚାର ପୂର୍ବପରି ଚାଲିଲା । ଶେଷରେ ୧୬୯୮ ଖ୍ରୀଷ୍ଟାବ୍ଦରେ ରହିମ ବଙ୍ଗର ନୂତନ ସୁବାଦାର ଅଜିମ ଉସାନଙ୍କୁ ବର୍ଦ୍ଧମାନ-ଠାରେ ଆକ୍ରମଣ କଲେ । ରହିମ ଖାଁ ସେହି ଯୁଦ୍ଧରେ ନିହତ ହେଲେ, ଏବଂ ବିଦ୍ରୋହୀ ପଠାଣମାନେ ଯୁଦ୍ଧକ୍ଷେତ୍ରରୁ ପଳାୟନ କଲେ । ଅନେକେ ସେମାନଙ୍କମଧ୍ୟରୁ ଧରାହୋଇ ନିହତ ହେଲେ । ଶେଷରେ ଅଫଗାନ ବିଦ୍ରୋହରୁ ଦେଶ ଚିରକାଳ ନିମନ୍ତେ ମୁକ୍ତି ପାଇଲା ; ଏବଂ ଓଡିଶା ଇତିହାସରୁ ଅଫଗାନମାନଙ୍କ ନାମ ମଧ୍ୟ ଲୁପ୍ତଗଲା ।

# ମୋଗଲ ଶାସନର ଅବଶେଷ

## ଖ୍ରୀଷ୍ଟ ୧୭୦୭—୧୭୫୧ ଅବ୍ଦ

ମୋଗଲରାଜଦରବାରର ଦୁର୍ବଳତା — ୧୭୦୭ ଖ୍ରୀଷ୍ଟାବ୍ଦରେ ଔରଙ୍ଗଜେବଙ୍କର ମୃତ୍ୟୁ ହେଲା । ତାହାଙ୍କ ମୃତ୍ୟୁ ପରେ ମୋଗଲ-ସାମ୍ରାଜ୍ୟର ପତନ ଆରମ୍ଭ ହେଲା । ଔରଙ୍ଗଜେବ ଆପଣାର ପିତାଙ୍କୁ ବନ୍ଦୀ ଏବଂ ସହୋଦରମାନଙ୍କୁ ହତ୍ୟା କରି ଯେ ନୃଶଂସଭାବରେ ଦିଲ୍ଲୀ ସିଂହାସନ ଅଧିକାର କରିଥିଲେ, ତାହାଙ୍କ ମୃତ୍ୟୁ ପରେ ମୋଗଲ ସିଂହାସନ ନିମନ୍ତେ ତାହା ସର୍ବଦା ଘଟିଲା । ଭିନ୍ନ ଭିନ୍ନ ପ୍ରତିଦ୍ୱନ୍ଦ୍ୱୀମାନେ ପରସ୍ପରକୁ ହତ୍ୟାକରି ସିଂହାସନ ପାଇବା ଚେଷ୍ଟାରେ ରହିଲେ । ଏଣେ ରାଜ-ଦରବାରରେ ଅନ୍ତର୍ବିବାଦ, ତହିଁରେ ପୁଣି ସମ୍ରାଟମାନଙ୍କର ଦୁର୍ବଳତା ଏବଂ ଶାସନରେ ଶିଥିଳତା ଓ ବ୍ୟଭିଚାର ; ଏପରି ଅବସ୍ଥାରେ ପ୍ରାଦେଶିକ ଶାସନ-କର୍ତ୍ତାମାନେ ସ୍ୱାଧୀନ ହେବା ପାଇଁ କେବଳ ସମୟ ସୁବିଧା ଖୋଜୁଥାନ୍ତି ରହିଲେ । ସମଗ୍ର ଭାରତ ସାମ୍ରାଜ୍ୟ କ୍ରମେ ଖଣ୍ଡ ବିଖଣ୍ଡ ହୋଇ ପୃଥକ ପୃଥକ ସ୍ୱାଧୀନ ରାଜ୍ୟମାନଙ୍କରେ ବିଭକ୍ତ ହେବାକୁ ଆରମ୍ଭ ହେଲା ।

ସୁଜାଉଦ୍ଦିନ ମହମ୍ମଦ—ଔରଙ୍ଗଜେବଙ୍କ ମୃତ୍ୟୁର ଅଳ୍ପକାଳ ପୂର୍ବରୁ ୧୭୦୪ ଖ୍ରୀଷ୍ଟାବ୍ଦରେ ମୁର୍ଶିଦକୁଲିଖାଁ ବଙ୍ଗ ବିହାର ଓ ଓଡ଼ିଶାର ସୁବାଦାର ନିଯୁକ୍ତ ହୋଇଥିଲେ । ସେ ଜଣେ ସୁଶାସକ ସୁବାଦାର ଥିଲେ । ଆପଣାର ଜାମାତା ସୁଜାଉଦ୍ଦିନ ମହମ୍ମଦଖାଁଙ୍କୁ ସେ ୧୭୦୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ନାଏବ ସୁବାଦାର ନିଯୁକ୍ତ କଲେ । ସୁଜାଉଦ୍ଦିନ ୧୮ବର୍ଷ ଓଡ଼ିଶା ଶାସନ କରିଥିଲେ । ଶ୍ୱଶୁରଙ୍କ ପରି ସେ ମଧ୍ୟ ଜଣେ ସୁଶାସକ ଥିଲେ; ଏବଂ ଶତାଧିକ ବର୍ଷ ପରେ ଓଡ଼ିଶା କିଛିକାଳ ଶାନ୍ତିରେ ଶାସିତ ହେଲା ।

ସୁଜାଉଦ୍ଦିନ ଅଉ ଥରେ ଓଡ଼ିଶାରେ ବନ୍ଦୋବସ୍ତ କରି ନୂତନ ଜମାବନ୍ଦ କରିଥିଲେ । ମୁର୍ଶିଦକୁଲିଖାଁ ଶାସନ ଶୃଙ୍ଖଳା ନିମନ୍ତେ ଏହି ବନ୍ଦୋବସ୍ତ ପରେ ସମଗ୍ର ମେଦିନୀପୁରକୁ ବଙ୍ଗଦେଶ ମଧ୍ୟରେ ପୂରାଇଲେ । ଏହି ସମୟରୁ ମେଦିନୀପୁର ଓଡ଼ିଶାରୁ ଛିନ୍ନ ହୋଇ ଅଦ୍ୟାବଧି ବଙ୍ଗଦେଶ ମଧ୍ୟରେ ରହିଅଛି । ମେଦିନୀପୁରବାସୀ ଓଡ଼ିଆମାନେ ବଙ୍ଗ ପ୍ରଭାବରେ ପଡ଼ି କ୍ରମେ ନିଜର ଜାତୀୟତା ହରାଇ ବଙ୍ଗାଳୀ ହୋଇ-ଯାଉଛନ୍ତି । ସୁଜାଉଦ୍ଦିନଙ୍କ ଶାସନ ସଙ୍ଗେ ସଙ୍ଗେ ବଙ୍ଗୀୟ ପ୍ରଭାବ କ୍ରମେ ଓଡ଼ିଶାରେ ବଢ଼ିଲା । ଭୂପତି ରାୟ ଓ କିଶୋର ରାୟ ନାମକ ଦୁଇ ଜଣ ବଙ୍ଗବାସୀ ତାହାଙ୍କର ମନ୍ତ୍ରୀ ହୋଇ ଆସିଥିଲେ । ଓଡ଼ିଶା ଏବଂ ବଙ୍ଗ ରାଜଧାନୀ ମୁର୍ଶିଦାବାଦ ମଧ୍ୟରେ ଶାସନର ସୁପରିଚାଳନା ନିମନ୍ତେ ଦିନ ମଧ୍ୟରେ ଦୁଇଥର ଡାକ ଯିବା ଆସିବା କଲା । ସୁଜାଉଦ୍ଦିନ କଟକରେ କଦମ ରସୁଲ ମନ୍ଦିର ନିର୍ମାଣ କରାଇଥିଲେ । ହିନ୍ଦୁ ଓ ମୁସଲମାନ ଉଭୟେ ସେଠାରେ ଉପାସନା କରନ୍ତି । ଓଡ଼ିଶାରେ ଯେ 'ସତ୍ୟନାରାୟଣ' ପାଲା ଚଳୁଛି, ତାହା ମଧ୍ୟ ସେ ସମୟରେ ସୃଷ୍ଟି ହୋଇଥିଲା । ଏହିରୂପେ ନାନା ଭାବରେ ହିନ୍ଦୁମୁସଲମାନମାନଙ୍କ ମଧ୍ୟରେ ସମଭାବ ଜାଗ୍ରତ ହେଲା । କଦମରସୁଲ ମଧ୍ୟରେ ମୃତ୍ୟୁପରେ ସୁଜାଙ୍କର କବର ହୋଇଥିଲା ।

୧୭୨୪ ଖ୍ରୀଷ୍ଟାବ୍ଦରେ ମୁର୍ଶିଦକୁଲୀଖାଁଙ୍କର ମୃତ୍ୟୁ ହେବାରୁ ସୁଜାଉଦ୍ଦିନ ମହମ୍ମଦ ଓଡ଼ିଶା ସୈନ୍ୟବଳ ସାହାଯ୍ୟରେ ବଙ୍ଗ ସିଂହାସନ ଅଧିକାର କଲେ । ଓଡ଼ିଶାବାସୀ ସୁଶାସନ ଯୋଗେ ତାହାଙ୍କ ପ୍ରତି ଯେପରି ଅନୁରକ୍ତ ଥିଲେ, ସେ ମଧ୍ୟ ଓଡ଼ିଶାର ପାଇକ ସାମନ୍ତଙ୍କ ଉପରେ ସେହିପରି ବିଶ୍ୱାସ ରଖିଥିଲେ । ବଙ୍ଗ ଦେଶର ସୁବାଦାର ହେବାର ୪ ବର୍ଷପରେ ବିହାର ବିଜୟ ନିମନ୍ତେ ସେ ଓଡ଼ିଆ ସୈନ୍ୟଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରିଥିଲେ ।

ମହମ୍ମଦ ତକିଖାଁ—ସୁଜାଉଦ୍ଦିନ ବଙ୍ଗଦେଶର ନବାବ ହେବା ସଙ୍ଗେ ଅପଣାର ଜାରଜ ପୁତ୍ର ମହମ୍ମଦ ତକିଖାଁଙ୍କୁ ଓଡ଼ିଶାର ନାଏବ ନବାବ

ନିଯୁକ୍ତ କଲେ ( ୧୭୨୪ ) । ମେଦନୀପୁର ଓଡ଼ିଶାରୁ ବିଚ୍ଛିନ୍ନ ହେବାପରେ ସୁବର୍ଣ୍ଣରେଖା ନଦୀର ବାମପାର୍ଶ୍ୱରେ ପୂର୍ବ ଜଳେଶ୍ୱର ସରକାରର ଯେଉଁ ପ୍ରଗଣାମାନ ଓଡ଼ିଶା ମଧ୍ୟରେ ରହିଥିଲା, ତାହା ବର୍ତ୍ତମାନ ଓଡ଼ିଶାରୁ ନିଆଯାଇ ବଙ୍ଗଦେଶ ମଧ୍ୟରେ ପ୍ରବେଶଗଲା । ସୁତରାଂ ସୁବର୍ଣ୍ଣରେଖା ଓଡ଼ିଶା ଓ ବଙ୍ଗଦେଶର ସୀମା ରହିଲା । ଏଥି ପୂର୍ବରୁ ୧୬୮୮ ଖ୍ରୀଷ୍ଟାବ୍ଦରେ ଔରଙ୍ଗଜେବ ଗୋଲକୁଣ୍ଡା ଧ୍ୱଂସ କରି, ତାହା ମୋଗଲ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିବା ପରେ ଗଞ୍ଜାମର 'ଚିକାକୋଲ ଜିଲ୍ଲା' ମୋଗଲ ସାମ୍ରାଜ୍ୟ ମଧ୍ୟରେ ରହିଥିଲା । ମାତ୍ର ମୋଗଲ ରାଜଶକ୍ତି ହୀନବଳ ହେବା ସଙ୍ଗେ ହାଇଦରାବାଦର ସ୍ୱାଧୀନ ରାଜଶକ୍ତି ପ୍ରତିଷ୍ଠିତ ହେଲା ; ଏବଂ ହାଇଦରାବାଦର ନିଜାମଙ୍କ ହସ୍ତରେ ଚିକାକୋଲ ଜିଲ୍ଲା ରହିଥିଲା । କ୍ରମେ ନିଜାମଙ୍କ ପ୍ରଭାବ ବଢିବାରୁ ମହମ୍ମଦ ତକିଙ୍କ ଶାସନ କାଳରେ ଝିକାଲି ରଘୁନାଥପୁରଠାରୁ ଚିଲ୍କାହ୍ରଦ ପର୍ଯ୍ୟନ୍ତ ସମଗ୍ର ଗଞ୍ଜାମ ଜିଲ୍ଲା ଖୋର୍ଦ୍ଧା ରାଜାଙ୍କଠାରୁ ନିଜାମ ଅଧିକାର କରିନେଲେ । ସମଗ୍ର ଚିକାକୋଲ ଓ ଗଞ୍ଜାମ ମିଶି 'ଉତ୍ତର ସରକାର' ନାମରେ ପରିଚିତ ହେଲା । ସୁତରାଂ ଏହି ସମୟରୁ ସଙ୍କୁଚିତ ହୋଇ ଓଡ଼ିଶା ବର୍ତ୍ତମାନ ସୀମା ମଧ୍ୟରେ ଆବଦ୍ଧ ରହିଲା ।

ରାମଚନ୍ଦ୍ର ଦେବଙ୍କ ବିଦ୍ରୋହ—ମହମ୍ମଦ ତକି ବିଶେଷ ଅର୍ଥଲୋଭୀ, ଅତ୍ୟାଚାରୀ ଓ ପ୍ରଜାକଣ୍ଟକ ଶାସକ ଥିଲେ । ଜଗନ୍ନାଥଙ୍କର ବିପୁଳ ଅର୍ଥ ଥିବାର ଜାଣିପାରି ସେ ଜଗନ୍ନାଥଙ୍କ ଉପରେ ଅତ୍ୟାଚାର ଆରମ୍ଭ କଲେ । ଏହି ସମୟରେ ଦ୍ୱିତୀୟ ରାମଚନ୍ଦ୍ର ଦେବ ଖୋର୍ଦ୍ଧାର ରାଜା ଥିଲେ । ତାହାଙ୍କ ରାଜ୍ୟର ଦକ୍ଷିଣାଞ୍ଚଳ ନିଜାମ ଅଧିକାର କରିନେଲେ, ଅଥଚ ମହମ୍ମଦ ତକି ନିଜାମଙ୍କ ବିରୁଦ୍ଧରେ ତାହାଙ୍କୁ ଆଦୌ ସାହାଯ୍ୟ କଲେ ନାହିଁ । ମହମ୍ମଦଙ୍କ ଅର୍ଥ ଶୋଷଣରେ ପ୍ରଜାମାନେ ବିଶେଷ ପୀଡ଼ା ପାଉଥିଲେ । ଶେଷରେ ସେହି ଅର୍ଥଲୋଭରେ ତକି ଜଗନ୍ନାଥଙ୍କ ପବିତ୍ର ମନ୍ଦିର ଆକ୍ରମଣ କରି ସେବା ପୂଜା ଚଳାଇ ଦେଲେ ନାହିଁ । ଅଗତ୍ୟା ରାଜାଙ୍କ

ଅଦେଶରେ ପଣ୍ଡାମାନେ ଜଗନ୍ନାଥଦେବଙ୍କୁ ଚିଲ୍କା ପାର କରାଇ ହ୍ରଦ-ମଧ୍ୟରେ ଏକ ପର୍ବତ ଉପରେ ଲୁଚାଇ ରଖିଲେ । ମନ୍ଦିର ମଧ୍ୟରେ ଜଗନ୍ନାଥଙ୍କ ସେବାପୂଜା ବହୁକାଳ ବନ୍ଦ ରହିଲା ।

ଖୋରଧାର ରାଜା ଦ୍ୱିତୀୟ ରାମଚନ୍ଦ୍ର ଦେବ ଏହିସବୁ ଅତ୍ୟାଚାର ସହ୍ୟ କରି ନ ପାରି ବିଦ୍ରୋହୀ ହୋଇ ଉଠିଲେ । ତାଙ୍କର ସମସ୍ତ ପ୍ରଜା ଓ ସାମନ୍ତବର୍ଗ ଏ ବିଦ୍ରୋହରେ ଯୋଗଦେଲେ । ବହୁଦିନ ଧରି ଯୁଦ୍ଧ ନାନା-ସ୍ଥାନରେ ଚାଲିଲା । ଶେଷରେ ମୁସଲମାନ ସୈନ୍ୟମାନେ ରାମଚନ୍ଦ୍ରଙ୍କୁ ଧରି କାରାରୁଦ୍ଧ କଲେ । ଜଗନ୍ନାଥଙ୍କ ସେବା ପୂଜା ବନ୍ଦ, ଶେଷରେ ରାଜା ବି ବନ୍ଦୀ, ଏହା ଦେଖି ପ୍ରଜାମାନେ ରାଜସ୍ୱ ଦେବା ବନ୍ଦ କଲେ । ଖୋରଧା-ବାସିଙ୍କୁ ଦମନ କରିବା ନିମନ୍ତେ ତକି ଖୋରଧାକୁ ୨୨ ଥର ଯାଇ ଦୁର୍ଗ ଗଢି ପ୍ରତ୍ୟେକରେ ସୈନ୍ୟ ରଖାଇଲେ । ଭାଗ୍ୟକୁ ଅଳ୍ପକାଳ ମଧ୍ୟରେ ତକିଙ୍କର ମୃତ୍ୟୁ ହେଲା ( ୧୭୩୪ ) । ବଙ୍ଗ-ନବାବ ସୁଜାଉଦ୍ଦିନ ସଙ୍ଗେ ସଙ୍ଗେ ଆପଣାର ଜାମାତା ମୁର୍ଶିଦ କୁଲିଖାଁଙ୍କୁ ନାଏବ ନବାବ କରି ଓଡିଶା ପଠାଇଲେ । ବଙ୍ଗ-ନବାବ ସୁଜାଉଦ୍ଦିନ ଆପଣା ଶାସନରେ ଓଡ଼ିଶାବାସିଙ୍କର ଭକ୍ତି ଓ ବିଶ୍ୱାସ ଜନ୍ମାଇଥିଲେ, ଏବଂ ସେମାନଙ୍କ ସାହାଯ୍ୟରେ ବଙ୍ଗ-ସିଂହାସନ ଅଧିକାର ଏବଂ ପରେ ବିହାର ଜୟ କରିଥିଲେ । ତକିଙ୍କର ଅତ୍ୟାଚାର ତାହାଙ୍କର ଅସହ୍ୟ ହେବାର କଥା । ଜଗନ୍ନାଥଙ୍କ ସେବା ପୂଜା ବନ୍ଦ ଓ ରାମଚନ୍ଦ୍ରଙ୍କୁ କାରାରୁଦ୍ଧ କରିଥିବା ହେତୁ ପ୍ରଜାମାନେ ରାଜସ୍ୱ ବନ୍ଦ କରିଦେଇ ଥିବାରୁ ୯ ଲକ୍ଷଟଙ୍କା ରାଜସ୍ୱରେ କ୍ଷତି ହେଲା । ସୁଜାଉଦ୍ଦିନଙ୍କ ପରାମର୍ଶରେ ମୁର୍ଶିଦ୍ କୁଲି ନାଏବ ନବାବ ହେବା ସଙ୍ଗେ ସଙ୍ଗେ ଖୋରଧା-ବାସିଙ୍କୁ ଅସ୍ତ୍ର ଓ ସୈନ୍ୟବଳରେ ଦମନ ନ କରି ବା ଅନ୍ୟ କୌଣସି କଷ୍ଟ ଧିକା ସେମାନଙ୍କ ପ୍ରତି ନ ଦେଖାଇ, କେବଳ ରାମଚନ୍ଦ୍ର ଦେବଙ୍କୁ କାରାମୁକ୍ତ, ଏବଂ ଜଗନ୍ନାଥଙ୍କୁ ଆଣି ମନ୍ଦିରମଧ୍ୟରେ ବସାଇବାର ସୁବିଧା କରିଦେଲେ । ଏହିରୂପ ସୁନୀତି ପ୍ରୟୋଗରେ ଖୋରଧାରେ ଶାନ୍ତି ସ୍ଥାପିତ ହେଲା , ଏବଂ ଦେଶବାସୀ ସୁଜାଉଦ୍ଦିନଙ୍କ ପ୍ରତି ଅତିଶୟ ଅନୁରକ୍ତ ରହିଲେ ।

ବଶ୍ୱିତ ଅଛୁ ରାମଚନ୍ଦ୍ର ଦେବ ମୁର୍ଷିଦ୍ କୁଲିଙ୍କ ସାଧୁତାରେ ଆକୃଷ୍ଟ ହୋଇ ତାହାଙ୍କ କନ୍ୟାଙ୍କର ପାଣିଗ୍ରହଣ ଏବଂ ନିଜେ ମୁସଲମାନ ଧର୍ମ ଗ୍ରହଣ କରିଥିଲେ । ମୋହମ୍ମଦ ସାହ ନାମକ ଜଣେ ମୁସଲମାନଙ୍କୁ ସେ ଆପଣାର ସେନାପତି କରିଥିଲେ ।

ସୁଶାସନ—ମୁର୍ଷିଦ କୁଲି ସୁଶାସକ ଥିଲେ । ଅନ୍ତତଃ ଖୋରଧା ବିଦ୍ରୋହ ଶାନ୍ତ କରିବାରୁ ତାହାର ପରିଚୟ ମିଳୁଛି । ମିରହବିବ ଆଲିଖାଁ ମୁର୍ଷିଦକୁଲିଙ୍କର ସୁଦକ୍ଷ ଦେୱାନ ଥିଲେ । ମିରହବିବ ଦେଶରେ ରାଜସ୍ୱ ସଂକ୍ରାନ୍ତ କେତେକ ସଂସ୍କାର ଏବଂ ନୂତନ ବନ୍ଦୋବସ୍ତ କରିଥିଲେ । ମୁର୍ଷିଦ କୁଲିଙ୍କ ଶାସନରେ ବହୁ ଉଦାରତା ଥିଲା, ଏବଂ ଦେଶବାସୀ ବହୁ କାଳ ଶାନ୍ତି ଭୋଗିଥିଲେ । ବିରାଟ ମରୁଭୂମି ମଧ୍ୟରେ ଖଣ୍ଡିଏ ଖଣ୍ଡିଏ ସୁଶୀତଳ ଓ ସୁଶ୍ୟାମଳ ସ୍ଥଳ ପରି ଦୁଇଶତ ବର୍ଷ ବ୍ୟାପୀ ସମୁଦାୟ ମୁସଲମାନ ଶାସନର ନାନା ଅତ୍ୟାଚାର, ବ୍ୟଭିଚାର ମଧ୍ୟରେ ଜଣେ ଜଣେ ଏହିପରି ସୁଶାସକଙ୍କ ରାଜତ୍ୱ ଯେତେ ଅଳ୍ପକାଳ ସ୍ଥାୟୀ ହେଲେ ସୁଦ୍ଧା ପ୍ରଜାମାନଙ୍କୁ ବିଶେଷ ଆଶ୍ୱାସନା ଦେଉଥିଲା । ଏହାଙ୍କ ସମୟରେ ଖାଦ୍ୟସାମଗ୍ରୀ ବିଶେଷ ଶସ୍ତା ହୋଇଥିଲା । ଏବଂ ଗୋଟିଏ ଟଙ୍କାରେ ୫ମହଣ ମିଳୁଥିଲା ।

ଆଲିବର୍ଦ୍ଦିଖାଁ— ମାତ୍ର ସେହି ଶାନ୍ତି ଓ ସୁଶାସନ ଅଧିକ ଦିନ ସ୍ଥାୟୀ ହୋଇ ନ ଥିଲା । ୧୭୩୯ ଖ୍ରୀଷ୍ଟାବ୍ଦରେ ସୁଜାଉଦ୍ଦିନଙ୍କର ମୃତ୍ୟୁ ହେଲା ; ଏବଂ ସରଫରାଜଖାଁ ବଙ୍ଗ-ସିଂହାସନ ଆରୋହଣ କଲେ । ମାତ୍ର ସେ ଅଳ୍ପ ଦିନ ରାଜ୍ୟ ଭୋଗ ନ କରୁଣୁ ଆଲିବର୍ଦ୍ଦିଖାଁ ତାହାଙ୍କୁ ପରାସ୍ତ କରି ୧୭୪୦ ଖ୍ରୀଷ୍ଟାବ୍ଦରେ ବଙ୍ଗ ସିଂହାସନ ଅଧିକାର କଲେ । ବଙ୍ଗ ନବାବ ହେବା ମାତ୍ରେ ଆଲିବର୍ଦ୍ଦି ମୁର୍ଷିଦକୁଲିଙ୍କୁ ଓଡିଶା ଛାଡ଼ି ଯିବାକୁ ଆଦେଶ ଦେଲେ । ମାତ୍ର ମୁର୍ଷିଦକୁଲି ଅବାଧ ହେବାରୁ ଆଲିବର୍ଦ୍ଦି ୧୬ ହଜାର ସୈନ୍ୟ ଧରି ଓଡିଶା ଆକ୍ରମଣ କଲେ । ସୁବର୍ଣ୍ଣରେଖା ନଦୀ ପାରହେବା ବେଳେ ମୟୂରଭଞ୍ଜ ରାଜା ସସୈନ୍ୟରେ ତାହାଙ୍କର ଗତିରୋଧ କଲେ । ସୁଜାଉଦ୍ଦିନ

ଓ ମୁର୍ଷିଦକୁଲିଙ୍କ ଶାସନରେ ଓଡ଼ିଶାବାସୀ ବିଶେଷ ପ୍ରୀତ ଥିବାରୁ ସେମାନଙ୍କ ଶାସନ ରକ୍ଷା କରିବା ନିମନ୍ତେ ଓଡ଼ିଶାବାସୀ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଥିଲେ । ଅଲିବର୍ଦ୍ଦି ଜଣେ ସୁଦକ୍ଷ ଯୋଦ୍ଧା ଓ ସେନାପତି । ସେ ମୟୂରଭଞ୍ଜ ବାହିନୀଙ୍କୁ ପରାସ୍ତ କରି ନଦୀ ପାର ହୋଇ ବାଲେଶ୍ୱର ପର୍ଯ୍ୟନ୍ତ ଅଗ୍ରସର ହେଲେ । ମୁର୍ଷିଦକୁଲି ତାହାଙ୍କ ଗତିରୋଧ ନିମନ୍ତେ ସସୈନ୍ୟରେ ଉତ୍ତର ଅଞ୍ଚଳକୁ ଯାତ୍ରା କଲେ । ୧୭୪୧ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱର ଉତ୍ତରରେ ଲୁଅଣିଯୋଡ଼ୀ ଏବଂ ବୁଢାବଳଙ୍ଗ ମଧ୍ୟରେ ହାଜିପୁର ଗ୍ରାମ ନିକଟରେ ଉଭୟ ସୈନ୍ୟଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ମୁର୍ଷିଦକୁଲି ପୂର୍ବରୁ ଏହି ସ୍ଥାନରେ ଛାଉଣି କରିଥିଲେ । ସେ ସେହି ସ୍ଥାନରେ ଦୃଢ଼ ଭାବରେ କିଛିକାଳ ରହିଥିଲେ, ଅଲିବର୍ଦ୍ଦି ବାଧ୍ୟ ହୋଇ ଖାଦ୍ୟାଭାବରେ ଫେରି ଯାଇଥାନ୍ତେ । ମାତ୍ର ମୁର୍ଷିଦକୁଲିଙ୍କ ଜାମାତା ମିର୍ଜା ବାଖରଖାଁ ହଠାତ୍ ଅଲିବର୍ଦ୍ଦିଙ୍କୁ ଆକ୍ରମଣ କରିବାକୁ ଅଗ୍ରସର ହେଲେ; ମୁର୍ଷିଦଙ୍କ ସୈନ୍ୟମାନେ ଉପଯୁକ୍ତ ସ୍ଥାନ ଛାଡ଼ିଯାଇ ଯୁଦ୍ଧ କରିବାରୁ ଅଲିବର୍ଦ୍ଦି ସେମାନଙ୍କୁ ସମ୍ପୂର୍ଣ୍ଣ ରୂପେ ପରାସ୍ତ କରିବାକୁ ସମର୍ଥ ହେଲେ ।

ମୁର୍ଷିଦକୁଲି ଯୁଦ୍ଧରେ ସମ୍ପୂର୍ଣ୍ଣ ପରାସ୍ତ ହୋଇ ଅପଣାର ସକଳ ଧନ-ରତ୍ନ ଓ ସ୍ତ୍ରୀକୁଟୁମ୍ବ କଟକରେ ଅସହାୟ ଅବସ୍ଥାରେ ଛାଡ଼ି ଯୁଦ୍ଧଭୂମିରୁ ବାଲେଶ୍ୱର ବନ୍ଦର ବାଟେ ମସଲିପତ୍ତନକୁ ପଳାଇ ଗଲେ । ପରିବାର-ବର୍ଗଙ୍କର ସେହି ଅସହାୟ ଅବସ୍ଥାରେ ଖୋର୍ଦ୍ଧା ରାଜା ରାମଚନ୍ଦ୍ର ଦେବ ସେମାନଙ୍କର ପରମ ସହାୟ ହେଲେ । ସେ ଅପଣାର ସେନାପତି ମୋରାଦ ଯାନଙ୍କୁ ଅସହାୟ ପରିବାରଙ୍କ ସାହାଯ୍ୟ ନିମନ୍ତେ କଟକ ପଠାଇଲେ । ମୋରାଦ ସସୈନ୍ୟରେ କଟକ ଯାତ୍ରା କରି ମୁର୍ଷିଦକୁଲିଙ୍କ ପରିବାର ଓ ଧନ ସମ୍ପତ୍ତି ସବୁ ଧରି ଗଞ୍ଜାମ ଜିଲାର ଇଚ୍ଛାପୁରଠାରେ ନିରାପଦରେ ରଖାଇ ଦେଇ ଆସିଲେ ।

ମୁର୍ଷିଦକୁଲିଙ୍କ ପରାଜୟ ଓ ପଳାୟନ ପରେ ଅଲିବର୍ଦ୍ଦି କଟକ ଅଧିକାର କଲେ; ଏବଂ ଅପଣାର ପୁଲୁରା ସୟଦ ଅହମ୍ମଦଖାଁଙ୍କୁ ଓଡ଼ିଶାର ଶାସନକର୍ତ୍ତା

ନିଯୁକ୍ତ କରିଗଲେ । ଅହମଦ ବଡ଼ ପ୍ରଜାକଣ୍ଟକ ଥିଲେ ଏବଂ ନାନା ଅତ୍ୟାଚାରଦ୍ୱାରା ସେ ଏପରି ଅପ୍ରିୟ ହୋଇ ପଡ଼ିଲେ ଯେ ପ୍ରଜାବର୍ଗ ବିଦ୍ରୋହୀ ହୋଇ ତାହାଙ୍କୁ ବନ୍ଦୀ କଲେ । ଖୋର୍ଦ୍ଧା ରାଜା ଦ୍ୱିତୀୟ ରାମଚନ୍ଦ୍ର ଦେବ ଏହି ବିଦ୍ରୋହର ଅଧିନାୟକ ଥିଲେ । ତାହାଙ୍କ ସେନାପତି ମୋରାଦ ସାହ ଅହମଦଙ୍କୁ ବନ୍ଦୀକରି ମିର୍ଜା ବାଖରଖାଁ ନାମକ ମୁର୍ଶିଦ-କୁଲିଙ୍କର ଜାମାତାଙ୍କୁ ଓଡ଼ିଶା ସିଂହାସନରେ ବସାଇଲେ । ଅଲିବର୍ଦ୍ଦି ଏହି ସଂବାଦ ପାଇ ୧୭୪୧ ଖ୍ରୀଷ୍ଟାବ୍ଦରେ ପୁଣି ଥରେ ଓଡ଼ିଶା ଆକ୍ରମଣ କଲେ । ଯୋବରା ଘାଟରେ ସେ ମହାନଦୀ ପାର ହୋଇ ବାରବାଟୀ ଅବରୋଧ କଲେ । ବାଖରଖାଁ ଦୁର୍ଗମଧ୍ୟରୁ ବାହାରି ବାରବାଟୀ ପଡ଼ିଆରେ ଅଲିବର୍ଦ୍ଦିଙ୍କ ସଙ୍ଗେ ଯୁଦ୍ଧ କଲେ । ଅଲିବର୍ଦ୍ଦି ବାଖରଖାଁଙ୍କୁ ସଂପୂର୍ଣ୍ଣ ପରାସ୍ତ କରି ଆପଣାର ପୁତୁରାଙ୍କୁ କାରାମୁକ୍ତ କଲେ ଏବଂ ଅନ୍ୟ ଜଣେ ପୁତୁରାଙ୍କୁ ଓଡ଼ିଶା ଶାସନ-ଭାର ଦେଇଗଲେ ।

ମରହଟ୍ଟା ଆକ୍ରମଣ—ହତଭାଗା ଓଡ଼ିଶା ଏତେ କାଳ ଧରି ଆଫଗାନ ଓ ମୋଗଲ ବିଦ୍ରୋହୀ ଓ ଲୁଣ୍ଠନକାରୀଙ୍କର ଯେପରି ଆଶ୍ରୟସ୍ଥଳ ଥିଲା, ବର୍ତ୍ତମାନଠାରୁ ବହୁକାଳ ଧରି ସେହିପରି ମରହଟ୍ଟା ଆକ୍ରମଣ ଓ ଲୁଣ୍ଠନରେ ପ୍ରପୀଡ଼ିତ ହେଲା । ପୂର୍ବେ କୁହାଯାଇଛି, ମିରହବିବ ନାମରେ ମୁର୍ଶିଦ କୁଲିଙ୍କର ଜଣେ ବିଶ୍ୱସ୍ତ ଦେବାନ ଥିଲେ ଏବଂ ସୁଶାସନଦ୍ୱାରା ସେ ଓଡ଼ିଶାରେ ଲୋକପ୍ରିୟ ହୋଇଥିଲେ । ଅଲିବର୍ଦ୍ଦି ମୁର୍ଶିଦକୁଲିଙ୍କୁ ବିତାଡ଼ିତ କରି ଓଡ଼ିଶା ଅଧିକାର କରିବାରୁ ମିରହବିବ ପ୍ରତିଶୋଧ ବାଞ୍ଛା ଗୋପନରେ ରଖି ଅଲିବର୍ଦ୍ଦିଙ୍କ ଓଡ଼ିଶା ଶାସନରେ ଦେବାନୀ କାର୍ଯ୍ୟ କରୁଥିଲେ । ବର୍ତ୍ତମାନ ସୁବିଧା ପାଇଁ ମିରହବିବ ଓଡ଼ିଶା ଆକ୍ରମଣ କରିବା ନିମନ୍ତେ ମରହଟ୍ଟା ଦଳପତି ଭାସ୍କର ପଣ୍ଡିତଙ୍କୁ ନିମନ୍ତ୍ରଣ କରି ଆଣିଲେ । ଅଲିବର୍ଦ୍ଦି ଓଡ଼ିଶାରୁ ଫେରି ଯିବା ସଙ୍ଗେ ସଙ୍ଗେ ମରହଟ୍ଟାମାନେ ଓଡ଼ିଶା ଆକ୍ରମଣ କରି ଅଧିକାର କଲେ ଏବଂ ବଙ୍ଗଦେଶ ଆକ୍ରମଣ କରିବା ନିମନ୍ତେ ଅଗ୍ରସର ହେଲେ । ଭାସ୍କର

ପଣ୍ଡିତଙ୍କ ଅଧୀନରେ ୪୦ ହଜାର ମରହଟ୍ଟା ଅଶ୍ୱାରୋହୀ ମେଦନୀପୁର ଲୁଣ୍ଠନ କରି ବର୍ଦ୍ଧମାନ ଆକ୍ରମଣ କଲେ । ଅଲିବର୍ଦ୍ଦି ଏ ସମ୍ବାଦ ପାଇ ବର୍ଦ୍ଧମାନ ଉଦ୍ଧାର ଉଦ୍ଦେଶ୍ୟରେ ମରହଟ୍ଟାମାନଙ୍କୁ ଆକ୍ରମଣ କଲେ । ଅଲିବର୍ଦ୍ଦି ଯୁଦ୍ଧ କରୁଥିବା ବେଳେ ଏକଦଳ ମରହଟ୍ଟା ଅଶ୍ୱାରୋହୀ ଅଲିବର୍ଦ୍ଦିଙ୍କ ରାଜଧାନୀ ମୁର୍ଶିଦାବାଦ ଆକ୍ରମଣ ଓ ଲୁଣ୍ଠନ କଲେ । ଅଲିବର୍ଦ୍ଦି ରାଜଧାନୀ ରକ୍ଷା କରିବା ନିମନ୍ତେ ଯାତ୍ରା କରନ୍ତେ, ମରହଟ୍ଟାମାନେ ହୁଗ୍‌ଲୀ ଲୁଣ୍ଠନ କଲେ । ଶେଷରେ ଭାସ୍କର ପଣ୍ଡିତ ବଙ୍ଗ ଓ ଓଡ଼ିଶାର ଚଉଥ ବା ଦେଶର ଚତୁର୍ଥାଂଶ ସ୍ୱରୂପ ଦେଢ଼କୋଟି ଟଙ୍କା ଏବଂ ନବାବଙ୍କ ସମସ୍ତ ହାତୀ ପାଇଲେ ଦେଶ ଛାଡ଼ିଯିବେ ବୋଲି ଅଲିବର୍ଦ୍ଦିଙ୍କୁ କହି ପଠାଇଲେ । ଅଲିବର୍ଦ୍ଦି ତାହା ସ୍ୱୀକାର କଲେନାହିଁ । ମରହଟ୍ଟାମାନେ ତହୁଁ ଯଥେଚ୍ଛାକ୍ରମରେ ବଙ୍ଗଦେଶ ଲୁଣ୍ଠନ କଲେ ଏବଂ ଅଲିବର୍ଦ୍ଦିଙ୍କ ନାଏବ ନବାବଙ୍କୁ ବଧ କରି ଓଡ଼ିଶା ଅଧିକାର ଓ ଲୁଣ୍ଠନ କଲେ । ଗଙ୍ଗାକୂଳଠାରୁ ବଙ୍ଗ ଦେଶର ସମସ୍ତ ପଶ୍ଚିମାଂଶ ମରହଟ୍ଟା ଅଧିକାରରେ ରହିଲା । ୧୭୪୨ ଖ୍ରୀଷ୍ଟାବ୍ଦରେ ଅଲିବର୍ଦ୍ଦି ବିପୁଳବାହିନୀ ସଂଗ୍ରହ କରି ମେଦନୀପୁର ଆସି ମରହଟ୍ଟାମାନଙ୍କୁ ଆକ୍ରମଣ କଲେ । ମରହଟ୍ଟାମାନେ ପରାସ୍ତ ହୋଇ ଓଡ଼ିଶାକୁ ପଳାଇ ଆସିଲେ । ଅଲିବର୍ଦ୍ଦି ସେମାନଙ୍କ ପଛେ ପଛେ ଆସି ବାଲେଶ୍ୱରଠାରେ ମରହଟ୍ଟାମାନଙ୍କୁ ପୁଣି ଆକ୍ରମଣ କଲେ । ବର୍ତ୍ତମାନ ବାଲେଶ୍ୱରର ଯେଉଁଠାରେ ସରକାରୀ କଚେରି ଅଛି ସେହିଠାରେ ଘୋର ଯୁଦ୍ଧ ହେଲା । ମରହଟ୍ଟାମାନେ ପରାଜିତ ହୋଇ କଟକ ପଳାଇ ଆସିଲେ । ସେଠାରେ ମଧ୍ୟ ଅଲିବର୍ଦ୍ଦିଙ୍କ ଦ୍ୱାରା ପରାସ୍ତ ହୋଇ ମିରହବିବଙ୍କ ଉପରେ ଓଡ଼ିଶାର ଶାସନଭାର ଦେଇ ମହାନଦୀ କୂଳେ କୂଳେ ନିଜ ରାଜଧାନୀ ନାଗପୁରକୁ ଫେରିଗଲେ । ମିରହବିବ ଅଲିବର୍ଦ୍ଦିଙ୍କ ଭୟରେ ପଳାଇଯାଇ ବାଙ୍କୁଡ଼ା ବିଷ୍ଣୁପୁର ଚନ୍ଦ୍ରକୋଣା ପ୍ରଭୃତି ବୁଲି ବୁଲି ଶେଷରେ ଅଲିବର୍ଦ୍ଦି ଓଡ଼ିଶାରୁ ଫେରି ଯିବାପରେ ପୁଣି ଓଡ଼ିଶାକୁ ପଳାଇ ଆସିଲେ ।

ଏତିକିରେ ମରହଟ୍ଟାମାନେ ଆକ୍ରମଣ ଓ ଲୁଣ୍ଠନରୁ କ୍ଷାନ୍ତ ରହିଲେ ନାହିଁ । ୧୭୪୪ ଖ୍ରୀଷ୍ଟାବ୍ଦରେ ଭାସ୍କର ପଣ୍ଡିତଙ୍କ ଅଧୀନରେ ପୁଣି ଚୋଡ ଏ ହଜାର ଅଶ୍ୱାରୋହୀ ଓଡ଼ିଶାକୁ ଆସିଲେ । ଅଲ୍ଲିବର୍ଦ୍ଦି ମେଦିନୀପୁରରେ ସେମାନଙ୍କ ସଙ୍ଗେ ଯୁଦ୍ଧ କଲେ । ଶେଷରେ ଅଲ୍ଲିବର୍ଦ୍ଦି ଭାସ୍କର ପଣ୍ଡିତ ଓ ଅନ୍ୟାନ୍ୟ ମରହଟ୍ଟା ସେନାପତିମାନଙ୍କୁ ସନ୍ଧି କରିବା ନିମନ୍ତେ ନିମନ୍ତ୍ରଣ କରି ସେମାନଙ୍କୁ ଗୋପନରେ ହତ୍ୟାକଲେ । ନାୟକ ବିହୀନ ହେବାରୁ ମରହଟ୍ଟା ସୈନ୍ୟମାନେ ବାଲେଶ୍ୱର ଓ କଟକ ବାଟେ ନିଜ ଦେଶକୁ ପଳାଇଲେ । ଓଡ଼ିଶାମଧ୍ୟରେ ଯିବାବେଳେ ଓଡ଼ିଶାବାସୀ ମରହଟ୍ଟା-ସୈନ୍ୟଙ୍କ ଉପରେ ଯଥେଷ୍ଟ ପ୍ରତିଶୋଧ ନେଇଥିଲେ ।

ନାଗପୁରର ଭୌଁସଲା ରଘୁଜୀ ପ୍ରତିଶୋଧ ନେବା ନିମନ୍ତେ ନିଜେ ବହୁ ସୈନ୍ୟ ଧରି ୧୭୪୫ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଓ ବଙ୍ଗ ଦେଶ ଆକ୍ରମଣ କରି ଯଥେଚ୍ଛା ଲୁଣ୍ଠନ କଲେ ଏବଂ ତିନିକୋଟି ଟଙ୍କା ନ ପାଇଲେ ରାଜ୍ୟ ଛାଡ଼ି ଯିବେ ନାହିଁ ବୋଲି ଅଲ୍ଲିବର୍ଦ୍ଦିଙ୍କୁ ଜଣାଇଲେ । ମାତ୍ର ଅଲ୍ଲିବର୍ଦ୍ଦି ରଘୁଜୀଙ୍କୁ ମଧ୍ୟ ମେଦିନୀପୁରରେ ପରାସ୍ତ କଲେ । ରଘୁଜୀ ବାଟରେ ଯଥେଚ୍ଛା ଲୁଣ୍ଠନ କରି ଏବଂ ମିର ହବିବଙ୍କ ଉପରେ ଅଧିକ ଲୁଣ୍ଠନର ଭାର ଦେଇ ନାଗପୁର ଫେରିଗଲେ । ମରହଟ୍ଟାମାନେ ଦୁଇବର୍ଷ ପର୍ଯ୍ୟନ୍ତ ଓଡ଼ିଶା, ମେଦିନୀପୁର ଓ ବାଙ୍କୁଡ଼ା ଅଧିକାର କରି ଭୋଗ କଲେ । ସେମାନଙ୍କୁ ସଂପୂର୍ଣ୍ଣ ତଡ଼ିବା ନିମନ୍ତେ ଅଲ୍ଲିବର୍ଦ୍ଦି ମେଦିନୀପୁରର ଫୌଜଦାର ମିରଜାଫରଙ୍କୁ ୬ ହଜାର ଅଶ୍ୱାରୋହୀ ଏବଂ ୧୨ ହଜାର ପଦାତିକ ସୈନ୍ୟ ଦେଇ ପଠାଇଲେ । ରଘୁଜୀଙ୍କ ପୁତ୍ର ଜାନୋଜୀ ମିରଜାଫରଙ୍କୁ ପରାସ୍ତ କଲେ । ପରେ ମରହଟ୍ଟାମାନେ ଅଲ୍ଲିବର୍ଦ୍ଦିଙ୍କ ସୈନ୍ୟଦ୍ୱାରା ବର୍ଦ୍ଧମାନ ନିକଟରେ ପରାସ୍ତ ହେଲେ । ମାତ୍ର ପରାସ୍ତ ହୋଇ ସୁଦ୍ଧା ମରହଟ୍ଟାମାନେ ଦେଶଲୁଣ୍ଠନରୁ କ୍ଷାନ୍ତ ନ ହେବାରୁ ଅଲ୍ଲିବର୍ଦ୍ଦି ନିଜେ ବିପୁଳ ବାହିନୀ ଧରି ମରହଟ୍ଟା ଦମନରେ ବାହାରିଲେ । ସମ୍ମୁଖ ଯୁଦ୍ଧ ସାହସ ନ କରି ମରହଟ୍ଟାମାନେ କଟକ ଛାଡ଼ି ଆସିଲେ ।

ଏଥିମଧ୍ୟରେ ବିହାରର ଅଫଗାନମାନେ ଅଲିବର୍ଦ୍ଦିଙ୍କ ବିରୁଦ୍ଧରେ ବିଦ୍ରୋହୀ ହୋଇ ଉଠିଲେ । ଭାନୋଜୀ ସେମାନଙ୍କ ସଙ୍ଗେ ଯୋଗ ଦେଇ ବଙ୍ଗ ଆକ୍ରମଣ କରି ମୁର୍ଶିଦାବାଦ ଅଧିକାର କଲେ । ଅଲିବର୍ଦ୍ଦି ପୁଣି ଥରେ ମରହଟ୍ଟାମାନଙ୍କୁ ପରାସ୍ତ କରି ରାଜଧାନୀ ଉଦ୍ଧାର କଲେ । ମରହଟ୍ଟାମାନେ ପୁଣି ଓଡ଼ିଶା ମଧ୍ୟରେ ଆଶ୍ରୟ ନେଲେ । ୧୭୫୦ ଖ୍ରୀଷ୍ଟାବ୍ଦରେ ଭାନୋଜୀ ମିରହବିବଙ୍କ ଉପରେ ସମସ୍ତ ଯୁଦ୍ଧ ଏବଂ ଅଧିକୃତ ରାଜ୍ୟର ଭାର ଦେଇ ନାଗପୁରକୁ ଫେରିଗଲେ ।

ବିହାର ଅଫଗାନମାନଙ୍କୁ ଦମନ କରିବା ନିମନ୍ତେ ଆଲିବର୍ଦ୍ଦି ନିଜ ନାତି ସିରାଜଉଦ୍ଦୌଲା ( ବଙ୍ଗର ଭାବୀ ନବାବ ) ଙ୍କୁ ପାଟଣା ପଠାଇଥିଲେ ସିରାଜ ବିଦ୍ରୋହ ଦମନ କରି ଶେଷରେ ଅଲିବର୍ଦ୍ଦିଙ୍କ ବିରୁଦ୍ଧରେ ନିଜକୁ ସେଠାରେ ସ୍ୱାଧୀନ ନବାବ ବୋଲି ଘୋଷଣା କଲେ । ଏଣେ ମରହଟ୍ଟାମାନେ ଅଧିକ ବଳ ସଂଗ୍ରହ କରି ଓଡ଼ିଶାରେ ସ୍ୱାଧୀନ ରାଜତ୍ୱ ଆରମ୍ଭ କଲେ ଅଲିବର୍ଦ୍ଦି ମରହଟ୍ଟାମାନଙ୍କୁ ସଂପୂର୍ଣ୍ଣ ବିତାଡ଼ିତ କରିବା ନିମନ୍ତେ ପୁଣି ଥରେ କଟକ ଆସିଲେ । ମରହଟ୍ଟାମାନେ ଯୁଦ୍ଧରେ ସମ୍ମୁଖୀନ ନ ହୋଇ ଏବେ ତେଣେ କେବଳ ଦେଶ ଲୁଣ୍ଠନରେ ମାତିଲେ । ଏକେ ବୟସରେ ବୃଦ୍ଧା, ଧାରା ଜୀବନ ଯୁଦ୍ଧ ଅଭିଯାନରେ କ୍ଲାନ୍ତ, ତହିଁରେ ପୁଣି ନିଜର ନାତି ବିଦ୍ରୋହ ହୋଇ ବିହାରରେ ସ୍ୱାଧୀନତା ପ୍ରୟାସୀ, ଏହି ସମସ୍ତ ବିପତ୍ତି ମଧ୍ୟରେ ମରହଟ୍ଟାମାନଙ୍କୁ ଯୁଦ୍ଧରେ ଯେତେ ପରାସ୍ତ କଲେ ସୁଦ୍ଧା, ସେମାନଙ୍କୁ ଏକାବେଳକେ ଦୂର କରିଦେବା ଅସମ୍ଭବ ଦେଖି ବୃଦ୍ଧ ନବାବ୍ଙ୍କ୍ଷ୍ଟ ଆଲିବର୍ଦ୍ଦି ୧୭୫୧ ଖ୍ରୀଷ୍ଟାବ୍ଦରେ ମରହଟ୍ଟାମାନଙ୍କ ସଙ୍ଗେ ସନ୍ଧି କରିବାକୁ ବାଧ ହେଲେ । ସନ୍ଧିରେ ସ୍ଥିର ହେଲା ମରହଟ୍ଟାମାନେ ଓଡ଼ିଶାର ଅଧିକାରୀ ହେବେ । ମିରହବିବ ଓଡ଼ିଶାର ନାଏବ ନବାବ ନିଯୁକ୍ତ ହେବେ । ଓଡ଼ିଶାର ସମସ୍ତ ରାଜସ୍ୱ ରାଜା ରଘୁଜୀ ଭୋସଲଙ୍କ ସୈନ୍ୟମାନଙ୍କ ବ୍ୟୟରେ ଲାଗିବ । ଓଡ଼ିଶା ରାଜସ୍ୱ ବ୍ୟତୀତ ଅଲିବର୍ଦ୍ଦି ବଙ୍ଗ ଦେଶ ରାଜସ୍ୱର 'ଚଉଥ' ବା ଚତୁର୍ଥାଂଶ ସ୍ୱରୂପ ୧୨ ଲକ୍ଷ

ଟଙ୍କା ମରହଟ୍ଟାମାନଙ୍କୁ ଦେବେ । ସୁବର୍ଣ୍ଣରେଖାନଦୀ ଓଡ଼ିଶା ଓ ବଙ୍ଗଦେଶର ସୀମା ସ୍ଥିର କରାଗଲା । ମରହଟ୍ଟାମାନେ ସୁବର୍ଣ୍ଣରେଖା ପାରହୋଇ ବଙ୍ଗଦେଶ ମଧ୍ୟରେ ପଶିବେ ନାହିଁ । ବଙ୍ଗଦେଶର ଚଉଥ ନିଯୁମିତ ପାଇବାର ଜାମିନ ସ୍ୱରୂପ ସୁବର୍ଣ୍ଣ ରେଖା ଉତ୍ତର ପାର୍ଶ୍ଵବର୍ତ୍ତୀ ପଟ୍ଟାସପୁର ପ୍ରଗଣା ମରହଟ୍ଟାମାନଙ୍କ ହସ୍ତରେ ରହିଲା ।



# ଦ୍ୱିତୀୟ ଅଧ୍ୟାୟ

## ଭୋଇବଂଶ

### ଖ୍ରୀଷ୍ଟ ୧୫୬୮—୧୬୫୧ ଅବ୍ଦ

ରାମଚନ୍ଦ୍ରଦେବ—ପୂର୍ବରୁ କୁହାଯାଇଛି, ଉତ୍କଳର ଶେଷ ସ୍ୱାଧୀନ ଗଜପତି ରାଜା ମୁକୁନ୍ଦ ଦେବଙ୍କ ମୃତ୍ୟୁପରେ ଦେଶରେ ଅରାଜକତା ଉପସ୍ଥିତ ହେଲା । ସେଥିମଧ୍ୟରେ ଭୋଇ ଜନାର୍ଦ୍ଦନ ବିଦ୍ୟାଧରଙ୍କ ପୁତ୍ର 'ରମାଇ ରାଉତରା' ଦକ୍ଷିଣରୁ ଆସି ଖୋରଧା ଅଧିକାର କଲେ । ଖୋରଧାରେ ସେ ରାଜଧାନୀ ସ୍ଥାପନ କରି ଆପଣାକୁ ଉତ୍କଳର ସ୍ୱାଧୀନ ଗଜପତି ବୋଲି ଘୋଷଣା କଲେ । ଜନାର୍ଦ୍ଦନ ଭୋଇ ବା ଉକ୍ତ ଗଜପତିଙ୍କର ମନ୍ତ୍ରୀ ଥିବାରୁ, ରାମଚନ୍ଦ୍ର ଦେବ ଆପଣାକୁ ଭୋଇ ବୋଲି ପରିଚୟ ଦେଲେ; ଏବଂ ତାହାଙ୍କ ପ୍ରତିଷ୍ଠିତ ରାଜବଂଶ ଭୋଇବଂଶ ନାମରେ ପରିଚିତ ହେଲା । ଏହାର ନାମ ମଧ୍ୟ ଯଦୁବଂଶ ।

ରାଜା ତୋଡ଼ରମଲ୍ଲ ଓଡ଼ିଶା ଅଧିକାର କରିବା ପରେ ରାଜା ରାମଚନ୍ଦ୍ର ଦେବଙ୍କୁ ରାଜ୍ୟଚ୍ୟୁତ ନ କରି ବରଂ ତାହାଙ୍କୁ ସ୍ୱାଧୀନ ରାଜା ଏବଂ ଉତ୍କଳ ଗଜପତିଙ୍କର ଯଥାର୍ଥ ଉତ୍ତରାଧିକାରୀ ବୋଲି ସ୍ୱୀକାର କଲେ । ରାମଚନ୍ଦ୍ରଙ୍କ ଅଧୀନରେ ୭୧ କିଲ୍ଲା ବା ଦୁର୍ଗ ରହିଲା । ଏହାର କ୍ଷେତ୍ରଫଳ ପ୍ରାୟ ହେତ-ହଜାର ବର୍ଗମାଇଲ ଥିଲା । ରାମଚନ୍ଦ୍ର ରାଜ୍ୟ ନିଷ୍କର ଓ ସ୍ୱାଧୀନ ଭାବରେ ଭୋଗ କଲେ । ତତ୍ପରେ ରାଜା ମାନସିଂହ ଓଡ଼ିଶା ବିଜୟ ନିମନ୍ତେ ଆସିଲେ । ସେ ରାମଚନ୍ଦ୍ର ଦେବଙ୍କ ସମ୍ମାନ ଅଧିକ ବଢ଼ାଇ ଦେଲେ, ଏବଂ ଖୋରଧାର ୭୧ କିଲ୍ଲା ବାଦ ଅଧିକ ୧୨୯ କିଲ୍ଲା ରାମଚନ୍ଦ୍ରଙ୍କୁ ଦାନ କଲେ ।

ଖୋରଧା ବାଦ ୩୦ ଗଡଜାତ ଏବଂ ପୁରୀର ରାଜାଙ୍କ, ଶିରାଇ, କେମ୍ବାର, ଚନ୍ଦ୍ରକୁଦ ପ୍ରଗଣାମାନ ରାମଚନ୍ଦ୍ରଙ୍କ ଅଧୀନରେ ରହିଲା । ମୋଟ କ୍ଷେତ୍ରଫଳ ପ୍ରାୟ ୧୪୦୦୦ ବର୍ଗମାଇଲ ଏବଂ ରାଜସ୍ୱ ୭ ଲକ୍ଷ ଟଙ୍କା ଥିଲା । ମୋଗଲ ଦରବାରରେ ରାମଚନ୍ଦ୍ର ବହୁ ସମ୍ମାନ ପାଇଥିଲେ । ମାତ୍ର ରାଜା ତୋଡରମଲ୍ଲ ରାମଚନ୍ଦ୍ରଙ୍କୁ ସ୍ୱାଧୀନ ରାଜା ସ୍ୱୀକାର କରି ରାଜ୍ୟ ନିଷ୍ଟର ଭାବରେ ଯାହା ଛାଡି ଦେଇଥିଲେ, ମାନସିଂହ ରାମଚନ୍ଦ୍ରଙ୍କ ରାଜ୍ୟ ବହୁ ଗୁଣରେ ବଢାଇ ଦେଇ ଏବଂ ମୋଗଲ ଦରବାରରେ ତାହାଙ୍କୁ ମାନସୂବାଦାରୀ ପଦ ଦେଇ କରଦ ରାଜାରୂପେ ରଖିଲେ । ପୁଣି ରାଜା ମୁକୁନ୍ଦଦେବଙ୍କର ଦୁଇପୁତ୍ର ରାମଚନ୍ଦ୍ରଙ୍କ ବିରୁଦ୍ଧରେ ଖୋରଧା ସିଂହାସନ ଦାବୀ କରିବାରୁ ମାନସିଂହ ଉଭୟଙ୍କୁ ମାନସୁବାଦାରୀ ପଦ ଦେଇ ଆଳି ଓ ପଟିଆ କିଲ୍ଲାର ରାଜା କରିଦେଲେ ।

ରାମଚନ୍ଦ୍ର ଖୋରଧା ସିଂହାସନରେ ସ୍ଥାୟୀ ହେବାରୁ କୁଜଙ୍ଗ ରାଜାଙ୍କଠାରୁ ଜଗନ୍ନାଥଙ୍କ ନାଭିସ୍ଥଳ-ବ୍ରହ୍ମ ଅଣାଇ ଜଗନ୍ନାଥଙ୍କର ନବକଳେବର କରାଇଲେ । ଜଗନ୍ନାଥ ପୁଣି ମନ୍ଦିର ମଧ୍ୟରେ ସ୍ଥାପିତ ହେଲେ ( ୧୫୭୫ )। କଳାପାହାଡ ଆକ୍ରମଣଠାରୁ ମନ୍ଦିରରେ ସେବା ପୂଜା ସବୁ ବନ୍ଦ ହୋଇଥିଲା । ବର୍ତ୍ତମାନ ଜଗନ୍ନାଥଙ୍କର ନୂତନ ପ୍ରତିଷ୍ଠା ସଙ୍ଗେ ସେବା ପୂଜାର ସକଳ ବିଧିବିଧାନ ପୁଣି ଆରମ୍ଭ କରାଗଲା । ମନ୍ଦିରର ଭାର ପ୍ରଥମେ ମାନସିଂହ ନିଜ ହାତରେ ରଖିଥିଲେ । ଅଫଗାନମାନେ ଧନ ଲୋଭରେ ମନ୍ଦିର ବାରମ୍ବାର ଆକ୍ରମଣ କରୁଥିଲେ; ଏବଂ କଳାପାହାଡର ଲୁଣ୍ଠନ ପରେ ଅଫଗାନମାନେ କେତେକାଳ ମନ୍ଦିର ନିଜ ଅଧିକାରରେ ରଖିଥିଲେ । ରାଜା ତୋଡ଼ରମଲ୍ଲ ତାହା ଉଦ୍ଧାର କଲେ ସୁଦ୍ଧା କୁତ୍‌ଲୁଖାଁଙ୍କ ଅଧୀନରେ ପଠାଣମାନେ ବିଦ୍ରୋହୀ ହୋଇ ମନ୍ଦିର ଆକ୍ରମଣ ଓ ଲୁଣ୍ଠନ କଲେ । ଶେଷରେ ୧୫୯୦ ଖ୍ରୀଷ୍ଟାବ୍ଦରେ ମାନସିଂହ କୁତ୍‌ଲୁଙ୍କ ମନ୍ତ୍ରୀ ଖ୍ୱାଜା ଇଶାଙ୍କ ସଙ୍ଗେ ସନ୍ଧି କରି ସ୍ଥିର କଲେ ଯେ ଜଗନ୍ନାଥଙ୍କ ପବିତ୍ରଭୂମି ପୁରୀ

ଏବଂ ଖୋରଧା ରାଜାଙ୍କ ଉପରେ ପଠାଣମାନେ ହସ୍ତକ୍ଷେପ କରିବେ ନାହିଁ। ମାତ୍ର ଦୁଇବର୍ଷ ପରେ ୧୫୯୨ ଖ୍ରୀଷ୍ଟାବ୍ଦରେ କୁତ୍ଲୁଖାଁଙ୍କ ପୁତ୍ରମାନେ ଖୋରଧା ଆକ୍ରମଣ କରି ପୁରୀ ଲୁଣ୍ଠନ କଲେ । ମାନସିଂହ ବିଦ୍ରୋହିମାନଙ୍କୁ ସଂପୂର୍ଣ୍ଣ ପରାଜୟ କରି ଓଡ଼ିଶା, ଓ ଜଗନ୍ନାଥଙ୍କୁ କେତେକକାଳ ନିମନ୍ତେ ଶାନ୍ତିରେ ରଖିଲେ । ରାମଚନ୍ଦ୍ରଙ୍କ ରାଜତ୍ୱର ୧୪ ଅଙ୍କରେ ବା ୧୫୮୦ ଖ୍ରୀଷ୍ଟାବ୍ଦରେ ମାନସିଂହଙ୍କ ସ୍ତ୍ରୀ ଗୌରୀରାଣୀ ମନ୍ଦିର ମଧ୍ୟରେ ମୁକ୍ତିମଣ୍ଡପ ନିର୍ମାଣ କରାଇଲେ । ଜଗନ୍ନାଥଙ୍କ ମନ୍ଦିର ନିରାପଦ ମନେ କରି ମାନସିଂହ ମନ୍ଦିରର ସମ୍ପୂର୍ଣ୍ଣ ଅଧିକାର ଓ ପରିଚାଳନା ଭାର ରାମଚନ୍ଦ୍ରଙ୍କ ହସ୍ତରେ ଦେଲେ । ସେହି ଦିନଠାରୁ ଖୋରଧା ରାଜବଂଶ ଅଦ୍ୟାବଧି ଜଗନ୍ନାଥଙ୍କ ମନ୍ଦିରର ସଂପୂର୍ଣ୍ଣ ଅଧିକାରୀ ହୋଇଛନ୍ତି; ଏବଂ ରାଜା ନିଜେ 'ଚଳନ୍ତି ବିଷ୍ଣୁ' ବା ଜଗନ୍ନାଥଙ୍କର ପ୍ରତିନିଧି ବୋଲି ହିନ୍ଦୁ ରାଜ୍ୟରେ ସେବା ଓ ଭକ୍ତି ପାନ୍ତି । ଯେଉଁ କିଲ୍ଲାଦାର ଓ ସାମନ୍ତରାଜାମାନେ ରାମଚନ୍ଦ୍ରଙ୍କ ଅଧୀନରେ ରହିଲେ, ସେମାନେ ଖୋରଧା-ରାଜାଙ୍କୁ ଆପଣାର ପ୍ରଭୁ ଜ୍ଞାନ କଲେ, ଏବଂ ତାହାଙ୍କର ଆଦେଶ ଅବଜ୍ଞା କରିବା ରାଜାମାନଙ୍କ ମଧ୍ୟରେ ଅବାଧିତ ସଙ୍ଗେ ଅଧର୍ମ ବା ପାପ ବୋଲି ବିବେଚିତ ହୋଉଥିଲା ।

ରାମଚନ୍ଦ୍ର ପୁରୀ ନିକଟରେ ନିଜ ନାମରେ ଶାସନମାନ ବସାଇ ତହିଁରେ ବ୍ରାହ୍ମଣମାନଙ୍କୁ ବିସ୍ତର ଭୂମି ଓ ଘରବାଡ଼ୀ ଦାନଦେଇ ରଖାଇଲେ। ସେହି ଶାସନମାନ ଅଦ୍ୟାପି ପ୍ରଧାନଶାସନବା 'ଷୋହଳଶାସନ' ମଧ୍ୟରେଗଣ୍ୟହୁଏ । ରାମଚନ୍ଦ୍ରଙ୍କ ଶାସନ ସୃଷ୍ଟିରେ ବିଶେଷତ୍ୱ ଏହି ଯେ ପରବର୍ତ୍ତୀ ରାଜାମାନଙ୍କ ପରି ସେ ସାମନ୍ତ' ଭଟ୍ଟମିଶ୍ର ପ୍ରଭୃତି କିଛି ସୃଷ୍ଟି କରି ନ ଥିଲେ । ତାହାଙ୍କ ରାଜତ୍ୱର ଶେଷ କାଳକୁ ୧୫୯୬ ଖ୍ରୀଷ୍ଟାବ୍ଦରେ ମନ୍ଦିର ପରିଛା ବଜ୍ରସେନା ମହାପାତ୍ରଙ୍କ ପୁତ୍ର ଦାମୋଦର ଚମ୍ପତିରାୟ ବଡ଼ ଦେଉଳ ଉପରେ ନୀଳଚକ୍ର ବସାଇଲେ ।

ଅକବରଙ୍କ ଶାସନରେ ରାମଚନ୍ଦ୍ର ଦେବ ଓ ଜଗନ୍ନାଥଙ୍କ ପ୍ରତି ଯେଉଁ ଉଦାରତା ଦେଖାହେଲା, ଉତ୍କଳବାସୀ ତହିଁରେ ପରମ ପ୍ରୀତ ହୋଇଥିଲେ,

ଏବଂ ଅକବରଙ୍କୁ 'ଦିଲ୍ଲୀଶ୍ୱରୋବା ଜଗଦୀଶ୍ୱରୋବା' ବୋଲି ପ୍ରେମ ଓ ଭକ୍ତି କରୁଥିଲେ ।

ରାମଚନ୍ଦ୍ର ଶାନ୍ତିରେ କେତେବେଳ ରାଜତ୍ୱ କଲା ପରେ ୧୫୯୯ ଖ୍ରୀଷ୍ଟାବ୍ଦରେ ଗୋଲକୁଣ୍ଡା କୁତବସାହୀ ସୁଲତାନ ମହମ୍ମଦକୁଲୀଙ୍କ ସେନାପତି ବଶାଖାତଖାନ କଲାର କାସିମ୍‌କୋଟା ରାଜ୍ୟ ଆକ୍ରମଣ କଲେ । ଏହାପର ପ୍ରତାପ ବେଳେ ରାଜ୍ୟର ସାମନ୍ତ ରାଜାମାନେ ଓଡ଼ିଶା ଗଜପତିଙ୍କ ଆଶ୍ରୟ ବଂଶପରମ୍ପରା କ୍ରମେ ନେଇ ଶାନ୍ତିରେ ରାଜତ୍ୱ କରି ଆସୁଥିଲେ । ମାତ୍ର ବର୍ତ୍ତମାନ ଓଡ଼ିଶା ଗଜପତିଙ୍କର ସେ ପ୍ରଭାବ ନ ଥିଲା । ତଥାପି କାସିମ୍‌କୋଟା ରାଜା ମୁକୁନ୍ଦରାୟ ରାଜ୍ୟରୁ ବିତାଡ଼ିତ ହୋଇ ରାମଚନ୍ଦ୍ରଦେବଙ୍କ ଆଶ୍ରୟ ନେଲେ । ରାମଚନ୍ଦ୍ର ମାନସିଂହଙ୍କ ଭାଇ ମଧୁସିଂହଙ୍କ ସାହାଯ୍ୟରେ କୁତୁବ-ସାହୀ ସୈନ୍ୟମାନଙ୍କ ସଙ୍ଗେ ଯୁଦ୍ଧ କଲେ । ମାତ୍ର ସେ କାସିମକୋଟା ଉଦ୍ଧାର କରି ପାରିଲେ ନାହିଁ, ବରଂ ଗୋଲକୁଣ୍ଡା ସେନାପତି ନିଜେ ରାମଚନ୍ଦ୍ରଙ୍କ ରାଜ୍ୟ ଆକ୍ରମଣ କରିବାରୁ ମୁକୁନ୍ଦରାୟ ବାଧ୍ୟ ହୋଇ ବଙ୍ଗ ଦେଶକୁ ପଳାଇ ଗଲେ । ରାମଚନ୍ଦ୍ର ୩୨ ବର୍ଷ ରାଜତ୍ୱ କରି ୧୬୦୦ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କଲେ ।

ପୁରୁଷୋତ୍ତମ ଦେବ (୧୬୦୦—୧୬୧୧)—ରାମଚନ୍ଦ୍ର ଦେବଙ୍କ ଅନ୍ତେ ତାହାଙ୍କ ପୁତ୍ର ପୁରୁଷୋତ୍ତମ ଦେବ ୧୬୦୦ ଖ୍ରୀଷ୍ଟାବ୍ଦରେ ରାଜା ହେଲେ । ଏହାଙ୍କ ରାଜତ୍ୱର ପଞ୍ଚମବର୍ଷରେ ଆକବରଙ୍କର ମୃତ୍ୟୁ ହେଲା; ଏବଂ ତାହାଙ୍କ ସଙ୍ଗେ ସଙ୍ଗେ ସକଳ ଉଦାରତା ଓ ମହତ୍ତ୍ୱ ମୋଗଲ ଶାସନରୁ ଉଠିଗଲା । ରାଜା ଟୋଡ଼ରମଲ୍ଲ ଓ ମାନସିଂହଙ୍କ ପରି ଉଦାର ମନୀଷୀମାନଙ୍କର କର୍ତ୍ତୃତ୍ୱ ମୋଗଲ ଶାସନରେ ରହିଲା ନାହିଁ । ସୁତରାଂ ଅକବରଙ୍କ ମୃତ୍ୟୁ ସଙ୍ଗେ ଖୋରଧା ରାଜବଂଶର ଦଶାବିପର୍ଯ୍ୟୟ ଘଟିଲା । ଅତ୍ୟାଚାରୀମାନଙ୍କର ବାରମ୍ବାର ଲୁଣ୍ଠନ ଓ ଆକ୍ରମଣ ଏବଂ ମୋଗଲ ସୁବାଦାରମାନଙ୍କର ସ୍ୱେଚ୍ଛାଚାରୀ ଶାସନରେ ପ୍ରପୀଡ଼ିତ ହୋଇ ଖୋରଧା ରାଜା ଓ ପ୍ରଜାବର୍ଗ ଅସହାୟ

ଦେବାଧିଦେବ ଜଗନ୍ନାଥଙ୍କୁ ସଙ୍ଗେ ଧରି ଗିରିକନ୍ଦର କାନ୍ତାରରେ ବାରମ୍ବାର ଲୁଚି ରହିବାକୁ ବାଧ୍ୟ ହେଲେ । ଏଣିକି ମାନମହତ୍ତ୍ୱ ରାଜ୍ୟପକ୍ଷିଦ ସବୁ ସତ୍ତ୍ୱେ ଜଗନ୍ନାଥଙ୍କୁ ରକ୍ଷା କରିବା ରାଜା ଓ ପ୍ରଜାଙ୍କର ଏକମାତ୍ର ଚିନ୍ତା ହେଲା ।

ଅକବରଙ୍କ ମୃତ୍ୟୁର ଠିକ୍ ପରେ କଟକ ସୁବାଦାର କମଲଖାଁ (ମିର୍ଜା-ଖୁରମ) ପ୍ରଥମେ ପୁରୀ ଆକ୍ରମଣ କଲେ । ଏହି ଆକ୍ରମଣ ଶାନ୍ତ ହେବା ପର୍ଯ୍ୟନ୍ତ ରାଜା ଜଗନ୍ନାଥଙ୍କୁ ଧରି ପୁରୀର ୮ ମାଇଲ ଦୂରରେ କପିଳେଶ୍ୱର-ପୁରରେ ଲୁଚି ରହିଲେ । ଜଗନ୍ନାଥ ମନ୍ଦିର ମଧ୍ୟରେ ସ୍ଥାପିତ ହୋଇ ବହୁ-ଦିନ ଶାନ୍ତି ପାଇ ନ ଥିଲେ । ଏଥିମଧ୍ୟରେ ରାଜା କେଶୁଦାସମାରୁ ନାମରେ ଜଣେ ରାଜପୁତ କ୍ଷତ୍ରିୟ ମୋଗଲ ସେନାପତି କାର୍ଯ୍ୟ କରି କଟକରେ ଜାଗୀର ପାଇଥିଲେ । ଜଗନ୍ନାଥମନ୍ଦିରର ଧନ ଲୋଭରେ ଆକୃଷ୍ଟ ହୋଇ ୧୬୧୦ ଖ୍ରୀଷ୍ଟାବ୍ଦରେ ସେ ଦର୍ଶନ ବାହାନାରେ ମନ୍ଦିର ମଧ୍ୟରେ ପ୍ରବେଶ କଲେ । ହଠାତ୍ ସେ ମନ୍ଦିରକୁ ଆପଣାର ଗୋଟିଏ ଦୁର୍ଗରେ ପରିଣତ କରି ତିନ କୋଟିରୁ ଅଧିକ ଟଙ୍କା ମୂଲ୍ୟର ସମ୍ପତ୍ତି ହସ୍ତଗତ କଲେ; ଏବଂ ଅଧିକ ଧନ ସମ୍ପତ୍ତି ବାହାର କରିବା ପାଇଁ ପଣ୍ଡାମାନଙ୍କ ଉପରେ ଉତ୍କଟ ଅତ୍ୟାଚାର କଲେ । ରାଜା ପୁରୁଷୋତ୍ତମ ଦେବ ଏହି ଦୁଃସମ୍ବାଦ ଶୁଣିବା ମାତ୍ରେ ୧୦ ହଜାର ଅଶ୍ୱାରୋହୀ, ତିନ ଶହ ଲକ୍ଷ ପାଇକ ଏବଂ ବହୁ ରଥାରୋହୀ ସୈନ୍ୟ ନେଇ ପୁରୀ ମନ୍ଦିର ଅବରୋଧ କଲେ । ପ୍ରତ୍ୟେକ ରଥରେ ପାଞ୍ଚ ଶହରୁ ଏକ ସହସ୍ର ପର୍ଯ୍ୟନ୍ତ ସୈନ୍ୟ ଥିଲେ, ଏବଂ ଏହିପରି ଦଶରୁ କୋଡ଼ିଏ ପର୍ଯ୍ୟନ୍ତ ରଥ ଥିଲା । ମନ୍ଦିରର ବାହାର ପ୍ରାଚୀର ଚତୁର୍ଦ୍ଦିଗରେ ପୁରୁଷୋତ୍ତମ ଦେବ ରଥମାନ ଘେରାଇ ଦେଲେ । କେଶୁଦାସ ମନ୍ଦିରମଧ୍ୟରୁ କାଠ ସଂଗ୍ରହ କରି ତହିଁରେ ଘିଅ ଓ ତେଲ ଢାଳି ଗୁଡ଼ାଇ ନିଆଁ ଲଗାଇ ରଥ ଉପରକୁ ପକାଇବାରୁ ରଥ ଉପରେ ଥିବା ସୈନ୍ୟମାନେ ବହୁତ ପୋଡ଼ିଗଲେ । ଓଡ଼ିଆ ସୈନ୍ୟମାନେ କେତେଦିନ ଅବରୋଧ କରି ନ ପାରି ପଳାଇଲେ ।

କେଶୁ ଦାସଙ୍କର ମଧ୍ୟ ବହୁ ସୈନ୍ୟ ନିହତ ହେଲେ ; ୪୦୦ମାତ୍ର ସୈନ୍ୟ ମନ୍ଦିରମଧ୍ୟରେ ଅବଶିଷ୍ଟ ରହିଲେ ।

ପୁରୁଷୋତ୍ତମ ଦେବ ଏଥିରେ ହତାଶ ହୋଇ ମନ୍ତ୍ରୀ ବିଦ୍ୟାଧରଙ୍କ ପରାମର୍ଶରେ ସନ୍ଧି କରିବା ନିମନ୍ତେ କେଶୁଦାସଙ୍କ ନିକଟକୁ ଦୂତ ପଠାଇଲେ । ସନ୍ଧିରେ ସର୍ତ୍ତ ଥିଲା—(୧) ପୁରୁଷୋତ୍ତମ ଦେବ ତାଙ୍କ କନ୍ୟାଙ୍କୁ ସମ୍ରାଟଙ୍କ ଅନ୍ତଃପୁରକୁ ପଠାଇବେ ; ( ୨ ) ୩ ଲକ୍ଷ ଟଙ୍କା କର ଦେବେ; (୩) ରାଜା କେଶୁଦାସଙ୍କୁ ତାଙ୍କ ଭଗିନୀର ବିବାହ ଦେବେ ଏବଂ ତାଙ୍କୁ ଓ ତାହାଙ୍କ ସୈନ୍ୟମାନଙ୍କୁ ଏକ ଲକ୍ଷ ଟଙ୍କା ନାଲବନ୍ଦୀ ବା ଉପହାର ଦେବେ ।

ସନ୍ଧିପରେ କେଶୁଦାସ ପୁରୀ ଛାଡ଼ି ଖୋରଧା ଗଲେ ଏବଂ ସେଠାରେ ପୁରୁଷୋତ୍ତମ ଦେବଙ୍କ ଭଗିନୀର ବିବାହ କଲେ । ରାଜାଙ୍କ ଭଲ ଭଲ ହାତୀମାନ ସେ ଗ୍ରହଣକରି ବରୁଣାଇ ଘାଟି ବାଟେ ପୁରୀ ପଳାଇ ଆସିଲେ । ପୁରୀରୁ ତାଙ୍କୁ ନେଇଯିବା ପାଇଁ କଟକରୁ ନାଏବ ସୁବାଦାର ହାସିମଖାଁ ସୈନ୍ୟ ପଠାଇଲେ । ସେହି ସୈନ୍ୟମାନଙ୍କ ସାହାଯ୍ୟରେ କେଶୁଦାସ କଟକ ଫେରିଗଲେ । ପୁରୀ ବିଜୟ ନିମନ୍ତେ ସମ୍ରାଟ ଜାହାଙ୍ଗୀର କେଶୁଦାସଙ୍କୁ ୪ ହଜାର ଅଶ୍ୱାରୋହୀର ଅଧିନାୟକ ପଦ ଦେଲେ ଏବଂ ପତାକା, ସମ୍ମାନ-ସୂଚକ ପରିଚ୍ଛଦ, ତରବାରୀ, ଛୁରିକା ଏବଂ ଅଶ୍ୱ ମଧ୍ୟ ଉପହାର ଦେଲେ । ଏହିଠାରୁ ଖୋରଧା ଓ ପୁରୀ ଆକ୍ରମଣ କରି ରାଜା ଓ ଜଗନ୍ନାଥଙ୍କ ଧନ ଅପ-ହରଣ କରିବା ଏବଂ ତଦ୍ୱାରା ସମ୍ରାଟଙ୍କ ଅନୁଗ୍ରହ ପାଇବା ମୋଗଲ ଶାସନକର୍ତ୍ତା-ମାନଙ୍କର ପ୍ରଧାନ ଲକ୍ଷ୍ୟ ହେଲା । ୧୬୧୧ ଖ୍ରୀଷ୍ଟାବ୍ଦରେ ତୋଡରମଲ୍ଲଙ୍କ ପୁତ୍ର ରାଜା କଲ୍ୟାଣମଲ୍ଲ ଓଡ଼ିଶାର ସୁବାଦାର ହୋଇ ଆସିଲେ । କଲ୍ୟାଣମଲ୍ଲ ୧୬୧୫ ଖ୍ରୀଷ୍ଟାବ୍ଦରେ ପୁରୁଷୋତ୍ତମଦେବଙ୍କ ରାଜଧାନୀ ଆକ୍ରମଣ କଲେ । ପଣ୍ଡାମାନେ ମନ୍ଦିର ଆକ୍ରମଣ ଆଶଙ୍କା କରି ଜଗନ୍ନାଥଙ୍କୁ ଚିଲିକାକୂଳ ମହିଷାନାସୀ ପର୍ବତକୁ ନେଇଗଲେ । ପୁରୁଷୋତ୍ତମଦେବ କଲ୍ୟାଣମଲ୍ଲଙ୍କୁ ପରାସ୍ତ କଲେ । କଲ୍ୟାଣ

ପଳାୟନ କଲେ । ମାତ୍ର ପୁରୁଷୋତ୍ତମ ତାହାଙ୍କର ଅନୁଧାବନକରି ବାସୁଦେବ-ପୁର ନାମକ ସ୍ଥାନରେ ତାହାଙ୍କୁ ଧରି ବଧକଲେ । ପୁରୁଷୋତ୍ତମ କଟକ ପର୍ଯ୍ୟନ୍ତ ସମସ୍ତ ରାଜ୍ୟ ଅଧିକାର କଲେ ।

ମାତ୍ର ରାଜାଙ୍କର ଏହି ଧୃଷ୍ଟତାର ପ୍ରତିଶୋଧ ନେବା ନିମନ୍ତେ ଦୁଇବର୍ଷ ପରେ ୧୬୧୭ ଖ୍ରୀଷ୍ଟାବ୍ଦରେ ମକରମଖାଁ ନାମକ ଜଣେ ପଠାଣ ସେନାପତି ଖୋରଧା ଦୁର୍ଗ ଅବରୋଧ କରି ଧ୍ୱସ୍ତ କଲେ ; ଏବଂ ସମସ୍ତ ରାଜ୍ୟ ଅଧିକାର କଲେ । ପୁରୁଷୋତ୍ତମ ଦୁର୍ଗରୁ ପଳାୟନ କରି ରାଜପରିବାର ସଙ୍ଗ ରଣପୁର ରାଜ୍ୟର ସୀମା ମାଣବୀ ଦୁର୍ଗରେ ଲୁଚି ରହିଲେ । ମକରମ ଖୋରଧା ଅଧିକାର କରି ପୁରୀ ଆକ୍ରମଣ କରିବାରୁ ଜଗନ୍ନାଥ ପୁଣି ବାଣପୁର ସୀମା ଗଳପଦାକୁ ସ୍ଥାନାନ୍ତରିତ ହେଲେ । ଦୁଇବର୍ଷକାଳ ଖୋରଧା ଓ ପୁରୀକୁ ଲୁଣ୍ଠନ ଓ ଅଧିକାର କରି ମକରମ ଫେରି ଯିବାରୁ ଜଗନ୍ନାଥ ପୁଣି ମନ୍ଦିରମଧ୍ୟରେ ସ୍ଥାପିତ ହେଲେ । ମାତ୍ର ଏତକରେ ପୁରୁଷୋତ୍ତମଙ୍କ ଶାନ୍ତି ମିଳଲା ନାହିଁ । ମକରମ ଫେରିବାର ବର୍ଷକ ପରେ ୧୬୨୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ସୁବାଦାର ଅହମ୍ମଦବେଗ ଖୋରଧା ଆକ୍ରମଣ କରି ସମଗ୍ର ଖୋରଧା, ବାଣପୁର ଏବଂ ଅକାଗିଗଡ଼ର ନନ୍ଦ୍ର ଗ୍ରାମ ପର୍ଯ୍ୟନ୍ତ ଲୁଣ୍ଠନ କଲେ । ୧୬୨୨ ଖ୍ରୀଷ୍ଟାବ୍ଦରେ ସେହି ମାଣବୀ ଗଡ଼ଠାରେ ପୁରୁଷୋତ୍ତମ ଦେବ ଏହି ସକଳ ଐହିକ ଯନ୍ତ୍ରଣାରୁ ଚିର ଶାନ୍ତି ପାଇଲେ ।

ନରସିଂହ ଦେବ (୧୬୨୨ — ୧୬୪୭)—ପୁରୁଷୋତ୍ତମ ଦେବଙ୍କ ମୃତ୍ୟୁ ପରେ ତାହାଙ୍କ ପୁତ୍ର ନରସିଂହ ଦେବ ୧୬୨୨ ଖ୍ରୀଷ୍ଟାବ୍ଦରେ ଖୋରଧା ସିଂହାସନ ଆରୋହଣ କଲେ । ତାହାଙ୍କ ରାଜତ୍ୱର ୪ର୍ଥ ଅଙ୍କରେ ୧୬୨୫ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ସୁବାଦାର ଅହମ୍ମଦବେଗ ନରସିଂହଦେବଙ୍କର ବାଖଡ଼ା ଓ ସଦବଂବନ୍ଧ,ରର ଜାମିନ ସ୍ୱରୂପ ତାହାଙ୍କ ସ୍ୱଜନମାନଙ୍କୁ କଟକରେ ରଖାଇବାକୁ ଦାବୀ କଲେ । ନରସିଂହ ସ୍ୱେଚ୍ଛାରେ ସମ୍ମତ

ନ ହେବାରୁ ଅହମ୍ମଦବେଗ ସଙ୍ଗେ ସଙ୍ଗେ ଖୋରଧା ଆକ୍ରମଣ କଲେ । ଏହି ଆକ୍ରମଣ ଆଶଙ୍କା କରି ପୂର୍ବରୁ ନରସିଂହ ଆପଣାର ପରିବାର-ବର୍ଗଙ୍କୁ ଏବଂ ଜଗନ୍ନାଥଙ୍କୁ ସେହି ରଣପୁରର ମାଣବୀ ଦୁର୍ଗକୁ ପଠାଇ ଦେଇଥିଲେ । ନିଜେ ଆକ୍ରମଣକାରୀ ଅହମଦଙ୍କ ଗତିରୋଧ ନିମନ୍ତେ ପ୍ରସ୍ତୁତ ହୋଇ ରହିଲେ । ନରସିଂହଙ୍କ ଆକ୍ରମଣରେ ଅହମ୍ମଦବେଗ ଭାଗ୍ୟକ୍ରମେ ପ୍ରାଣରକ୍ଷା କରିପାରିଲେ ଏବଂ ଯୁଦ୍ଧକ୍ଷେତ୍ରରୁ ପଳାୟନ କଲେ । ପରବର୍ଷ ୧୬୨୨ ଖ୍ରୀଷ୍ଟାବ୍ଦରେ ନିଜେ ସମ୍ରାଟପୁତ୍ର ଖୁରମ୍ (ସାଜାହାନ) ପିତାଙ୍କ ବିରୋଧୀ ହୋଇ ଓଡ଼ିଶାରେ ପଶିଲେ । ଖୁରମ ନରସିଂହଙ୍କ ରାଜ୍ୟ ଲୁଣ୍ଠନ କରିବା ପରିବର୍ତ୍ତିରେ ନରସିଂହଙ୍କୁ ଜଣେ ପରମ ବନ୍ଧୁ କରି ପାଇଲେ ; ଏବଂ ନରସିଂହ ଖୁରମଙ୍କ ସାହାଯ୍ୟରେ ଯାଜପୁର ପର୍ଯ୍ୟନ୍ତ ଯାଇଥିଲେ । ନରସିଂହଙ୍କ ପୂର୍ବ ଶତ୍ରୁ ଅହମ୍ମଦବେଗ କଟକରୁ ପଳାଇ ଯାଇ ବର୍ଦ୍ଧମାନ ମଧ୍ୟରେ ଆଶ୍ରୟ ନେବାର ପୂର୍ବେ କୁହା ଯାଇଛି । ଖୁରମ ନରସିଂହଙ୍କ ଉପରେ ବିଶେଷ ସନ୍ତୁଷ୍ଟ ହୋଇ ତାହାଙ୍କୁ ବହୁମୂଲ୍ୟ 'ଖିଲାତ' ଉପହାରମାନ ଦେଇଥିଲେ । ପରେ ପୁଣି ଖୁରମ ପରାସ୍ତ ହୋଇ ବଙ୍ଗଦେଶରୁ ପଳାଇ ଆସି ଓଡ଼ିଶାରେ ଆଶ୍ରୟ ନେଇଥିଲେ । କୌଣସି ବିପଦ ଆଶଙ୍କା କରି ରାଜା ଜଗନ୍ନାଥଙ୍କୁ ନେଇ ନିଜ ରାଜଧାନୀ ଖୋରଧାର ସାକ୍ଷିଗୋପାଳଙ୍କ ମନ୍ଦିର ମଧ୍ୟରେ ରଖାଇଲେ । ଖୁରମ ଓଡ଼ିଶାରୁ ବିଦାୟ ନେବାପରେ ଜଗନ୍ନାଥ ପୁଣି ପୁରୀ ମନ୍ଦିରମଧ୍ୟରେ ସ୍ଥାପିତ ହେଲେ, ଏବଂ ନରସିଂହଦେବ କିଛିକାଳ ଶାନ୍ତିରେ ରାଜ୍ୟପଣ କଲେ ।

ପୁରୀରେ କୌଳୀନ୍ୟ ପ୍ରଥା ସ୍ଥାପନ ନରସିଂହଦେବଙ୍କ ରାଜତ୍ୱର ପ୍ରଧାନ ଘଟଣା । ବହୁକାଳ ପୂର୍ବରୁ ଖ୍ରୀଷ୍ଟ ୧୦ମ ଶତାବ୍ଦିରେ ବଙ୍ଗରାଜା ବଲ୍ଲାଳସେନ ବଙ୍ଗଦେଶରେ କୌଳୀନ୍ୟ ପ୍ରଥା ସୃଷ୍ଟି କରିଥିଲେ । ବଙ୍ଗଦେଶ ଓ ଓଡ଼ିଶା ମଧ୍ୟରେ ରାଜନୀତି, ସମାଜ ଓ ଧର୍ମକ୍ଷେତ୍ରରେ ଭାବର ବେଶୀ ଆଦାନ ପ୍ରଦାନ ହୋଇଥିବା ସ୍ଥଳେ ଉତ୍କଳର ସ୍ୱାଧୀନ ଗଜପତିମାନେ ସେହି

କୌଳୀନ୍ୟ ମୋହରୁ ଉତ୍କଳ ବ୍ରାହ୍ମଣ ସମାଜକୁ ଏତେ କାଳ ମୁକ୍ତ ରଖିଥିଲେ। ବର୍ତ୍ତମାନ ଦେଶ ଯେତେବେଳେ ମୁସଲମାନ ଆକ୍ରମଣ ଓ ଲୁଣ୍ଠନରେ ଛାରଖାର, ଓଡ଼ିଶାର ଗଜପତି ଯେତେବେଳେ ପ୍ରାଣ-ଭୟରେ ଇତସ୍ତତଃ, ଉତ୍କଳବାସିଙ୍କ ପ୍ରାଣରୁ ଯେତେବେଳେ ସ୍ୱାଧୀନ ଚିନ୍ତା, ଉଚ୍ଚ ଆକାଙ୍କ୍ଷା ଓ ଭାବ ବହୁଳତା ଲୁପ୍ତପ୍ରାୟ, ସେତିକବେଳେ ରାଜା ନରସିଂହଦେବ ଉତ୍କଳରେ କୌଳୀନ୍ୟ କଳ୍ପନାରେ ଉନ୍ମାଦ ଅନୁଭବ କରୁଥିଲେ । ସେହି ଉନ୍ମାଦରେ ମାତି ନରସିଂହଦେବ ପୁରୀ ନିକଟରେ ବୀରନରସିଂହପୁର ନାମକ ଶାସନ ବସାଇଲେ । ଏହି ସମୟରେ ଉତ୍କଳ ବ୍ରାହ୍ମଣ ସମାଜରେ ସାମନ୍ତ, ଭଟ୍ଟମିଶ୍ର, ଓ ବୈଦିକ ତିନି ଶ୍ରେଣୀର ସୃଷ୍ଟି ହେଲା। କୁଳମର୍ଯ୍ୟାଦା ଅନୁସାରେ ବ୍ରାହ୍ମଣମାନେ ଜମି ବାଡ଼ି ବସ୍ତ୍ରର ଦାନ ପାଇଲେ ; ଏବଂ ଗ୍ରାମର ମୁଖ୍ୟ ସାମନ୍ତ 'ଦାନାଧ୍ୟକ୍ଷ' ହେଲେ । ଏଣିକି ସାମନ୍ତ ସୃଷ୍ଟିରେ ରାଜାମାନେ ଗୌରବ ଅନୁଭବ କଲେ । କାଳକ୍ରମେ ପୁରୀକଲ୍ପର ଶାସନମାନଙ୍କରେ ଚାରି ଶ୍ରେଣୀର ସାମନ୍ତ ସୃଷ୍ଟି ହେଲେ । ବସ୍ତପ, ନନ୍ଦ, ବାଜପେୟୀ ଏବଂ ଗୋଅଡ୍ରେୟ । ଏମାନଙ୍କ ମଧ୍ୟରେ ବସ୍ତପମାନଙ୍କୁ ନରସିଂହଦେବ ପ୍ରଥମେ ସାମନ୍ତ କରିଥିଲେ ।

୧୨୨୨ ଖ୍ରୀଷ୍ଟାବ୍ଦରେ ନରସିଂହଦେବ କୋଣାର୍କ ପତିତ ହୋଇଥିବାର ଦେଖି କୋଣାର୍କ-ଦେବଙ୍କୁ ଆଣି ପୁରୀ ମନ୍ଦିରର ବେଢ଼ା ମଧ୍ୟରେ ଇନ୍ଦ୍ରଙ୍କ ମନ୍ଦିରରେ ସ୍ଥାପନ କଲେ । ସେଠାରେ ବର୍ତ୍ତମାନ ସୂର୍ଯ୍ୟନାରାୟଣଙ୍କର ପୂଜା ବିଧାନ ଚଳେ । ନରସିଂହଦେବ ନିଜ ହାତ-ମାପରେ କୋଣାର୍କ ମନ୍ଦିର ମାପ କରାଇଥିଲେ । ସେହି ମାପ ଅଦ୍ୟାବଧି କୋଣାର୍କ ମନ୍ଦିରର ଏକ ମାତ୍ର ମାପ ହୋଇଛି * । ଏହା ବ୍ୟତୀତ ନରସିଂହଦେବ ପୁରୀ ମନ୍ଦିରରେ ଚୂନ ଲଗାଇଥିଲେ ଏବଂ ସେଥିରେ ୯୧୬୩୮ କାହାଣ ୨ ପଣ ୧୦ ଗଣ୍ଡା କଉଡ଼ି ବ୍ୟୟ ହୋଇଥିଲା । ମନ୍ତ୍ରୀ କହ୍ନେଇ ବିଦ୍ୟାଧର ମହାପାତ୍ର ଓ ମାଳ ପଟ୍ଟନାୟକ ପ୍ରଭୃତି ଏହି କାର୍ଯ୍ୟର ଭାର ନେଇଥିଲେ ।

* ନରସିଂହଙ୍କ କୋଣାର୍କ ମାପ ଲେଖକଙ୍କ କୋଣାର୍କରେ ଦ୍ରଷ୍ଟବ୍ୟ ।

ନରସିଂହଙ୍କ ରାଜତ୍ବ ଶେଷ କାଳକୁ ସୁବାଦାର ମୁରାଦ ଖାଁଙ୍କର ଜଣେ ସେନାପତି ଫତେଖାଁ ଖୋରଧା ଓ ପୁରୀ ଆକ୍ରମଣ କଲେ । ନରସିଂହ ଦେବ ତାହାଙ୍କ ସଙ୍ଗେ ଘୋର ଯୁଦ୍ଧ କଲେ । ଯୁଦ୍ଧମଧ୍ୟରେ ରାଜାଙ୍କର ଜଣେ ବିଶ୍ବସ୍ତ କର୍ମଚାରୀ ଅନିରୁଦ୍ଧ ରାୟଙ୍କ ବିଶ୍ବାସଘାତକତାରେ ନରସିଂହ ଫତେଖାଁଙ୍କ କବଳରେ ପଡି ନିହତ ହେଲେ ।

ଗଙ୍ଗାଧର ଓ ବଳଭଦ୍ର ଦେବ ( ୧୬୫୬—୧୬୬୫ )—ନରସିଂହ-ଦେବଙ୍କ ମୃତ୍ୟୁ ପରେ ଖୋରଧା ସିଂହାସନ ନିମନ୍ତେ ବିବାଦ ଉପସ୍ଥିତ ହେଲା । ସୁବାଦାର ମୁରାଦଖାଁଙ୍କ ସହାୟତାରେ ନରସିଂହଙ୍କଭାଇ ଗୋକୁଳ ରାୟଙ୍କ ପୁତ୍ର ଗଙ୍ଗାଧର ଦେବ ୧୬୫୬ ଖ୍ରୀଷ୍ଟାବ୍ଦରେ ସିଂହାସନରେ ବସିଲେ । ମାତ୍ର ସେ ଚୁଇମାସ ରାଜତ୍ବ ନ କରୁଣୁ ନରସିଂହଙ୍କ ଅନ୍ୟ ଏକ ଭାଇ ବଳଭଦ୍ରଦେବ ପାତ୍ରମନ୍ତ୍ରୀମାନଙ୍କ ସାହାଯ୍ୟରେ ଗଙ୍ଗାଧରଙ୍କୁ ବଧ କରି ୧୬୫୬ ଖ୍ରୀଷ୍ଟାବ୍ଦରେ ନିଜେ ରାଜା ହେଲେ । ବଳଭଦ୍ର ଦେବ ପୁରୀର ଶ୍ରୀ ବଳଭଦ୍ର ପୁର ଶାସନ ଦାନ କରିଥିଲେ । ଏହି ଶାସନରେ ମଧ୍ୟ ବିସ୍ତର ସାମନ୍ତ ଦାନାଧ୍ୟକ୍ଷ ।

ମୁକୁନ୍ଦଦେବ (୧୬୬୫-୧୬୯୩)-ବଳଭଦ୍ରଙ୍କ ପରେ ତାହାଙ୍କପୁତ୍ର ମୁକୁନ୍ଦ-ଦେବ ୧୬୬୫ ଖ୍ରୀଷ୍ଟାବ୍ଦରେ ରାଜା ହେଲେ । ସେ ଅତି ବାଲ୍ୟାବସ୍ଥାରେ ରାଜା ହୋଇଥିବାରୁ ରାଜକାର୍ଯ୍ୟ ପରିଚାଳନା ନିମନ୍ତେ ସେ ଆପଣାର ପାତ୍ର ମନ୍ତ୍ରୀମାନଙ୍କ ଉପରେ ନିର୍ଭର କରିଥିଲେ । ରାଜାଙ୍କ ବାଲ୍ୟାବସ୍ଥାର ଅବକାଶ ପାଇ ସିଂହାସନ ନିମନ୍ତେ ବହୁ ପ୍ରତିଦ୍ବନ୍ଦୀ ବାହାରିଲେ । ଗଙ୍ଗାଧର ନାମରେ ଜଣେ ପ୍ରତିଦ୍ବନ୍ଦୀ ମୁକୁନ୍ଦଦେବଙ୍କ ବିରୁଦ୍ଧରେ ନେଷ୍ଟାକର ମୋଗଲ ଦରବାରରେ ବହୁ ଚେଷ୍ଟାକଲେ । ସମ୍ରାଟ ସାଜାହାନଙ୍କ ହସ୍ତୀ ବିଭାଗର ମୁସାରଫ ବା ପ୍ରଧାନ କର୍ମଚାରୀ ରାୟ ବୃନ୍ଦାବନ ଦାସଙ୍କ ସାହାଯ୍ୟରେ ସେ ମିର୍ଜା ରାଜା ଜୟସିଂହଙ୍କ ପୁତ୍ର କୁମାର ରାମସିଂହଙ୍କ ଅନୁଗ୍ରହ ପ୍ରାର୍ଥନା କଲେ; ଏପରିକି କୁମାରଙ୍କ ଅନୁଗ୍ରହରେ ସେ ଯଦି ସମ୍ରାଟଙ୍କ ଦ୍ବାରା ଖୋରଧାର ରାଜା

ମନୋନୀତ କୃଅନ୍ତ, ତାହାହେଲେ ସେ ବାର୍ଷିକ ୧୬ ଲକ୍ଷ ଟଙ୍କା ସମ୍ରାଟଙ୍କୁ କର ଦେବାପାଇଁ ପ୍ରତିଶ୍ରୁତ ହେଲେ । ମାତ୍ର ଶତ ଚେଷ୍ଟା ସତ୍ତ୍ୱେ ଦିଲ୍ଲୀ ଦରବାରରେ ସେ କୌଣସି ସାହାଯ୍ୟ ନପାଇ ଫେରିଆସିଲେ । ସେତେବେଳେ ସାହାଜାହାନଙ୍କ ପୁତ୍ର ସୁଜା ବଙ୍ଗ ସୁବାଦାର ଏବଂ ମହମ୍ମଦ ହାସ୍ମାନ୍ ଓଡ଼ିଶାରେ ତାଙ୍କର ନାଏବ ସୁବାଦାର ଥିଲେ । ବଙ୍ଗ ଓ ଓଡ଼ିଶା ରାଜଧାନୀରେ ମୋଗଲ-ପ୍ରସାଦ ପାଇବା ପାଇଁ ଗଙ୍ଗାଧର ବିଶେଷ ଉଦ୍ୟମ କଲେ । ଶେଷରେ ସକଳ ସାହାଯ୍ୟରୁ ବଞ୍ଚିତ ହୋଇ ନିଜେ ବିଦ୍ରୋହ ଆଚରଣ କଲେ । ମୁକୁନ୍ଦଦେବ ବାଳକ ମାତ୍ର, ସେ ସିଂହାସନର ପ୍ରକୃତ ଅଧିକାରୀ ଏବଂ ସକଳ ଗଡ଼ଜାତ ଓ ସାମନ୍ତ ରାଜାମାନଙ୍କର ଉପାସ୍ୟ ମହାରାଜା । ଗଙ୍ଗାଧରଙ୍କୁ ବିଦ୍ରୋହୀ ଦେଖି ସକଳ ସାମନ୍ତ ରାଜାମାନେ ଏକତ୍ରିତ ହୋଇ କଟକ ନିକଟବର୍ତ୍ତୀ ଧବଳେଶ୍ୱରଙ୍କ ଠାରେ ତାହାଙ୍କୁ ଧରି ବଧକଲେ (୧୬୫୬) ।

ଗଙ୍ଗାଧରଙ୍କ ମୃତ୍ୟୁର ୪ବର୍ଷ ପରେ ମୁକୁନ୍ଦଦେବଙ୍କର ଜଣେ ଭାଇ କପାଳୀ ବା କପାଳ ଭ୍ରମରବରରାୟ ଖୋରଧା ସିଂହାସନ ଲୋଭରେ ଓଡ଼ିଶାର ଦକ୍ଷିଣ ଜଳମାଳମଧ୍ୟରେ ବିଦ୍ରୋହାଚରଣ କଲେ । ସେ ଅଞ୍ଚଳର ମୋଗଲ ଫୌଜଦାର ମହମ୍ମଦଜାନ କପାଳଙ୍କୁ ଧରି କଟକ ପଠାଇ ଦେଲେ । କଟକ ବାରବାଟୀ ମଧ୍ୟରେ ସେ ବନ୍ଦୀ ହୋଇ ରହିଲେ । ତୃତୀୟ ପ୍ରତିଦ୍ୱନ୍ଦୀ ଜଣେ ଜଙ୍ଗଲ ମଧ୍ୟରେ ବୁଲି ବୁଲି ବଳ ସଂଗ୍ରହ କରୁଥିଲେ । ସେହି ବଳ ସଂଗ୍ରହରେ ହିଁ ତାହାଙ୍କ ଉଦ୍ୟମ ଶେଷ ହେଲା ।

ମୋଗଲରାଜତ୍ୱ ବିରୁଦ୍ଧରେ ବିଦ୍ରୋହ ମୁକୁନ୍ଦଦେବଙ୍କ ରାଜତ୍ୱର ପ୍ରଧାନ ଘଟଣା । ଏହି ବଂଶର ରାଜତ୍ୱ ଆରମ୍ଭରୁ ରାଜା ଓ ପ୍ରଜାମାନେ ଅଫଗାନ ଓ ମୋଗଲମାନଙ୍କ ବାରମ୍ବାର ଆକ୍ରମଣ ଓ ଅତ୍ୟାଚାରରେ ଜଗନ୍ନାଥ ଦେବଙ୍କ ସହ କିପରି ପ୍ରପୀଡ଼ିତ ହେଉଥିଲେ ତାହା ପୂର୍ବରୁ ବର୍ଣ୍ଣନା କରାଯାଇଛି । ଏହି ସବୁ ଅତ୍ୟାଚାରରୁ ମୁକ୍ତି ପାଇ ପୁନର୍ବାର ସ୍ୱାଧୀନ ହେବାପାଇଁ ଅବକାଶ ଖୋଜିବା ରାଜାଙ୍କ ପକ୍ଷେ ସ୍ୱାଭାବିକ । ଔରଙ୍ଗଜେବ ଏବଂ ତାହାଙ୍କ ଭ୍ରାତା-

ମାନଙ୍କ ମଧ୍ୟରେ ଦିଲ୍ଲୀ ସିଂହାସନ ନିମନ୍ତେ ଯେ ଘୋର ବିବାଦ ଚାଲିଲା, ସେଥିମଧ୍ୟରେ ସୁଯୋଗ ଦେଖି ଓଡ଼ିଶାର ରାଜା ଜମିଦାର ଓ ପ୍ରଜାମାନେ ଏକ ବନ୍ଦକରି ମୁକୁନ୍ଦଦେବଙ୍କ ନେତୃତ୍ୱରେ ବିଦ୍ରୋହୀ ହୋଇ ଉଠିଲେ । ଏହି ବିଦ୍ରୋହର ବିବରଣ ଖାନଦଉରାଣୀଙ୍କ ବିଦ୍ରୋହ ଦମନ ପ୍ରସଙ୍ଗରେ ପୂର୍ବବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣିତ କରାଯାଇଛି ; ସେହି ବିଦ୍ରୋହ ଦମନ ଫଳରେ ରାଜା ମୁକୁନ୍ଦଦେବ କେତେକାଳ ବନ୍ଦୀ ରହିଲେ । ପୁଣି ବିଦ୍ରୋହ ଶାନ୍ତ ହେବା ପରେ ମୁକୁନ୍ଦଦେବ କାରାମୁକ୍ତ ହୋଇ ରାଜତ୍ୱ କଲେ । ମୋଗଲ ଆକ୍ରମଣରୁ ନିସ୍ତାର ନିରାପଦରେ ରହିବା ନିମନ୍ତେ ମୁକୁନ୍ଦଦେବ କାରାମୁକ୍ତ ହେବାପରେ ଖୋରଧାରୁ ରାଜଧାନୀ ଉଠାଇ ରଥୀପୁରରେ ଦୁର୍ଗ ନିର୍ମାଣ କରି ବାସକଲେ । ସାକ୍ଷିଗୋପାଳ ମଧ୍ୟ ରାଜାଙ୍କ ସଙ୍ଗେ ଖୋରଧାରୁ ଯାଇ ରଥୀପୁରରେ ନୂତନ ମନ୍ଦିରମଧ୍ୟରେ ପ୍ରତିଷ୍ଠିତ ହେଲେ । ମୁକୁନ୍ଦଦେବ ବିରପଦାଠାରେ ମୁକୁନ୍ଦପୁର ଶାସନ ଦାନ କରି ନନ୍ଦ ସାମନ୍ତଙ୍କୁ ଦାନାଧ୍ୟକ୍ଷ କଲେ । ମୁକୁନ୍ଦଦେବ ନାନା ଭାଗ୍ୟପରିବର୍ତ୍ତନରେ ଦୀର୍ଘକାଳ ରାଜତ୍ୱ କରି ଯାଜପୁରଠାରେ ବସନ୍ତ ରୋଗରେ ୧୬୯୩ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କଲେ । ଏହାଙ୍କ ୧୯ ଅଙ୍କ ବା ରାଜତ୍ୱର ଷୋଡ଼ଶ ବର୍ଷରେ ଜଗନ୍ନାଥ-ରଥ ନିର୍ମାଣ ନିମନ୍ତେ କାଠ ପୂର୍ବାପର ଅଭ୍ର ବାଣପୁରରୁ ନ ଆସି ଦଶପଲ୍ଲା ରାଜ୍ୟରୁ ଆସିବାର ବିଧାନ ହେଲା । ଅଦ୍ୟାପି ସେହି ଦଶପଲ୍ଲା ରାଜ୍ୟରୁ ରଥକାଠ ଆସୁଛି । ଏହାଙ୍କ ୮ ଅଙ୍କରେ ଦୁର୍ଭିକ୍ଷ ପଡ଼ି ଧାନ ଭରଣକୁ କଉଡ଼ି ୪୫କାହାଣ ହେଲା ।

ଦିବ୍ୟସିଂହଦେବ (୧୬୯୩-୧୭୨୦)— ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ତାହାଙ୍କ ପୁତ୍ର ଦିବ୍ୟସିଂହ ଦେବ ୧୬୯୩ ଖ୍ରୀଷ୍ଟାବ୍ଦରେ ରାଜା ହେଲେ । ରଥୀପୁର ଗଡ଼ରେ ଏହାଙ୍କ ଅଭିଷେକ ହୋଇଥିଲା । ଏହାଙ୍କ ରାଜତ୍ୱର ୬ ଅଙ୍କ ବା ପଞ୍ଚମ ବର୍ଷରେ ଜଗନ୍ନାଥଙ୍କ ଉପରେ ପୁଣି ବିପତ୍ତି ଘଟିଲା । ୧୬୯୬ ଖ୍ରୀଷ୍ଟାବ୍ଦରୁ ଶୋଭାସିଂହ ଏବଂ ରହିମଖାଁଙ୍କ ଅଧୀନରେ ଅଫଗାନମାନେ

ବିଦ୍ରୋହୀ ହୋଇଥିଲେ । ସେହି ବିଦ୍ରୋହର ତାଣ୍ଡବ ଓଡ଼ିଶାରେ ବିଶେଷ ନ ଘଟି ମେଦିନୀପୁର ଜିଲ୍ଲାରେ ଘଟିଥିଲା । ଏକରାମଖାଁ ନାମକ ଜଣେ ନାଏବ ନବାବ ସେତେବେଳେ କଟକରେ ଥିଲେ । ସେ ବଡ଼ ଅର୍ଥଲୋଭୀ ଓ ହିନ୍ଦୁଧର୍ମ-ବିଦ୍ୱେଷୀ ଥିଲେ । ୧୭୯୮ ଖ୍ରୀଷ୍ଟାବ୍ଦରେ କେବଳ ଲୁଣ୍ଠନ ଓ ଧର୍ମ-ନାଶ ଉଦ୍ଦେଶ୍ୟରେ ଏକରାମ ଜଗନ୍ନାଥ ମନ୍ଦିର ଆକ୍ରମଣ କଲେ । ସେ ଜଗନ୍ନାଥଙ୍କୁ ହସ୍ତଗତ କରି ମନ୍ଦିରର ନାନା ଅଂଶ ଭାଙ୍ଗିଦେଲେ । ପଣ୍ଡାମାନେ କୌଶଳକ୍ରମେ ଜଗନ୍ନାଥଙ୍କମଧ୍ୟରୁ ଦାରୁବ୍ରହ୍ମଙ୍କୁ ବାହାର କରିନେଇ ବିମଳା ମନ୍ଦିରର ପଛଅଡ଼େ ଲୁଚାଇରଖିଲେ । ଜଗନ୍ନାଥଙ୍କ ଦାରୁ ବିଗ୍ରହମାନ ନଷ୍ଟ କରି ଏକରାମ ମନ୍ଦିର ଯଥେଚ୍ଛା ଲୁଣ୍ଠନ କଲେ । ଦିବ୍ୟସିଂହ ଦେବ ଏକରାମଙ୍କ ଭୟରେ ଲୁଚି ରହିଲେ । ଏକରାମ ଫେରିଯିବା ପରେ ନବକଳେବର ହୋଇ ଜଗନ୍ନାଥ ପୁଣି ପ୍ରତିଷ୍ଠିତ ହେଲେ ।

୧୭୦୦ ଖ୍ରୀଷ୍ଟାବ୍ଦରେ ଭୀଷଣ ତୋଫାନରେ ଓଡ଼ିଶା ନଷ୍ଟ ହେଲା । ପୁରୀ ବଡ଼ଦେଉଳ ଉପର ନୀଳଚକ୍ର ମଧ୍ୟ ଭାଙ୍ଗି ପଡ଼ିଥିଲା । ତାହାର ପତନ ଆଘାତରେ ବଡ଼ଦେଉଳ ପଛପାଖ ମନ୍ଦିର କେତେକ ଭାଙ୍ଗି ଯାଇଥିଲା । ପରେ ପୁଣି ୧୭୧୩ ଖ୍ରୀଷ୍ଟାବ୍ଦରେ ନୀଳଚକ୍ର ନୂତନ ନିର୍ମିତ ହୋଇବସିଲା । ଏହି ତୋଫାନରେ ଶସ୍ୟ, ଘରଦ୍ୱାର, ଗୋରୁ ବହୁତ ହାନି ହେଲା । ତୋଫାନ ସଙ୍ଗେ ସଙ୍ଗେ ପରବର୍ଷ ଦୁର୍ଭିକ୍ଷ ହୋଇ ଅନାହାରରେ ମନୁଷ୍ୟ ମଧ୍ୟ ମଲେ । ଓଡ଼ିଶାର ନାଏବ ନବାବ ସୁଜାଙ୍କ ସଙ୍ଗେ ଦିବ୍ୟସିଂହଦେବଙ୍କର ଯୁଦ୍ଧ ହୋଇଥିବାର କଥିତ ଅଛି ।

ହରେକୃଷ୍ଣଦେବ ( ୧୭୨୦–୨୫ )— ଦିବ୍ୟସିଂହଦେବଙ୍କ ମୃତ୍ୟୁ ପରେ ତାଙ୍କ କନିଷ୍ଠ ଭ୍ରାତା ହରେକୃଷ୍ଣ ଦେବ ୧୭୨୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କଲେ । ରାଜତ୍ୱର ୩ୟ ଅଙ୍କ ବା ୨ୟ ବର୍ଷରେ (୧୭୨୨) ପୁରୀ ନିକଟରେ ସେ ଘର ହରେକୃଷ୍ଣପୁର ଶାସନ ଦାନକରି 'ଗୋଥିବେହୁ' ନାମକ ୪ର୍ଥ ଶ୍ରେଣୀ ସାମନ୍ତ ସୃଷ୍ଟି କଲେ । ଗଦାଧର ପଣ୍ଡିତ ନାମକ

ସୃତ ପ୍ରଣେତା ପଣ୍ଡିତ ଗଦାଧର ମହାପାତ୍ର ରାଜଗୁରୁ ଏହି ଶାସନର ପ୍ରଥମ ଦାନାଧ୍ୟକ୍ଷ ହୋଇଥିଲେ । ହରେକୃଷ୍ଣ ଦେବ ପୁରୀ ମନ୍ଦିରରେ ଚୂନ ଦେଇଥିଲେ, ଏବଂ ସିଂହ ଦ୍ୱାର ଭିତର ବେଢ଼ା-ଦ୍ୱାରଠାରୁ ଜଗମୋହନ ପର୍ଯ୍ୟନ୍ତ ପାହାଚ ଗଢ଼ାଇଥିଲେ ।

ଗୋପୀନାଥ ଦେବ (୧୭୨୫—୧୭୩୨)—ହରେକୃଷ୍ଣଙ୍କ ପୁତ୍ର ଗୋପୀନାଥଦେବ ୭ ବର୍ଷ ରାଜତ୍ୱ କଲେ । ଗୋପୀନାଥଙ୍କ ନାମାନୁସାରେ ପୁରୀ ଅଠରନଳା ପାଖରେ ତାହାଙ୍କର ଜଣେ ରାଜ ଭ୍ରମରବର ରାଉତରାୟ ଗୋପୀନାଥପୁର ବା ରାଉତରାୟପୁର ଶାସନ ଦାନ କରିଥିଲେ । ଗୋପୀନାଥ ବିଶେଷ ପାପାଗ୍ରସ୍ତ ଥିବାରୁ ରଣପୁର ରାଜା କୃଷ୍ଣନରେନ୍ଦ୍ର ଦେବାନ ସୈୟଦ ବେଗ ଏବଂ ଭ୍ରମରବର ରାଉତରାୟମାନେ ଖୋରଧା-ରାଜବାଟୀ ମଧ୍ୟରେ ପଶି ରାଜାଙ୍କୁ ମାରିଦେଲେ ।

ରାମଚନ୍ଦ୍ର ଦେବ (୧୭୩୨)—ଗୋପୀନାଥଙ୍କ ମୃତ୍ୟୁପରେ, ତାହାଙ୍କର କନିଷ୍ଠ ଭ୍ରାତା ଦ୍ୱିତୀୟ ରାମଚନ୍ଦ୍ରଦେବ ୧୭୩୨ ଖ୍ରୀଷ୍ଟାବ୍ଦରେ ସିଂହାସନରେ ଅଭିଷିକ୍ତ ହେଲେ । ରାମଚନ୍ଦ୍ର ରାଜା ହେବା ସଙ୍ଗେ ସଙ୍ଗେ ଓଡ଼ିଶାରୁ ନାଏବ ନବାବ ତକିଖାଁ ମହମ୍ମଦତକିଖାଁ ଲୁଟନେଇ ଆକ୍ରମଣ କରି ଶିଶୁପାଳ ଗଡ ଭାଙ୍ଗିଦେଲେ । ସେ ପଞ୍ଚାଳିଗଡ ଓ ରଥୀପୁର ଆକ୍ରମଣ କରିବାରୁ ଖୋରଧା ନିକଟବର୍ତ୍ତୀ ଗଙ୍ଗପଡାଠାରେ ତାଙ୍କ ସଙ୍ଗେ ରାମଚନ୍ଦ୍ରଦେବ ଯୁଦ୍ଧ କଲେ । ରାଜା ସନ୍ତାନବର୍ଗଙ୍କୁ କେଦଳା ଅଠଗଡ଼ରେ ନିରାପଦରେ ରଖାଇ ଦେଲେ । ଜଗନ୍ନାଥଦେବଙ୍କୁ ନେଇ ପଣ୍ଡାମାନେ ଚିଲିକା ମଧ୍ୟରେ ଏକ ପାହାଡ ଉପରେ ଲୁଚାଇ ରଖିଲେ । ତକି ପୁରୀ ଲୁଣ୍ଠନ କରି ଅଧିକାର କଲେ । ଏ ସବୁ ଅତ୍ୟାଚାର ହେତୁ ଏବଂ ଗୋଲକୁଣ୍ଡା ସୁଲତାନ ରାମଚନ୍ଦ୍ରଙ୍କ ରାଜ୍ୟର ଦକ୍ଷିଣାଂଶ ଅଧିକାର କରିବାରୁ ରାମଚନ୍ଦ୍ର ତାଙ୍କ ବିରୁଦ୍ଧରେ ବିଦ୍ରୋହୀ ହେଲେ । ଏହି ବିଦ୍ରୋହର କାରଣ ଓ ଶାନ୍ତି ପୂର୍ବେ ତାଙ୍କ ସମ୍ବନ୍ଧରେ ଲେଖାଯାଇଛି । ରାମଚନ୍ଦ୍ର ବନ୍ଦୀ

ହୋଇ କଟକରେ ରହୁଥିଲେ । ରାମଚନ୍ଦ୍ରଦେବ ମୁର୍ଷିଦ କୁଲିଙ୍କ କନ୍ୟାକୁ ବିବାହ କରି ମୁସଲମାନ ହୋଇଥିଲେ । ପୁରୀ ମନ୍ଦିରମଧ୍ୟରେ ସେ ଆଉ ପ୍ରବେଶ ଅଧିକାର ନ ପାଇବାରୁ ତାଙ୍କ ଦର୍ଶନ ସୁବିଧା ନିମନ୍ତେ ସିଂହଦ୍ୱାର ମନ୍ଦିରରେ ପତିତପାବନ ମୂର୍ତ୍ତୀ ପ୍ରତିଷ୍ଠିତ ହେଲେ । ଅଲ୍ଲିବର୍ଦ୍ଦିଖାଁଙ୍କ ବିରୁଦ୍ଧରେ ରାମଚନ୍ଦ୍ର ମୁର୍ଷିଦକୁଲିଖାଁଙ୍କ ପରିବାରକୁ ରକ୍ଷା କରିଥିବାର ପୂର୍ବେ କୁହାଯାଇଛି । ଏହାଙ୍କ ସମୟରେ ଓଡ଼ିଶାରେ ମରହଟ୍ଟାମାନଙ୍କ ଆକ୍ରମଣ ଆରମ୍ଭ ହେଲା । ମୁର୍ଷିଦକୁଲିଙ୍କ ଦେବାନ ମିରହବିବ ରାମଚନ୍ଦ୍ରଙ୍କର ପରମବନ୍ଧୁ ଥିଲେ । ମିରହବିବଙ୍କ ସହିତ ରାମଚନ୍ଦ୍ର ମଧ୍ୟ ଅଲିବର୍ଦ୍ଦିଖାଁଙ୍କ ବିରୁଦ୍ଧରେ ମରହଟ୍ଟାମାନଙ୍କୁ ସାହାଯ୍ୟ ଦେଉଥିଲେ ।

୧୭୪୩ ଖ୍ରୀଷ୍ଟାବ୍ଦରେ ରାମଚନ୍ଦ୍ର ନରସିଂହପୁର ଗଡଠାରେ ପ୍ରାଣତ୍ୟାଗ କଲେ ।

ବୀରକିଶୋର ଦେବ—(୧୭୪୩—୧୭୮୦) ରାମଚନ୍ଦ୍ରଙ୍କ ମୃତ୍ୟୁପରେ ମିରହବିବ ପ୍ରଥମେ ପଞ୍ଚୁଆର ରଜା ପଦ୍ମଲାଭ ଦେବଙ୍କୁ ଖୋରଧା ସିଂହାସନର ଉତ୍ତରାଧିକାରୀ ମନୋନୀତ କରିଥିଲେ । ମାତ୍ର ଶେଷରେ ରାମଚନ୍ଦ୍ର ଦେବଙ୍କ ନାତି ବୀରକିଶୋର ଦେବଙ୍କୁ ସିଂହାସନର ପ୍ରକୃତ ଅଧିକାରୀ ଦେଖି ମିରହବିବ ତାହାଙ୍କୁ ଖୋରଧାର ରାଜା କଲେ । ମିରହବିବଙ୍କ ପରାମର୍ଶରେ ସେ ମରହଟ୍ଟାମାନଙ୍କୁ ସାହାଯ୍ୟ କରୁଥିବାରୁ, ଅଲ୍ଲିବର୍ଦ୍ଦିଖାଁ ଓଡ଼ିଶା ଆକ୍ରମଣ ବେଳେ ବୀରକିଶୋରଙ୍କୁ ବଶ କରିବା ନିମନ୍ତେ ରଥୀପୁରଠାରେ ତାହାଙ୍କୁ ସାକ୍ଷାତ କରି ହାତୀ ଶିରୋପା ଉପହାର ଦେଇଥିଲେ । ଶେଷକୁ ଅଲ୍ଲିବର୍ଦ୍ଦି ମରହଟ୍ଟାମାନଙ୍କ ସଙ୍ଗେ ସନ୍ଧି କରି ଓଡ଼ିଶା ଛାଡ଼ି ଯିବାରୁ ଓଡ଼ିଶା ମରହଟ୍ଟା ଶାସନରେ ରହିଲା । ବୀରକିଶୋର ଦେବ ଏବଂ ସ୍ୱୟଂ ଦେବାଧିଦେବରାଜ ଜଗନ୍ନାଥ ସ୍ୱଧର୍ମୀ ମରହଟ୍ଟାମାନଙ୍କ ଶାସନରେ ରହି ବିଗତ ଦୁଇଶହ ବର୍ଷ ବ୍ୟାପି ପଠାଣ ଓ ମୋଗଲ ଅତ୍ୟାଚାରରୁ ମୁକ୍ତ ପାଇଲେ ।

# ତୃତୀୟ ଅଧ୍ୟାୟ

## ମୋଗଲରାଜତ୍ୱରେ ଦେଶର ଅବସ୍ଥା

[illegible]୮-୧୭୫୧ ଖ୍ରୀ

ଦେଶଶାସନ—ଉତ୍କଳର ଶେଷ ସ୍ୱାଧୀନ ଗଜପତି ରାଜା ମୁକୁନ୍ଦଦେବଙ୍କ ମୃତ୍ୟୁଠାରୁ ମରହଟ୍ଟା ଅଧିକାର ପର୍ଯ୍ୟନ୍ତ ଏହି ଦୁଇଶତ ବର୍ଷ ମଧ୍ୟରେ ଉତ୍କଳ ଇତିହାସର ଯେ ବିପ୍ଳବ, ଲୁଣ୍ଠନ, ଅତ୍ୟାଚାର ଓ ରକ୍ତପାତର କାହାଣୀ ପୂର୍ବବର୍ତ୍ତୀ ଅଧ୍ୟାୟମାନଙ୍କରେ ବର୍ଣ୍ଣିତ ହେଲା, ତହିଁରୁ ଦେଶର ଶାସନତନ୍ତ୍ର ଯେ କେବେ ନିୟମିତ ଶୃଙ୍ଖଳାରେ ଚାଲିଥିଲା, ବୋଧ ହୁଏ ନାହିଁ। ମାତ୍ର ସେ ସକଳ ଅଶାନ୍ତି, ଅରାଜକତା ଓ ବିଶୃଙ୍ଖଳା ମଧ୍ୟରେ ସମୟ ସମୟରେ ଜଣେ ଜଣେ ସୁଶାସକଙ୍କ ଶାସନ ପଦ୍ଧତିରେ ଯେ ଆଶ୍ୱାସ ମିଳେ, ତହିଁରେ ଦେଶବାସୀ ସାମାନ୍ୟ ଆଶ୍ୱାସନା ପାଉଥିଲେ। ମୌର୍ଯ୍ୟଶାସନ ପରେ ଉତ୍କଳୀ ରାଜନୈତିକ ଭାବରେ ଭାରତ ସାମ୍ରାଜ୍ୟରୁ ପୃଥକ ହୋଇ ରହିଥିଲା। ସାହିତ୍ୟ ସଭ୍ୟତାରେ ଉତ୍କଳ ଭାରତ ସଙ୍ଗେ ଏକ ଥିଲେ ହେଁବା, ଉତ୍କଳର ରାଜନୀତି ଭାରତରୁ ପୃଥକ୍ ଥିଲା, ଏବଂ ଉତ୍କଳବାସୀ ଆପଣାର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ରକ୍ଷା କରିଥିଲେ। ମୋଗଲ ରାଜତ୍ୱରେ ଉତ୍କଳର ସ୍ୱାଧୀନତା ଯିବା ସଙ୍ଗେ ସେହି ସ୍ୱାତନ୍ତ୍ର୍ୟ ବା ବିଚ୍ଛିନ୍ନତା ଲୁପ୍ତଗଲା। ମୋଗଲ-ସାମ୍ରାଜ୍ୟର ଭାରତବ୍ୟାପୀ ରାଜନୀତିରେ ଉତ୍କଳ ଶାସିତ ହେଲା।

ମୋଗଲମାନଙ୍କ ଓଡ଼ିଶା ଶାସନ ପୂର୍ବବର୍ତ୍ତୀ ଗଜପତିମାନଙ୍କ ଶାସନ-ପ୍ରଣାଳୀଠାରୁ ବିଶେଷ କିଛି ଭିନ୍ନ ନ ଥିଲା। ଅର୍ଥାତ୍ ଗଜପତିଙ୍କ ଶାସନ ଯେପରି ଦେଶର ସ୍ଥାନେ ସ୍ଥାନେ ବିକ୍ଷିପ୍ତ ହୋଇ ଚାଲୁଥିଲା, ମୋଗଲ ଶାସନ

ମଧ୍ୟ ସେହିପରି ସୁବାଦାର ବା ନାଏବ-ସୁବାଦାରଙ୍କ ହସ୍ତରେ କେନ୍ଦ୍ରୀଭୂତ ନରହି ପ୍ରଗଣା ଓ ମୌଜାମାନଙ୍କ ମଧ୍ୟରେ ପ୍ରସାରିତ ହୋଇଥିଲା । ମୂଳତଃ ମୋଗଲ-ଶାସନ ଭାରତରେ ସମ୍ପୂର୍ଣ୍ଣ ନୂତନ ପଦ୍ଧତି ନ ଥିଲା ; ବରଂ ମୋଗଲ-ଶାସନର ମୁଖ୍ୟ ପ୍ରତିଷ୍ଠାତା ଅକବର ଯେଉଁ ହିନ୍ଦୁଜାତ ମନ୍ତ୍ରୀଙ୍କ ସାହାଯ୍ୟରେ ଶାସନତନ୍ତ୍ର ସୃଷ୍ଟି କରିଥିଲେ, ସେହିମାନେ ଭାରତବାସୀ—ଭାରତର ଯୁଗ ଯୁଗ ବ୍ୟାପୀ ଶାସ୍ତ୍ରାନୁମୋଦିତ ପାରମ୍ପାରିକ ରାଷ୍ଟ୍ରନୀତି ବିଧାନରେ ଚିର ଅଭ୍ୟସ୍ତ । ରାଜା ତୋଡ଼ରମଲ୍ଲ ଉତ୍କଳରେ ଯେ ନୂତନ ବନ୍ଦୋବସ୍ତ ଓ ଶାସନପଦ୍ଧତି ଚଳାଇଲେ, ତାହା ଫଳତଃ ଉତ୍କଳର ପ୍ରାଚୀନ ପଦ୍ଧତିର ଅନୁସରଣ ମାତ୍ର । କେବଳ ନୂତନ ସରକାରଙ୍କ ସୁବିଧା ଅନୁସାରେ ହିନ୍ଦି ଓ ସଂସ୍କୃତ ନାମ ପରିବର୍ତ୍ତିରେ ପାରସିକ ନାମ ମାତ୍ର ବ୍ୟବହୃତ ହେଲା । ଏହି ନାମ ପରିବର୍ତ୍ତନ ବ୍ୟତୀତ ମୋଗଲ-ଶାସନ ପଦ୍ଧତିରେ ବିଶେଷ କିଛି ଗୁରୁତର ପରିବର୍ତ୍ତନ କରାଯାଇ ନ ଥିଲା ।

ଗଜପତିମାନଙ୍କ ଦେଶ ଯେପରି ରାଜାବର ଦେଶ ଓ ସାମନ୍ତ ରାଜ୍ୟ ଏହି ଦୁଇ ଭାଗରେ ବିଭକ୍ତ ଥିଲା, ମୋଗଲ ରାଜତ୍ୱରେ ରାଜା ତୋଡ଼ରମଲ୍ଲଙ୍କ ବନ୍ଦୋବସ୍ତ ଅନୁସାରେ ସେହି ଦୁଇ ବିଭାଗ ମୋଗଲବନ୍ଦୀ ଓ ଗଡ଼ଜାତ ନାମରେ ଆଖ୍ୟାତ ହେଲା । ମୋଗଲବନ୍ଦୀ ମଧ୍ୟରୁ ଖୋରଧା ରାଜାଙ୍କ ନିମନ୍ତେ ସମସ୍ତ ଖୋରଧା, ରହାଙ୍ଗ, ଚବିଶକୁଦ, ସିରାଇ ଓ ଲେମ୍ବାଇ ମିଶି ୧୫୪୭ ବର୍ଗମାଇଲ ରାଜ୍ୟ ତୋଡରମଲ୍ଲ ଛାଡି ଦେଇ, ବାକୀ ମୋଗଲବନ୍ଦୀ ରାଜ୍ୟ ପୂର୍ବକାଳର ୩୧ 'ଦଣ୍ଡପାଟ' ବା 'ଦେଶ' ପରିବର୍ତ୍ତିରେ, ୫ 'ସରକାର'ରେ ବିଭକ୍ତ କଲେ । 'ଦେଶପତି' ବା 'ଦେଶପାଣ୍ଡି' ସ୍ଥଳରେ ସରକାରର ଶାସନକର୍ତ୍ତାଙ୍କ ନାମ 'ଫୌଜଦାର' ରହିଲା । ଶେଷ ଗଜପତି ମୁକୁନ୍ଦଦେବଙ୍କ ଅଧୀନରେ ଯେଉଁ ଦେଶପାଣ୍ଡିମାନେ ଥିଲେ, ପ୍ରାୟ ସେହିମାନେହିଁ ଫୌଜଦାର ରହିଲେ । ଫୌଜଦାରମାନେ ସାଧାରଣ ଶାସନ ସୈନ୍ୟ ବିଭାଗ ଏବଂ ଶାନ୍ତିରକ୍ଷା ଓ ପୁଲିସ କାର୍ଯ୍ୟ ନିମନ୍ତେ ଦାୟୀ ଥିଲେ । ତାହାଙ୍କର ଜଣେ ଜଣେ କାଜି ନ୍ୟାୟ ବିଚାର କରୁଥିଲେ । ଦେଶଯେପରି ପୂର୍ବେ

କେତେଗୁଡ଼ିଏ ବିଷି ବା ଖଣ୍ଡରେ ବିଭକ୍ତ ଥିଲା । ପରକାର ଗୁଡ଼ିକ ସେହିପରି କେତେଗୁଡ଼ିଏ 'ପ୍ରଗନ୍ନା'ରେ ବିଭକ୍ତ ହେଲା । ଅର୍ଥାତ୍ ବିଷିର ନାମାନ୍ତର ପ୍ରଗନ୍ନା ରହିଲା, ଏବଂ ବିଷୟୀ ବା ଖଣ୍ଡପତି ପରିବର୍ତ୍ତେ ପ୍ରଗନ୍ନାର ଶାସନକର୍ତ୍ତାମାନେ 'ଚୌଧୁରୀ' ନାମରେ ପରିଚିତ ହେଲେ । ବିଷିର 'ଭୋଇମୂଳ'ଙ୍କ ନାମ ରହିଲା, 'କାନୁନ୍‌ଗୋଇଜିସ୍ତି' । ପ୍ରଗନ୍ନାମାନ କେତେ ଗୁଡ଼ିଏ ତାଲୁକରେ ବିଭକ୍ତ ହେଲା, ଏବଂ ତାହା ଜଣେ ଜଣେ 'ତାଲୁକଦାର'ଙ୍କ ଅଧୀନରେ ରହିଲା । ତାଲୁକ ମଧ୍ୟରେ ରହିଲା ଗ୍ରାମ, ଗ୍ରାମ ବା ଜାନପଦର ନାମ ରହିଲା'ମୌଜା' ଏବଂ ଗ୍ରାମପତି ବା ପ୍ରଧାନ ମକଦମ ସଂଜ୍ଞା ପାଇଲେ । ଗ୍ରାମର ଭୋଇଙ୍କୁ କାନୁନ୍‌ଗୋ କୁହାଗଲା । ପାଇକ-ମାନେ ସାଧାରଣତଃ 'କଣ୍ଟୁଆଳ' ନାମରେ ପରିଚିତ ହେଲେ । ମୋଟ ଉପରେ ବିଷି ଓ ଗ୍ରାମ ମଧ୍ୟରେ କେବଳ ତାଲୁକ ସୃଷ୍ଟି ଛଡ଼ା ରାଜା ତୋଡ଼ରମଲ୍ଲ ତଥା ମୋଗଲମାନେ ଶାସନରେ ଅନ୍ୟ କୌଣସି ପରିବର୍ତ୍ତନ କରି ନ ଥିଲେ । ଦେଶଶାସନ ଅବହମାନ କାଳରୁ ଉତ୍କଳରେ ଯେ ପ୍ରଣାଳୀରେ ଚାଲୁଥିଲା, ମୋଗଲରାଜତ୍ୱରେ ପ୍ରାୟ ସେହିପରି ଚାଲିଲା । ବିଭାଗ ଓ କର୍ମଚାରୀମାନଙ୍କ ନାମରେ ମାତ୍ର ପରିବର୍ତ୍ତନ କରାଗଲା ।

ଗଡ଼ଜାତ ଶାସନରେ ମଧ୍ୟ ବିଶେଷ କିଛି ପରିବର୍ତ୍ତନ କରାଯାଇ ନ ଥିଲା । ଯେଉଁ ଖଣ୍ଡାୟତମାନେ ଗୋଟିଏ ଗୋଟିଏ ଗଡ଼ର ଅଧ୍ୟକ୍ଷ ଥିଲେ, ସେମାନେ କିଲ୍ଲାଦାର ଏବଂ ସେମାନଙ୍କ ଗଡ଼ ଓ ରାଜ୍ୟ କିଲ୍ଲା ନାମରେ କଥିତ ହେଲା । ଗଡ଼ଜାତ ରାଜାମାନେ ସାମନ୍ତରାଜା ବା 'ଭୂଇୟାଁ' ନାମରେ ପୂର୍ବେ କଥିତ ହେଉଥିଲେ । ମୋଗଲମାନେ ସେମାନଙ୍କୁ ଜମିଦାର ଆଖ୍ୟା ଦେଲେ, ଏବଂ ପ୍ରଥମେ କେବଳ ଖୋରଧା, ଆଲି, ସାରଙ୍ଗଗଡ଼, ଏବଂ ଗଡ଼ଜାତ ରାଜାମାନେ ଜମିଦାର ଆଖ୍ୟା ପାଇଥିଲେ ।

ସ୍ଥୂଳତଃ ମୋଗଲ ଶାସନ କେବଳ ଯେ ହିନ୍ଦୁ କର୍ମଚାରୀମାନଙ୍କ ଦ୍ୱାରା ଚାଳିତ ହେଉଥିଲା, ତାହା ନୁହେଁ ; ପ୍ରକୃତରେ କହିବାକୁ ଗଲେ

ଭାରତର ଅତୀତ ଯୁଗରୁ ଯେଉଁ ଶାସନ ପଦ୍ଧତି ସମସ୍ତ ଓ ଶାସ୍ତ୍ର ଦ୍ୱାରା ଅନୁମୋଦିତ ହୋଇ ଆସିଥିଲା, ଏବଂ ଦେଶବାସୀ ଯହିଁରେ ପୁରୁଷାନୁକ୍ରମେ ଅଭ୍ୟସ୍ତ, ମୋଗଲମାନେ ସେହି ଶାସନ ପ୍ରଣାଳୀ ପରିବର୍ତ୍ତନ କରି ତାହା ସ୍ଥଳରେ ନୂତନ ବୈଦେଶିକ ଶାସନ ପଦ୍ଧତି କିଛି ବସାଇ ନ ଥିଲେ। ବରଂ ତାହାକୁହିଁ ଦେଶଶାସନ ପ୍ରତି ଉପଯୁକ୍ତ ଦେଖି କେବଳ ନିଜ ଭାଷାନୁସାରେ କର୍ମଚାରୀ ଓ ଶାସନ ବିଭାଗମାନଙ୍କର ନାମ ପରିବର୍ତ୍ତନ କରି ସେହି ପ୍ରାଚୀନ ପଦ୍ଧତି ଅନୁସାରେ ଶାସନ କାର୍ଯ୍ୟ ଚଳାଇଲେ। ଗ୍ରାମମାନ ପୂର୍ବବର୍ତ୍ତୀ ହିନ୍ଦୁ ରାଜାଙ୍କ ଶାସନରେ ଯେପରି ପୂର୍ଣ୍ଣାଙ୍ଗ ସ୍ୱାଧୀନ ଶାସନ ଭୋଗ କରୁଥିଲା; ମୋଗଲ ରାଜତ୍ୱରେ ମଧ୍ୟ ସେହିପରି ଶାନ୍ତିରକ୍ଷା, ନ୍ୟାୟ ବିଚାର, ଶିକ୍ଷା ଓ ସ୍ୱାସ୍ଥ୍ୟ ବିଧାନ ଏବଂ ରାଜସ୍ୱ ସଂଗ୍ରହ ନିମନ୍ତେ ଦାୟୀ ରହିଲା। ପ୍ରାଦେଶିକ ଶାସନ-କର୍ତ୍ତାମାନେ ଆପଣା ଆପଣାର କାର୍ଯ୍ୟ ଶୃଙ୍ଖଳାଭାବରେ କରି ରାଜସ୍ୱତକ ନିୟମିତ ଭାବରେ ମୋଗଲ ଦରବାରକୁ ଦେଉଥିବା ପର୍ଯ୍ୟନ୍ତ ନିଜ ନିଜ ସୈନ୍ୟ ସାମନ୍ତ ପରିଚାଳନା କରି ସ୍ୱାଧୀନ ଶାସନ କରୁଥିଲେ। ଗ୍ରାମ ବା ମୌଜାମାନଙ୍କରେ ମଧ୍ୟ ସେହି ପ୍ରାଚୀନ ଶାସନ ସ୍ୱାତନ୍ତ୍ର୍ୟ ବିଦ୍ୟମାନ ଥିଲା। ସୁତରାଂ ମୋଗଲ ଶାସନରେ ଦୁଇଶତ ବର୍ଷବ୍ୟାପୀ ଘୋର ବିପ୍ଲବ, ବିଭ୍ରାଟ, ବିଦ୍ରୋହ ଓ ଅତ୍ୟାଚାରର ମଧ୍ୟରେ ଓଡ଼ିଶାର ଗ୍ରାମବାସୀ ସମୟେ ସମୟେ ପୀଡ଼ିତ ହୋଇ ଅଶାନ୍ତିରେ ଥିଲେ ସୁଦ୍ଧା ସାଧାରଣରେ ଗ୍ରାମମାନଙ୍କରେ ଜୀବନର ସ୍ୱାତନ୍ତ୍ର୍ୟ ରକ୍ଷା କରାଯାଇ ପାରିଥିଲା। ଏକ ଗ୍ରାମର ଆକ୍ରମଣ ବା ଅତ୍ୟାଚାର ଅପର ଗ୍ରାମକୁ ସେତେ ଭୀଷଣ ଭାବରେ ବାଧୁ ନ ଥିଲା।

ଗଜପତିଙ୍କ ଉତ୍କଳ ପରି ମୋଗଲ-ଓଡ଼ିଶା ସେତେ ବିସ୍ତୃତ ନ ଥିଲା। ପୂର୍ବେ କୁହାଯାଇଛି, ଗୋଲକୁଣ୍ଡାର କୁତବସାହୀ ସୁଲତାନ ଉତ୍କଳର ଦକ୍ଷିଣାଂଶ ଅଧିକାର କରି ଚିଲିକା ରଘୁନାଥପୁର ପର୍ଯ୍ୟନ୍ତ ନିଜ

ରାଜ୍ୟ ଭୁକ୍ତ କରୁଥିଲେ ଏବଂ ସେଥି ନିମନ୍ତେ ଓଡ଼ିଶାର ମୋଗଲ ସୁବାଦାରଙ୍କୁ ବାର୍ଷିକ ୨୦ ହଜାର ଟଙ୍କା ରାଜସ୍ୱ ଦେଉଥିଲେ । ଚିଲିକା ରଘୁନାଥପୁରଠାରୁ ଉତ୍ତରରେ ସମସ୍ତ ରାଜ୍ୟ ରାଜା ମାନସିଂହ ଖୋରଧା ରାଜା ରାମଚନ୍ଦ୍ର ଦେବଙ୍କ ଅଧିକାରରେ ଛାଡ଼ ଦେଇଥିଲେ । ପରେ ପୁଣି ମହମ୍ମଦ ତକିଖାଁଙ୍କ ଶାସନ କାଳରେ ଗୋଲକୁଣ୍ଡାର ପତନ ପରେ ମୋଗଲ ସମ୍ରାଟଙ୍କୁ ଦୁର୍ବଳ ଦେଖି ହାଇଦରାବାଦର ନିଜାମ ରାଜ୍ୟ ବିସ୍ତାର କରି ଚିଲିକା ପର୍ଯ୍ୟନ୍ତ ଖୋରଧା ରାଜା ରାମଚନ୍ଦ୍ର ଦେବଙ୍କର ସକଳ ରାଜ୍ୟ ଅଧିକାର କରିନେଲେ । ସୁତରାଂ ଚିଲିକା ହ୍ରଦ ଓଡ଼ିଶାର ଦକ୍ଷିଣ ସୀମା ରହିଲା । ମୁର୍ଶିଦ କୁଲିଖାଁ ବଙ୍ଗ ନବାବ ଥିବାବେଳେ ଜଳେଶ୍ୱର ସରକାରର ଅଧିକାଂଶ ମେଦିନୀପୁର ଜିଲ୍ଲା ଓଡ଼ିଶାରୁ ଯାଇ ବଙ୍ଗଦେଶ ସଙ୍ଗେ ମିଶିଲା । ସୁବର୍ଣ୍ଣରେଖା ଉତ୍ତରରେ ମେଦିନୀପୁର ଓ ତମଲୁକ ମଧ୍ୟରେ ବାକି ଯେଉଁ ପ୍ରଗନ୍ନାମାନ ଓଡ଼ିଶାରେ ଥିଲା, ତାହା ମଧ୍ୟ ମହମ୍ମଦ ତକିଙ୍କ ଶାସନ କାଳରେ ବଙ୍ଗଦେଶରେ ମିଶିଲା । ସୁତରାଂ ସୁବର୍ଣ୍ଣରେଖା ମୋଗଲ-ଓଡ଼ିଶାର ଉତ୍ତର ସୀମା ରହିଲା । ପଶ୍ଚିମରେ ସମ୍ବଲପୁର ଜିଲ୍ଲାରେ ମୋଗଲମାନେ ପଶି ନ ଥିଲେ ଏବଂ ମୋଗଲ-ଓଡ଼ିଶା ମଧ୍ୟରେ ସମ୍ବଲପୁର ଓ ତାହାର ଗଡ଼ଜାତମାନ ନ ଥିଲା । ସୁତରାଂ ସମ୍ବଲପୁର ଜିଲ୍ଲା ବ୍ୟତୀତ ବର୍ତ୍ତମାନ ଓଡ଼ିଶା କେବଳ ମୋଗଲ-ଓଡ଼ିଶା ଥିଲା ।

ଓଡ଼ିଶା ପ୍ରଥମେ ବଙ୍ଗ ସୁବାର ଅଧୀନରେ ଥିଲା । ୧୬୦୭ ଖ୍ରୀଷ୍ଟାବ୍ଦରେ ଏହା ଏକ ସ୍ୱତନ୍ତ୍ର ସୁବା ହେଲା । ସାହାଜାହାନଙ୍କ ରାଜତ୍ୱରେ ପର୍ତ୍ତୁଗିଜ ଜଳଦସ୍ୟୁମାନେ ବଙ୍ଗ ଓଡ଼ିଶା ଉପକୂଳ ଲୁଣ୍ଠନ କରି ବାଣିଜ୍ୟରେ ବହୁତ କ୍ଷତି ଘଟାଇଲେ । ପର୍ତ୍ତୁଗିଜମାନଙ୍କୁ ଦମନ କରିବା ନିମନ୍ତେ ସାହାଜାହାନ ଆପଣାର ପୁତ୍ର ସୁଜାଙ୍କୁ ୧୬୪୧ ଖ୍ରୀଷ୍ଟାବ୍ଦରେ ବଙ୍ଗ ସୁବାଦାର କରି ପଠାଇଲେ, ଏବଂ ଓଡ଼ିଶା ମଧ୍ୟ ସୁଜାଙ୍କ ସାକ୍ଷାତ ଶାସନରେ ରହିବା ପାଇଁ ବଙ୍ଗ ସୁବାର ଅଧୀନରେ ରହିଲା, ଏବଂ ମରହଟ୍ଟାମାନଙ୍କ

ଅଧିକାର ପର୍ଯ୍ୟନ୍ତ ଓଡ଼ିଶା ବଙ୍ଗ ସୁବାଦାରଙ୍କ ଅଧୀନରେ ଜଣେ ନାଏବ ସୁବାଦାରଙ୍କ ଦ୍ୱାରା ଶାସିତ ହେଉଥିଲା ।

ରାଜସ୍ୱ ବନ୍ଦୋବସ୍ତ—ସୁବାଦାର ବା ନାଏବ ସୁବାଦାର ଶାସନ ସଂକ୍ରାନ୍ତ ସମସ୍ତ ବିଷୟର ପ୍ରଧାନ ଅଧ୍ୟକ୍ଷ ଥିଲେ ସତ୍ୟ, ଜଣେ ଦେବାନ ରାଜସ୍ୱବିଭାଗର ପ୍ରଧାନ କର୍ତ୍ତା ଥିଲେ । ଦେବାନଙ୍କ ଅଧୀନରେ ଚୌଧୁରୀ କାନୁନ୍‌ଗୋ ପ୍ରଭୃତି ଥିଲେ । ଆକବରଙ୍କ ସମୟରେ ରାଜା ତୋଡରମଲ୍ଲଙ୍କ ବନ୍ଦୋବସ୍ତ ୧୫୮୪ ଖ୍ରୀଷ୍ଟାବ୍ଦରେ ରାଜାମାନସିଂହଙ୍କ ଦ୍ୱାରା ସମ୍ପୂର୍ଣ୍ଣ ହୋଇଥିଲା । ସେତେବେଳେ ଓଡ଼ିଶାର ରାଜସ୍ୱ ଦେଖାଗଲା ୩୧୪୩୩୧୬ ଟଙ୍କା । ମାତ୍ର କାଳକ୍ରମେ ବଢ଼ି ବଢ଼ି ଆଓରଙ୍ଗଜେବଙ୍କ ରାଜତ୍ୱରେ ୧୬୬୫ ଖ୍ରୀଷ୍ଟାବ୍ଦରେ ଏହା ୬୨୬୦୦୦ ଟଙ୍କା ହୋଇଥିଲା । ପ୍ରଜାମାନଙ୍କଠାରୁ ରାଜସ୍ୱ ଟଙ୍କା ବା କଉଡ଼ିରେ ଆଦାୟ ହେଉ ନ ଥିଲା । କ୍ଷେତ୍ରରେ ଫସଲର ଅବସ୍ଥା ଦେଖି, ତାହା ଅନୁସାରେ ଫସଲର କେତେକ ଅଂଶ ରାଜସ୍ୱ ସ୍ୱରୂପ ଆଦାୟ ହେଉଥିଲା । ଶରତକାଳ ରାଜସ୍ୱ ଆଦାୟର ଉପଯୁକ୍ତ ସମୟ ଥିଲା । 'ଭେଦେଇ' ଧାନରୁ ରାଜସ୍ୱ ଦିଆଯାଉ ଥିଲା । ଜମିଦାର ବା ରାଜାମାନେ କେବଳ ଟଙ୍କା ରାଜସ୍ୱ ଦେଉଥିଲେ । ଓଡ଼ିଶା ଜଙ୍ଗଲରେ ହାତୀ ବହୁତ ଥିଲା ; ପ୍ରତିବର୍ଷ ରାଜସ୍ୱ ସଙ୍ଗେ ହାତୀ କେତୋଟି ମୋଗଲ ଦରବାରକୁ ଉପହାର ସ୍ୱରୂପ ପଠାଇବା ଓଡ଼ିଶା ସରକାରଙ୍କର ପ୍ରଥା ହୋଇ ପଡ଼ିଥିଲା । ଧାନ ଯାହା ରାଜସ୍ୱ ଆଦାୟ ହେଉଥିଲା, ତାହା କେତେକ ଓଡ଼ିଶା ମଧ୍ୟରେ ବିକ୍ରି ହେଉଥିଲା, ଏବଂ ଅବଶିଷ୍ଟ ଧାନ ଓଡ଼ିଶା ବନ୍ଦରମାନଙ୍କରୁ ଜାହାଜରେ ବଙ୍ଗଦେଶକୁ ଯାଉଥିଲା ।

ମୋଗଲ ସମ୍ରାଟମାନଙ୍କ ମଧ୍ୟରେ ଆଓରଙ୍ଗଜେବ ସର୍ବାପେକ୍ଷା ନିର୍ଦ୍ଦୟ ସମ୍ରାଟ ଥିଲା ବୋଲି ଇତିହାସରୁ ବୋଧହୁଏ । ମାତ୍ର ସେହି ଆଓରଙ୍ଗଜେବଙ୍କ ଶାସନ କାଳରେ ଓଡ଼ିଶାର ରାଜସ୍ୱ ଆଦାୟ ସମ୍ବନ୍ଧରେ ଯେଉଁ ପ୍ରମାଣ ମିଳୁଛି ସେଥିରୁ ବୋଧହୁଏ ଯେ ମୋଗଲ ସମ୍ରାଟମାନେ ରାଜସ୍ୱ ଆଦାୟରେ

ପ୍ରଜାମାନଙ୍କ ଦୁଃଖ, ଭାବ ଅଭାବ ପ୍ରତି ବିଶେଷ ଦୃଷ୍ଟି ଦେଉଥିଲେ । ଖାଫି ଖାନ୍ ତାଙ୍କ ତାରିଖ୍‌ରେ ଲେଖିଥିଲେ, ତାହାଙ୍କ ସମୟରେ ଜଣେ ଦେବାନଙ୍କ ଅତ୍ୟାଚାରରେ ପ୍ରଜାମାନେ ଘୋର କଷ୍ଟ ପାଉଥିଲେ । ତାଙ୍କ ଜମା-ବନ୍ଦ ସ୍ଥାନେ ସ୍ଥାନେ ୨।୩ ଗୁଣ ହୋଇଥିଲା । ପ୍ରଜାମାନେ ଜମା ଆଦାୟ ଦେଇ ନ ପାରି ଗ୍ରାମ ଛାଡ଼ି ଚାଲି ଯାଇଥିଲେ, ଏବଂ ଗ୍ରାମ ମରୁଭୂମିରେ ପରିଣତ ହୋଇ ଯାଇଥିଲା । ପ୍ରଜାମାନେ ଏତେ ବ୍ୟାକୁଳ ହୋଇ ପଡ଼ିଥିଲେ ଯେ ସ୍ତ୍ରୀ ପୁତ୍ର ପର୍ଯ୍ୟନ୍ତ ବନ୍ଧାଦେଇ କେବଳ ଜୀବନ ମାତ୍ର ଧରି ରହିଥିଲେ । ଅଉରଙ୍ଗଜେବ ଏହି ଦୁଃଖ କାହାଣୀରେ ବିଗଳିତ ହୋଇ ଜଣେ ନୂତନ ଦେବାନ ପଠାଇ ପ୍ରଜାମାନଙ୍କୁ ଆଶ୍ୱାସନା ଦେଇଥିଲେ । ମୋଟରେ ଜଣେ ଜଣେ ଦୁର୍ଦ୍ଦାନ୍ତ ଦେବାନଙ୍କ ଉଦ୍ଧତ ସ୍ୱଭାବ ସତ୍ତ୍ୱେ, ଜମାବନ୍ଦ ଓ ରାଜସ୍ୱ ଆଦାୟ ପ୍ରଜାହିତ ଉଦ୍ଦେଶ୍ୟରେ ହେଉଥିଲା । ଭୂମିରାଜସ୍ୱ ବାଦ୍, ପଥକର, ଗୃହକର, ବଣିକକର, ହାଟତୋଲା, ଅବକାରୀକର, ଜୁଆକର, ଅଦାଲତ ଦ୍ୱାରା ଆଦାୟ ଋଣ ଉପରେ କର ପ୍ରଭୃତି ନାନାପ୍ରକାର କର ଆଦାୟ ହେଉଥିଲା; ମାତ୍ର ଶସ୍ୟହାନି ବା ଦୁର୍ଭିକ୍ଷ ବେଳେ କର ହ୍ରାସ ବା ଆଦାୟ ବନ୍ଦ କରାଯାଉଥିଲା । ଅଉରଙ୍ଗଜେବ ପରେ ପ୍ରଜାମାନଙ୍କ ଉପରୁ ସେହିପରି କୌଣସି ଅନାଟନ ବର୍ଷରେ ୮୦ ପ୍ରକାର କର ଉଠାଇ ଦେଇଥିଲେ । ଏହିରୂପେ ମୋଗଲ ଶାସନରେ କର ଆଦାୟ ପ୍ରଜାଙ୍କ ସୁଖ ଦୁଃଖ ଉପରେ ବହୁତ ନିର୍ଭର କରୁଥିଲା ।

ଜାଗିରଦାର ଓ ଜମିଦାର—ଜମିଦାର ପଦ ସୃଷ୍ଟି ମୋଗଲ ଶାସନରୁ ଆରମ୍ଭ ହୋଇ । ପୂର୍ବରୁ କୁହାଯାଇଛି, ଗଜପତିମାନଙ୍କ ଶାସନରେ ରାଜକୀୟ କର୍ମଚାରୀମାନେ ନିଜ ନିଜର କାର୍ଯ୍ୟର ଗୁରୁତ୍ୱ ଓ ପଦ ମର୍ଯ୍ୟାଦା ଅନୁସାରେ ବେତନ ନ ପାଇ ଭୂମି ଜାଗିର ବା ହେତା ସ୍ୱରୂପ ପାଉଥିଲେ । ଗଜପତିଙ୍କ କାଳରେ ଭୂମି ଉପରେ ଏହି କର୍ମଚାରୀ-ମାନଙ୍କର କୌଣସି ସ୍ଥାୟୀ ସତ୍ତ୍ୱ ଜନ୍ମି ନ ଥିଲା । ମୋଗଲମାନେ ଶାସନ-

ଭାର ନେବା ସଙ୍ଗେ ଏହିପରି ଜାଗିର ପ୍ରଥା ବିଶେଷ ସୁବିଧାଜନକ ଦେଖିଲେ । ମୋଗଲ ଶାସନକର୍ତ୍ତାମାନେ ସାଧାରଣତଃ ଶାସନର ଅତିସୂକ୍ଷ୍ମ ବିଷୟ ପ୍ରତି ସେତେ ଦୃଷ୍ଟି ଦେଇପାରୁ ନ ଥିଲେ । ସୁତରାଂ ସେମାନେ ପୂର୍ବ ପ୍ରଚଳିତ ବିଧାନ ସମ୍ପୂର୍ଣ୍ଣ ରକ୍ଷାକରି ରାଜସ୍ୱ ଅଦାୟ ଓ ଶାସନ ପରିଚାଳନା କରିବାକୁ ଲାଗିଲେ । ଯେଉଁ କର୍ମଚାରୀମାନେ ନିଜ ନିଜ ଅଞ୍ଚଳର ରାଜସ୍ୱ ପୂର୍ଣ୍ଣରୂପେ ଅଦାୟ ଦେଉଥିଲେ, ଏବଂ ଶାନ୍ତି ଓ ଶୃଙ୍ଖଳାରେ ଶାସନ ଚଳାଉଥିଲେ, ସେମାନେ ମଧ୍ୟ ପୁରୁଷାନୁକ୍ରମେ ସେହିସବୁ ଜାଗିର ଭୋଗ କରୁଥିଲେ । ପୁରୁଷାନୁକ୍ରମେ ଜାଗିରମାନ ଭୋଗ ଦଖଲ କରିଯିବାରୁ ରାଜଦୃଷ୍ଟିରେ କର୍ମଚାରୀମାନଙ୍କର ମୌରସୀ ସ୍ୱତ୍ୱ ସାବ୍ୟସ୍ତ ହେଉ ନ ଥିଲେହେଁ କର୍ମଚାରୀମାନେ ସେସବୁ ଆପଣାର ମୌରସୀ ସ୍ୱତ୍ୱ ବୋଲି ବିଚାରୁଥିଲେ । ଏହା ଥିଲା ମୋଗଲବନ୍ଦୀର ଜାଗିରଦାରଙ୍କ ଅବସ୍ଥା । ଗଡ଼ଜାତ ଓ ଅନ୍ୟାନ୍ୟ ସାମନ୍ତ ରାଜାମାନଙ୍କର ରାଜ୍ୟମାନଙ୍କୁ ଜମିଦାରୀ କୁହାଯାଉଥିଲା । ଏବଂ ଉକ୍ତ ରାଜାମାନଙ୍କୁ ଜମିଦାର ବୋଲି କୁହା ଯାଉଥିଲା । ଖୋରଧା, ସାରଙ୍ଗଗଡ଼, ଆଳି, କନିକା, କୁଜଙ୍ଗ ଏବଂ ଗଡଜାତ ରାଜାମାନେ ଜମିଦାର ଥିଲେ । ସେମାନଙ୍କର ନିଜ ନିଜ ଜମିଦାରୀ ଉପରେ ମୌରସୀ ସ୍ୱତ୍ୱଥିଲା; ଏବଂ କେହି ସେମାନଙ୍କ ମଧ୍ୟରୁ ରାଜସ୍ୱ ଅଦାୟରେ ତ୍ରୁଟିକଲେ, ବା ଶାସନରେ ଅଶାନ୍ତି ଘଟାଇଲେ, ସେମାନଙ୍କର ସ୍ୱତ୍ୱ ଖାସ ହେଉ ନ ଥିଲା, ବରଂ ଅପରାଧର ଗୁରୁତା ଅନୁସାରେ ସେମାନଙ୍କ ସ୍ଥଳରେ ସେମାନଙ୍କ ପୁତ୍ର ପୌତ୍ରାଦମାନେ ଜମିଦାରୀ ଭୋଗ କରୁଥିଲେ । ମାତ୍ର ସମ୍ରାଟଙ୍କର ରାଜସ୍ୱ ସମ୍ପର୍କୀୟ ସକଳ ନିୟମମାନ ମୋଗଲବନ୍ଦୀରେ ଯେପରି ଜମିଦାରମାନଙ୍କରେ ପ୍ରଜାମାନଙ୍କ ପ୍ରତି ସେହିପରି ପ୍ରଯୁଜ୍ୟ ଥିଲା । ଆଓରଙ୍ଗଜେବ ପ୍ରଜାଙ୍କ ହିତ ଅର୍ଥରେ କେତେକ ପଣ୍ୟ ପଦାର୍ଥ ଉପରୁ ଥରେ କର ଉଠାଇ ଦେଇ ଏକ ଘୋଷଣା ପ୍ରଚାର କରିଥିଲେ । ସେହି ଘୋଷଣା ପାଳିବାକୁ ଓଡ଼ିଶା ମୂଲକର ସକଳ ଜମିଦାର, ଜାଗିରଦାର

ଫୌଜଦାର , କାନୁନ୍‌ଗୋଇ ପ୍ରଭୃତି ବାଧ୍ୟ ହୋଇଥିଲେ । 'ସମ୍ରାଟଙ୍କ ଦଣ୍ଡ ଭୟରେ' ସେ ଘୋଷଣା ପାଳିବାକୁ ସମସ୍ତଙ୍କୁ ଆଦେଶ ହୋଇଥିଲା । ମାତ୍ର ସମ୍ରାଟଙ୍କର ଏତେ ସାବଧାନତା ସତ୍ତ୍ୱେ ଜମିଦାର ଓ ଜାଯ଼ଗିରଦାରମାନେ ବେଳେବେଳେ ଉତ୍କୋଚ ଓ ଉପହାରାଦ ଦ୍ୱାରା ସୁବାଦାର ଓ ଫୌଜଦାରମାନଙ୍କୁ ଅସ୍ତୁଷ୍ଟ କରି ନିଜ ନିଜ ଜମିଦାରୀ ଓ ଜାଯ଼ଗିର୍ ମଧ୍ୟରେ ଅଯଥା ପ୍ରଜାପୀଡନ କରୁଥିଲେ । ଇଂରେଜବଣିକମାନେ ବାଲେଶ୍ୱର ବନ୍ଦରକୁ ବାଣିଜ୍ୟପଦାର୍ଥମାନ ବୋହିନେବା ପଥରେ ଜାଯ଼ଗିର-ଦାର ଓ ଜମିଦାରମାନଙ୍କୁ ଏତେ ଅଯଥା ପଣ୍ୟକର ଦେଉଥିଲେ ଯେ ପ୍ରତି ଶହେ ମାଇଲ ପରେ ବଣିଜର ମୂଲ୍ୟ ପ୍ରାୟ ତିନଗୁଣ ବଢ଼ିଯାଉଥିଲା ।

ଦେଶର ଅବସ୍ଥା— ଏତେ ବିଦ୍ରୋହ, ଆକ୍ରମଣ, ଅରାଜକତା ଓ ଅତ୍ୟାଚାର ମଧ୍ୟରେ ଦେଶବାସିଙ୍କର ସାଧାରଣ ଅବସ୍ଥା ସେତେ ମନ୍ଦ ନଥିଲା । ଏହାର ପ୍ରଧାନ କାରଣ ପୂର୍ବେ କୁହାଯାଇଛି, ଗ୍ରାମମାନ ସ୍ୱତନ୍ତ୍ର ଶାସନ ବଳରେ ସକଳ ବହିଃସ୍ଥ ଝଞ୍ଜାରୁ ଏକପ୍ରକାର ନିରାପଦ ଥିଲା । ଖୋରଧା, ଅଳି, କୁଜଙ୍ଗ, କନିକା, ମୟୂରଭଞ୍ଜ, ପ୍ରଭୃତିର ପ୍ରଜାବିଦ୍ରୋହରୁ ପ୍ରମାଣ ମିଳେ ଯେ ଦେଶବାସୀ ଦୈହିକ ଓ ମାନସିକ ବଳ ସରସ୍ୱ ଏବଂ ଯୁଦ୍ଧ ଶିକ୍ଷା କରି ଅତ୍ୟାଚାର ବିରୁଦ୍ଧରେ ବାଧାଦେଇ ଆତ୍ମରକ୍ଷା କରିବାର ପ୍ରବୃତ୍ତି ହରାଇ ନ ଥିଲେ । ଓଡ଼ିଶା ମୋଗଲ୍ ଅଧିକାରରେ ଆସିବାପରେ ମାହାଲ ବା ମୌଜାମାନଙ୍କରେ ଥିବା ଦୁର୍ଗର ଓ ସୈନ୍ୟବଳର ସଂଖ୍ୟା କମିଯାଇଥିଲା । କାଳକ୍ରମେ ସେ ସୈନ୍ୟବଳ କମି ଯାଇଥିବ; ମାତ୍ର ବର୍ତ୍ତମାନଯୁଗରେ ଶତାଧିକ ବର୍ଷ ନିରସ୍ତ୍ର ରହିବା ପରେ ଦେଶର ଜୀବନ-ଶୂନ୍ୟ ଗ୍ରାମକୋଣରେ ପାଇକ ଖଣ୍ଡାଏତମାନେ ଯେ ଢାଲ ତରବାରି ବର୍ଚ୍ଛାଦିର ପୂଜା ଗୋପନରେ କରୁଛନ୍ତି, ତହିଁରୁ ମୋଗଲ ରାଜତ୍ୱର ଶେଷପର୍ଯ୍ୟନ୍ତ ସାମରିକ ଶକ୍ତି ଗ୍ରାମେ ଗ୍ରାମେ ଜୀବିତ ଥିବାର ପ୍ରମାଣ ମିଳେ । ଓଡ଼ିଶାର ପାଇକ ଖଣ୍ଡାଏତମାନେ ମଧ୍ୟ ପୂର୍ବବର୍ତ୍ତୀ ଶାସକପରି ମୋଗଲ ଶାସନରେ ମୋଗଲ ସୈନ୍ୟଶ୍ରେଣୀ ଭୁକ୍ତ ରହିଥିଲେ ।

ମୋଗଲ ରାଜତ୍ୱରେ ସାମାଜିକ ବିଧାନମାନ କ୍ରମେ ଜଟିଳ ହୋଇ ଉଠିଥିଲା । କୌଲୀନ୍ୟ ପ୍ରଥା ସମାଜରେ ପଶିଲା । ପ୍ରାଚୀନ ସ୍ୱାଧୀନ ଭାବରଙ୍ଗ ଓ ବିଜୟ ଅଭିଳାଷ କ୍ରମେ ଅବନତ ହୋଇ ସମାଜରେ ବୃଥା ଗରିମା ବଢ଼ାଇବାରେ ଲାଗିଲା । ବ୍ରାହ୍ମଣମାନେ ସାମନ୍ତ, ଭୂମିଶ୍ର, ବୈଦିକ; ପୁଣି ପ୍ରତି-ବିଭାଗ ଓ ତାହାର ଉପବିଭାଗ ମଧ୍ୟରେ ଉଚ୍ଚ ନୀଚ ଭେଦାଭେଦଭାବ ବିଶେଷ ବଢ଼ିଗଲା । ବ୍ରାହ୍ମଣଙ୍କ ଆଦର୍ଶରେ କରଣ ଓ ଅନ୍ୟାନ୍ୟ ଜାତିଙ୍କ ମଧ୍ୟରେ ଏହି କୌଲୀନ୍ୟ ପ୍ରଥା ପଶିଲା । ସେହି ସାମନ୍ତ ସୃଷ୍ଟିରେ ରାଜାମାନେ ବ୍ରାହ୍ମଣ-ମାନଙ୍କର ବିଶେଷ ପାଣ୍ଡିତ୍ୟ ଓ ଗୁଣଗୌରବମାନ ଆଦର କରୁଥିଲେ ।

ସମସ୍ତ ଲୁଣ୍ଠନ, ଅତ୍ୟାଚାର ସତ୍ତ୍ୱେ ଦେଶର ଆର୍ଥିକ ଅବସ୍ଥା ମନ୍ଦ ନଥିଲା । କୃଷି ବାଣିଜ୍ୟରେ ଦେଶବାସୀ ଆପଣାର ଆର୍ଥିକ ଅବସ୍ଥାର ସ୍ୱଚ୍ଛଳତା ବଢ଼ାଉଥିଲେ ।

ବାଣିଜ୍ୟ ଓ ବ୍ୟବସାୟ—ବାଣିଜ୍ୟ ବ୍ୟବସାୟ ଗଜପତିଙ୍କ ଉତ୍କଳରେ ଯେପରି ନିରାପଦରେ ଚାଲିଥିଲା ମୋଗଲ ରାଜତ୍ୱରେ ଅବଶ୍ୟ ସେପରି ନିରାପଦରେ ଚାଲି ନ ଥିଲା । ବାରମ୍ବାର ଆକ୍ରମଣ ଓ ଲୁଣ୍ଠନ, ଏବଂ ତନ୍ମଧ୍ୟରେ ପୁଣି ମୋଗଲ କର୍ମଚାରୀ ଓ ଶାସନକର୍ତ୍ତାମାନଙ୍କର ଯଥେଚ୍ଛା ଅତ୍ୟାଚାରରେ ଶିଳ୍ପ ବାଣିଜ୍ୟରେ ବହୁ ବାଧା ପଡ଼ୁଥିଲା । ତଥାପି ସବୁ ବାଧା ସତ୍ତ୍ୱେ ଦେଶର ବ୍ୟବସାୟୀ ଜାତିମାନେ ପାରମ୍ପରିକ ବିଧାନ ଅନୁସରଣ କରି ଜାତିଧର୍ମ ରକ୍ଷା କରିଥିଲେ । ସ୍ୱାଧୀନ ଉତ୍କଳର ସର୍ବବିଧ ବ୍ୟବସାୟ ମୋଗଲରାଜତ୍ୱରେ ଥିଲା । ବ୍ୟବସାୟମାନଙ୍କ ମଧ୍ୟରେ କୃଷି ବ୍ୟତୀତ ମାଛଧରା, ଲୁଣମରା, ଲୁଗା, ପାଟ, ଟସର, ସୁନାରୁପାର କାମ, ହୀରା, ପଥର, ପିତଳ, କଂସା ଓ ଲୁହାର କାମ, ସିଂଘ ଓ ହାତୀଦାନ୍ତ କାମ, ଏବଂ ମସିଣା ପ୍ରଭୃତି ମୋଗଲ ଓଡ଼ିଶାର ପ୍ରଧାନ ଶିଳ୍ପ ମଧ୍ୟରେ ଗଣ୍ୟ । ଏହି ସବୁ ବାଣିଜ୍ୟ ଉପରେ ବହୁତ ଶୁଳ୍କ ଧାର୍ଯ୍ୟ ହେଉଥିଲା । ତଥାପି ବଣିକ ପଦାର୍ଥର ଆଦର ଓ ବିଦେଶକୁ ରପ୍ତାନି ଏତେ ହେଉଥିଲା ଯେ ବାଣିଜ୍ୟ ଲାଭଜନକ ବ୍ୟବସାୟ ଥିଲା ।

ଓଡ଼ିଶା ବାଣିଜ୍ୟର ଲାଭଦୃଷ୍ଟିରେ ଇଂରେଜ, ଫରାସି, ପର୍ତ୍ତୁଗିଜ, ଡଚ, ଦିନାମାର ପ୍ରଭୃତି ଇଉରୋପୀୟ ବଣିକମାନେ ଓଡ଼ିଶାରେ ବାଣିଜ୍ୟ କୋଠିମାନ ସ୍ଥାପନ କରିଥିଲେ ।

ମାଛ ଧରା—ମାଛ ଧରି ବ୍ୟବସାୟ କରିବା ଚିଲିକା ଓ ସମୁଦ୍ର-କୂଳବର୍ତ୍ତୀ କେଉଟ ନୋଳିଆମାନଙ୍କର ଏକମାତ୍ର ଜୀବିକା ଥିଲା । ମାଛ ଧରିବା ପାଇଁ ସେମାନଙ୍କୁ କୌଣସି କର ଦେବାକୁ ପଡ଼ୁ ନ ଥିଲା । ଏହିପରି ବିନା ଶୁଳ୍କରେ ମାଛ ଧରିବା ବ୍ୟବସାୟ ୧୮୯୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଚାଲିଥିଲା । ସେହି ବର୍ଷ ଚିଲିକାକୂଳର ପ୍ରତ୍ୟେକ ମତ୍ସ୍ୟଜୀବୀଙ୍କ ଉପରେ ଆଠଅଣା ଲେଖାଏଁ କର ଧାର୍ଯ୍ୟ କରାଗଲା । ସାମୁଦ୍ରିକ ବା ଲୁଣିମାଛ ଓଡ଼ିଶାର ଗ୍ରାମେ ଗ୍ରାମେ ବିକ୍ରି ହେଉଥିଲା । ମତ୍ସ୍ୟ-ବ୍ୟବସାୟୀମାନେ ମାଛ ଶୁଖାଇ ଶୁଖୁଆ କରି ବେପାର ଚଳାଉଥିଲେ । କେବଳ ବର୍ଷାକାଳ ବ୍ୟତୀତ ଅନ୍ୟ ଋତୁମାନଙ୍କରେ ମାଛ ଧରା ଯାଉଥିଲା ; ବର୍ଷାକାଳରେ ଶୁଖୁଆର ବିଶେଷ କାରବାର ଚାଲୁଥିଲା । ଶୁଖୁଆ ମଧ୍ୟ ଜାହାଜରେ ଦୂରଦେଶମାନଙ୍କୁ ଯାଉଥିଲା ।

ଲୁଣ— ଲୁଣ ମାରିବା ଉପକୂଳବାସୀଙ୍କର ପ୍ରଧାନ ବ୍ୟବସାୟ ଥିଲା ; ଜାଗିରଦାରମାନେ ନିଜ ନିଜ ଇଲାକା ମଧ୍ୟରେ ଲୁଣ ମାରିବା ନିମନ୍ତେ ପ୍ରଜାମାନଙ୍କଠାରୁ କର ନେଉ ନ ଥିଲେ । ଓଡ଼ିଶା ଉପକୂଳରେ ମାରିବା ପ୍ରଣାଳୀ ଅନୁସାରେ 'ପଙ୍ଗା' ଓ 'କରକଚ' ନାମରେ ଦୁଇ ପ୍ରକାର ଲୁଣ ଥିଲା । ସମୁଦ୍ରପାଣି ସିଝିକରି ଯେଉଁ ଲୁଣ ମିଳୁଥିଲା, ତାହା ପଙ୍ଗା ଲୁଣ । କରକଚ ଲୁଣ ସୂର୍ଯ୍ୟ କିରଣରେ ପ୍ରସ୍ତୁତ ହେଉଥିଲା । ପଙ୍ଗା ବଡ଼ ସୂକ୍ଷ୍ମ ଓ ଚିନି ପରି ପରିଷ୍କାର ; କରକଚ ମାଟିଆ ଓ ପଗଡ଼ ଈଷତ୍ ବଡ଼ । କରକଚ ସାଧାରଣତଃ ଚିଲିକାଉପକୂଳରେ ହେଉଥିଲା ; ପଙ୍ଗାଲୁଣ ସମୁଦାୟ ସମୁଦ୍ରକୂଳବର୍ତ୍ତୀ ସ୍ଥାନମାନଙ୍କରେ କରାଯାଉଥିଲା । ଓଡ଼ିଶାର ପଙ୍ଗାଲୁଣ ସମୁଦାୟ ଭାରତମଧ୍ୟରେ ସର୍ବାପେକ୍ଷା ସୂକ୍ଷ୍ମ ଓ ରୁଚିକର ଥିଲା ।

ଓଡ଼ିଶାର ନଗାବାଟେ ଲୁଣ ମଧ୍ୟପ୍ରଦେଶ, ଛୋଟନାଗପୁର ପ୍ରଭୃତି ଅଞ୍ଚଳକୁ ଯାଉଥିଲା । ଇଂରେଜ-ବଣିକମାନେ ଓଡ଼ିଶା ଲୁଣରେ ମଧ୍ୟ ବାଣିଜ୍ୟ କରୁଥିଲେ, ଏବଂ ସମୁଦ୍ର ଉପରେ ଦୂର ବିଦେଶକୁ ନେଉଥିଲେ । ଇଂରେଜ ଓ ଫରାସୀଙ୍କ ମଧ୍ୟରେ ଯୁଦ୍ଧ ଚାଲିବାରୁ ଗୋଳା ବାରୁଦ ଇତ୍ୟାଦି ନିମନ୍ତେ ବିସ୍ତର ଲୁଣ ଅବଶ୍ୟକ ହେଉଥିଲା ; ଏବଂ ଓଡ଼ିଶା ଲୁଣ ସେ ଅଭାବ ବହୁ ପରିମାଣରେ ଦୂର କରୁଥିଲା । ସପ୍ତଦଶ ଶତାବ୍ଦୀରେ ଲୁଣ ମାରିବା ଖର୍ଚ୍ଚ ପ୍ରତ୍ୟେକ ଏକଶତ ମହଣ ନିମନ୍ତେ ୬୦ ଟଙ୍କା ପର୍ଯ୍ୟନ୍ତ ପଡ଼ୁଥିଲା । ବଣିକମାନେ ଲୁଣ-ବ୍ୟବସାୟରେ ଏତେ ଲାଭ କରୁଥିଲେ ଯେ ବଜାରରେ ଲୁଣର ମୂଲ୍ୟ ମହଣ ପ୍ରତି ୨ ଟଙ୍କା ପଡ଼ୁଥିଲା । ପ୍ରଥମରୁ ଲୁଣ ନିଷିଦ୍ଧ ଥିଲେ ସୁଦ୍ଧା, ମୋଗଲ ଶାସନରେ ଏକଶତ ମହଣ ନିମନ୍ତେ ୫ ଟଙ୍କା ପର୍ଯ୍ୟନ୍ତ କର ଧାର୍ଯ୍ୟ ହୋଇଥିଲା । ଲୁଣ ବିଶେଷ ଅପର୍ଯ୍ୟାପ୍ତ ପରିମାଣରେ ମରି ଯାଉଥିଲା । କେବଳ ହୁଗଲୀରେ ପ୍ରତିବର୍ଷ ୮ ଲକ୍ଷ ୫୦ ହଜାର ମହଣ ଲୁଣ ଆମଦାନୀ ହେଉଥିଲା । ସେହି ଅନୁପାତରେ ଦେଖିଲେ ଓଡ଼ିଶା ଉପକୂଳରେ କୋଟି କୋଟି ମହଣ ଆମଦାନୀ ହେଉଥିବାର ଅନୁମାନ କରାଯାଏ ।

ଲୁଗା ଓ ପାଟ—ଲୁଗା ଓ ପାଟ, ଟସର ଓଡ଼ିଶାର ପ୍ରଧାନ ବାଣିଜ୍ୟ ପଦାର୍ଥ ଥିଲା । ଲୁଣ ପରି ବସ୍ତ୍ର-ବ୍ୟବସାୟ ପ୍ରଚୁର ପରିମାଣରେ ଇତିହାସର ଆରମ୍ଭକାଳରୁ ଚାଲୁଥିଲା । ପ୍ରଧାନତଃ ଓଡ଼ିଶା ବସ୍ତ୍ର-ବ୍ୟବସାୟ ଲୋଭରେ ଇଉରୋପୀୟ ବଣିକମାନେ ଓଡ଼ିଶାରେ ସ୍ୱତନ୍ତ୍ର ବାଣିଜ୍ୟ ଚଳାଉ ଥିଲେ; ଏବଂ ବାଣିଜ୍ୟର ଆରମ୍ଭରେ ଇଂରେଜ 'ଇଷ୍ଟ ଇଣ୍ଡିଆ-କୋମ୍ପାନୀ' ଓଡ଼ିଶାର ଖଣ୍ଡିଏ ଛିଟ ଲୁଗା ରାଜଭକ୍ତିର ନିଦର୍ଶନ ସ୍ୱରୂପ ୧୬୩୨ରୁ ୧୬୩୨ ଖ୍ରୀଷ୍ଟାବ୍ଦ ମଧ୍ୟରେ ଇଂଲଣ୍ଡ ରାଜା ପ୍ରଥମ ଚାର୍ଲସଙ୍କୁ ଉପହାର ଦେଇଥିଲେ । ଛିଟଲୁଗା ବିଶେଷ ସୁନ୍ଦର ଓ ରୁଚିକର ଭାବରେ ହେଉଥିଲା; ବାଲେଶ୍ୱରର 'ମସ୍ଲିନ୍'ମଧ୍ୟ ବିଶେଷ ଆଦରଣୀୟ ଥିଲା । ମୋଟା ଓ ସରୁ ଲୁଗା, ଚାନ୍ଦୁଆ, ବିଛଣା ଚାଦର,

ତା ପଲଙ୍କପୋଷ, ଏବଂ ପାଟ ଓ ଟସର ମଧ୍ୟରେ ମଠା, ବଉଳପାଟ, ପାଙ୍କ, କାଣ୍ଠିଆ, ପାଟ, ଖଣ୍ଡୁଆ ପ୍ରଭୃତି ବହୁବିଧ ବସ୍ତ୍ର ତିଆରି ହେଉଥିଲା । ଓଡ଼ିଶାର ଅଭାବ ମେଣ୍ଟାଇ ବଳକା ଜିନିଷ ଜାଭା, ବାଲି, ମାଳଦ୍ୱୀପ, ଚୀନ, ପାରସ୍ୟ ଏବଂ ଭାରତର ନାନା ସ୍ଥାନକୁ ରପ୍ତାନି ହେଉଥିଲା । ଚନ୍ଦ୍ରକୋଣା, ଘାଟାଲ ଦାସପୁର ପ୍ରଭୃତି ମେଦିନୀପୁର ଜିଲ୍ଲାର ସ୍ଥାନମାନ ; ବାଲେଶ୍ୱରରେ ବାଲେଶ୍ୱର, ସୋରୋ, ଭଦ୍ରଖ, କେଦାରପୁର, ଜାଞ୍ଜିପୁର, ହରିପୁର ପ୍ରଭୃତି କେନ୍ଦ୍ରମାନ ; କଟକରେ ଗୋପାଳ ପୁର, ଗୁଲନଗର, ଜଙ୍କୋଠ, କିଶୋର-ନଗର, ରଘୁନାଥପୁର, ହରିହରପୁର, କେନ୍ଦ୍ରାପଡ଼ା ପ୍ରଭୃତି; ଏବଂ ପୁରୀରେ ଓଲିଙ୍ଗ, ଘୋରେଡ଼ିଆ, ବେଗୁନିଆ, ବୋଲଗଡ଼, ଅଦଲାବାଦ, ପିପିଲି, କାକଟପୁର, ଚନ୍ଦ୍ରକୋଠ, କଳାପାହାଡ଼ ପ୍ରଭୃତି ସ୍ଥାନମାନ ଲୁଗା ଓ ପାଟ ପାଇଁ ପ୍ରସିଦ୍ଧ ଥିଲା । ଗଡ଼ଜାତମାନଙ୍କରେ ଲୁଗା ଓ ପାଟ ପ୍ରଚୁର ତିଆରି ହେଉଥିଲା । ଅଦ୍ୟାପି ମଧ୍ୟ ପୂର୍ବ ବ୍ୟବସାୟ ସମୃଦ୍ଧିର ସ୍ମାରକ ସ୍ୱରୂପ ଉକ୍ତ ସ୍ଥଳମାନଙ୍କରେ ଲୁଗା ଓ ପାଟ ପ୍ରସ୍ତୁତ ହେଉଅଛି ।

କଂସାପିତ୍ତଳ ବାସନ — କଂସା ପିତ୍ତଳ ବାସନ ଓ ଅନ୍ୟାନ୍ୟ ଜିନିଷ ପ୍ରଚୁର ପ୍ରସ୍ତୁତ ହୋଇ ଦେଶ ବିଦେଶକୁ ରପ୍ତାନି ହେଉଥିଲା । ଏଥି ନିମନ୍ତେ ଉପାଦାନ ଓଡ଼ିଶାମଧ୍ୟରେ ଯାହା ମିଳୁଥିଲା , ବାକି ଜାପାନରୁ ତମ୍ବା , ଏବଂ ବର୍ତ୍ତମାନ 'ଷ୍ଟ୍ରେଟ ସେଟଲମେଣ୍ଟରୁ' ଟିଣ ଇତ୍ୟାଦି ଉପାଦାନମାନ ସାଗର ସେପାରିରୁ ଆସି ଓଡ଼ିଶା କଂସାରି ଶାଳରେ ଦିବାରାତ୍ର କାର୍ଯ୍ୟ ଚଳାଉଥିଲା । ପୁରୀରେ ବାଳକାଟି, କଂସାରିବନ୍ଧ, କଣ୍ଟିଲୋ; ବାଲେଶ୍ୱରରେ ରେମୁଣା , ବାଲେଶ୍ୱର ଓ ଓରଦା ପ୍ରଭୃତି ସ୍ଥାନ; ଏବଂ ମେଦିନୀପୁରରେ ଘାଟାଲ , ଖରାର, ମେଦିନୀପୁର, ଚନ୍ଦ୍ରକୋଣା, ରାମଜୀବନପୁର ପ୍ରଭୃତି ପ୍ରଧାନ ପ୍ରଧାନ କଂସାରି କେନ୍ଦ୍ର ଥିଲା । ଓଡ଼ିଶାର କଂସାବାସନ ଦୂରଦେଶ ମାନଙ୍କୁ ରପ୍ତାନି ମଧ୍ୟ ହେଉଥିଲା ।

ଅନ୍ୟାନ୍ୟ ଶିଳ୍ପ — ଏହିସବୁ ବଣିଜ ବାଦ ନୀଳଗିରିର ମୁଗୁନିପଥର ବାସନ ଦେଶ ଓ ବିଦେଶରେ ବିଶେଷ ଆଦରଣୀୟ

ସାମଗ୍ରୀ ଥିଲା । ପଥରର ନାନା କାରୁକାର୍ଯ୍ୟ, ସଉପ ମସିଣା, ଶୀତଳପଟୀ ପ୍ରଭୃତି ଉତ୍ପନ୍ନ ହେଉଥିଲା । ଏହା ବାଦ ଗଡ଼ଜାତମାନଙ୍କରେ ହାତୀଦାନ୍ତର ନାନା ପ୍ରକାର କାମ ଓ କଟକରେ ସୁନାରୂପାର ତାରକସି କାମ ଓ ଶିଙ୍ଗର ନାନା ପ୍ରକାର କାମ ଦେଶ ବିଦେଶରେ ପ୍ରସିଦ୍ଧ ଥିଲା ।

ସାମୁଦ୍ରିକ ବାଣିଜ୍ୟ — ମୋଗଲ ରାଜତ୍ୱରେ ସାମୁଦ୍ରିକ ବାଣିଜ୍ୟରେ ଓଡ଼ିଶା ଉନ୍ନତିର ଶେଷସୀମାରେ ପହଞ୍ଚିଥିଲା । ଓଡ଼ିଆ ବଣିକମାନେ ବଙ୍ଗୋପସାଗର ପାରହୋଇ ଦୂରଦେଶକୁ ଯାଉଥିଲେ । ଏଥିମଧ୍ୟରେ ଇଉରୋପୀୟ ବଣିକମାନଙ୍କର ପ୍ରତିଯୋଗିତା ପର୍ତ୍ତୁଗିଜ ଓ ଆରାକାନ-ବାସିଙ୍କର ଜଳଦସ୍ୟୁବୃତ୍ତି ଓଡ଼ିଆ ବଣିକମାନଙ୍କର ସାମୁଦ୍ରିକ ବାଣିଜ୍ୟରେ ବହୁ ବାଧା ଦେଉଥିଲା । ବନ୍ଦରମାନଙ୍କ ମଧ୍ୟରେ ତମଲୁକ ପୂର୍ବ ବାଣିଜ୍ୟ ଗୌରବ ହରାଇଥିଲା ; ମାତ୍ର ହୁଗୁଲି, ପିପିଲି, ବାଲେଶ୍ୱର, ଧାମରା, କଣିକା, ହରିଶପୁର, ଜମ୍ବୁ, ପୁରୀ ଓ ଚିଲିକା ପ୍ରଭୃତି ବନ୍ଦରମାନ ସାମୁଦ୍ରିକ ବାଣିଜ୍ୟର ପ୍ରଧାନ ସ୍ଥାନ ଥିଲା । ତମଲୁକରେ ଦାସ-ବ୍ୟବସାୟ ଚାଲୁଥିବାର ସାହାବୁଦ୍ଦିନ ତାଲିସ ( ୧୬୬୫ ଖ୍ରୀଷ୍ଟାବ୍ଦରେ ) ଲେଖିଛନ୍ତି । ଅକବରଙ୍କ ରାଜତ୍ୱ କାଳରୁ ଶାଏସ୍ତାଖାଁଙ୍କ ବଙ୍ଗ ସୁବାଦାରି ପର୍ଯ୍ୟନ୍ତ ଆରାକାନବାସୀ ଓ ଫିରିଙ୍ଗି ଜଳଦସ୍ୟୁମାନେ ବଙ୍ଗ ଆକ୍ରମଣକରି ଲୋକଙ୍କୁ ଧରିନେଉଥିଲେ ଏବଂ ବାଲେଶ୍ୱର ଓ ତମଲୁକ ପ୍ରଭୃତି ବନ୍ଦର-ମାନଙ୍କରେ ଦାସରୂପେ ବିକ୍ରିକରୁଥିଲେ । ୧୭୨୪ ଖ୍ରୀଷ୍ଟାବ୍ଦରେ ଭାଲେଣ୍ଟାଇନ ନାମକ ଜଣେ ପର୍ଯ୍ୟଟକ ତମଲୁକ, ବାଲେଶ୍ୱର ଓ ହୁଗୁଲି ବନ୍ଦରମାନଙ୍କର ବାଣିଜ୍ୟ ବିଭବର ସାକ୍ଷ୍ୟ ଦେଇଥିଲେ । ଚାଉଳ ଗହମ ଅନ୍ୟାନ୍ୟ ଜିନିଷ ମଧ୍ୟରେ ଉକ୍ତ ବନ୍ଦରମାନଙ୍କରୁ ବିଶେଷ ପରିମାଣରେ ରପ୍ତାନି ହେଉ-ଥିଲା । ୧୮୮୬ ଖ୍ରୀଷ୍ଟାବ୍ଦରେ ରାଲଫ୍ ଫିଚ୍ ସାକ୍ଷ୍ୟ ଦେଇଥିଲେ । ହୁଗୁଲିବନ୍ଦର ସହିତ ଇଣ୍ଡିଆ, ନେଗାପଟମ, ସୁମାତ୍ରା, ମଲକସ ପ୍ରଭୃତିର ବାଣିଜ୍ୟ ସମ୍ବନ୍ଧ ଥିଲା ବାଣିଜ୍ୟତଃ ହୁଗୁଲୀରୁ ଚାଉଳ, ଲୁଗା, ଘାଟ, ପଟମବସ୍ତ୍ର, ଚିନି, ଲଙ୍କା, ମାଖନ ଇତ୍ୟାଦି ଉକ୍ତ ଦେଶମାନଙ୍କୁ ରପ୍ତାନି କରୁଥିଲେ ।

ବାଲେଶ୍ୱର ବନ୍ଦର ଜାହାଜ ନିର୍ମାଣର ପ୍ରଧାନ କେନ୍ଦ୍ର ଥିଲା । ସୁଜା ଓ ଶାଏସ୍ତାଖାଁଙ୍କ ଶାସନ କାଳରେ ମଧ୍ୟ ବାଲେଶ୍ୱର ବନ୍ଦରରେ ଜାହାଜ ନିର୍ମାଣର ତତ୍ତ୍ୱ ନେବା ନିମନ୍ତେ ଜଣେ ଦାରୋଗା ନିଯୁକ୍ତ ଥିଲେ । ପ୍ରାଚ୍ୟସମୁଦ୍ରରେ ଶାନ୍ତିରକ୍ଷା ନିମନ୍ତେ ମୋଗଲ ସମ୍ରାଟମାନଙ୍କର ଯୁଦ୍ଧ ଜାହାଜମାନ ସେହି ବନ୍ଦରରେ ତିଆର ହେଉଥିଲା । ଜଳଦସ୍ୟୁମାନଙ୍କୁ ଦମନ ଏବଂ ଚଟ୍ଟଗ୍ରାମ ଜୟ କରିବା ନିମନ୍ତେ ବଙ୍ଗ-ସୁବାଦାର ଶାଏସ୍ତାଖାଁ ବାଲେଶ୍ୱର ବନ୍ଦରରେ ବହୁତ ଯୁଦ୍ଧ ଜାହାଜ ତିଆର କରିଥିଲେ ; ଏବଂ ସେଥି ନିମନ୍ତେ ହରିଶପୁର ପ୍ରଭୃତି ସକଳ ଦକ୍ଷିଣାଞ୍ଚଳ ବନ୍ଦରମାନଙ୍କରୁ 'ଖଲାସି' ଓ 'ନାଜର' (ଜାହାଜ-ମିସ୍ତ୍ରୀ ଓ ମୋର ପ୍ରଭୃତି) ମାନଙ୍କୁ ନେଇ ବାଲେଶ୍ୱରରେ ଜୁଟ କରିଥିଲେ । ବାଲେଶ୍ୱର ଓ ଓଡ଼ିଶାର ଅନ୍ୟାନ୍ୟ ବନ୍ଦରମାନଙ୍କରେ ଜାହାଜ-ନିର୍ମାଣ ସାଧାରଣ ଜୀବିକା ଥିଲା ।

କଟକରେ ଗୋଟିଏ ମୁଦ୍ରାଶାଳା ପ୍ରଥମରୁ ଥିଲା, ପରେ ପୁଣି ହରିହରପୁର ( ମୟୂରଭଞ୍ଜ ) ରେ ଆଉ ଗୋଟିଏ ମୁଦ୍ରାଶାଳା ସ୍ଥାପିତ ହୋଇଥିଲା । ଏଥିରେ ମୋଗଲ-ସାମ୍ରାଜ୍ୟ ମଧ୍ୟରେ ପ୍ରଚଳିତ ଟଙ୍କା ପ୍ରଭୃତି ନିର୍ମିତ ହେଉଥିଲା ।

ଏହିରୂପେ ଶିଳ୍ପ ବାଣିଜ୍ୟର ସମୃଦ୍ଧିରେ ଦେଶବାସିଙ୍କ ଆର୍ଥିକ ଅବସ୍ଥା ସଚ୍ଛଳ ଥିଲା । ଏତେ ଆକ୍ରମଣ ଅତ୍ୟାଚାର ସତ୍ତ୍ୱେ ସେମାନେ ବର୍ତ୍ତମାନ-ଯୁଗର ଦାରିଦ୍ର୍ୟ ଦୁଃଖ ଭୋଗ କରୁ ନ ଥିଲେ ।

ସାହିତ୍ୟ ଓ ପାଣ୍ଡିତ୍ୟ—ଗଜପତିଙ୍କ ରାଜତ୍ୱର ପାଣ୍ଡିତ୍ୟ ଚର୍ଚ୍ଚା ଉତ୍କଳରୁ ଲୋପ ପାଇ ନ ଥିଲା । ବ୍ରାହ୍ମଣମାନେ ସାଧାରଣତଃ ସଂସ୍କୃତ ଚର୍ଚ୍ଚାରେ ଅନୁରକ୍ତ ଥିଲେ । ଭୋଇବଂଶୀୟ ରାଜାମାନଙ୍କର ଶାସନ ଦାନ ଓ କୌଲୀନ୍ୟ ପ୍ରଦାନ ତତ୍‌କାଳୀନ ପାଣ୍ଡିତ୍ୟର ସମଧିକ ପରିଚୟ ଦିଏ । କାବ୍ୟ, ନାଟକ, ସ୍ମୃତି, ବ୍ୟାକରଣ, ଦର୍ଶନ, ଅଭିଧାନ, କର୍ମକାଣ୍ଡ, ଯୁଦ୍ଧବିଦ୍ୟା, ଜ୍ୟୋତିଷ, ଆୟୁର୍ବେଦ, ଗଣିତ ପ୍ରଭୃତି ବିଦ୍ୟାରେ ସେ କାଳର ପଣ୍ଡିତମାନେ

ମୂଳ ଗ୍ରନ୍ଥ ଓ ଟୀକା ଆକାରରେ ବହୁ ଗ୍ରନ୍ଥ ପ୍ରଣୟନ କରିଥିଲେ । ଦେଶ ମଧ୍ୟରେ ସ୍ଥାନେ ସ୍ଥାନେ ସଂସ୍କୃତ ଟୋଲ ପୂର୍ବପରି ଥିଲା । ନୂତନ ପ୍ରତିଷ୍ଠିତ ଶାସନମାନ ପାଣ୍ଡିତ୍ୟର ପ୍ରଧାନ କେନ୍ଦ୍ର ଥିଲା ।

ସଂସ୍କୃତ ସାହିତ୍ୟ ବ୍ୟତୀତ ଉତ୍କଳ ସାହିତ୍ୟର ଶ୍ରୀବୃଦ୍ଧି ମୋଗଲ-ରାଜତ୍ୱର ପ୍ରଧାନ ଘଟଣା । ପୂର୍ବବର୍ତ୍ତୀ ଗଜପତିଙ୍କ ରାଜତ୍ୱରେ ଶାରଳାଦାସ ଜଗନ୍ନାଥ ଓ ବଳରାମ ଦାସ ପ୍ରଭୃତି ମନୀଷିମାନଙ୍କ ଉତ୍କଳ-ସାହିତ୍ୟର ଯେ ମାର୍ଗ ଦେଖାଇ ଥିଲେ ମୋଗଲ ରାଜତ୍ୱରେ ତାହା ବିସ୍ତୀର୍ଣ୍ଣ ହୋଇ ବହୁବିଧ ଉପାଦେୟ ଗ୍ରନ୍ଥ ଦ୍ୱାରା ତାହା ପରିପୁଷ୍ଟ ହୋଇଥିଲା । ଏହି ଯୁଗର କବିମାନଙ୍କ ମଧ୍ୟରେ ଦୀନକୃଷ୍ଣ, ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ, ବଣ୍ଠନାଥଖୁଣ୍ଟିଆ ପ୍ରଭୃତି ବହୁ କବି ଉତ୍କଳ-ସାହିତ୍ୟ-କ୍ଷେତ୍ରରେ ନିଜ ନିଜର କୃତିତ୍ୱ ଦେଖାଇ ଯାଇଛନ୍ତି । ଦୀନକୃଷ୍ଣ ଓ ଉପେନ୍ଦ୍ରଭଞ୍ଜ କବିମାନଙ୍କ ମଧ୍ୟରେ ସର୍ବପ୍ରଧାନ ଥିଲେ । ଉପେନ୍ଦ୍ରଭଞ୍ଜ ପ୍ରାଚୀନ ଉତ୍କଳ ସାହିତ୍ୟର ସମ୍ରାଟ ରୂପେ ବିଗତ ୩ଶତ ବର୍ଷ ଧରି ଉତ୍କଳ-ସାହିତ୍ୟ-କ୍ଷେତ୍ରରେ ରାଜତ୍ୱ କରି ଆସୁ ଅଛନ୍ତି । ଅଦ୍ୟାପି ମଧ୍ୟ ବିଦ୍ୟାହୀନ ଗ୍ରାମ କୃଷକ ମୁଖରୁ ଭଞ୍ଜଙ୍କ ଗୀତ ରାଗିଣୀ ନିସୃତ ହୋଇ ଚିତ୍ତ ବିନୋଦନ କରୁଅଛି । ବର୍ତ୍ତମାନ ଯୁଗର ଆଦର୍ଶ ଅନୁସାରେ ସେ କାଳରେ କବି ଦୃଷ୍ଟି ସେପରି ପ୍ରଶସ୍ତ ନ ଥିଲା; ମାତ୍ର ବର୍ତ୍ତମାନ ଉତ୍କଳ ସାହିତ୍ୟ ମୂଳରେ ଭଞ୍ଜ ଯେ ପ୍ରାଣଦାତା ରୂପେ ରହିଛନ୍ତି, କହିବା ବାହୁଲ୍ୟ ମାତ୍ର ।

କେବଳ କାବ୍ୟ ବା କବିତା ନୁହେଁ, ବୈଦ୍ୟ ଶାସ୍ତ୍ର, ଅଭିଧାନ, ଜ୍ୟୋତିଷ, ଗଣିତ, ପୁରାଣ ପ୍ରଭୃତି ବିଷୟରେ ଗ୍ରନ୍ଥମାନ ରଚିତ ହୋଇ ସାହିତ୍ୟର ପୂର୍ଣ୍ଣାଙ୍ଗ ପକ୍ଷରେ ସାହାଯ୍ୟ କରିଥିଲା । ଓଡ଼ିଆ ବିଦ୍ୟାଶିକ୍ଷା ନିମନ୍ତେ ଗ୍ରାମେ ଗ୍ରାମେ ବିଦ୍ୟାଳୟ, ଏବଂ ମୁସଲମାନ ବସତିମାନଙ୍କରେ ମକ୍ତାବ ଥିଲା । ବର୍ତ୍ତମାନ ଶିକ୍ଷା ବିଭାଗ ପରି ସେତେବେଳେ ଶିକ୍ଷା

ସରକାରୀ ଶାସନର ଅନ୍ତର୍ଭୁକ୍ତ ନ ଥିଲା । ଶିକ୍ଷା ନିମନ୍ତେ ସରକାର ସାହାଯ୍ୟ କରୁଥିଲେ; ମାତ୍ର କର୍ତ୍ତୃତ୍ୱ ସରକାର ହସ୍ତରେ ନଥାଇ ଶିକ୍ଷାଦାତାମାନଙ୍କ ହସ୍ତରେ ଥିଲା ।

ମୁସଲମାନ ଧର୍ମ—ମୋଗଲ ରାଜତ୍ୱର ପ୍ରଥମାବସ୍ଥାରେ ମୁସଲମାନ ଧର୍ମର ପ୍ରଚାର ନିମନ୍ତେ ଓଡ଼ିଶାରେ ବିଶେଷ କୌଣସି ଦୃଷ୍ଟି ଦିଆଯାଇ ନଥିଲା । ଆକବରଙ୍କ ଉଦାର ଶାସନରେ ତାହା କରାଯାଇ ନ ଥିଲା । ମାତ୍ର ଅଓରଙ୍ଗ-ଜେବ ସମ୍ରାଟ ହେବା ସଙ୍ଗେ ମୁସଲମାନ ଧର୍ମ ବଢ଼ାଇବା, ହିନ୍ଦୁମାନଙ୍କୁ ପୀଡ଼ିତ କରିବା, ହିନ୍ଦୁ ଧର୍ମର ଅବମାନନା କରିବା ନିମନ୍ତେ ପ୍ରଗାଢ଼ ଯତ୍ନ ନିଆଗଲା । ଏଥିରେ କେତେକ ହିନ୍ଦୁ ମଧ୍ୟ ମୁସଲମାନ ହୋଇଗଲେ । ମୁସଲମାନ ଆଇନ ଅନୁସାରେ ମୋକଦ୍ଦମା ବିଚାର କରିବା ପାଇଁ କଟକରେ ଜଣେ କାଜି ନିଯୁକ୍ତ ହେଲେ ଏବଂ ପ୍ରଜା ଓ ରାଜକର୍ମଚାରୀମାନଙ୍କର ନୈତିକ ଜୀବନ ଓ କ୍ରିୟାକାଣ୍ଡ ମୁସଲମାନ ଧର୍ମାନୁସାରେ ଚାଲୁଛି କି ନାହିଁ ତାହାର ତତ୍ତ୍ୱ ନେବା ନିମନ୍ତେ ଜଣେ ମହତାସିବ ନିଯୁକ୍ତ ହେଲେ । ଏମାନଙ୍କର ତୀକ୍ଷ୍ଣ ଦୃଷ୍ଟିରେ ଅଭାବ ଦେଖାଗଲେ ଏମାନଙ୍କ ସ୍ଥଳରେ ନୂତନ କାର୍ଯ୍ୟଦକ୍ଷ କର୍ମଚାରୀ ନିଯୁକ୍ତ ହେଉଥିଲେ । ସେଖ ଜୁନାଇଦ୍ କଟକର ପ୍ରଥମ ମହତାସିବ ନିଯୁକ୍ତ ହୋଇ-ଥିଲେ । ପ୍ରଥମ ବିଚାରପତି ବା କାଜି ମୁସଲମାନ ଧର୍ମାନୁସାରେ ମୋକଦ୍ଦମା ବିଚାରରେ ତ୍ରୁଟି କରିବାରୁ ତାଙ୍କ ସ୍ଥଳରେ ଦୈନିକ ଟଙ୍କା ବେତନରେ ଜଣେ ନୂତନ କାଜି ନିଯୁକ୍ତ ହୋଇ ଆସିଥିଲେ ।

ମୋଗଲ ସାମ୍ରାଜ୍ୟରେ ସ୍ଥାନେ ସ୍ଥାନେ ପୁଅମାନଙ୍କୁ ନପୁଂସକ କରି ବିକି କରିବାର ବିଧାନ ଥିଲା । ଅଓରଙ୍ଗଜେବ ତାହାର ନିବାରଣ ନିମନ୍ତେ କଠିନ ଦଣ୍ଡ ଭୟ ଦେଖାଇ ଘୋଷଣା ପ୍ରଚାର କରିଥିଲେ । ଓଡ଼ିଶାରେ ଏହି କୁପ୍ରଥା ଚାଲୁଥିବାର ଖବର ପାଇବାରୁ ସମ୍ରାଟଙ୍କର ପ୍ରଧାନ ମନ୍ତ୍ରୀ ରଘୁନାଥ ଖତ୍ରୀ ଓଡ଼ିଶା ସୁବାଦାର ଖାନୀଦଉରାଣୀଙ୍କୁ ତାହା ବନ୍ଦ କରିବା ପାଇଁ ଆଦେଶ ଦେଇଥିଲେ । ମାତ୍ର ସୁଖର କଥା ଓଡ଼ିଶାରେ ସେ କୁପ୍ରଥା ନ ଥିଲା । ତଦନୁସାରେ ଖାନୀଦଉରାଣୀ ମନ୍ତବ୍ୟ ଦେଇଥିଲେ ।

ମୁସଲମାନ ଶାସନକର୍ତ୍ତାମାନେ ଧର୍ମାନାନଙ୍କ ଓ ପଣ୍ଡିତମାନଙ୍କୁ ଲାଖରାଜ ବାହେଲ ଜମି ବୃତ୍ତି ସ୍ୱରୂପ ଦାନ କରୁଥିଲେ । ପୂର୍ବବର୍ତ୍ତୀ ଗଜପତିମାନଙ୍କର ଦେବୋତ୍ତର ବ୍ରହ୍ମୋତ୍ତର ବୃତ୍ତିପରି ମୁସଲମାନମାନଙ୍କର ପୀରୋତ୍ତର ବୃତ୍ତି ଅଦ୍ୟାପି ଓଡ଼ିଶାରେ ଅଛି ।

ହିନ୍ଦୁ ଧର୍ମ ବିରୁଦ୍ଧରେ ମୁସଲମାନ ଧର୍ମର ପ୍ରଚାର କରିବା ଉଦ୍ୟମରେ ଔରଙ୍ଗଜେବ ଆକବରଙ୍କ ଉଦାର ନୀତିରୁ ମୋଗଲସାମ୍ରାଜ୍ୟକୁ ବଞ୍ଚିତକରି ତାହାର ପତନର ସୂତ୍ରପାତ କଲେ । ହିନ୍ଦୁ ଦେବମନ୍ଦିର ଭାଙ୍ଗିବା, ହିନ୍ଦୁଧର୍ମାନୁଷ୍ଠାନମାନଙ୍କରେ ବାଧାଦେବା, ହିନ୍ଦୁମନ୍ଦିର ସ୍ଥଳରେ ମୁସଲମାନ ମସଜିଦ ସ୍ଥାପନ କରିବା ଔରଙ୍ଗଜେବଙ୍କ ଶାସନର କାର୍ଯ୍ୟ ହେଲା । ଓଡ଼ିଶା ମଧ୍ୟ ଏହି ଦୁରନ୍ତ ଶାସନ ନୀତିରୁ ରକ୍ଷାପାଇ ନ ଥିଲା । ମେଦିନୀପୁରଠାରୁ କଟକ ପର୍ଯ୍ୟନ୍ତ ଓଡ଼ିଶାର ଫୌଜଦାର, ଥାନାଦାର, ଜାଗିରଦାର, କ୍ରୋର ( ତହସିଲଦାର ) ଓ ଅମଲାମାନଙ୍କୁ ଔରଙ୍ଗଜେବ ଆଦେଶ ଦେଇଥିଲେ ଯେ ମେଦିନୀପୁରର ତିଲକୁଟି ଗ୍ରାମରେ ବିଧର୍ମୀ ( ହିନ୍ଦୁ ) ମାନେ ନୂତନ ମନ୍ଦିର ତିଆରୁଥିବାର ସମ୍ବାଦପତ୍ରରୁ ପ୍ରକାଶ ; ସୁତରାଂ ସେ ମନ୍ଦିର ଏବଂ ଓଡ଼ିଶା ମଧ୍ୟରେ ଯେତେ ଦେବମନ୍ଦିର ଥିବ ତାହାସବୁ ଭାଙ୍ଗିଦେବାକୁ ହେବ । ରକ୍ଷା ଥିଲା କେବଳ ୧୦।୧୨ ବର୍ଷ ମଧ୍ୟରେ ନୂତନ ନିର୍ମିତ ମନ୍ଦିରମାନ ଭାଙ୍ଗିବାକୁ ସମ୍ରାଟଙ୍କର ଆଦେଶ ଥିଲା । ଏହି ଆଦେଶ ପାଇବା ମାତ୍ରେ ତିଲକୁଟି ଗ୍ରାମମନ୍ଦିର ଏବଂ ଓଡ଼ିଶା ମଧ୍ୟସ୍ଥ ନୂତନ ମନ୍ଦିରମାନ ସବୁ ଭଙ୍ଗାଗଲା । ହିନ୍ଦୁମାନଙ୍କୁ ପୁରାତନ ମନ୍ଦିର ଜୀର୍ଣ୍ଣସଂସ୍କାର କରିବାକୁ ନିଷେଧ କରାଗଲା । ମନ୍ଦିର ଭାଙ୍ଗିବାର ରିପୋର୍ଟ କାଜିଙ୍କ ସହ ମୋହର ଓ ଶେଖମାନଙ୍କ ମନ୍ତବ୍ୟ ସହ ଦିଲ୍ଲୀ ଦରବାରକୁ ଶୀଘ୍ର ପଠାଇବା ପାଇଁ କଠୋର ଆଦେଶ ଥିଲା । ଏହି ଆଦେଶ କ୍ରମେ ଅନ୍ୟାନ୍ୟ ମନ୍ଦିର ସହିତ କେନ୍ଦ୍ରାପଡ଼ା ମନ୍ଦିର ଭଙ୍ଗା ଯାଇ ତାହା ସ୍ଥାନରେ ଏକ ମସଜିଦ ତିଆରି ହୋଇଥିଲା ।

ଖାନୀବହାଦୁରଙ୍କ ଏହି ସମ୍ବାଦ ପାଇ ପରମ ପ୍ରୀତି ଲାଭ କରିଥିଲେ । ଯାହା ହେଉ ଏହି କରାଳ ଅଦେଶରୁ ଓଡ଼ିଶାର ପ୍ରାଚୀନ ମନ୍ଦିରମାନ ଯେ ମୁକ୍ତି ଲାଭ କରିଥିଲା, ଏହାହିଁ ରକ୍ଷା ।

ବୈଦେଶିକ ଉପନିବେଶ— ଏହି ସବୁ ଧର୍ମ ବିଦ୍ୱେଷ ସତ୍ତ୍ୱେ ଅଫଗାନମାନେ ଏ ଦେଶରେ ବସତି କରିବାରୁ ଓ ହିନ୍ଦୁମାନଙ୍କ ମଧ୍ୟରୁ ଦୀକ୍ଷିତ ମୁସଲମାନମାନେ ହିନ୍ଦୁମାନଙ୍କ ମଧ୍ୟରେ ରହିବାରୁ ଉଭୟ ଧର୍ମାବଲମ୍ବୀଙ୍କ ମଧ୍ୟରେ ସଖ୍ୟ କ୍ରମେ ବଢ଼ିଲା, ଏପରି ଉଭୟ ଧର୍ମର ମୌଳିକ ଏକତ୍ୱଭାବ ଜନସାଧାରଣଙ୍କ ମନରେ କ୍ରମେ ପଶିଲା । କଦମ-ରସୁଲରେ ହିନ୍ଦୁ ଓ ମୁସଲମାନମାନେ ଏକତ୍ର ପୂଜା କରନ୍ତି । ହିନ୍ଦୁମାନେ ପୀରଙ୍କ ନାମରେ ସତ୍ୟନାରାୟଣ ପାଲା ଅଦ୍ୟାପି କରୁଛନ୍ତି । ହିନ୍ଦୁଧର୍ମ ଉତ୍ସବମାନଙ୍କରେ ମୁସଲମାନମାନେ ସଭକ୍ତିରେ ଯୋଗ ଦେଉଛନ୍ତି । ଫଳତଃ ଓଡ଼ିଶାରେ ବର୍ତ୍ତମାନ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ଧର୍ମଗତ ବିଦ୍ୱେଷ ବର୍ତ୍ତମାନ ଦେଖାଯାଏ ନାହିଁ, ସୁଖର କଥା ।

ମୁସଲମାନମାନଙ୍କ ବ୍ୟତୀତ ବଙ୍ଗବାସୀ ଅନେକ ଏ ଦେଶରେ କେହି ବ୍ୟବସାୟ ସୂତ୍ରରେ, କେହି କେହି ସରକାରୀ କର୍ମ ଉପଲକ୍ଷରେ ଅପି ବସତି କଲେ । ବର୍ତ୍ତମାନ ବଙ୍ଗାଳୀ ତନ୍ତ୍ରୀ, ଗଉଡ଼ିଆ ବ୍ରାହ୍ମଣ ପ୍ରଭୃତି ଏ ଦେଶରେ ରହି ଓଡ଼ିଶାବାସୀ ହୋଇ ଯାଇଛନ୍ତି । ବଙ୍ଗଦେଶରେ ମୁସଲମାନ ଅତ୍ୟାଚାରରୁ ଆଶ୍ରୟ ନେବାପାଇଁ କେହି କେହି ମଧ୍ୟ ଏ ଦେଶରେ ବସତି କରିଥିଲେ । ତନ୍ତ୍ରୀ ବ୍ରାହ୍ମଣ ବୈଦ୍ୟ କାୟସ୍ଥ ତେଲି ତାମ୍ବୁଲୀ ପ୍ରଭୃତି ଓଡ଼ିଶାର ଗ୍ରାମମାନଙ୍କରେ ରହି ଓଡ଼ିଶାବାସୀଙ୍କ ସହ ଏପରି ଘନିଷ୍ଠ ଭାବରେ ମିଶିଗଲେଣି ଯେ ଉଭୟଙ୍କ ମଧ୍ୟରେ ବର୍ତ୍ତମାନ ସ୍ଥାନେ ସ୍ଥାନେ ବୈବାହିକ ସମ୍ବନ୍ଧ ମଧ୍ୟ ହେଉଛି ।



# ଚତୁର୍ଥ ଅଧ୍ୟାୟ

## ମରହଟ୍ଟା ରାଜତ୍ୱ

### ଖ୍ରୀଷ୍ଟ ୧୭୫୧—୧୮୦୩ ଅବ୍ଦ

ମରହଟ୍ଟା ଜାତି—ହୁଏନସାଁଙ୍କ ଭାରତ ଭ୍ରମଣ କାଳରେ ମରହଟ୍ଟା ଜାତି ପ୍ରବଳ ଓ ପରାକ୍ରମୀ ଥିଲେ । ମହାରାଷ୍ଟ୍ର ଦେଶ ସେତେବେଳେ ଦାକ୍ଷିଣାତ୍ୟର ଚାଲୁକ୍ୟ ସାମ୍ରାଜ୍ୟର ଅନ୍ତର୍ଗତ ଥିଲା । ସୁତରାଂ କନୋଜ ସମ୍ରାଟ ହର୍ଷବର୍ଦ୍ଧନ ମହାରାଷ୍ଟ୍ର ଦେଶ ନିଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରି ପାରି ନ ଥିଲେ । ଚାଲୁକ୍ୟ ବଂଶର ଅବସାନ ପରେ ଦାକ୍ଷିଣାତ୍ୟର ପ୍ରଭୁତ୍ୱ ପ୍ରଥମେ ଦେବଗଡ଼ ଓ ବିଜୟନଗରର ହିନ୍ଦୁରାଜବଂଶ ଏବଂ ତତ୍ପରେ ବାହାମଣୀରାଜ୍ୟର ମୁସଲମାନ ରାଜବଂଶର ଅଧୀନରେ ରହିଲା । ୧୫୨୬ ଖ୍ରୀଷ୍ଟାବ୍ଦରେ ବାହାମଣୀ ରାଜ୍ୟ ଖଣ୍ଡ ବିଖଣ୍ଡ ହୋଇ ଯେଉଁ ମୁସଲମାନ ରାଜ୍ୟରେ ବିଭକ୍ତ ହେଲା ତନ୍ମଧ୍ୟରୁ ଅହମଦନଗର, ବିଜାପୁର, ଗୋଲ୍‌କୁଣ୍ଡା ସମଗ୍ର ଦାକ୍ଷିଣାତ୍ୟରେ ଆଧିପତ୍ୟ କଲେ । ହୁଏନସାଁଙ୍କ ବେଳେ ମରହଟ୍ଟାମାନେ ପ୍ରବଳ ଜାତି ଥିଲେ ମଧ୍ୟ, ଏତେକାଳ ପରାଧୀନ ଏବଂ ଶେଷରେ ମୁସଲମାନମାନଙ୍କ ଅଧୀନରେ ଜାତୀୟ ଶକ୍ତି ହରାଇ, ମ୍ରିୟମାଣ ଅବସ୍ଥାରେ ପଶ୍ଚିମଘାଟ ପର୍ବତମାଳାରେ ଜୀବିକା ଅନ୍ୱେଷଣ କରୁଥିଲେ ।

ପ୍ରଥମ ମହାରାଷ୍ଟ୍ର ନେତା ସାହାଜୀ କେତେକ ମହାରାଷ୍ଟ୍ର ସୈନ୍ୟ ସେନା ଉପରୋକ୍ତ ମୁସଲମାନ ରାଜ୍ୟମାନଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ । ତାହାଙ୍କର ଓ ସାଜାହାନଙ୍କ ବିପୁଳ ମୋଗଲବାହିନୀ ବିରୁଦ୍ଧରେ ସେ ଅହମଦନଗରର ସ୍ୱାଧୀନତା ରକ୍ଷା କରିବା ନିମନ୍ତେ ବହୁ ଯୁଦ୍ଧ କରିଥିଲେ ।

ଶେଷରେ ୧୬୩୬ ଖ୍ରୀଷ୍ଟାବ୍ଦରେ ଅହମଦନଗରର ରାଜାମାନଙ୍କ ଅଧିକାର ଲୁପ୍ତ ହେବାରୁ ସାହାଜୀ ଅହମ୍ମଦନଗର ଛାଡ଼ି ବିଜାପୁର ସୁଲତାନଙ୍କ ଅଧୀନରେ ସେନାପତି ହୋଇ ରହିଲେ ।

ଶିବାଜୀ—ଅହମ୍ମଦନଗରର ପତନର ୯ ବର୍ଷ ପୂର୍ବରୁ ସାହାଜୀଙ୍କ ପୁତ୍ର ଶିବାଜୀ ୧୬୨୭ ଖ୍ରୀଷ୍ଟାବ୍ଦରେ ଜନ୍ମ ଗ୍ରହଣ କରିଥିଲେ । ସାହାଜୀ ପୁତ୍ରଙ୍କୁ ନିଜ ପାଖରେ ପରାଧୀନ ଭାବରେ ନ ବଢ଼ାଇ ଜଣେ ବ୍ରାହ୍ମଣଙ୍କ ଶିକ୍ଷାଧୀନରେ ନିଜ ଜାଗିର ପୁନାରେ ରଖାଇଲେ । ଆବାଲ୍ୟରୁ ଯୁଦ୍ଧ ବିଦ୍ୟାରେ ଧୁରୀଣ ହୋଇ ଶିବାଜୀ ମରହଟ୍ଟା ସୈନ୍ୟମାନଙ୍କ ସଙ୍ଗେ ମାଉଲୀ ନାମକ ଅନ୍ୟ ଏକ ପାର୍ବତୀୟ ଜାତିକୁ ମିଶାଇ ଏକ ବଳିଷ୍ଠ ମରହଟ୍ଟା ଜାତି ଗଠନ କରିବାରେ ଲାଗିଲେ । ମହାରାଷ୍ଟ୍ର ଜାତିର ପ୍ରତିଷ୍ଠାତାରୂପେ ଶିବାଜୀ ଅଦ୍ୟାପି ପୂଜିତ ହେଉଛନ୍ତି । ପ୍ରଥମେ ବିଜାପୁର ଏବଂ ପରେ ଔରଙ୍ଗଜେବଙ୍କ ବିରୁଦ୍ଧରେ ଯୁଦ୍ଧ କରି ରାଜ୍ୟମାନ ଅଧିକାର କରି ନିଜ ଜାତି ନିମନ୍ତେ ଏକ ସ୍ୱାଧୀନରାଜ୍ୟ ଗଠନ କରିଯାଇ ଥିଲେ; ଏବଂ ଦାକ୍ଷିଣାତ୍ୟର ମୋଗଲାଧୀନ ରାଜ୍ୟମାନଙ୍କରୁ ଚଉଥ ବା ରାଜସ୍ୱର ଚତୁର୍ଥାଂଶ ଦାବି କରୁଥିଲେ । ଶିବାଜୀଙ୍କ ମୃତ୍ୟୁ ପରେ (୧୬୮୦) ତାହାଙ୍କ ପୁତ୍ର ଓ ପୌତ୍ର ଶମ୍ଭୁଜୀ ଓ ଶାହୁ ଆଉରଙ୍ଗଜେବଙ୍କ ହସ୍ତରେ ବନ୍ଦୀ ରହିଲେ । ଔରଙ୍ଗଜେବଙ୍କ ମୃତ୍ୟୁ ପରେ ମୋଗଲ ସମ୍ରାଟମାନେ ଦୁର୍ବଳ ହୋଇ ପଡ଼ିଲେ । ସାହୁଙ୍କ ପରେ ତାହାଙ୍କ ମନ୍ତ୍ରୀ ବା ପେଶବା ମହାରାଷ୍ଟ୍ର ଅଧିପତି ହେଲେ । ସେହି ପେଶବାମାନଙ୍କ ରାଜତ୍ୱ କାଳରେ ମହାରାଷ୍ଟ୍ର ପ୍ରଭୁତ୍ୱ ସମଗ୍ର ଭାରତ ବ୍ୟାପୀ ହେଲା । କେଉଁ ରାଜ୍ୟକୁ ପୂର୍ଣ୍ଣରୂପେ ଅଧିକାର କରି ଏବଂ କାହାଠାରୁ ବା ଚଉଥ ଦାବି କରି ମରହଟ୍ଟାମାନେ ମୋଗଲ ସାମ୍ରାଜ୍ୟର ପ୍ରାୟ ସର୍ବତ୍ର ଆପଣାର ଆଧିପତ୍ୟ ବିସ୍ତାର କଲେ ।

ଭୋଁସଲ—ଦ୍ୱିତୀୟ ପେଶବା ବାଜିରାଓଙ୍କ ମୃତ୍ୟୁ ପରେ ତାହାଙ୍କ ପୁତ୍ର ବାଲାଜୀରାଓ ପେଶବା ହେଲେ (୧୭୪୦) । ମାତ୍ର ଶିବାଜୀଙ୍କର ପ୍ରକୃତ

ଉତ୍ତରାଧିକାରୀବୋଲି ରଘୁଜୀ ଭୋଁସଲା ମରହଟ୍ଟା ସିଂହାସନ ପ୍ରତି ଆପଣାର ଦାବୀ ଉଠାଇଲେ । ବାଲାଜି ମୋଗଲ ସମ୍ରାଟଙ୍କଠାରୁ ମାଲବ ଅଧିକାର କରିବାବେଳେ ରଘୁଜୀ ବଙ୍ଗ ଓଡିଶା ଆକ୍ରମଣ କଲେ । ଆଲିବର୍ଦ୍ଦିଖାଁଙ୍କ ସାହାଯ୍ୟରେ ବାଲାଜି ରଘୁଜୀଙ୍କୁ ବଙ୍ଗଦେଶରୁ ଦୂର କରିଦେଲେ । ରଘୁଜୀ ଶେଷରେ ବାଲାଜୀଙ୍କର ଅଧୀନତା ସ୍ୱୀକାର କରି ଅର୍ଦ୍ଧ ସ୍ୱାଧୀନ ଭାବରେ ନାଗପୁରର ରାଜା ହେଲେ । ଏଥିପୂର୍ବେ ବରୋଦାରେ ଗାଇକୁଆଡ଼ , ଇନ୍ଦୋରରେ ହୋଲକାର , ଗୋୟାଲିୟରରେ ସିନ୍ଧିଆ ନାମ ଧରି ପ୍ରଧାନ ପ୍ରଧାନ ମରହଟ୍ଟାବୀରମାନେ ମୋଗଲ ସମ୍ରାଟଙ୍କ ଆକ୍ରମଣ ବିରୁଦ୍ଧରେ ମହାରାଷ୍ଟ୍ର ଦେଶ ରକ୍ଷା କରିବା ନିମନ୍ତେ ସୀମାନ୍ତ ରାଜ୍ୟମାନଙ୍କରେ ରାଜତ୍ୱ କଲେ । ଏହିରୂପ ଅର୍ଦ୍ଧସ୍ୱାଧୀନ ସାମନ୍ତ ମରହଟ୍ଟା ରାଜ୍ୟମାନ ନେଇ ପେଶବା ସମଗ୍ର ମହାରାଷ୍ଟ୍ର ପ୍ରଦେଶର ଅଧିପତି ରୂପେ ରାଜତ୍ୱ କରୁଥିଲେ ।

ଓଡିଶା ଅଧିକାର——ରଘୁଜୀ ଭୋଁସଲା ନାଗପୁର ରାଜା ହୋଇ ବଙ୍ଗ ବିହାର ଓ ଓଡିଶାରୁ ଚଉଥ ଆଦାୟ କରିବା ନିମନ୍ତେ ପେଶବାଙ୍କଠାରୁ ଅନୁମତି ପାଇଥିଲେ । ପୂର୍ବବର୍ତ୍ତୀ ପ୍ରଥମ ଅଧ୍ୟାୟ ଶେଷରୁ ମରହଟ୍ଟାମାନଙ୍କର ଯେଉଁ ଓଡିଶା ଆକ୍ରମଣ ବୃତ୍ତାନ୍ତ ଦିଆଯାଇଅଛି , ତାହା ରଘୁଜୀ ଏହି ଚଉଥ ଆଦାୟ ଉଦ୍ଦେଶ୍ୟରେ ଆରମ୍ଭ କରିଥିଲେ । ଏଥିମଧ୍ୟରେ ମିର ହବିବଙ୍କ ଆମନ୍ତ୍ରଣ ଓ ସାହାଯ୍ୟ ଦାନ ରଘୁଜୀଙ୍କୁ ଉପଯୁକ୍ତ ସୁବିଧା ଯୋଗାଇଲା ।

ଓଡ଼ିଶା ଆକ୍ରମଣ କରି ଶେଷରେ ୧୭୫୧ ଖ୍ରୀଷ୍ଟାବ୍ଦର ସନ୍ଧି ଅନୁସାରେ ରଘୁଜୀ ଭୋଁସଲା ଓଡିଶାର ରାଜସ୍ୱ ଅଧିକାର ପାଇଲେ ଏବଂ ମିରହବିବ ମୋଗଲ ସମ୍ରାଟଙ୍କ ଅଧୀନରେ ଓଡ଼ିଶାର ନାଏବ ନବାବ ନିଯୁକ୍ତ ହେଲେ । ସେ ସନ୍ଧି ସତ୍ତ୍ୱେ ବଙ୍ଗ ଓ ଓଡ଼ିଶାରୁ ମୋଗଲ ସମ୍ରାଟଙ୍କ ଅଧିକାର ସମ୍ପୂର୍ଣ୍ଣ ଯାଇ ନ ଥିଲା । ମାତ୍ର ଓଡିଶାର ବାର୍ଷିକ ରାଜସ୍ୱ ମୋଗଲ ଦରବାରକୁ ନଯାଇ ସମସ୍ତ ମରହଟ୍ଟା ରାଜକୋଷକୁ

ଯାଉଥିଲା । ମୋଗଲସମ୍ରାଟଙ୍କର ଏହି ନାମମାତ୍ର ଅଧିକାର ସୂତା ବନ୍ଧନ ରହିଲା ନାହିଁ । ଅଳ୍ପ କାଳମଧ୍ୟରେ ସମ୍ରାଟଙ୍କ ନାଏବ ନବାବ ମିରହବିବଙ୍କୁ ହତ୍ୟା କରି ଆଉ ଜଣେ ଅଫଗାନ ନାଏବ ନବାବ ହୋଇବସିଲେ । ଓଡ଼ିଶାର ପାଇକଦଳ ବିଗତ ୨୦୦ ବର୍ଷ ବ୍ୟାପୀ ଘୋର ଅତ୍ୟାଚାର ଓ ପ୍ରପୀଡ଼ନ ସତ୍ତ୍ୱେ ଆପଣାର ପ୍ରାଚୀନ ବଳ ଓ ଦମ୍ଭ ତଥାପି ସମ୍ପୂର୍ଣ୍ଣ ହରାଇ ନ ଥିଲେ । ବର୍ତ୍ତମାନ ଏହି ନୂତନ ନବାବଙ୍କ ବିରୁଦ୍ଧରେ ସେମାନେ ବିଦ୍ରୋହୀ ହୋଇ ସକଳ ରାଜସ୍ୱ ବନ୍ଦ କରିଦେଲେ । ନୂତନ ନାଏବ ନବାବ ବିଦ୍ରୋହ ଦମନର ଯଥା ଚେଷ୍ଟାସତ୍ତ୍ୱେ ମରହଟ୍ଟାମାନଙ୍କର ପ୍ରାପ୍ୟ ରାଜସ୍ୱ ଠିକ ଆଦାୟ କରି ପାରିଲେ ନାହିଁ । ତେଣୁ ସେ ଅଗତ୍ୟା ଶାସନ ଦାୟିତ୍ୱ ମୁଣ୍ଡାଇ ନ ପାରି ତହିଁରୁ ମୁକ୍ତି ପାଇବା ପାଇଁ ୧୭୫୭ ଖ୍ରୀଷ୍ଟାବ୍ଦରେ ପ୍ରାର୍ଥନାକଲେ । କେତେମାସ ପରେ ୧୭୫୭ ଖ୍ରୀଷ୍ଟାବ୍ଦରେ ମରହଟ୍ଟାମାନେ ମୋଗଲସମ୍ରାଟଙ୍କର ନାମମାତ୍ର ଅଧୀନତା ଦୂର କରି ନିଜ ହସ୍ତରେ ଓଡ଼ିଶାର ଶାସନ-ଭାର ନେଲେ । ମୋଗଲଶାସନରୁ ମୁକ୍ତ ହୋଇ ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜ ଅଧିକାର ପର୍ଯ୍ୟନ୍ତ ଓଡ଼ିଶା ନାଗପୁର ଭୋଁସଲାଙ୍କ ସ୍ୱାଧୀନ ଶାସନରେ ରହିଲା ।

ଶିବଭଟ୍ଟ ସାମନ୍ତ ଗୁରୁ — ମରହଟ୍ଟାମାନେ ଓଡ଼ିଶାର ସମ୍ପୂର୍ଣ୍ଣ ଅଧିକାର ପାଇବା ପୂର୍ବରୁ ଶିବଭଟ୍ଟ ସାମନ୍ତ ଗୁରୁ ଭୋଁସଲାଙ୍କଠାରୁ ବଙ୍ଗଦେଶରୁ ଚଉଥ ଆଦାୟର ଭାର ପାଇଥିଲେ । ଓଡ଼ିଶା ଅଧିକାର ପାଇବାମାତ୍ରେ ଶିବଭଟ୍ଟ ଓଡ଼ିଶାର ପ୍ରଥମ ଶାସନକର୍ତ୍ତା ନିଯୁକ୍ତହେଲେ ; ଏବଂ ୮ ବର୍ଷ ପର୍ଯ୍ୟନ୍ତ ସୁବାଦାରୀ କାର୍ଯ୍ୟ ଚଳାଇ ଥିଲେ । ସକଳ ମରହଟ୍ଟା ସୁବାଦାରଙ୍କ ମଧ୍ୟରେ ଶିବଭଟ୍ଟ ବିଶେଷ ବିଚକ୍ଷଣ, ସୁଯୋଗ୍ୟ ଓ ପ୍ରଜାପରାୟଣ ଶାସକ ଥିଲେ । ଓଡ଼ିଶା ସେତେବେଳେ ପର୍ଯ୍ୟନ୍ତ ଯେପରି ଅରାଜକ ଅବସ୍ଥାରେ ପଡ଼ି ଘାଣ୍ଟି ହେଉଥିଲା , ଶିବଭଟ୍ଟ ନିଜ ପ୍ରତିଭା ବଳରେ ସୁଶୃଙ୍ଖଳ ଶାସନ ପ୍ରତିଷ୍ଠା-କରି ଦେଶରେ

ଶାନ୍ତି ଆଣିଥିଲେ । ଏହାଙ୍କ ସମୟରେ କୌଣସି ବହିଃଶତ୍ରୁ ଓଡ଼ିଶା ଆକ୍ରମଣ କରି ନ ଥିଲା । କେବଳ ଖେମଣ୍ଡି ରାଜା ନାରାୟଣଦେବ ଖୋରଧା ଆକ୍ରମଣ କରିଥିଲେ । ଖୋରଧା ବୀରକିଶୋରଦେବ ଶିବଭଟ୍ଟଙ୍କ ସାହାଯ୍ୟରେ ୧୭୬୦ ଖ୍ରୀଷ୍ଟାବ୍ଦରେ ନାରାୟଣଙ୍କୁ ପରାସ୍ତ କରି ରାଜ୍ୟ ରକ୍ଷା କରିଥିଲେ । ଏହି ସାହାଯ୍ୟ ନିମନ୍ତେ ମରହଟ୍ଟମାନଙ୍କୁ ଯୁଦ୍ଧବ୍ୟୟ ଦେବାପାଇଁ ବୀରକିଶୋର ସ୍ୱୀକାର କରିଥିଲେ । ମାତ୍ର ଯୁଦ୍ଧପରେ ତାହା ଦେଇ ନ ପାରିବାରୁ ତାହାଙ୍କ ରାଜ୍ୟର ଉତ୍କୃଷ୍ଟ ପ୍ରଗଣାମାନ ଦଣ୍ଡ, ଚିଲିକା ଓ ସମୁଦ୍ର ମଧ୍ୟବର୍ତ୍ତୀ ରାହାଙ୍ଗ, ଲେମ୍ବାଇ, ସିରାଇ ଓ ଚବିଶକୁଦ ଏବଂ ତାଙ୍କ ଅଧୀନସ୍ଥ ୧୪ ଗଡ଼ଜାତର ସ୍ୱତ୍ୱସହ ମରହଟ୍ଟାମାନଙ୍କୁ ବନ୍ଧକ ଦେଲେ । ଗଡ଼ଜାତ ରାଜ୍ୟମାନ ମରହଟ୍ଟା ଅଧୀନରେ ଆସି ଶିବଭଟ୍ଟଙ୍କ ଶାସନ ଓ ପରବର୍ତ୍ତୀ କାଳରେ ମଧ୍ୟ ପ୍ରଧାନ ଅଶାନ୍ତିର କାରଣ ହେଲା । ମାନସିଂହ ଗଡ଼ଜାତଗୁଡ଼ିକ ଖୋରଧା ରାଜାଙ୍କ ଦେବାକାଳରୁ ଏବଂ ତାହା ପୂର୍ବରୁ ମଧ୍ୟ ଗଜପତିମାନଙ୍କୁ, ଏବଂ ସେମାନଙ୍କ ବଂଶଧର ବା ଉତ୍ତରାଧିକାରୀ ଖୋରଧା ରାଜାମାନଙ୍କୁ ପ୍ରଧାନ ଅଧିନାୟକରୂପେ ଭକ୍ତି ଓ ସମ୍ମାନ ଦେଖାଇ ଆସୁଥିଲେ । ଆକବର ନିଜ ବନ୍ଦୋବସ୍ତରେ ଏହା ଦେଖି-ପାରି ଗଡ଼ଜାତ ରାଜାମାନଙ୍କୁ ନିଜ ଅଧିକାରରେ ନ ଆଣି ଖୋରଧା ରାଜ-ବଂଶ ଅଧୀନରେ ରଖାଇଥିଲେ । ବର୍ତ୍ତମାନ ପ୍ରଭୁ ପରିବର୍ତ୍ତନରେ ସେମାନେ ଅସନ୍ତୁଷ୍ଟ ହୋଇ ବିଦ୍ରୋହାଚରଣ କଲେ । ସେମାନଙ୍କ ବିଦ୍ରୋହ ଦମନ ନିମନ୍ତେ ଶିବଭଟ୍ଟ ବାରମ୍ବାର ଗଡ଼ଜାତ ରାଜ୍ୟମାନ ଆକ୍ରମଣ କରିବାକୁ ଲାଗିଲେ । ବହୁ ଦିନ ଧରି ଯୁଦ୍ଧ ଚାଲିଲା । ସେଥିରେ ଗଡ଼ଜାତବାସୀ କେତେବେଳେ ବା ବିଧ୍ୱସ୍ତ ହେଉଥିଲେ, କେତେବେଳେ ଅବା ନଦୀ, ପାହାଡ଼, ଜଙ୍ଗଲମଧ୍ୟରେ ପଡ଼ି ମରହଟ୍ଟା ସୈନ୍ୟମାନେ ଗଡ଼ଜାତ ପାଇକ-ମାନଙ୍କ ଶରବର୍ଷଣରେ ବିଧ୍ୱସ୍ତ ହୋଇ ଯାଉଥିଲେ । ଏହି ବିଦ୍ରୋହ ବ୍ୟତୀତ ଶିବଭଟ୍ଟଙ୍କ ଶାସନ ଅପେକ୍ଷାକୃତ ଶାନ୍ତିରେ ଚାଲିଥିଲା ।

ବନ୍ଦୋବସ୍ତ— ଖୋରଧାବିଦ୍ରୋହ ୧୭୬୧ ଖ୍ରୀଷ୍ଟାବ୍ଦରେ ଶାନ୍ତ ହେଲା । ୧୭୬୨ ଖ୍ରୀଷ୍ଟାବ୍ଦରେ ଶିବଭଟ୍ଟ ଓଡ଼ିଶାରେ ନୂତନ ବନ୍ଦୋବସ୍ତ ଓ ଜମାବନ୍ଦି କରାଇଲେ । ସେହି ଜମାବନ୍ଦିରେ ଓଡ଼ିଶାର ରାଜସ୍ୱ ସ୍ଥିର ହେଲା ୨୩୧ ସ୍ୱର୍ଣ୍ଣ ମୋହର; ୩,୮୨,୮୨୯ ଟଙ୍କା ଓ ୮ ଅଣା ଏବଂ ୨୨,୮୨,୪୪୨ କାହାଣ କଉଡ଼ି । କଉଡ଼ି ସେତେବେଳେ ଟଙ୍କାରେ ୪ କାହାଣ ଥିଲେ ଓଡ଼ିଶାର ରାଜସ୍ୱ ୨୩୧ ସ୍ୱର୍ଣ୍ଣ ମୋହର ବ୍ୟତୀତ ୧୦,୨୮,୪୪୧ ଟଙ୍କା ଧାର୍ଯ୍ୟ ହେଲା । ଏହି ରାଜସ୍ୱ କେତେ ଆଦାୟ କେତେ ବା ଅନାଦାୟ ରହୁଥିଲା, କୁହାଯାଇ ନ ପାରେ । ମାତ୍ର ଏହା ଜଣାଯାଏ ଯେ ଶିବଭଟ୍ଟଙ୍କ ଶାସନ ବିଶେଷ ଲୋକପ୍ରିୟ ନ ଥିଲା । ଏକେ ଖୋରଧା ରାଜାଙ୍କ ରାଜ୍ୟଚ୍ୟୁତି ଏବଂ ନୂତନ ଜମାବନ୍ଦି ଧାର୍ଯ୍ୟ ଯୋଗେ ସମସ୍ତ ଶାସନକୁଶଳତା ସତ୍ତ୍ୱେ ଶିବଭଟ୍ଟ ନିଜ ଶାସନକାଳମଧ୍ୟରେ ପ୍ରଜାଙ୍କ ସନ୍ତୋଷଭାଜନ ହୋଇ ପାରି ନ ଥିଲେ । ମାତ୍ର ପରବର୍ତ୍ତୀ ସୁବାଦାର ଭବାନୀ ପଣ୍ଡିତଙ୍କ କଠୋର ଶାସନ ଓ ପ୍ରଜା-ପୀଡ଼ନ ତୁଳନାରେ ଶିବଭଟ୍ଟଙ୍କ ଶାସନର ସ୍ମୃତି ଲୋକପ୍ରିୟ ହୋଇ ଉଠିଲା । ଲୋକେ କହୁଥିଲେ, "ଶିବଭଟ୍ଟ ବିଦେଶ ଲୁଣ୍ଠିତ ଧନରେ ସୈନ୍ୟ ପୋଷୁ-ଥିଲେ ; ମାତ୍ର ଭବାନୀ ପଣ୍ଡିତ ସେହି ସୈନ୍ୟ ପୋଷଣ ନିମନ୍ତେ ନିଜ ଦେଶ ଲୁଣ୍ଠନ କରି ପ୍ରଜା ଶୋଷଣ କରୁଥିଲେ ।"

ଶିବଭଟ୍ଟ ଦେଶ ଶାସନ ଅପେକ୍ଷାକୃତ ଶାନ୍ତିରେ ଚଳାଇ ଅବଶେଷରେ ୧୭୬୪ ଖ୍ରୀଷ୍ଟାବ୍ଦରେ ସୁବାଦାର ପଦରୁ ବିଚ୍ୟୁତ ହେଲେ ।

ଭବାନୀ ପଣ୍ଡିତ — ଶିବଭଟ୍ଟଙ୍କ ବିଦାୟ ପରେ ଚିମନା ସାହୁ ଓ ଉଦୟପୁରୀ ଗୋସ୍ୱାମୀ ଦୁଇ ଜଣ ଭୋଁସଲାଙ୍କ ପ୍ରୀତିଭାଜନ ହୋଇ ଓଡ଼ିଶାର ସୁବାଦାର ହେଲେ । ଏତେବେଳକୁ ରଘୁଜୀଙ୍କର ମୃତ୍ୟୁ ହୋଇ ତାଙ୍କ ପୁତ୍ର ଜାନୋଜୀ ଭୋଁସଲା ହୋଇଥିଲେ । ଚିମନା ସାହୁ, ଜାନୋଜୀଙ୍କର ବଂଶୋଦ୍ଭବ ଥିଲେ ; ସୁତରାଂ ସେ ଏବଂ ଉଦୟପୁରୀ ଗୋସ୍ୱାମୀ ଜାନୋଜୀ-ଙ୍କର ପ୍ରୀତି ଆକର୍ଷଣ କରି ୧୭୬୪ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଶାସନଭାର

ପାଇଲେ । ଶିବଭଟ୍ଟ ସ୍ଥାନାନ୍ତରିତ ହୋଇ ଓଡ଼ିଶାର ସାମନ୍ତରାଜା ଏବଂ ଖଣ୍ଡାଏତ କେତେକଙ୍କ ସହାୟତାରେ ବିଦ୍ରୋହ ଆରମ୍ଭ କଲେ । ନୂତନ ସୁବାଦାର ହୁଦେଁ ବିଦ୍ରୋହ ଦମନରେ ଅସମର୍ଥ ହେବାରୁ, ସେମାନଙ୍କ ପରବର୍ତ୍ତିରେ ଭବାନୀ ପଣ୍ଡିତ ଶାସନକର୍ତ୍ତା ନିଯୁକ୍ତ ହୋଇ ବହୁ ମରହଟ୍ଟାସୈନ୍ୟ ଧରି ଓଡ଼ିଶା ଆସିଲେ । ବିଦ୍ରୋହ ଦମନ ଛଳରେ ମରହଟ୍ଟା ସୈନ୍ୟମାନେ ଓଡ଼ିଶାର ନାନା ସ୍ଥାନରେ ଉତ୍କଟ ଅତ୍ୟାଚାର ଆରମ୍ଭ କଲେ । ଏହିପରି ନାନା ଉତ୍ପୀଡ଼ନ ଓ ବ୍ୟଭିଚାର ମଧ୍ୟରେ ଭବାନୀ ପଣ୍ଡିତ ୪ ବର୍ଷ ମାତ୍ର ଓଡ଼ିଶାରେ ରହି ୧୭୬୮ ଖ୍ରୀଷ୍ଟାବ୍ଦରେ ଜାନୋଜୀଙ୍କଦ୍ୱାରା ନାଗପୁରକୁ ପ୍ରତ୍ୟାବର୍ତ୍ତିତ ହେଲେ ।

ଅନ୍ୟାନ୍ୟ ସୁବାଦାରଗଣ—ଭବାନୀ ପଣ୍ଡିତଙ୍କ ପରେ ଶମ୍ଭୁଜୀ ଗଣେଶ (୧୭୬୮-୧୭୭୧), ବାବାଜୀ ନାୟକ (୧୭୭୧-୧୭୭୩), ମାଧୋଜୀ ହର (୧୭୭୩-୧୭୭୫), ବାବାଜୀ ନାୟକ (୧୭୭୫), ପୁଣି ମାଧୋଜୀ ହର (୧୭୭୫—୧୭୭୮), ରାଜାରାମ ପଣ୍ଡିତ (୧୭୭୮-୧୭୮୬), ଏବଂ ସଦାଶିବ ରାଓ, ଇଙ୍ଗାଜୀ ଶୁକ୍ଳଦେବ, ଓ ବାଲାଜୀ କୁଞ୍ଜି (୧୭୮୬-୧୮୦୩) କ୍ରମାନ୍ୱୟେ ଓଡ଼ିଶା ସୁବାଦାର ନିଯୁକ୍ତ ହୋଇଥିଲେ । ଏହି ସୁବାଦାରମାନଙ୍କ ଶାସନକାଳ ଓଡ଼ିଶାରେ କେବଳ ପ୍ରଜା-ପୀଡ଼ା, ଦୁର୍ଭିକ୍ଷ ପ୍ରଭୃତି ଘୋର ଯନ୍ତ୍ରଣାରେ ଅତିବାହିତ ହୋଇଥିଲା । ସୁବାଦାର-ମାନଙ୍କର ଘନ ଘନ ପରିବର୍ତ୍ତନରୁ ଭୋଁସଲମାନଙ୍କର ମନୋବୃତ୍ତି ଓ ଶାସନର ଶିଥିଳତା ଜଣାପଡ଼େ । ସ୍ଥୂଳ କଥା, କାହାର ଉପହାର ବା କାର୍ଯ୍ୟରେ ଭୋଁସଲ ହଠାତ୍ ସନ୍ତୁଷ୍ଟ ହୋଇଗଲେ, ତତ୍‌କ୍ଷଣାତ୍ ପୂର୍ବ ସୁବାଦାରଙ୍କୁ ଫେରାଇ ନେଇ ଏହି ନୂତନ ଲୋକଙ୍କୁ ସୁବାଦାର କରି ପଠାଇ ଦେଉଥିଲେ । ସୁତରାଂ ନୂତନ ସୁବାଦାର ଆପଣାର ସୁବାଦାରୀ ଅଳ୍ପକାଳ ସ୍ଥାୟୀ ଜାଣି ସେହି ଅଳ୍ପ କାଳ ମଧ୍ୟରେ ପ୍ରଜାପୀଡ଼ନ ଓ ଅର୍ଥଶୋଷଣ ଯେତେ କରିପାରେ ସେତେ ଅର୍ଥ ସଂଗ୍ରହ କରୁଥିଲେ । କେବଳ ରାଜାରାମ ପଣ୍ଡିତଙ୍କ ବ୍ୟତୀତ

ଅନ୍ୟାନ୍ୟ ସମସ୍ତ ସୁବାଦାରମାନଙ୍କର ଶାସନ ଏହିପରି ପ୍ରଜାପୀଡ଼ନରେ ଅତିବାହିତ ହୋଇଥିଲା । ଶମ୍ଭୁଜୀ ଗଣେଶଙ୍କ ବେଳେ ମରହଟ୍ଟା ଅତ୍ୟାଚାର ଚରମ ହୋଇ ଉଠିଲା । ଏହା ଉପରେ ପୁଣି ୧୭୭୦ ଖ୍ରୀଷ୍ଟାବ୍ଦରେ ବଙ୍ଗ ଓ ଓଡ଼ିଶାରେ ଭୀଷଣ ଦୁର୍ଭିକ୍ଷ ପଡ଼ିଲା । ବଙ୍ଗଦେଶର ତୃତୀୟାଂଶ ଏବଂ ଓଡ଼ିଶାର ଅର୍ଦ୍ଧାଧିକ ଅଧିବାସୀ ଦୁର୍ଭିକ୍ଷ କବଳରେ ପଡ଼ି ପ୍ରାଣ ହରାଇ-ଥିଲେ । ଶତ ଶତ ଗ୍ରାମ ସଂପୂର୍ଣ୍ଣ ଜନଶୂନ୍ୟ ହୋଇଗଲା । ଚାଉଳ ଟଙ୍କାରେ ୨ ସେର ମିଳିବା କଷ୍ଟକର ହେଲା । ଶମ୍ଭୁଜୀ ଓଡ଼ିଶାରେ ନୂତନ ବନ୍ଦୋବସ୍ତ କରାଇ ଓଡ଼ିଶାର ରାଜସ୍ୱ ଉପରେ ବାର୍ଷିକ ୫ ଲକ୍ଷ ଟଙ୍କା ଅଧିକ ଜମା ବୃଦ୍ଧି କରାଇଲେ । ଜମା ବୃଦ୍ଧିର ଅଳ୍ପ କାଳ ମଧ୍ୟରେ ପୁଣି ଥରେ ଦୁର୍ଭିକ୍ଷ ପଡ଼ିଲା । ଟଙ୍କାରେ ଚାଉଳ ୫ ସେର ସୁଦ୍ଧା ମିଳିଲା ନାହିଁ । ମାତ୍ର ଭାଗ୍ୟକୁ ପଙ୍କିଳ ଅତ୍ୟାଚାର ସତ୍ତ୍ୱେ ମରହଟ୍ଟା ଶାସନକର୍ତ୍ତାମାନେ ସେହି ଦୁର୍ଭିକ୍ଷରେ ଓଡ଼ିଶା ରାଜସ୍ୱରୁ ୭ ଲକ୍ଷ ଟଙ୍କା ରାଜସ୍ୱ ମୁକ୍ତ ଦେଇଥିଲେ ।

ରାଜାରାମ ପଣ୍ଡିତ—ଏହି ସମସ୍ତ ସୁବାଦାରମାନଙ୍କମଧ୍ୟରେ ରାଜାରାମ ପଣ୍ଡିତ ବିଚକ୍ଷଣ ଓ ହୃଦୟବାନ ଶାସକ ଥିଲେ । ମରହଟ୍ଟାମାନଙ୍କ ଉଦୟ ଏବଂ ପ୍ରଭାବ ପ୍ରତିଷ୍ଠା ବେଳେ ଯେଉଁ ବିଚକ୍ଷଣ ରାଜନୀତି-କୁଶଳ ବ୍ୟକ୍ତିମାନଙ୍କର ଆବିର୍ଭାବ ହୋଇଥିଲା , ଓଡ଼ିଶା ଭାଗ୍ୟକୁ ରାଜାରାମ ପଣ୍ଡିତ ସେହିମାନଙ୍କ ମଧ୍ୟରୁ ଜଣେ ଥିଲେ । ପ୍ରଥମେ ସେ ନାଏକ ସୁବାଦାର ଭାବରେ ଓଡ଼ିଶାରେ ଥିଲେ । ପରେ ଶାସନ ପରିପାଟି ଓ ଅନ୍ୟାନ୍ୟ ଗୁଣ ପ୍ରଭାବରେ ଉନ୍ନତହୋଇ ଓଡ଼ିଶାର ସୁବାଦାରହୋଇଥିଲେ । ରାଜାରାମ ଓଡ଼ିଶା ବନ୍ଦୋବସ୍ତ ଆଉ ଥରେ ନୂତନ କରାଇଥିଲେ । ମାତ୍ର ସେ ବିଶେଷ ଜମା ବୃଦ୍ଧି କରାଇ ନ ଥିଲେ । ସେତେବେଳେ ପ୍ରଜାମାନଙ୍କ ଉପରେ ବିଶେଷ ଅତ୍ୟାଚାର ହେଉଥିଲା । ସେ ଅତ୍ୟାଚାର ଯେ ମରହଟ୍ଟା-ମାନେ ସବୁ କରୁଥିଲେ ଏପରି ନୁହେଁ ; ମାତ୍ର ସେମାନଙ୍କଠାରୁ କୌଣସି ବନ୍ଦୋବସ୍ତ ନ କରି ଚୌଧୁରୀ, କାନୁନ୍‌ଗୋ ପ୍ରଭୃତି ରାଜସ୍ୱ ଆଦାୟ ଓ

ଶାସନ ଶୃଙ୍ଖଳା ବାହାନାରେ ପ୍ରଜାମାନଙ୍କଠାରୁ ଘୋର ଅର୍ଥ ଶୋଷଣ କରୁଥିଲେ । ରାଜାରାମ ନାଏବ ସୁବାଦାର ଭାବରେ ଏ ଦେଶରେ ବହୁ କାଳରୁ ପ୍ରଜାପୀଡ଼ାର କାରଣ କେତେକ ବୁଝି ପାରିଥିଲେ । ସୁତରାଂ ସେ ସୁବାଦାର ହେବା ସଙ୍ଗେ ସଙ୍ଗେ ଚୌଧୁରୀ, କାନୁନ୍‌ଗୋ ପ୍ରଭୃତି ପଦ ଉଠାଇ ଦେଇ ରାଜକର୍ମଚାରୀମାନଙ୍କଦ୍ୱାରା ରାଜସ୍ୱ ଆଦାୟର ବନ୍ଦୋବସ୍ତ କଲେ ।

ରାଜାରାମଙ୍କ ଶାସନକାଳରେ ଖୋରଧା ରାଜା ବୀରକିଶୋରଦେବ ଶେଷ ଜୀବନରେ ପାଗଳ ହୋଇ ଅପଣାର ପୁତ୍ରମାନଙ୍କୁ ବଧ କଲେ, ଏବଂ ରାଜ୍ୟ ମଧ୍ୟରେ ଘୋର ଅଶାନ୍ତି ଜନ୍ମାଇଲେ । ରାଜାରାମ ତାହାଙ୍କୁ ବନ୍ଦୀ କଲେ । ତାହାଙ୍କ ନାତି ଦିବ୍ୟସିଂହଦେବ ବର୍ଷକୁ ୧୦ ହଜାର ଟଙ୍କା ରାଜସ୍ୱ ଦେବାର ସ୍ୱୀକାର କରିବାରୁ ରାଜାରାମ ତାହାଙ୍କୁ ଖୋରଧାର ରାଜା କଲେ; ଏବଂ ବାଣପୁର, ଖୋରଧା ଓ ଲେମ୍ବାଇ ତାହାଙ୍କ ଅଧିକାରରେ ଛାଡ଼ି ଦେଲେ । ଦିବ୍ୟସିଂହଦେବ ପରେ ପୁଣି ଉକ୍ତ ୧୦ ହଜାର ଟଙ୍କା କର ଦେବାକୁ ଅସ୍ୱୀକାର କରିବାରୁ ରାଜାରାମ ବଳପ୍ରୟୋଗ କରି କର ଅଦାୟ କଲେ । ଏଥିରେ ରାଜା ଓ ପ୍ରଜାମାନେ ବିଦ୍ରୋହୀ ହେଲେ । ରାଜାରାମ ବହୁ ଅର୍ଥ ବ୍ୟୟ, ଲୋକ କ୍ଷୟ କରି ଶେଷରେ ବିଦ୍ରୋହ ଶାନ୍ତ କଲେ, ଏବଂ କର ଆଦାୟର ସୁବ୍ୟବସ୍ଥା କଲେ ।

୧୭୮୧ ଖ୍ରୀଷ୍ଟାବ୍ଦରେ ଚୌଥ ଆଦାୟ ନିମନ୍ତେ ରାଜାରାମ ବଙ୍ଗଦେଶକୁ ପ୍ରେରିତ ହେଲେ । ଏତେବେଳକୁ ଲର୍ଡ କ୍ଲାଇବ ପଲାସି ଯୁଦ୍ଧରେ ୧୭୫୭ ଖ୍ରୀଷ୍ଟାବ୍ଦରେ ବଙ୍ଗ ଜୟକରି ଜଣେ ଗବର୍ଣ୍ଣର ହୋଇଥିଲେ । ୧୭୬୫ ଖ୍ରୀଷ୍ଟାବ୍ଦରେ କ୍ଲାଇବ ଦ୍ୱିତୀୟ ମୋଗଲସମ୍ରାଟଙ୍କଠାରୁ ବଙ୍ଗ, ବିହାର ଓ ଓଡ଼ିଶାର ଦେବାନୀ ପାଇ ସମ୍ରାଟଙ୍କୁ ବାର୍ଷିକ ୨୬ ଲକ୍ଷ ଟଙ୍କା ଦେବାକୁ ସ୍ଥିର କରିଥିଲେ । ମାତ୍ର ବଙ୍ଗଦେଶର ଚଉଥରେ ମରହଟ୍ଟାମାନଙ୍କର ଦାବୀ ଥିଲା । କ୍ଲାଇବଙ୍କ ପରେ ଓୟାରେନ୍‌ହେଷ୍ଟିଂସ୍ ଗବର୍ଣ୍ଣର-ଜେନେରାଲ

ହୋଇଥିଲେ । ରାଜାରାମ ଚଉଥ ଦାବୀ କରିବାରୁ ସନ୍ଧି ହୋଇ ସ୍ଥିର ହେଲା ଯେ ଇଷ୍ଟଇଣ୍ଡିଆ କୋମ୍ପାନୀ ଚଉଥ ଓ ବ.କୀ ସବୁ ମିଶାଇ ମରହଟ୍ଟାମାନଙ୍କୁ ୨୨ ଲକ୍ଷ ଟଙ୍କା ଦେବେ । ସେତେବେଳେ ମହୀସୂରର ହାଇଦର ଅଲିଙ୍କ ସଙ୍ଗେ ଇଂରେଜମାନଙ୍କର ଯୁଦ୍ଧ ହେଉଥିଲା । ବଙ୍ଗଦେଶରୁ ମହୀସୁର ଯୁଦ୍ଧକୁ ସୈନ୍ୟ ପଠାଇବାକୁ ଅବଶ୍ୟକ ହେବାରୁ ହେଷ୍ଟିଙ୍ଗସ୍‌ଙ୍କ ଦାବୀ ଅନୁସାରେ ରାଜାରାମ ଓଡ଼ିଶାମଧ୍ୟ ଦେଇ ଇଂରେଜ ସୈନ୍ୟ ଯିବାକୁ ସ୍ୱୀକାର କଲେ । ଶେଷରେ ଉକ୍ତ ସନ୍ଧିରେ ସ୍ଥିର ହେଲା ଯେ ଇଂରେଜ ଓ ମରହଟ୍ଟାମାନେ ଭବିଷ୍ୟତ ଯୁଦ୍ଧାଦିରେ ପରସ୍ପରକୁ ସାହାଯ୍ୟ କରିବେ । ପ୍ରଥମ ମରହଟ୍ଟା-ସମର ପରେ ଇଂରେଜ ଓ ବେରାର ମରହଟ୍ଟା-ମାନଙ୍କମଧ୍ୟରେ ଯେଉଁ ସନ୍ଧି ସ୍ଥାପିତ ହୋଇଥିଲା, ସେଥିରେ ରାଜାରାମ ମରହଟ୍ଟାମାନଙ୍କ ପ୍ରତିନିଧିରୂପେ ନିଯୁକ୍ତ ଥିଲେ ।

ଏହିରୂପେ ନାନା ଅନ୍ତର୍ଜାତୀୟ ସନ୍ଧି ବନ୍ଧନରେ ଲିପ୍ତ ହେବାରୁ ରାଜାରାମ ଓଡ଼ିଶା ଛାଡ଼ିଗଲେ ; ଏବଂ ତାହାଙ୍କ ବିହାସ୍ତର ଅଳ୍ପକାଳମଧ୍ୟରେ ଇଂରେଜମାନେ ଓଡ଼ିଶା ଅଧିକାର କରି ମରହଟ୍ଟା ଶାସନ ଲୋପ କଲେ (୧୮୦୩) ।



# ପଞ୍ଚମ ଅଧ୍ୟାୟ

## ମରହଟ୍ଟା ଶାସନରେ ଦେଶର ଅବସ୍ଥା

### ଖ୍ରୀଷ୍ଟ ୧୭୫୧–୧୮୦୩ ଅବ୍ଦ

ମରହଟ୍ଟାଶାସନ—ପୂର୍ବେ ମୋଗଲ ଶାସନ ପଦ୍ଧତିରେ ବର୍ଣ୍ଣନା ଦିଆ ଯାଇଛି । ତାହା ପୂର୍ବବର୍ତ୍ତୀ ଗଜପତିମାନଙ୍କ ଶାସନ ପ୍ରକ୍ରିୟାଠାରୁ ଫଳତଃ କିଛି ପୃଥକ ନ ଥିବାର ଦେଖା ଯାଇଛି । ମରହଟ୍ଟାମାନେ ମଧ୍ୟ ପ୍ରାୟ ସେହିପରି ଶାସନ ଚଳାଇ ଥିଲେ । ଓଡ଼ିଶା ପୂର୍ବପରି ଗଡ଼ଜାତ ଓ ମୋଗଲବନ୍ଦୀ ଦୁଇ ବିଭାଗରେ ବିଭକ୍ତ ରହିଥିଲା । ଗଡ଼ଜାତମଧ୍ୟରେ ସକଳ ଗଡ଼ଜାତ ରାଜ୍ୟ ଏବଂ ସମୁଦ୍ରତୀରବର୍ତ୍ତୀ କନିକା, ଅଲି, କୁଜଙ୍ଗ, ହରିଶପୁର, ସାରଙ୍ଗଗଡ଼ ଓ ଖୋରଧା ରହିଥିଲା । ମରହଟ୍ଟାମାନେ ସେହି ରାଜ୍ୟକୁ କିଲା, ଏବଂ ରାଜାମାନଙ୍କୁ 'ରାଜା' ବା 'କିଲାଦାର' କହୁଥିଲେ ଏବଂ ସେହିମାନଙ୍କର ରାଜତ୍ୱ ସ୍ୱୀକାର କରି ସେମାନଙ୍କୁ କରଦ ରାଜାରୂପେ ରଖିଥିଲେ । ସେହି ରାଜାମାନେ ପୂର୍ବପରି ମରହଟ୍ଟାମାନଙ୍କୁ ସୈନ୍ୟସାମନ୍ତ ଯୋଗାଉଥିଲେ ।

ମୋଗଲବନ୍ଦୀ ବା ରାଜାବର ରାଜ୍ୟର ଶାସନରେ ମରହଟ୍ଟାମାନେ ସାମାନ୍ୟ କିଛି ପରିବର୍ତ୍ତନ କରିଥିଲେ । ମୋଗଲବନ୍ଦୀ ମରହଟ୍ଟାମାନଙ୍କ ବେଳେ ବିଶେଷ ସଙ୍କୁଚିତ ହୋଇ କେବଳ ସୁବର୍ଣ୍ଣରେଖା ନଦୀ ଓ ପୁରୀଜିଲ୍ଲାର ଚିଲିକା ମଧ୍ୟରେ ଅବଦ୍ଧ ଥିଲା । ମୋଗଲମାନଙ୍କ ପାଞ୍ଚ ସରକାର ପରିବର୍ତ୍ତରେ ମରହଟ୍ଟାମାନେ ସେହି ଭୂଖଣ୍ଡକୁ ପିପିଲି, କଟକ, ଭଦ୍ରକ, ସୋରୋ ଓ ବାଲେଶ୍ୱର ଏହିପରି ପାଞ୍ଚ 'ଚକଲା'ରେ ବିଭକ୍ତ କରିଥିଲେ । ପ୍ରତ୍ୟେକ ଚକଲା ପ୍ରାୟ

୧୫୦ ପ୍ରଗଣାରେ ବିଭକ୍ତଥିଲା । ଏହି ସମସ୍ତ ପ୍ରଗଣାମାନ ୩୨ ଜଣ ମାତ୍ର 'ଅମିଲ'ଙ୍କ ମଧ୍ୟରେ ବିଭକ୍ତ ହୋଇଥିଲା । ଦେବାନୀ ଓ ଫୌଜଦାରୀ ସମସ୍ତ ଭାର ସେହି ଅମିଲମାନଙ୍କ ଉପରେ ନ୍ୟସ୍ତ ଥିଲା । ଶାସନ, ଶାନ୍ତିରକ୍ଷା ଓ ରାଜସ୍ୱ ଆଦାୟ ଆଦି ସକଳ କାର୍ଯ୍ୟ ନିମନ୍ତେ ଅମିଲମାନେ ଦାୟୀ ଥିଲେ । ଚକଲାମାନ ଜଣେ ଜଣେ ଫୌଜଦାରଙ୍କ ଶାସନରେ ଥିଲା । ସାଧାରଣ ଶାସନ ଫୌଜଦାରମାନଙ୍କ ହସ୍ତରେ ଥିଲା । ମରହଟ୍ଟା ଫୌଜଦାରମାନଙ୍କ ନାମରେ ବାଲେଶ୍ୱରର ନାନାସ୍ଥାନ ଅଦ୍ୟାପି ପରିଚିତହୁଏ ; ଶ୍ୱସୁର ଶ୍ରେଷ୍ଠଙ୍କ ନାମାନୁସାରେ ଶ୍ୱସୁରଗଞ୍ଜ ହୋଇଛି । ଫୌଜଦାର ଲାଲା ବଶୋର ରାୟ ବାରବାଟୀ ନିକଟରେ ବାରଦ୍ୱାରୀ ପ୍ରାସାଦଟିଏ ନିର୍ମାଣ କରି ବାସ କରୁଥିବାରୁ ସ୍ଥାନଟି ଅଦ୍ୟାପି ଲାଲ ବଜାର ନାମରେ କଥିତହୁଏ; ଏବଂ ମୋତିଗଞ୍ଜ ଫୌଜଦାର ମୋତିରାମଙ୍କ ନାମରେ ପରିଚିତ । ଫୌଜଦାରମାନେ ସାଧାରଣ ଶାସନ ଓ ଶାନ୍ତିରକ୍ଷା ନିମନ୍ତେ ଦାୟୀ ଥିଲେ ସତ୍ୟ, ରାଜସ୍ୱ ସଂକ୍ରାନ୍ତ ସକଳଭାର ଅମିଲମାନଙ୍କ ଉପରେ ଥିଲା । ଅମିଲମାନେ ବେତନ ଭୋଗୀ ନ ଥିଲେ; ମାତ୍ର ସେମାନେ ଆଦାୟୀ ରାଜସ୍ୱର କିଛି ଅଂଶ ପାରିଶ୍ରମିକ ପାଉଥିଲେ ଏବଂ 'ନାନକର' ନାମରେ ନିଷ୍କର ଜାଗିର ମଧ୍ୟ ଭୋଗ କରୁଥିଲେ । ଅମିଲମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ଜଣେ ଜଣେ ସଦର କାନୁନ୍‌ଗୋ ନିଯୁକ୍ତ ଥିଲେ । ପ୍ରତ୍ୟେକ ସଦର କାନୁନ୍‌ଗୋଙ୍କୁ ସାହାଯ୍ୟ କରିବା ନିମନ୍ତେ ପ୍ରତି ପ୍ରଗଣାରେ ଜଣେ ଜଣେ ଲେଖକ ଗୁମାସ୍ତା ଥିଲେ । ପ୍ରତ୍ୟେକ ପ୍ରଗନା ପୁଣି ରାଜସ୍ୱ ସଂକ୍ରାନ୍ତ କର୍ମଚାରୀମାନଙ୍କ ନାମାନୁସାରେ ତାଲୁକ ଚୌଧୁରୀ, ତାଲୁକ କାନୁନ୍‌ଗୋ ଉଇଲାୟତି, ତାଲୁକ କାନୁନ୍‌ଗୋ, ତାଲୁକ ସଦର କାନୁନ୍‌ଗୋ, ଏବଂ ତାଲୁକ ମଜକୁରୀ ବା ମଜକୁରୀ ମଜକୁରୀ ଏହି ପାଞ୍ଚଭାଗରେ ବିଭକ୍ତ ଥିଲା ।

ପୂର୍ବପରି ଗ୍ରାମ ଶାସନ ପଞ୍ଚାୟତଦ୍ୱାରା ଚାଲୁଥିଲା । ଗ୍ରାମର ଶାନ୍ତିରକ୍ଷା ବାଦ ବିବାଦ, ଶିକ୍ଷା ସ୍ୱାସ୍ଥ୍ୟ ପ୍ରଭୃତି ଗ୍ରାମସଭା ହସ୍ତରେ ସମ୍ପୂର୍ଣ୍ଣ ନ୍ୟସ୍ତ ଥିଲା ।

ଭେଇ ପରବର୍ତ୍ତିରେ କାନୁନ୍‌ଗୋମାନେ ଗ୍ରାମର ରାଜସ୍ୱଭାର ନେଇଥିଲେ । ମୋଗଲଶାସନରେ ଯାହା କିଛି ପରିବର୍ତ୍ତନ ମରହଟ୍ଟାମାନଙ୍କଦ୍ୱାରା ହୋଇ-ଥିଲା , ତାହା ପ୍ରଧାନତଃ ରାଜାରାମ କରିଥିଲେ । ମୋଗଲମାନେ ରାଜା ଓ ପ୍ରଜାଙ୍କମଧ୍ୟରେ କାନୁନ୍‌ଗୋପ୍ରଭୃତି ବନ୍ଦୋବସ୍ତକାରୀଙ୍କଦ୍ୱାରା ମଧ୍ୟସ୍ଥ ରଖିଥିଲେ । ସୁତରାଂ ରାଜପୁରୁଷମାନଙ୍କ ସଙ୍ଗେ ପ୍ରଜାମାନଙ୍କର ସାକ୍ଷାତ ସମ୍ପର୍କ କିଛି ନ ଥିଲା । ମରହଟ୍ଟାମାନେ ହିନ୍ଦୁ ଏବଂ ହିନ୍ଦୁର ପାରମ୍ପରିକ ଶାସନ ବିଧାନରେ ଅଭ୍ୟସ୍ତ ଥିଲେ । ବିଶେଷତଃ ରାଜସ୍ୱ ବିଷୟରେ ପ୍ରଜାମାନଙ୍କ ସଙ୍ଗେ ରାଜପୁରୁଷ-ମାନଙ୍କର ସାକ୍ଷାତ ସମ୍ବନ୍ଧ ରଖିବା, ପ୍ରଜାମାନଙ୍କର ଭାବ ଅଭାବ ବୁଝି ବର୍ଷକୁ ବର୍ଷ ରାଜସ୍ୱ ଧାର୍ଯ୍ୟ କରିବା ଭାର ରାଜପୁରୁଷମାନଙ୍କର ସାକ୍ଷାତ ଦୃଷ୍ଟିରେ ରଖିବା ନିମନ୍ତେ ରାଜାରାମ କାନୁନଗୋ ପ୍ରଭୃତି କର୍ମଚାରୀମାନଙ୍କୁ ଉଠାଇ ଦେଇ ଅମିଲମାନଙ୍କ ଉପରେ ଭାର ଦେଲେ । ଅମିଲମାନେ ହିଁ ରାଜସ୍ୱ ବିଷୟରେ ମରହଟ୍ଟା ସୁବାଦାର ଓ ପ୍ରଜାମାନଙ୍କ ମଧ୍ୟରେ ଏକ ମାତ୍ର ବ୍ୟବଧାନ ସ୍ୱରୂପ ରହିଥିଲେ । ପ୍ରତି ବର୍ଷ ଫସଲର ଭାବ ଅଭାବ ଦେଖି ପ୍ରଜାମାନଙ୍କ ଉପରେ ରାଜସ୍ୱ ଧାର୍ଯ୍ୟ କରିବା ଭାର ଏକ ମାତ୍ର କର୍ମଚାରୀ ଅମିଲମାନଙ୍କ ଉପରେ ରହିଥିଲା । ମରହଟ୍ଟା ସୁବାଦାର ଅମିଲମାନଙ୍କଦ୍ୱାରା ପ୍ରତ୍ୟେକ ପ୍ରଜାର ସାକ୍ଷାତ ସମ୍ପର୍କରେ ଆସୁଥିଲେ । ସୁତରାଂ ମୋଗଲ ଶାସନରେ ପ୍ରଜା ଓ ରାଜପୁରୁଷମାନଙ୍କ ମଧ୍ୟରେ ଯେତେ ମଧ୍ୟସ୍ୱତ୍ୱାଧିକାରୀ ବା ମଧ୍ୟବର୍ତ୍ତୀ କର୍ମଚାରୀ ଥିଲେ, ମରହଟ୍ଟାଶାସନରେ ସେମାନେ ସତ୍ତ୍ୱବିହୀନ ହୋଇଥିଲେ , ମରହଟ୍ଟାଶାସନରେ ଓଡ଼ିଶାର ମୋଟ ରାଜସ୍ୱ ପ୍ରତିବର୍ଷ ସ୍ଥିର ନ ଥିଲା । ମାତ୍ର ସାଧାରଣତଃ ତାହା ୧୪ଲକ୍ଷ ୪୦ହଜାର ଟଙ୍କା ଧରା ଯାଇଥିଲା । ଏହା ଉପରେ ପୁଣି ଯାତ୍ରୀକର ସ୍ୱତନ୍ତ୍ରଭାବରେ ଅଦାୟ କରାଯାଉଥିଲା ।

ଜମିଦାର ଓ ଜାଗିରଦାର—ମୋଗଲ ଶାସନରେ ଯେଉଁମାନେ ଜମିଦାର ଥିଲେ, ସେମାନେ ମରହଟ୍ଟା ଶାସନରେ ରାଜା ବା ଖଣ୍ଡାଇତ ବୋଲି କଥିତ ହେଉଥିଲେ । ଏମାନଙ୍କ ବାଦ୍ ଯେତେ ମୋଗଲ କର୍ମଚାରୀ

ଜାଯ଼ଗିରୀ ପାଇ ଶାସନକାର୍ଯ୍ୟ ଚଳାଉଥିଲେ, ସେମାନେ ବଂଶାନୁକ୍ରମେ ରାଜସ୍ୱ ଅଦାଯ଼ ପ୍ରଭୃତି କାର୍ଯ୍ୟ ଚଳାଇ ଜାଯ଼ଗିରୀ ଭୋଗ କରୁଥିଲେ । କାଳକ୍ରମେ ସେମାନେ ଜାଯ଼ଗିରୀ ଜମିରେ ମୌରସୀ ସତ୍ତ୍ୱବାନ ହୋଇଥିଲେ, ଏବଂ ମୋଗଲ ସୁବାଦାରମାନଙ୍କର ସନ୍ତୋଷଭାଜନ ହୋଇଥିବା ପର୍ଯ୍ୟନ୍ତ ସେମାନେ ସ୍ୱତ୍ୱଚ୍ୟୁତ ହେଉ ନ ଥିଲେ । ମରହଟ୍ଟାମାନେ ପ୍ରଜା ଓ ରାଜପୁରୁଷମାନଙ୍କମଧ୍ୟରେ ସାକ୍ଷାତ ସମ୍ପର୍କ ସ୍ଥାପନ କରିବାରୁ ମୋଗଲ ଜାଯ଼ଗିରଦାରମାନେ ବହୁତ ସ୍ୱତ୍ୱଚ୍ୟୁତ ହୋଇ ଗଲେ । ଅମିଲ ଓ ସଦର କାନୁନ୍‌ଗୋମାନେ କେବଳ ନାନକର ଜାଗିରଦାର ହୋଇ ରହିଲେ । ମାତ୍ର ସେମାନେ ମଧ୍ୟ ସେ ଜାଗିରରେ ସ୍ଥାଯ଼ୀ ସ୍ୱତ୍ୱବାନ୍ ନ ଥିଲେ । ତେବେ ବେଳେବେଳେ ସେମାନେ କିମ୍ବା ସେମାନଙ୍କ ଅଧୀନସ୍ଥ ଗୁମାସ୍ତା କେହି କେହି ମରହଟ୍ଟା ସୁବାଦାର ବା ନିଜେ ଭୋଁସଲାଙ୍କୁ ସନ୍ତୁଷ୍ଟ କରି ପାରିଲେ ଜମିଦାରୀ ସନନ୍ଦ ପାଇ ସ୍ଥାଯ଼ୀ ସତ୍ତ୍ୱବାନ୍ ହେଉଥିଲେ । ଏହିରୂପେ ୧୭୭୫ ଖ୍ରୀଷ୍ଟାବ୍ଦରେ ପିପିଲି ଫୌଜଦାରଙ୍କର ଜଣେ ଗୁମାସ୍ତା ବିଲୋଚନ ପଟ୍ଟନାୟକ ନାଗପୁର ଭୋଁସଲାଙ୍କୁ ଅଧ୍ୟାଯ଼ିତ କରି ମୁଖ୍ୟ ଜଲର କୋଠଦେଶ, କାଲଯୋଡ଼ୀ ଏବଂ ଅନ୍ୟାନ୍ୟ ପ୍ରଗଣାମାନଙ୍କର ଜମିଦାରୀ ସନନ୍ଦ ପାଇ ସ୍ଥାଯ଼ୀ ଜମିଦାର ହୋଇଥିଲେ ।

ସାଧାରଣ ହିତ କାର୍ଯ୍ୟ— ମରହଟ୍ଟାମାନେ ହିନ୍ଦୁ ଓ ଧର୍ମପରାଯ଼ଣ ଥିଲେ । ଜଗନ୍ନାଥଙ୍କଠାରେ ସେମାନଙ୍କର ଭକ୍ତି ଥିଲା । ମୋଗଲ ରାଜତ୍ୱରେ ପ୍ରାଯ଼ ଦୁଇଶତ ବର୍ଷମଧ୍ୟରେ ନାନା ଦୁଃଖ ଦୁର୍ବିପାକ, ଲୁଣ୍ଠନ, ବ୍ୟଙ୍ଗବିଦ୍ରୂପ ସହି ହିନ୍ଦୁଜଗତର ପରମଆରାଧ୍ୟ ଦେବ ଜଗନ୍ନାଥ ଅବଶେଷରେ ମରହଟ୍ଟା ରାଜତ୍ୱରେ କିଛି ଶାନ୍ତି ପାଇଲେ । ମରହଟ୍ଟାମାନେ ମଧ୍ୟ ଜଗନ୍ନାଥଙ୍କ ସେବା ପୂଜା ନିମନ୍ତେ ରାଜସ୍ୱରୁ ବାର୍ଷିକ ଖଞ୍ଜା କରି ଦେଇଥିଲେ । ଖୋରଧା ରାଜାଙ୍କଠାରୁ ମରହଟ୍ଟାମାନେ ଯୁଦ୍ଧ ବ୍ୟଯ଼ ନିମନ୍ତେ ରାହାଙ୍ଗ, ସିରାଇ, ଚବିଶକୁଦ ଏବଂ ଲେମ୍ବାଇ ପ୍ରଗଣାମାନ ଆଦାଣ ଅଧିକାରରେ ନେଇଥିଲେ ।

ସେହି ପ୍ରଗଣାମାନଙ୍କ ରାଜସ୍ୱର କେତେକ ଅଂଶ ଜଗନ୍ନାଥଙ୍କ ସେବା ନିମନ୍ତେ ରଖିଥିଲେ । ପୂର୍ବେ ଭୂହାଯ ଇତ୍ତ୍ର ଗଙ୍ଗବଂଶୀୟ ରାଜାମାନେ ବିଶେଷତଃ ରହାଙ୍ଗ ପ୍ରଗନାରେ ବ୍ରାହ୍ମଣମାନଙ୍କୁ ବହୁ ଶାସନ ଦାନ କରିଥିଲେ । ମାତ୍ର ବ୍ରାହ୍ମଣମାନେ ଦାନ ଗ୍ରହଣରେ ଅସ୍ୱୀକୃତ ହେବାରୁ ଦାନଜମି ନିମନ୍ତେ କର ନେବାପାଇଁ ରାଜାଙ୍କୁ ବାଧ୍ୟ କଲେ । ଦତ୍ତ ଗ୍ରାମରୁ କର ଗ୍ରହଣ କରିବା ପାପ ମନେକରି ରାଜା ବ୍ରାହ୍ମଣଙ୍କ ଦାନଜମିରେ ସାମାନ୍ୟ ମାତ୍ର କର ଚିରସ୍ଥାୟୀ ଭାବରେ ଧାର୍ଯ୍ୟ କରି ସନନ୍ଦ ଦେଇଥିଲେ, ଏବଂ ନିଜେ ତାହା ଗ୍ରହଣ ନ କରି ଜଗନ୍ନାଥଙ୍କ ସେବା ପୂଜାରେ ବ୍ୟୟ କରୁଥିଲେ । ଏହି ରାଜସ୍ୱର ନାମ 'ସତାଇଶ ହଜାରି' ଜମା । କାରଣ ପ୍ରଥମେ ଏହା ସତାଇଶ ହଜାର ଟଙ୍କା ଥିଲା । ମରହଟ୍ଟାମାନେ ସେହି ପ୍ରଗଣାମାନ ନିଜ ଅଧିକାରରେ ନେବାରୁ ସତାଇଶ ହଜାରି ଜମା ଜଗନ୍ନାଥଙ୍କ ନିମନ୍ତେ ବ୍ୟୟ କରୁଥିଲେ; ଏବଂ ଏହାଉପରେ ଅଧିକ ବ୍ୟୟ ମଧ୍ୟ ରାଜକୋଷରୁ ଚଳାଉଥିଲେ । ଜଗନ୍ନାଥ ଯାତ୍ରୀଙ୍କଠାରୁ ମରହଟ୍ଟାମାନେ ପ୍ରାୟ ୯ ଲକ୍ଷ ଟଙ୍କା ବାର୍ଷିକ ଅଦାୟ କରି ରାଜକୋଷକୁ ନେଉଥିଲେ ।

ସେବାପୂଜା ବାଦ ମନ୍ଦିରମଧ୍ୟରେ ମରହଟ୍ଟାମାନେ କେତେକ ନୂତନ ମନ୍ଦିର ନିର୍ମାଣ ଓ ଅନ୍ୟାନ୍ୟ କାର୍ଯ୍ୟ କରିଥିଲେ । କୋଣାର୍କ ମନ୍ଦିରର ନାଟ ମନ୍ଦିର ଭାଙ୍ଗି ପଡ଼ିଥିବାରୁ ମରହଟ୍ଟାମାନେ ସେହି ପଥର ସବୁ ଆଣି ଜଗନ୍ନାଥଙ୍କ ଭୋଗ-ମଣ୍ଡପ କରାଇଥିଲେ । ତାହାର ବେଢ଼ା ପାଚୀରି କେବଳ ମୁଣ୍ଡା ଥିଲା । କୋଣାର୍କ ବେଢ଼ା ପାଚୀରିରୁ ତିନିକୁଣିଆ ପଥର ଗୁଡ଼ିକ ଆଣି ମରହଟ୍ଟାମାନେ ପୁରୀ ପାଚୀରି ଉପରେ ବସାଇଥିଲେ । ମରହଟ୍ଟାମାନେ ମଧ୍ୟ କୋଣାର୍କର ଅରୁଣସ୍ତମ୍ଭ ବୋହିଆଣି ପୁରୀ ମନ୍ଦିର ସମ୍ମୁଖରେ ବସାଇଥିଲେ । ସ୍ନାନବେଦୀର ପାହାଚ ଗୁଡ଼ିକ ପାଖର ପଥରକାମ ମରହଟ୍ଟାମାନଙ୍କର ମଧ୍ୟ କୀର୍ତ୍ତି । ପୋଲ, ଧର୍ମଶାଳା, ବୁଙ୍ଗଳାଘରମାନ ସେମାନେ କରାଇଥିଲେ । ଭ୍ରମଣ ସିଂହ ମରହଟ୍ଟା ରାଜତ୍ୱରେ ଦେଉଳ ଗୁଡ଼ି ପାଖରେ ପଥର

ବସାଇ ଥିଲେ । ବୀରକିଶୋର ଦେବଙ୍କର ଜଣେ ପାତ୍ର ଶ୍ରୀଧର ପଟ୍ଟନାୟକ ବଟମୂଳରେ ମନ୍ଦିରଟିଏ କରିଇ ବାଳମୁକୁନ୍ଦ ମୂର୍ତ୍ତି ସ୍ଥାପନ କରିଥିଲେ । ବର୍ତ୍ତମାନ ରାଜା ଦିବ୍ୟସିଂହଙ୍କ ମାତା ମାର୍କଣ୍ଡ ପୋଖରୀରେ ପଥର ବନ୍ଧାଇ ଥିଲେ । ମରହଟ୍ଟାମାନଙ୍କ ଗୁରୁ ବ୍ରହ୍ମଚାରୀ ଗୋସ୍ୱାମୀ ସ୍ୱର୍ଣ୍ଣରେ ଲକ୍ଷ୍ମୀ ପ୍ରତିମା ତିଆର କରିଇ ଜଗନ୍ନାଥଙ୍କ ବକ୍ଷରେ ବସାଇଥିଲେ । ଜଗନ୍ନାଥଙ୍କ ରତ୍ନ-ସିଂହାସନରେ ପଥର କାନ୍ଥ ନିର୍ମିତ ହୋଇଥିଲା ।

ମରହଟ୍ଟାମାନେ କାଠଯୋଡ଼ୀ ନଦୀର ପଥର ବନ୍ଧରେ ଏବଂ ବାରବାଟୀ ଦୁର୍ଗମଧ୍ୟରେ ଛୋଟିଛୋଟିକ ଜୀର୍ଣ୍ଣ ସଂସ୍କାର କରିଥିଲେ । ପୁରୀ ଠାରୁ ଓଡ଼ିଶାର ଉତ୍ତର ସୀମା ପର୍ଯ୍ୟନ୍ତ ମରହଟ୍ଟାମାନେ ଗୋଟିଏ ସଡ଼କ ଏବଂ ମଧ୍ୟେ ମଧ୍ୟେ ବହୁ ସେତୁ ନିର୍ମାଣ କରିଥିଲେ । ସେହି ମରହଟ୍ଟା ସଡ଼କର ଅବଶେଷ ଅଦ୍ୟାପି ଦେଖାଯାଏ । ଦେଶର ସ୍ଥାନେ ସ୍ଥାନେ କୂଅ, ପୋଖରୀ ଖୋଳା ହୋଇଥିଲା । ଦେଶରେ ଥିବା ନାନା ମଠମାନଙ୍କରେ ଅତିଥି, ଭକ୍ତ ଏବଂ ବିଦ୍ୟାର୍ଥୀମାନଙ୍କ ନିମନ୍ତେ ବହୁ ବହୁ ଭୂମି ଖଞ୍ଜିବାରେ ମଧ୍ୟ ମରହଟ୍ଟାମାନେ ତତ୍ପର ଥିଲେ ।

ମରହଟ୍ଟା ଅତ୍ୟାଚାର—ଏହି ସବୁ ଧର୍ମ ଓ ହିତାନୁଷ୍ଠାନର କାର୍ଯ୍ୟ ସତ୍ତ୍ୱେ ମରହଟ୍ଟା ଶାସନ ଘୋର ବ୍ୟଭିଚାରରେ କଳୁଷିତ ହୋଇଥିଲା । ମରହଟ୍ଟାଶାସନରେ ନ୍ୟାୟବିଚାର ଅଦାଲତ କି କାଚେରୀ ନ ଥିଲା କହିଲେ ଚଳେ । ନ୍ୟାୟବିଚାର ଅର୍ଥର ଅଧୀନ ଥିଲା । ଚୋର ଧରା ପଡ଼ିଲେ, ସଙ୍ଗେ ସଙ୍ଗେ ଧରିବା ବ୍ୟକ୍ତି ଚୋରକୁ ଦଣ୍ଡ ଦେଉଥିଲେ । ଚୋର, ଡକାଏତ ଦେଶରେ ପ୍ରବଳ ହୋଇଥିଲେ । ମରହଟ୍ଟା ସୈନ୍ୟମାନେ ଯେ କୌଣସି ପଥିକକୁ ବାଟରେ ଲୁଣ୍ଠନ କରୁଥିଲେ । ମରହଟ୍ଟା କବଳରୁ କେହି ପଥିକ ଅକସ୍ମାତ୍ ଖସିଗଲେ ଡକାଏତଙ୍କ କବଳରେ ସେ ନିଶ୍ଚୟ ପଡ଼ୁଥିଲା । ମରହଟ୍ଟା ସୁବାଦାର ଏବଂ ଅନ୍ୟାନ୍ୟ ଉଚ୍ଚ କର୍ମଚାରୀମାନେ ବହୁ ଧନ ଦ୍ରବ୍ୟ ଭେଟି ସଲାମି ଦେଇ ଓଡ଼ିଶାକୁ ଆସିଥାନ୍ତି । ପୁଣି ସେମାନଙ୍କର

ସ୍ଥାପିତ ମଧ୍ୟ ବେଶୀ ଦିନ ରହି ନ ଥିଲା । ସୁତରାଂ ସେହି ଅଳ୍ପକାଳ ମଧ୍ୟରେ ସେମାନେ ଓଡ଼ିଶାରୁ ଯେତେ ପାରୁଥିଲେ ସେତେ ଅର୍ଥ ଦୋହନ କରିବାରେ ଲାଗୁଥିଲେ । ଏପରି ଖୋରଧା ରାଜାଙ୍କଠାରୁ ସୁବାଦାର ମାନେ ବାର୍ଷିକ ୧୩ ଲକ୍ଷ ପର୍ଯ୍ୟନ୍ତ ଟଙ୍କା ଶୋଷଣ କରୁଥିଲେ । ଅନ୍ୟାନ୍ୟ କ୍ଷୁଦ୍ର ରାଜା ଓ ଜମିଦାରମାନଙ୍କଠାରୁ ମଧ୍ୟ ସେହିପରି ଶୋଷଣ କରା ଯାଉଥିଲା । ଫଳରେ ଓଡ଼ିଶାର ସ୍ୱାଧୀନପ୍ରିୟ ପାଇକମାନେ ବେଳେବେଳେ ବିଦ୍ରୋହୀ ହୋଇ ରାଜସ୍ୱ ବନ୍ଦକରି ଦେଉଥିଲେ , ଏବଂ ମରହଟ୍ଟା ସୈନ୍ୟମାନେ କେତେବେଳେ ସେମାନଙ୍କୁ ପରାସ୍ତ କରି ଏବଂ କେତେବେଳେ ବା ନିଜେ ପରାସ୍ତ ହୋଇ, ଅନବରତ ଯୁଦ୍ଧରେ ଲାଗିଥିଲେ ।

ରାଜସ୍ୱ ଆଦାୟକାରୀମାନେ ପ୍ରଜାମାନଙ୍କୁ ବିଶେଷ ଯନ୍ତ୍ରଣା ଦେଇ କର ଅଦାୟ କରୁଥିଲେ । ମରହଟ୍ଟା ସୈନ୍ୟମାନଙ୍କର ଅତ୍ୟାଚାର ମଧ୍ୟ ବିଶେଷ ଭୟଙ୍କର ଥିଲା । ସେମାନଙ୍କୁ 'ବର୍ଗୀ' କହୁଥିଲେ । ବର୍ଗୀ ଭୟରେ ଲୋକେ ତ୍ରସ୍ତ ହେଉଥିଲେ । ସେମାନଙ୍କ ଭୟରେ ଲୋକେ ଭଲ ଖାଉ ନ ଥିଲେ , ଭଲ ପିନ୍ଧୁ ନ ଥିଲେ, କି ଭଲ ଘର କରି ରହୁ ନ ଥିଲେ । ଧନଦ୍ରବ୍ୟ ସବୁ ଲୋକେ ମାଟିରେ ପୋତି ରଖୁଥିଲେ । ବର୍ଗୀମାନେ ମଧ୍ୟ ମାଟିରେ ଖାବଲି ମାରି ଧନଦ୍ରବ୍ୟର ସନ୍ଧାନ କରୁଥିଲେ । ବର୍ଗୀ ଭୟରେ ଲୋକେ ଗ୍ରାମଛାଡ଼ି ବନପର୍ବତରେ ଆଶ୍ରୟ ଖୋଜୁଥିଲେ ।

ମରହଟ୍ଟାମାନଙ୍କ ଅତ୍ୟାଚାର ଲୋକମୁଖରେ ଏବଂ ଇଂରେଜ ଲେଖକ-ମାନଙ୍କ ଲେଖାରେ ଥିବାର ଦେଖାଯାଏ । ଏଥିରେ କିଛି ଅତିରଞ୍ଜନ ଥାଇପାରେ । ମାତ୍ର ଓଡ଼ିଶା ଅଧିକାର ବେଳରୁ ମରହଟ୍ଟା ଜାତିର ଅବସାନ ବେଳ, ଜାତୀୟ ନୈତିକତା ସେମାନଙ୍କ ମଧ୍ୟରେ ମ୍ଳାନ ହୋଇ ଆସିଥିଲା, ସୁତରାଂ ଓଡ଼ିଶାରେ ମରହଟ୍ଟା କର୍ମଚାରୀ ଓ ବର୍ଗୀମାନେ ଯେ ଅତ୍ୟାଚାର କରୁଥିଲେ, ସନ୍ଦେହ ନାହିଁ । ଏହି ସବୁ ଅତ୍ୟାଚାର ଉପରେ ପୁଣି ଘୋର ଦୁର୍ଭିକ୍ଷ ଯନ୍ତ୍ରଣା । ୧୭୭୦ ରୁ ୧୭୭୭ ମଧ୍ୟରେ ଦୁଇଟି ଘୋର ଦୁର୍ଭିକ୍ଷର

ବିଷୟ ପୂର୍ବେ ଲେଖାଯାଇଛି । ଏହାପରେ ଘୋର ସନ୍ତ୍ରଣାମଧ୍ୟରେ ଓଡ଼ିଶାରେ ଶିଳ୍ପ ବ୍ୟବସାୟ ଯାହା କିଛି ଥିଲା, ତାହା କ୍ରମେ ଲୋପ ପାଇଲା । ମରହଟ୍ଟା ଅତ୍ୟାଚାରର ଯେପରି ବର୍ଣ୍ଣନା ପ୍ରଥମ ଇଂରେଜ ଶାସନକର୍ତ୍ତାମାନଙ୍କ ଲେଖାରୁ ମିଳେ, ତହିଁରେ ଓଡ଼ିଶାରେ ଲୋକାଧିବାସ ଯେ କିପରି ଥିଲା, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଭାଗ୍ୟର କଥା ୫୨ ବର୍ଷମଧ୍ୟରେ ମରହଟ୍ଟା ଶାସନ ଲୋପ ପାଇବାରୁ ଦେଶବାସୀ ଆଶ୍ୱସ୍ତ ହେଲେ ।

ଉତ୍କଳସାହିତ୍ୟ — ମାତ୍ର ଏସମସ୍ତ ଅତ୍ୟାଚାର ଅନାଚାର ମଧ୍ୟରେ ଉତ୍କଳ-ସାହିତ୍ୟର ଗତି ସମାନଭାବରେ ଚାଲିଥିଲା । କବିବର ଅଭିମନ୍ୟୁ ସାମନ୍ତ ସିଂହାର କଟକ ଜିଲାର ବାଲିଆ ଗ୍ରାମରେ ଜନ୍ମଗ୍ରହଣ କରି ବର୍ଗୀ ଅତ୍ୟାଚାରରେ ଜର୍ଜ୍ଜରିତ ଦେଶପ୍ରାଣରେ ରାଧାକୃଷ୍ଣଙ୍କର ପ୍ରେମସୁଧା ଢାଳି ଦେଇଥିଲେ । ତାହାଙ୍କ 'ବିଦଗ୍ଧଚିନ୍ତାମଣି' ଉତ୍କଳ-ସାହିତ୍ୟର ଗୋଟିଏ ଅମୂଲ୍ୟ ରତ୍ନ । 'ପ୍ରୀତିଚିନ୍ତାମଣି' ଅଭିମନ୍ୟୁଙ୍କର ଅନ୍ୟ ଗୋଟିଏ କାବ୍ୟ । ଉଭୟ କାବ୍ୟ ପ୍ରେମର ଆଦର୍ଶ ଓ ବିଶ୍ୱବ୍ୟାପକତା କୀର୍ତ୍ତନ କରେ । ଅଭିମନ୍ୟୁଙ୍କ ବ୍ୟତୀତ ଭୀମାଧୀବର, ଅଚ୍ୟୁତାନନ୍ଦ ଦାସ, ହରିଦାସ ପ୍ରଭୃତି କବିମାନେ ଉତ୍କଳ ସାହିତ୍ୟର ଗତି ଅଗ୍ରସର କରାଇଥିଲେ । ଭୀମାଧୀବରଙ୍କ 'କପଟପାଶା' ଏବଂ ଶେଷୋକ୍ତ ଭକ୍ତ କବି ଦୁହିଁଙ୍କର 'ମାଳିକା' ଓ ଭଜନ-ମାଳାମାନ ଜନସାଧାରଣରେ ବଡ଼ ଆଦରଣୀୟ ହୋଇଅଛି ।

ବଙ୍ଗବାସୀ ଓ ମରହଟ୍ଟା ବସତି—ପୂର୍ବେ କୁହାଯାଇଛି ମୋଗଲ ଶାସନକାଳରେ ବହୁ ବଙ୍ଗବାସୀ ସରକାରୀକର୍ମ ଉପଲକ୍ଷରେ ଆସି ଏ ଦେଶରେ ବସତି କରିଥିଲେ । ମରହଟ୍ଟା ଶାସନରେ ମଧ୍ୟ ବଙ୍ଗବାସୀ ରହିଥିଲେ । ଗୌରାଙ୍ଗ ରାୟ ନାମକ ଜଣେ ଯାଜପୁର ବଙ୍ଗାଳୀ ମରହଟ୍ଟାଙ୍କ ଦରବାରରେ ବିଶେଷ ପ୍ରାଧାନ୍ୟ ପାଇଥିଲେ । ସରକାରୀକର୍ମ ଉପଲକ୍ଷ୍ୟରେ ଆସି ବଙ୍ଗାଳିମାନେ ପୁଣି ଓଡ଼ିଶା ମଧ୍ୟରେ ନୂତନ ବସତି କରି ରହିଲେ । ମରହଟ୍ଟାମାନେ କେତେକ ମଧ୍ୟ ଏଦେଶରେ ଥିଲେ ।

---

# ଷଷ୍ଠ ଅଧ୍ୟାୟ

## ଇଂରେଜ ରାଜତ୍ୱ ପ୍ରତିଷ୍ଠା

### ଖ୍ରୀଷ୍ଟ ୧୮୦୩—୧୮୧୮ ଅବ୍ଦ

ଇଂରେଜବାଣିଜ୍ୟ ଅବସାନ — ପୂର୍ବେ କୁହାଯାଇଛି ଇଂରେଜ ବଣିକମାନେ ଓଡ଼ିଶାରେ ବାଣିଜ୍ୟକୋଠିମାନ ସ୍ଥାପନ କରି ଗୌରବଭାବରେ ଆପଣାର ବାଣିଜ୍ୟ ବଢାଇବାରେ ଲାଗିଥିଲେ । ଅଳ୍ପକାଳମଧ୍ୟରେ ସେମାନେ ଓଡିଶାର ନାନା ସ୍ଥାନରୁ ବାଣିଜ୍ୟକୋଠି ଉଠାଇ ନେଇ କେବଳ ବାଲେଶ୍ୱର ବନ୍ଦରକୁ ବଙ୍ଗ ବିହାର ଓ ଓଡିଶା ବାଣିଜ୍ୟର ପ୍ରଧାନ କେନ୍ଦ୍ର କରିଥିଲେ । କ୍ରମେ ମୋଗଲ ଓ ଅପଗାନ ଅତ୍ୟାଚାରରେ ସେମାନେ ନୀରବତା ଛାଡ ଅସ୍ତ୍ରଶସ୍ତ୍ରବଳରେ ଆପଣାର ବାଣିଜ୍ୟ ରକ୍ଷା-କରିବାକୁ ବାଧ୍ୟ ହୋଇଥିଲେ । ଶେଷରେ ମରହଟ୍ଟା ଅତ୍ୟାଚାରରେ ବାଣିଜ୍ୟ ଅତ୍ୟନ୍ତ ସଙ୍କୁଚିତ ହୋଇଗଲା, ଏବଂ ପ୍ରାକୃତିକ ବିପାକ ମଧ୍ୟ ବାଣିଜ୍ୟ ଲୋପ କରିବାରେ ସାହାଯ୍ୟ କଲା । ବୁଢ଼ାବଳଙ୍ଗ ନଦୀ ମୁହାଣ କ୍ରମେ କ୍ରମେ ପୋତି ହୋଇ ପଡ଼ିଲା, ଏବଂ ସମୁଦ୍ର ମଧ୍ୟ ବାଲେଶ୍ୱରଠାରୁ ଦୂରକୁ ଘୁଞ୍ଚିଗଲା । ଇଂରେଜ ବାଣିଜ୍ୟ ଆରମ୍ଭ ବେଳେ ବାଲେଶ୍ୱର ସମୁଦ୍ର-ଠାରୁ ୪ ମାଇଲ ମାତ୍ର ଥିଲା; କ୍ରମେ ସମୁଦ୍ର ଘୁଞ୍ଚିଯାଇ ଦୂରତା ୭ ମାଇଲ ପର୍ଯ୍ୟନ୍ତ ବଢ଼ିଗଲା । ଏଥି ପୂର୍ବରୁ କଲିକତା ବାଣିଜ୍ୟର ପ୍ରଧାନ କେନ୍ଦ୍ର ଏବଂ ଭାରତରେ ଇଂରେଜ ଅଧିକାରର ପ୍ରଧାନ ରାଜଧାନୀହୋଇ ଉଠିଥିଲା । ଗଙ୍ଗାନଦୀ ବାଣିଜ୍ୟପୋତ ଯାତାୟାତ ପକ୍ଷରେ ବିଶେଷ ସୁବିଧାଜନକ ହୋଇ ଉଠିଲା । ସୁତରାଂ ଇଂରେଜ ବଣିକମାନେ ଓଡିଶା ଏବଂ ବାଲେଶ୍ୱରରୁ ବାଣିଜ୍ୟ ଉଠାଇ ନେଇ କଲିକତା ଆଶ୍ରୟ କଲେ ।

ମରହଟ୍ଟାଙ୍କ ସଙ୍ଗେ ଇଂରେଜଙ୍କ ସନ୍ଧି ବନ୍ଦୋବସ୍ତ—ଓଡ଼ିଶା ଅଧିକାର କରିବା ପୂର୍ବରୁ ଓଡ଼ିଶା ଶାସନଭାର ନିଜ ହାତରେ ନେବା ସକାଶେ ଇଂରେଜମାନେ ମରହଟ୍ଟାଙ୍କ ସଙ୍ଗେ ଏକାଧିକବାର ପ୍ରସ୍ତାବ ଉଠାଇଥିଲେ । ୧୭୫୭ ଖ୍ରୀଷ୍ଟାବ୍ଦରେ ପଲାସୀ ଯୁଦ୍ଧରେ ଜୟ କରିବା ପରେ ଇଂରେଜମାନେ କାର୍ଯ୍ୟତଃ ବଙ୍ଗଦେଶର ଅଧିକାର ପାଇଥିଲେ । ପୁଣି ୧୭୬୪ ଖ୍ରୀଷ୍ଟାବ୍ଦରେ ବଙ୍ଗର ଶେଷ ନବାବ ମିର କାସିମଙ୍କୁ ପରାସ୍ତ କରି ସେମାନେ ବଙ୍ଗର ସମ୍ପୂର୍ଣ୍ଣ ଅଧିକାର ପାଇଥିଲେ । ୧୭୬୫ ଖ୍ରୀଷ୍ଟାବ୍ଦରେ ଲର୍ଡ କ୍ଲାଇବ ବଙ୍ଗଦେଶର ଗଭର୍ଣ୍ଣର ନିଯୁକ୍ତ ହେଲେ । ସେହି ବର୍ଷ ଅଲ୍ଲାହାବାଦଠାରେ କ୍ଲାଇବ ଦିଲ୍ଲୀ ସମ୍ରାଟଙ୍କଠାରୁ ବଙ୍ଗ, ବିହାର ଓ ଓଡ଼ିଶାର ଦେବାନୀ ପାଇଁ ବାର୍ଷିକ ୨୬ ଲକ୍ଷ ଟଙ୍କା ସମ୍ରାଟଙ୍କୁ କର ଦେବା ନିମନ୍ତେ ସନ୍ଧି ସ୍ୱୀକାର କରିଥିଲେ । ମାତ୍ର ଓଡ଼ିଶା ସେତେବେଳେ ମରହଟ୍ଟା ଶାସନରେ ଥିଲା । କ୍ଲାଇବ ୧୭୬୬ ଖ୍ରୀଷ୍ଟାବ୍ଦରେ ଭୋଁସଲା ଜାନୋଜୀଙ୍କର ଓଡ଼ିଶା ସୁବାଦାର ଭବାନୀ ପଣ୍ଡିତଙ୍କ ସଙ୍ଗେ ବାର୍ଷିକ ନିର୍ଦ୍ଦିଷ୍ଟ କର ଧାର୍ଯ୍ୟକରି ଓଡ଼ିଶା ଶାସନ ଭାର ଇଷ୍ଟ ଇଣ୍ଡିଆ କୋମ୍ପାନୀଙ୍କୁ ଦେବା ନିମନ୍ତେ ପ୍ରସ୍ତାବ କରି ପଠାଇଲେ । ମୋଟି ସାହେବ ଏହି ଦୌତ୍ୟ କାର୍ଯ୍ୟରେ ଭବାନୀ ପଣ୍ଡିତଙ୍କ ନିକଟକୁ କଟକ ଆସିଥିଲେ । ବଙ୍ଗ, ବିହାର ଓ ଓଡ଼ିଶାର ଚଉଥ ମରହଟ୍ଟାମାନଙ୍କର ପ୍ରାପ୍ୟ ଥିବାରୁ, ଏବଂ ଇଷ୍ଟ ଇଣ୍ଡିଆ କୋମ୍ପାନୀ ଉକ୍ତ ଦେଶମାନଙ୍କର ଦେବାନୀ ନେଇଥିବାରୁ ଭବାନୀ ପଣ୍ଡିତ ମୋଟିଙ୍କଠାରୁ ଚଉଥ ଦାବି କଲେ । ମାତ୍ର ବଙ୍ଗ, ବିହାର ଓ ଓଡ଼ିଶାର ଚଉଥ ନିମନ୍ତେ ଓଡ଼ିଶାର ସକଳ ରାଜସ୍ୱ ମରହଟ୍ଟାମାନେ ପାଉ ଥିବାର କୋମ୍ପାନୀ ବୁଝିଥିଲେ । ତହୁଁ ମୋଟି ପ୍ରସ୍ତାବ କଲେ ଇଂରେଜଙ୍କ ହସ୍ତରେ ଓଡ଼ିଶା ଶାସନଭାର ମରହଟ୍ଟାମାନେ ଛାଡ଼ି ଦେଲେ ଇଂରେଜମାନେ ଯଥାସମୟରେ ବାର୍ଷିକ କର ନାଗପୁରକୁ ପଠାଉଥିବେ, ଏବଂ ଜଣେ ଇଂରେଜ କର୍ମଚାରୀ ସେଥି ନିମନ୍ତେ ନାଗପୁର ଦରବାରରେ ବନ୍ଧକସ୍ୱରୂପ ରହିବେ । ଭବାନୀ-

ପଣ୍ଡିତ ଜଣେ ବିଚକ୍ଷଣ ରାଜନୀତିଜ୍ଞ । ଇଂରେଜ ବନ୍ଧୁତାର ଅବଶ୍ୟକତା ସେ ବେଶ ବୁଝିଥିଲେ । ଜାନୋଜୀ ଭୋଁସଲାଙ୍କ ସଙ୍ଗେ ପରାମର୍ଶ କରି କ୍ଲାଇବଙ୍କୁ ଉତ୍ତର ଦେବେ କହି ମୋଟିଙ୍କୁ ବିଦାୟ ଦେଲେ । ଏଥି-ମଧ୍ୟରେ ପେଶବା ନାଗପୁର ଅବରୋଧ କରି ଅଧିକାର କରି ବସିବାରୁ ଜାନୋଜୀ ରାଜ୍ୟଚ୍ୟୁତ ହେଲେ ; ଏବଂ ଇଂରେଜ ସନ୍ଧି ପ୍ରସ୍ତାବ ସ୍ଥଗିତ ହେଲା । ଅଳ୍ପ ପରେ ପୁଣି ଓ୍ୱାରେନ୍‌ହେଷ୍ଟିଂସ୍ ବାର୍ଷିକ କରରେ ଓଡ଼ିଶା ଉପକୂଳର କେତେକ ଅଂଶ ନେବା ପାଇଁ ସୁବାଦାର ମାଧୋଜୀ ହରିଙ୍କ ସଙ୍ଗେ ପ୍ରସ୍ତାବ କରି ଅକୃତକାର୍ଯ୍ୟ ହୋଇଥିଲେ ।

ଅଳ୍ପକାଳମଧ୍ୟରେ ଇଂରେଜ ଆଧିପତ୍ୟ ଦମନ କରିବା ନିମନ୍ତେ ମହୀଶୂରର ହାଇଦର ଅଲ୍ଲୀ, ହାଇଦରାବାଦର ନିଜାମ ଏବଂ ମରହଟ୍ଟାମାନେ ମିଳିତଭାବରେ ହୋଇ ବିରାଟ ଯୁଦ୍ଧର ଆୟୋଜନ କଲେ । ପେଶବା ଓ ଭୋଁସଲାଙ୍କ ମଧ୍ୟରେ ମନୋମାଳିନ୍ୟ ଥିଲା , ଏବଂ ଭୋଁସଲା ଇଂରେଜଙ୍କ ସଙ୍ଗେ ପ୍ରଥମରୁ ବନ୍ଧୁତା ରକ୍ଷା କରିଥିଲେ । ତଥାପି ପେଶବାଙ୍କ ଆଦେଶରେ ମାଧୋଜୀ ଘୋର ଅନିଚ୍ଛା ସତ୍ତ୍ୱେ କଟକରୁ ଏକ ଦଳ ସୈନ୍ୟ ୧୭୭୯ ଖ୍ରୀଷ୍ଟାବ୍ଦରେ ବଙ୍ଗ ଆକ୍ରମଣ ନିମନ୍ତେ ପଠାଇଲେ । ମାତ୍ର ଇଂରେଜମାନେ ସେହି ଆକ୍ରମଣକାରୀ ମରହଟ୍ଟା ସୈନ୍ୟଙ୍କୁ ଅନାୟାସରେ ନିଜ ପକ୍ଷ କରିନେଲେ । ମାଧୋଜୀଙ୍କ ସଙ୍ଗେ ଇଂରେଜଙ୍କର ସନ୍ଧି ହେଲା । ହାଇଦର ଅଲ୍ଲୀଙ୍କ ବିରୁଦ୍ଧରେ ଇଂରେଜମାନେ କର୍ଣ୍ଣେଲ ପାର୍ଶିଙ୍କ ଅଧୀନରେ କଲିକତାରୁ ସୈନ୍ୟ ପଠାଉଥିଲେ । ସନ୍ଧି ଅନୁସାରେ ମାଧୋଜୀ ସେମାନଙ୍କୁ ଓଡ଼ିଶାମଧ୍ୟରେ ପଥ ଛାଡ଼ିଦେଲେ ଏବଂ ସେମାନଙ୍କ ବଳ ବୃଦ୍ଧି ନିମନ୍ତେ ୨ ହଜାର ମରହଟ୍ଟା ଅଶ୍ୱାରୋହୀ ସାହାଯ୍ୟ ଦେଲେ । ଇଂରେଜମାନେ ସେହି ମରହଟ୍ଟା ସୈନ୍ୟଙ୍କ ବ୍ୟୟ ନିମନ୍ତେ ମାସିକ ୧ ଲକ୍ଷ ଟଙ୍କା ଏବଂ ପେଶବାଙ୍କଠାରୁ ମଣ୍ଡଲା ଗଡ଼ ଅଧିକାର କରିବା ନିମନ୍ତେ ଭୋଁସଲାଙ୍କୁ ସୈନ୍ୟ ସାହାଯ୍ୟ ଦେବାକୁ ସ୍ୱୀକାର

କଲେ । ନାଗପୁରରେ ଜଣେ ଇଂରେଜ ରାଜଦୂତ ରହିବାର ସ୍ଥିର ହେଲା । ଏହି ସନ୍ଧି ଅନୁସାରେ ଇଂରେଜଙ୍କ ସଙ୍ଗେ ଭୋଁସଲାଙ୍କ ବନ୍ଧୁତା ବହୁ ଦିନ ସ୍ଥାୟୀ ରହିଲା ।

ଓଡ଼ିଶା ଆକ୍ରମଣ—କେତେକାଳ ପରେ ୧୮୦୨ ଖ୍ରୀଷ୍ଟାବ୍ଦରେ ଭୋଁସଲା ସିନ୍ଧିଆଙ୍କ ସଙ୍ଗେ ମିଶି ନିଜାମଙ୍କ ରାଜ୍ୟ ଆକ୍ରମଣ କଲେ । ନିଜାମଙ୍କ ସଙ୍ଗେ ଇଂରେଜମାନେ ସନ୍ଧି କରି ମିତ୍ରତା ସ୍ଥାପନ କରିଥିଲେ । ସୁତରାଂ ଇଂରେଜମାନେ ନିଜାମଙ୍କ ରାଜ୍ୟ ଉଦ୍ଧାର ନିମନ୍ତେ ସିନ୍ଧିଆ, ଭୋଁସଲା ଓ ଅନ୍ୟାନ୍ୟ ମରହଟ୍ଟା ଦଳପତିମାନଙ୍କ ସଙ୍ଗେ ଯୁଦ୍ଧ କଲେ । ଏହା ଦ୍ୱିତୀୟ ମରହଟ୍ଟା ସମର । ପ୍ରଥମେ ସିନ୍ଧିଆ ପରାସ୍ତ ହୋଇ ଇଂରେଜଙ୍କ ସଙ୍ଗେ ସନ୍ଧି କରିବାରୁ ଭୋଁସଲା ଏକାକୀ ଇଂରେଜଙ୍କ ସଙ୍ଗେ ଯୁଦ୍ଧ ଚଳାଇଲେ । ଏହି ଯୁଦ୍ଧମଧ୍ୟରେ ମରହଟ୍ଟାମାନଙ୍କଠାରୁ ଓଡ଼ିଶା ଏକାବେଳକେ ଅଧିକାର କରିବା ଉଦ୍ଦେଶ୍ୟରେ ଗଭର୍ଣ୍ଣରଜେନେରାଲ ଲର୍ଡ ଓ୍ୱେଲେସଲୀ ଓଡ଼ିଶା ଆକ୍ରମଣ କରିବାକୁ ସୈନ୍ୟ ପଠାଇଲେ । ଏଥି ପୂର୍ବେ କୁହାଯାଇଛି, ୧୭୮୦ ଖ୍ରୀଷ୍ଟାବ୍ଦରେ ମହୀଶୂର ଯୁଦ୍ଧ ନିମନ୍ତେ ଇଂରେଜ ସୈନ୍ୟ ଓଡ଼ିଶା ମଧ୍ୟଦେଇ ଯାଇଥିଲେ । ଆଉଥରେ ମଧ୍ୟ ୧୭୯୦ ଖ୍ରୀଷ୍ଟାବ୍ଦରେ ତୃତୀୟ ମହୀଶୂର ସମର ନିମନ୍ତେ ଇଂରେଜସୈନ୍ୟ କଲିକତାଠାରୁ ଓଡ଼ିଶା ବାଟେ ଯାଇଥିଲେ । ସୁତରାଂ ଇଂରେଜ ସେନାପତି-ମାନେ ଓଡ଼ିଶାର ବାଟ ଘାଟ ସମ୍ବନ୍ଧରେ କିଛି କିଛି ଅଭିଜ୍ଞତା ପାଇଥିଲେ । ଏଣେ ଓଡ଼ିଶାବାସୀ ମଧ୍ୟ ଘୋର ଅତ୍ୟାଚାରରେ ପ୍ରପୀଡ଼ିତ ହୋଇ ମରହଟ୍ଟା ଶାସନରୁ ମୁକ୍ତି ଲୋଡ଼ୁଥିଲେ ।

ପୁରୀ ଅଧିକାର—ଏହି ସୁଯୋଗ ଦେଖି ଲର୍ଡ ଓ୍ୱେଲେସଲୀ ଓଡ଼ିଶା ଆକ୍ରମଣର ଆୟୋଜନ କଲେ । ତାହାଙ୍କ ଆଦେଶରେ ଗଞ୍ଜାମ କଲେକ୍ଟର ଓଡ଼ିଶା ଆକ୍ରମଣକାରୀ ସୈନ୍ୟଙ୍କ ନିମନ୍ତେ ଖାଦ୍ୟପେୟ, ଗାଡ଼ି ଏବଂ ଯେଉଁମାନେ ଆକ୍ରମଣରେ ହତ ବା ଆହତ ହେବେ ସେମାନଙ୍କୁ ବୋହୁ

ନେବା ନିମନ୍ତେ ଗୃହଶତ୍ରୁ ଭରବାଣୀ ଅଗରୁ ଅୟୋଜନ କରି ରଖି-
ଥିଲେ । ୧୪୦୦ ଦେଶୀ ସିପାହୀ ଏବଂ ୨୦୦ ଇଂରେଜ ସୈନ୍ୟ କର୍ଣ୍ଣେଲ
ହାର୍କୋର୍ଟଙ୍କ ଅଧୀନରେ ୧୮୦୩ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୮ ତାରଖରେ
ଗଞ୍ଜାମରୁ ବାହାରିଲେ । ସେ ସବୁ ସେମାନେ ଓଡ଼ିଶା ସୀମାରେ ଥିବା
ପ୍ରୟାଗୀ ଗ୍ରାମଠାରେ ସାଗରବେଳାରେ କଟାଇ ସନ୍ଦେହ ୮୦୦ ଗାଡ଼ୀ ଖାଦ୍ୟ ଏବଂ
ଦେଢଲକ୍ଷ ଟଙ୍କା ଧରି ଚିଲିକାକୂଳେ କୂଳେ ଯାତ୍ରା କଲେ । ଚିଲିକା ମୁହାଣ
ପାର ହେବାକୁ ଦୁଇଦିନ ଲାଗିଲା । ସେହି ସଙ୍କଟମୟ ପଥରେ ଅଳ୍ପ ସଂଖ୍ୟକ
ମରହଟ୍ଟା ଦୃଢଭାବରେ ଗତିରୋଧ କରିଥିଲେ, ଇଂରେଜ ସୈନ୍ୟଙ୍କ
ଦୁର୍ଦ୍ଦଶା ଅକଥନୀୟ ହୋଇଥାନ୍ତା, ମାତ୍ର ମରହଟ୍ଟାମାନେ ଅଗରୁ ପଳାଇ ଯାଇ
ଥିଲେ, ଏବଂ ମାଲୁଦର ଜାଗିରଦାର ଫତେ ମହମ୍ମଦ ଇଂରେଜସୈନ୍ୟଙ୍କୁ
ବହୁ ସାହାଯ୍ୟ ଦେଇଥିଲେ । ୧୫ ତାରଖରେ ଇଂରେଜସୈନ୍ୟ
ନିର୍ବିପଦରେ ମାଣିକପାଟଣାରେ ପହଞ୍ଚିଲେ । ସେଠାରୁ ଚବଶକୁଦ ଦେଇ
୨୨ ତାରିଖ ଦିନ ପୁରୀ ନିକଟରେ ଅବସ୍ଥାନ କଲେ । ପୁରୀର ପଣ୍ଡାମାନେ
ଜଗନ୍ନାଥଙ୍କୁ ହାର୍କୋର୍ଟଙ୍କ ଅଶ୍ରୟରେ ରକ୍ଷା କରିବା ନିମନ୍ତେ ଅନୁରୋଧ
କଲେ । ଓଏଲସଲୀଙ୍କ ଅଦେଶ ଅନୁସାରେ ହାର୍କୋର୍ଟ ଜଗନ୍ନାଥଙ୍କ ଉପରେ
ହସ୍ତକ୍ଷେପ ନ କରି ଏକଦଳ ହିନ୍ଦୁ ପଲଟନଙ୍କ ହସ୍ତରେ ମନ୍ଦିର ରକ୍ଷା ଭାର
ଦେଇ କଟକ ଅଭିମୁଖେ ଅଗ୍ରସର ହେଲେ । ମରହଟ୍ଟାମାନେ ପୁରୀ ନିକଟବର୍ତ୍ତୀ
ନଦୀର ପରପାରରେ ଯୁଦ୍ଧାର୍ଥ ପ୍ରସ୍ତୁତ ଥିଲେ । ମାତ୍ର ଯେ ସାହସ ଓ ଦମ୍ଭ
ବଳରେ ମରହଟ୍ଟା ଜାତି ଅତି ଅଳ୍ପକାଳ ପୂର୍ବେ ବହୁ ଯୁଦ୍ଧରେ ଜୟ କରି
ସମଗ୍ର ଭାରତରେ ଏକଛତ୍ରୀ ହୋଇଥିଲେ, ବର୍ତ୍ତମାନ ଘୋର ଅତ୍ୟାଚାର
ଓ ଜଘନ୍ୟ ଶାସନ ଫଳରେ ସେମାନେ ସେ ଦମ୍ଭ ଓ ସାହସ ହରାଇ
ବସିଥିଲେ । ଇଂରେଜ ଗୋଳା ବର୍ଷଣରେ ମରହଟ୍ଟା ଅଶ୍ୱାରୋହୀ
ଭୟବିହ୍ୱଳ ହୋଇ ବୃକ୍ଷ ଓ ଜଙ୍ଗଲମଧ୍ୟରେ ଲୁଚି ରହିଲେ । ପୁରୀଠାରୁ କଟକ
ପର୍ଯ୍ୟନ୍ତ କଞ୍ଚାରାସ୍ତା, ବର୍ଷା ଦିନରେ ଦୁର୍ଗମ ଥିଲା । ଏହି ପଥରେ ମଧ୍ୟ

ମରହଟ୍ଟାମାନେ ବେଳେବେଳେ ଗଡ଼ରୋଧ କରୁଥିଲେ । ଦିନେ ମରହଟ୍ଟା ଅଶ୍ୱାରୋହୀ ଗଡ଼ରେ ନିଜ ଶିବିରରେ ବସି ଭୋଜନ କରୁଥିବା ବେଳେ ଇଂରେଜସୈନ୍ୟ ସେମାନଙ୍କୁ ଅକସ୍ମାତ୍ ଆକ୍ରମଣ କରି ଅସ୍ତ୍ରଶସ୍ତ୍ର କାଢ଼ି-ନେଲେ । ମରହଟ୍ଟାମାନେ ସେଠାରୁ ପଳାଇଯାଇ ପିପିଲି ନିକଟବର୍ତ୍ତୀ ବାଣ୍ଡମୁଣ୍ଡପ୍ରାନ୍ତରେ ବହୁ ସୈନ୍ୟ ଏକତ୍ର କରି ଯୁଦ୍ଧ ଅପେକ୍ଷାରେ ରହିଲେ । ଅକ୍ଟୋବର ୪ତାରିଖରେ ଇଂରେଜମାନେ ପହଞ୍ଚିବା ମାତ୍ରେ ମରହଟ୍ଟାମାନେ ସେମାନଙ୍କୁ ଆକ୍ରମଣ କଲେ, ମାତ୍ର ଅଳ୍ପସମୟ ପରେ ସମ୍ପୂର୍ଣ୍ଣ ପରାସ୍ତ ହୋଇ ଖୋର୍ଦ୍ଧା ଜଙ୍ଗଲରେ ଆଶ୍ରୟ ନେଲେ । ଇଂରେଜସୈନ୍ୟ ଗ୍ରାମ୍ୟ ଜନପଦରେ କଟକପଥରେ ଯାତ୍ରା କରି କାଠଯୋଡ଼ୀର ଦକ୍ଷିଣକୂଳରେ ଉପସ୍ଥିତ ହେଲେ । ନଦୀ ପାର କରାଇବାକୁ ନାବିକ ନଥିଲା । ଭାଗ୍ୟକ୍ରମେ ମାଲୁଦର ଫତେ ମହମ୍ମଦ ଇଂରେଜମାନଙ୍କ ସଙ୍ଗେ ସଙ୍ଗେ ଥିଲେ । ତାଙ୍କର ଜଣେ ମାତ୍ର ନାବିକ ଥିଲା । ସେହି ଜଣେ ମାତ୍ର ନାବିକ ସମସ୍ତ ସୈନ୍ୟଙ୍କୁ ନଦୀ ପାର କରାଇ ଦେଲା । ଫତେ ମହମ୍ମଦ ଏହି ସଙ୍କଟ ବେଳେ ସାହାଯ୍ୟ କରିଥିବାରୁ ଇଂରେଜମାନେ ଓଡ଼ିଶା ଅଧିକାର କରିବା ମାତ୍ରେ ତାହାଙ୍କୁ ମାଲୁଦର ନିଷ୍କର ଜାଗିରଦାର କରି ଦେଇଥିଲେ ।

କଟକ ଅଧିକାର— କାଠଯୋଡ଼ୀ ପାର ହୋଇ କର୍ଣ୍ଣେଲ ହାର୍କୋର୍ଟ ଅକ୍ଟୋବର ୮ ତାରିଖ ଦିନ ଲାଲବାଗ ବାଟେ କଟକ ମଧ୍ୟରେ ପଶିଲେ । ଲାଲବାଗ ମରହଟ୍ଟା କଚେରୀ ଥିଲା । ମରହଟ୍ଟା କର୍ମଚାରୀମାନେ ସେଠାରୁ ପଳାଇଯାଇ ବାରବାଟୀମଧ୍ୟରେ ଆଶ୍ରୟ ନେଲେ । କଟକବାସୀ ଇଂରେଜ-ଆଗମନ ବାର୍ତ୍ତା ଶୁଣି କଟକରୁ ମହାନଦୀର ୧୦ ମାଇଲ ଉତ୍ତରରେ ଝାଙ୍ଗିରେ ଲୁଚି ରହିଲେ । ମରହଟ୍ଟାମାନେ କଟକବାସିଙ୍କୁ ଲୁଣ୍ଠନ କରାଇ ଇଂରେଜମାନଙ୍କୁ ଆକ୍ରମଣ କରିଥିଲେ ଦୁର୍ଗମ ନଦୀମଧ୍ୟରେ ଇଂରେଜ-ମାନେ ହତାଶ ହୋଇପଡ଼ିଥାନ୍ତେ । ମାତ୍ର ତାହା ହେବାର ନ ଥିଲା । ୨ ବର୍ଷ ପର୍ଯ୍ୟନ୍ତ କଟକବାସୀ ଝାଙ୍ଗିରେ ରହି ୧୮୦୫ ନଭେମ୍ବରରେ ଇଂରେଜ ଶାସନକର୍ତ୍ତାଙ୍କ ଠାରୁ ଅଭୟ ପାଇ କଟକ ଫେରି ଆସିଲେ ।

କଟକ ଜବିରାଦରେ ଅଧିକାର କରି ଇଂରେଜମାନେ ବାରବାଟୀ ଦୁର୍ଗ ଆକ୍ରମଣ ନିମନ୍ତେ ତୋପପଙ୍କ୍ତି ଆରମ୍ଭ କଲେ । ଦୁର୍ଗ ଅଭେଦ୍ୟ ଥିଲା ଏବଂ ଦୁର୍ଗର ବାହାର ପଡ଼ିଆରେ ସ୍ଥାନେ ୨ ଗର୍ତ୍ତ ଥିବାରୁ ତହିଁରେ ଲୁଚି ଇଂରେଜମାନେ ମରହଟ୍ଟା ଗୁଳିବର୍ଷଣରୁ ଅତ୍ମରକ୍ଷା କରୁଥିଲେ । ୮ ଦିନ ପର୍ଯ୍ୟନ୍ତ ଦୁର୍ଗ ଅବରୋଧ କରି ଶେଷରେ ଗୋଟିଏ ଛିଦ୍ର ଭଙ୍ଗିଦେଇ ୧୦ ତାରିଖ ଦିନ ଦୁର୍ଗ ମଧ୍ୟରେ ପଶିଲେ । ମରହଟ୍ଟାମାନେ କିଛି ସମୟ ଯୁଦ୍ଧ କରି ଶେଷରେ ପାଚୀର ଡେଇଁ ପଳାଇଗଲେ । ଏହି ଯୁଦ୍ଧରେ ଜଣେ ଇଂରେଜ ସେନାପତି ଆହତ ଏବଂ ସୈନ୍ୟ କେତେକ ହତ ଓ ଆହତ ହୋଇଥିଲେ । ୩୦ ଟି ମରହଟ୍ଟା ମୃତ-ଦେହ ମହାନଦୀ ମଧ୍ୟରେ ବନ୍ୟ ପଶୁଙ୍କ ଗ୍ରାସରେ ନିକ୍ଷିପ୍ତ ହୋଇଥିଲା । ବାରବାଟୀ ଅଧିକାର ସଙ୍ଗେ ଇଂରେଜମାନେ ସମସ୍ତ ଓଡ଼ିଶାର ଅଧିକାରୀ ହୋଇ ବସିଲେ ✽ ।

ବାଲେଶ୍ୱର ଅଧିକାର— କର୍ଣ୍ଣେଲ ହାର୍କୋର୍ଟ ଗଞ୍ଜାମରୁ ଓଡ଼ିଶା ଆକ୍ରମଣ କରିବା ସମୟରେ କାପ୍ଟେନ ମର୍ଗାନ କଲିକତାରୁ ଏକହଜାର ଦେଶୀ ଓ ଗୋରା ପଲଟନ ୩ ଜାହାଜରେ ଧରି ବାଲେଶ୍ୱର ବନ୍ଦରରେ ପହଞ୍ଚିଲେ । ବଲଙ୍ଗ ନଦୀ ବାଟେ ଅସି ସେମାନେ ପୁରୁଣା ବାଲେଶ୍ୱର ବା ବର୍ତ୍ତମାନ ସହରର ୩ ମାଇଲ ଦକ୍ଷିଣକୁ ଗବର୍ଗା ନିକଟବର୍ତ୍ତୀ କାରପଡ଼ା ଗ୍ରାମରେ ଜାହାଜରୁ ଓହ୍ଲାଇଲେ ଏବଂ ନଦୀ କୂଳେ ୨ ବାଲେଶ୍ୱର ପର୍ଯ୍ୟନ୍ତ ଅଗ୍ରସର ହେଲେ । ବାରବାଟୀ ପାଖ ବାଲିଅପାଟ ମରହଟ୍ଟାମାନେ ଇଂରେଜ ସୈନ୍ୟଙ୍କ ଗତିରୋଧ କଲେ । ସେହିଠାରେ ଯୁଦ୍ଧ ହେଲା । ଜଣେ ଇଂରେଜ ସୈନ୍ୟ ନିହତ ହେଲେ ମାତ୍ର ଇଁରେଜ ଗୋଳା ବର୍ଷଣରେ ମରହଟ୍ଟାମାନେ ଦୁର୍ଗମଧ୍ୟରେ ଆଶ୍ରୟ ନେଲେ । ପ୍ରାଚୀନ ଲୁଣଗୋଲା ସ୍ଥାନରେ ମରହଟ୍ଟାମାନଙ୍କର ଦୁର୍ଗ ଥିଲା । ଇଂରେଜମାନେ ସେ ଦୁର୍ଗ ଅବରୋଧ କରି ହସ୍ତଗତ କଲେ । ଦୁର୍ଗ ବାହାରେ ପୁଣି ଯୁଦ୍ଧ ହେଲା ।

---

✽ ବାରବାଟୀ ଅବରୋଧର ସବିଶେଷ ବିବରଣ ଲେଖକଙ୍କ ବାରବାଟୀ ଦୁର୍ଗରେ ଦ୍ରଷ୍ଟବ୍ୟ ।

ମରହଟ୍ଟାମାନେ ଉତ୍ତରେ ପରାସ୍ତ ହୋଇ ପଛାଘୁଞ୍ଚ କରିବାରୁ ମର୍ଗାନ ବାଲେଶ୍ୱର ସହର ଅଧିକାର କଲେ (ସେପ୍ଟେମ୍ବର ୨୧ତାରିଖ ୧୮୦୩ )। ସହର ମଧ୍ୟରେ ଘୋଷଣା କରି ଦିଆଗଲା, ଇଂରେଜମାନେ ଓଡ଼ିଶା ଅଧିକାର କଲେ; ଯେଉଁମାନେ ଶାନ୍ତିରେ ଇଂରେଜ ଶାସନ ଅଧୀନରେ ରହିବେ ଇଂରେଜମାନେ ସେମାନଙ୍କର ସକଳ ସ୍ୱାର୍ଥ ରକ୍ଷା କରିବେ ।

ବାଲେଶ୍ୱରରୁ ମର୍ଗାନ ସୋରୋ ଅଧିକାର ନିମନ୍ତେ ଏକଦଳ ସୈନ୍ୟ ପଠାଇଲେ । ସୋରୋ ଗୋଟିଏ ନିରାପଦ ଓ ସୁରକ୍ଷିତ ସ୍ଥାନ ବିବେଚନା କରି ମରହଟ୍ଟା ସେନାପତି ସନସ୍ବର ପ୍ରଥମେ ସେଠାରେ ଦୁର୍ଗ ନିର୍ମାଣ କରିଥିବାରୁ ସ୍ଥାନଟି ତାହାଙ୍କ ନାମାନୁସାରେ କଥିତ ହେଲା । ଇଂରେଜମାନେ ସୋରୋ ଦୁର୍ଗ ଅବରୋଧ କଲାବେଳେ ବାଲେଶ୍ୱର ଫୌଜଦାର ମୟୂର ପଣ୍ଡିତ ଦୁର୍ଗ ରକ୍ଷା କରୁଥିଲେ । ମାତ୍ର ଶେଷରେ ସେ ପରାସ୍ତ ହୋଇ ଦୁର୍ଗ ଛାଡ଼ି କଟକ ପଳାଇ ଆସିଲେ । ସୋରୋ ଇଂରେଜ ହସ୍ତଗତ ହେଲା ।

କର୍ଣ୍ଣେଲ ଫରଗୁସନଙ୍କ ଅଧୀନରେ ଆଉ ଦଳେ ଇଂରେଜ ସୈନ୍ୟ କଲିକତାରୁ ମେଦିନୀପୁର ବାଟେ ଜଳେଶ୍ୱର ଆସିଥିଲେ । ଜଳେଶ୍ୱର ଅଧିକାର କରି ସେମାନେ ବାଲେଶ୍ୱରରେ ମର୍ଗାନଙ୍କ ସଙ୍ଗେ ଯୋଗଦେଲେ । ଉଭୟ ଦଳ ଏକତ୍ରିତ ହୋଇ ଗଞ୍ଜାମ ସୈନ୍ୟଙ୍କ ସହାୟ ନିମନ୍ତେ କଟକ ପର୍ଯ୍ୟନ୍ତ ଅଗ୍ରସର ହେଲେ । ପଥମଧ୍ୟରେ ଦେଶବାସୀ ଇଂରେଜ ଆଗନ୍ତୁକ-ମାନଙ୍କୁ ବିଶେଷ ଆଦର ଅଭ୍ୟର୍ଥନା କରିଥିବାର ବର୍ଣ୍ଣନା ଅଛି । ଇଂରେଜ-ମାନେ ଅସହାୟ ବଣିକରୂପେ ଏ ଦେଶରେ ପଶିବା ବେଳେ ଦେଶବାସିଙ୍କ-ଠାରୁ ଯେପରି ଆଦର ଅଭ୍ୟର୍ଥନା ଓ ସାହାଯ୍ୟ ପାଇଥିଲେ, ବର୍ତ୍ତମାନ ଓଡ଼ିଶା ଅଧିକାର କରିବାକୁ ଆସି ସେଥି ମଧ୍ୟ ଉଭୟରୁ ବଞ୍ଚିତ ହୋଇ ନ ଥିଲେ ।

**ଓଡ଼ିଶା ଅଧିକାର ସମ୍ପୂର୍ଣ୍ଣତା**— କଟକ ଅଧିକାର କରିବା ସଙ୍ଗେ ମହାନଦୀ ବାଟେ ମରହଟ୍ଟା ଆକ୍ରମଣର ଆଶଙ୍କା ଥିବାରୁ ମେଜର ଫୋର୍ବସଙ୍କ

ଅଧୀନରେ ଏକଦଳ ସୈନ୍ୟ ମହାନଦୀ ବାଟେ ବଡ଼ମୂଳ ଘାଟିକୁ ପ୍ରେରିତ ହେଲେ । ମରହଟ୍ଟାମାନେ ସେଠାରୁ ସମ୍ପୂର୍ଣ୍ଣ ବିତାଡ଼ିତ ହେଲେ । ବୌଦ୍ଧ, ସୋନପୁର, ଦଶପଲ୍ଲା, ଅନୁଗୁଳ ପ୍ରଭୃତିର ରାଜାମାନେ ସେଠାରେ ବଶ୍ୟତା ସ୍ୱୀକାର କଲେ ।

କଟକ ଅଧିକୃତ ହେବା ସଙ୍ଗେ ଜଣେ ସାହେବ କଟକର କମିଶନର ନିଯୁକ୍ତ ହେଲେ । ଜେମସ୍ ହଣ୍ଟର ପୁରୀର ଶାସନକର୍ତ୍ତା ହୋଇ ପ୍ରେରିତ ହେଲେ । ହଣ୍ଟର ପୁରୀ ଆସୁ ଆସୁ ପ୍ରାୟ ୧୦ ହଜାର ମରହଟ୍ଟା ଅଶ୍ୱାରୋହୀ ପିପିଲି ନିକଟରେ ହଣ୍ଟରଙ୍କ ଗତିରୋଧ କରି ଯୁଦ୍ଧ ଆରମ୍ଭ କଲେ । ଘୋର ଯୁଦ୍ଧ ପରେ ମରହଟ୍ଟାମାନେ ପରାଜିତ ହୋଇ ଚିରକାଳ ନିମନ୍ତେ ଓଡ଼ିଶା ଛାଡ଼ି ପଳାୟନ କଲେ ।

ଦ୍ୱିତୀୟ ମରହଟ୍ଟା-ସମର ଶେଷ ପରେ ୧୮୦୩ ଖ୍ରୀଷ୍ଟାବ୍ଦରେ ଭୋଁସଲାଙ୍କ ସଙ୍ଗେ ଦେବଗ୍ରାମରେ ଇଂରେଜଙ୍କର ସନ୍ଧି ହେଲା । ସନ୍ଧି ଅନୁସାରେ ଭୋଁସଲା ଇଂରେଜମାନଙ୍କ ହସ୍ତରେ ସମ୍ପୂର୍ଣ୍ଣ ଅଧିକାର ଛାଡ଼ିଦେଲେ ।

କନିକା ଓ କୁଜଙ୍ଗ ପତନ — ଏଥି ମଧ୍ୟରେ କୁଜଙ୍ଗ ରାଜା ଇଂରେଜଙ୍କୁ ଓଡ଼ିଶାରୁ ଦୂର କରିବା ନିମନ୍ତେ କନିକା ଓ ହରିଶପୁର ରାଜାମାନଙ୍କସଙ୍ଗେ ଷଡ଼ଯନ୍ତ୍ର କରୁଥିଲେ । କର୍ଣ୍ଣେଲ ହାର୍କୋର୍ଟ କଟକରୁ ପଟାମୁଣ୍ଡେଇ ବାଟେ ଯାତ୍ରା କରି କୁଜଙ୍ଗ ଆକ୍ରମଣ କଲେ । କୁଜଙ୍ଗରାଜା ଦୁର୍ଗ ଛାଡ଼ି ପଳାଇଲେ । ଏଥି ପୂର୍ବରୁ ରାଜା ଆପଣାର ବଡ଼ ଭାଇଙ୍କୁ ବନ୍ଦୀ କରି ଆପେ ରାଜା ହୋଇଥିଲେ । ହାର୍କୋର୍ଟ ତାହାଙ୍କୁ କାରାମୁକ୍ତ କରି କୁଜଙ୍ଗର ରାଜା କଲେ । ପଳାତକ ରାଜା ଧରାହୋଇ କଟକ ଦୁର୍ଗରେ ବନ୍ଦୀ ହେଲେ । କନିକା ଓ ହରିଶପୁର ରାଜାମାନେ ଇଂରେଜ ଅଧୀନତା ସ୍ୱୀକାର କଲେ । ହାର୍କୋର୍ଟ ସେମାନଙ୍କ ଦୁର୍ଗମାନ ଭୂମିସାତ୍ କରି, କମାଣମାନ ହସ୍ତଗତ କଲେ । ଓଡ଼ିଶାରେ ସର୍ବତ୍ର ଇଂରେଜ ପ୍ରଭାବ ପ୍ରତିଷ୍ଠିତ ହେଲା ।

ସମସ୍ତ ଓଡ଼ିଶା ଅଧିକାର କରିବାରେ ଇଂରେଜମାନେ ୫୦ ଟି ମାତ୍ର ସୈନ୍ୟ ହରାଇ ଥିଲେ, ଏବଂ ୬ଲକ୍ଷ ଟଙ୍କା ବ୍ୟୟ କରିଥିଲେ ।

ଓଡ଼ିଶା ଅଧିକାର ସମୟରୁ ଇଂରେଜମାନେ ଅଦ୍ୟାବଧି ପ୍ରାୟ ଶାନ୍ତ ଓ ନିରାପଦରେ ରାଜତ୍ୱ କରି ଆସୁଅଛନ୍ତି । କେବଳ ଶାନ୍ତି ଭଙ୍ଗ ମଧ୍ୟରେ ଦୁଇଟି ଗୁରୁତର ବିଦ୍ରୋହ ଘଟିଥିଲା । ପ୍ରଥମରେ ଖୋରଧା ରାଜ-ବିଦ୍ରୋହ, ଦ୍ୱିତୀୟରେ ଖୋରଧା ପାଇକ ବିଦ୍ରୋହ ।

## ଖୋରଧା ରାଜ ବିଦ୍ରୋହ

ଖୋରଧାରାଜ—ପୂର୍ବବର୍ତ୍ତୀ ଦ୍ୱିତୀୟ ଅଧ୍ୟାୟରେ ଭୋଇବଂଶର ଉତ୍ପତ୍ତି ଓ ରାଜାମାନଙ୍କର ବିବରଣ ଦିଆଯାଇଛି । ଦେଖାଯାଇଛି, ପ୍ରଥମ ରାମଚନ୍ଦ୍ର ଦେବ ରାଜା ଟୋଡ଼ରମଲ୍ଲଙ୍କଦ୍ୱାରା ସ୍ୱାଧୀନ ରାଜାରୂପେ ସ୍ୱୀକୃତ ହୋଇ ପରେ ପୁଣି ମାନସିଂହଙ୍କଦ୍ୱାରା ୧୨୯ କିଲ୍ଲାର ପ୍ରଭୁତ୍ୱ ଏବଂ ଅକବରଙ୍କ ଦରବାରରେ ଉଚ୍ଚ-ସମ୍ମାନ ପାଇ ଅର୍ଦ୍ଧସ୍ୱାଧୀନ ରାଜାରୂପେ ରାଜତ୍ୱ କରିଥିଲେ । ଅକବରଙ୍କ ଉଦାର ଶାସନ ଅନ୍ତେ ଦୁର୍ଭାଗ୍ୟ ଭୋଇରାଜାମାନେ ମୋଗଲ ଶାସନକର୍ତ୍ତାମାନଙ୍କ ହସ୍ତରେ ସକଳ ପୂର୍ବ ଗୌରବ ଓ ମାନସମ୍ଭ୍ରମ ହରାଇ ବାରମ୍ବାର ଆକ୍ରମଣ ଲୁଣ୍ଠନ ଓ ପାଶବିକ ଅତ୍ୟାଚାରରେ ପ୍ରପୀଡ଼ିତ ହୋଇ ଜଗନ୍ନାଥଙ୍କ ସହ ବନପର୍ବତରେ ଆଶ୍ରୟ ନେଉଥିଲେ ; ମାତ୍ର ସେ ସମସ୍ତ ଅତ୍ୟାଚାର ସତ୍ତ୍ୱେ ସେମାନେ ଆପଣାର ପୂର୍ବ ଅର୍ଦ୍ଧ ସ୍ୱାଧୀନ ରାଜତ୍ୱ ଓ ରାଜ୍ୟାଧିକାରରୁ ବଞ୍ଚିତ ହୋଇ ନ ଥିଲେ । ଏହିରୂପେ ଭୋଇବଂଶର ଏକାଦଶ ରାଜା ବୀରକିଶୋର ଦେବଙ୍କ ପର୍ଯ୍ୟନ୍ତ ଖୋରଧା ରାଜାଙ୍କର ରାଜତ୍ୱ ଚାଲିଥିଲା ।

ବୀରକିଶୋର ଦେବ ରାଜା ହେବାର ଅଳ୍ପକାଳମଧ୍ୟରେ ମରହଟ୍ଟାମାନେ ଓଡ଼ିଶା ଅଧିକାର ପାଇଲେ , ଏବଂ ଜଗନ୍ନାଥ ଓ ଭୋଇ ରାଜାମାନେ ବିଧର୍ମୀ ଅତ୍ୟାଚାରରୁ ମୁକ୍ତି ପାଇଲେ । ବୀରକିଶୋର ଦେବଙ୍କ

ରାଜତ୍ୱ କାଳରେ କେମଣ୍ଡୀ ରାଜା ନାରାୟଣ ଦେବ ୧୭୬୦ ଖ୍ରୀଷ୍ଟାବ୍ଦରେ ଖୋରଧା ଆକ୍ରମଣ କରିବାରୁ ମରହଟ୍ଟା ସୁବାଦାର ଶିବଭଟ୍ଟ ସାମନ୍ତ ରାୟ ବୀରକିଶୋର ଦେବଙ୍କ ସାହାଯ୍ୟ ଦେଇ ନାରାୟଣଙ୍କୁ ତଡ଼ିଦେଲେ । ମାତ୍ର ବୀରକିଶୋର ଦେବ ଶିବଭଟ୍ଟଙ୍କ ମରହଟ୍ଟା ସୈନ୍ୟ ବ୍ୟୟ ଚୁକ୍ତି ଅନୁସାରେ ଦେଇ ନ ପାରିବାରୁ ଟଙ୍କା ଆଦାୟ ଦେବା ପର୍ଯ୍ୟନ୍ତ ରାହାଙ୍ଗ ଚଉବିଶକୁଦ, ଲେମ୍ବାଇ ଓ ସିରାଇ ପ୍ରଗଣାମାନ ମରହଟ୍ଟାମାନଙ୍କୁ ଦଖଲ-ବନ୍ଧକ ସ୍ୱରୂପ ଦେଲେ ।

ବୀରକିଶୋରଦେବ ଶେଷକାଳକୁ ପାଗଳ ହୋଇଗଲେ, ଏବଂ ରାଜ୍ୟମଧ୍ୟରେ ନାନା ଅଶାନ୍ତି ଘଟାଇ ଶେଷରେ ଆପଣାର ଚାରି ସନ୍ତାନଙ୍କୁ ମାରିଦେଲେ । ମରହଟ୍ଟା ସୁବାଦାର ରାଜାରାମ ପଣ୍ଡିତ ତାହାଙ୍କୁ ବନ୍ଦୀ କରି ତାଙ୍କର ନାତି ଦିବ୍ୟ ସିଂହଦେବଙ୍କୁ ବାର୍ଷିକ ଦଶହଜାର ଟଙ୍କା କର ଦେବାର ସ୍ୱୀକାର କରାଇ ରାଜା କଲେ, ଏବଂ ସେଥିସଙ୍ଗେ ମଧ୍ୟ ବାଣପୁର, ଖୋରଧା ଓ ଲେମ୍ବାଇ ତାହାଙ୍କ ଅଧିକାରରେ ଛାଡ଼ି ଦେଲେ । ପରେ ଦିବ୍ୟସିଂହ ଦେବ ଉକ୍ତ ଦଶହଜାର ଟଙ୍କା ଦେବାକୁ ଅସ୍ୱୀକାର କରିବାରୁ ରାଜାରାମ ବଳ ପ୍ରୟୋଗ କଲେ । ଏଥିରେ ରାଜା ଓ ପ୍ରଜାମାନେ ବିଦ୍ରୋହୀ ହେଲେ । ବହୁକାଳ ବ୍ୟାପୀ ଯୁଦ୍ଧରେ ବହୁ ଅର୍ଥ ବ୍ୟୟ ଓ ସୈନ୍ୟ କ୍ଷୟ କରି ରାଜାରାମ ବିଦ୍ରୋହ ଶାନ୍ତକଲେ, ଏବଂ କର ଆଦାୟର ସୁବ୍ୟବସ୍ଥା କଲେ ।

ଏପର୍ଯ୍ୟନ୍ତ ଖୋରଧା ରାଜାମାନେ ଖୋରଧାରେ ଏବଂ ମୋଗଲ ରାଜତ୍ୱମଧ୍ୟରେ ପୁଣି କେତେକାଳ ରଥିପୁରରେ ଦୁର୍ଗ ନିର୍ମାଣ କରି ବାସ କରୁଥିଲେ । ମାତ୍ର ଦିବ୍ୟସିଂହ ଦେବ ବରୁଣେଇ ପାହାଡର ପାଦଦେଶ ଅଧିକ ନିରାପଦ ସ୍ଥାନ ଦେଖି ବରୁଣେଇ ଘାଟି ନିକଟରେ ଗୋଟିଏ ପ୍ରକାଣ୍ଡ ଦୁର୍ଗ ନିର୍ମାଣ କରି ତହିଁରେ ରାଜଧାନୀ କଲେ ।

୧୭୯୮ ଖ୍ରୀଷ୍ଟାବ୍ଦରେ ଦିବ୍ୟସିଂହ ଦେବଙ୍କର ମୃତ୍ୟୁ ହେବାରୁ ତାହାଙ୍କ ପୁତ୍ର ଦ୍ୱିତୀୟ ମୁକୁନ୍ଦଦେବ ରାଜା ହେଲେ । ମୁକୁନ୍ଦଦେବ

ଖୋରଧାର ଶେଷ ରାଜା । ଏହାଙ୍କ ରାଜତ୍ୱର ୫ମ ବର୍ଷରେ ଇଂରେଜ-ମାନେ ଓଡ଼ିଶା ଅଧିକାର କଲେ ; ଏବଂ ପରବର୍ତ୍ତି ମୁକୁନ୍ଦଦେବ ବିଦ୍ରୋହୀ ହୋଇ ଉଠିଲେ ।

ଖୋରଧା ରାଜ-ବିଦ୍ରୋହ— ଇଂରେଜମାନେ ଦେଶ ଅଧିକାର କରିବା ବେଳେ ମୁକୁନ୍ଦ ଦେବ ଇଂରେଜମାନଙ୍କ ବିରୁଦ୍ଧରେ ନ ଯାଇ ବରଂ ସହାୟତା କରିଥିଲେ । ମରହଟ୍ଟାମାନଙ୍କୁ ସେ ଆପଣାର ରାଜ୍ୟାପହାରୀ ମନେ କରୁଥିଲେ । ଇଂରେଜ ରାଜତ୍ୱରେ ସେ ଆପଣାର ହୃତରାଜ୍ୟମାନ ଫେରି ପାଇବାର ଆଶା କରିଥିଲେ । ସୁତରାଂ ସେ ଇଂରେଜ ରାଜତ୍ୱ ସ୍ୱୀକାର କରି ଯଥୋଚିତ ସମ୍ମାନ ଦେଖାଇଥିଲେ । ଗଭର୍ଣ୍ଣର ଜେନେରେଲ ଓ୍ୱେଲସଲୀ ଓଡ଼ିଶାବାସୀ ରାଜା ଓ ପ୍ରଜାଙ୍କ ମଧ୍ୟରେ ଯେଉଁ ଶାନ୍ତି ଶାସନ ଓ ଉଦାର ନୀତିର ଘୋଷଣା ପ୍ରଚାର କରିଥିଲେ ତହିଁରୁ ଅନ୍ତତଃ ମୁକୁନ୍ଦଦେବ ଆପଣା ବଂଶର ପୂର୍ବ ରାଜତ୍ୱ ଓ ମରହଟ୍ଟାମାନଙ୍କ ଦ୍ୱାରା ଅପହୃତ ପ୍ରଗଣାମାନ ଫେରି ପାଇବାର ଆଶା ପୋଷି ଥିଲେ । ମାତ୍ର ଇଂରେଜ ଅଧିକାର ପ୍ରତିଷ୍ଠିତ ହେବା ପରେ ଯେଉଁ କମିଶନରମାନେ ଶାସନ କାର୍ଯ୍ୟଭାର ନେଲେ, ସେମାନେ ଉକ୍ତ ରାହାଙ୍ଗ, ସିରାଇ, ଚବିଶକୁଦ ପ୍ରଗଣାମାନ ଖୋରଧା ରାଜାଙ୍କୁ ଫେରାଇ ଦେବାକୁ ଅସ୍ୱୀକୃତ ହେଲେ । ମରହଟ୍ଟାମାନଙ୍କଠାରୁ ଅଧିକାର କରିଥିବାରୁ ସେହି ପ୍ରଗଣାମାନ ଇଂରେଜ ରାଜ୍ୟମଧ୍ୟରେ ରହିଲା । ରାଜା ଏଥିରେ କ୍ଷୁବ୍ଧ ହେଲେ, ମାତ୍ର ଏଥି ନିମନ୍ତେ ବିଦ୍ରୋହାଦିଦ୍ୱାରା ପ୍ରତିହିଂସା ନେବାର ମନସ୍ଥ କରିଥିଲେ କି ନାହିଁ ସନ୍ଦେହ ।

ଏଥିମଧ୍ୟରେ ୧୮୦୪ ଖ୍ରୀଷ୍ଟାବ୍ଦରେ ପୁରୀ ମନ୍ଦିର ଫର୍ଦ୍ଦରେ ରାଜା ମୁକୁନ୍ଦଦେବ ଅନ୍ୟାନ୍ୟ ରାଜାମାନଙ୍କ ସଙ୍ଗେ ଷଡଯନ୍ତ୍ର କରୁଥିବାର ଜଣା ଗଲା । ପୂର୍ବେ କୁହାଯାଇଅଛି, ଇଂରେଜମାନେ ପୁଣି ଅଧିକାର କରିବା ମାତ୍ରେ ଜଗନ୍ନାଥମନ୍ଦିର ରକ୍ଷଣ ଓ ପରିଚାଳନା ଭାର ଏକଦଳ ହିନ୍ଦୁସିପାହୀଙ୍କ ହସ୍ତରେ ଦେଇଥିଲେ । ଖୋରଧା ରାଜା ବଂଶପରମ୍ପରା କ୍ରମେ ଜଗନ୍ନାଥ

ମନ୍ଦିରର ସ୍ୱାଧୀନ ତତ୍ତ୍ୱାବଧାରକ ଥିବା ସ୍ଥଳେ , ଇଂରେଜ ଅଧିକାର ପରେ ସେ ଅଧିକାରରୁ ବଞ୍ଚିତ ରହିବାରୁ , ମୁକୁନ୍ଦଦେବଙ୍କର କ୍ଷୋଭ ଦ୍ୱିଗୁଣ ବଢ଼ି ଥିବ । ମନ୍ଦିର ଇଂରେଜ ଅଧିକାରରେ ରହିବା ବିରୁଦ୍ଧରେ ମୁକୁନ୍ଦଦେବ ଅନ୍ୟାନ୍ୟ ରାଜାମାନଙ୍କ ସଙ୍ଗେ କିଛି ଗୁପ୍ତ ମନ୍ତ୍ରଣା କରୁଥିବାର ସଙ୍କେତ ମିଳିବାରୁ ତାହାଙ୍କ ଉପରେ କମିଶନରମାନଙ୍କର ଆଦେଶ ଜାରିହେଲା ଯେ ମୋଗଲବନ୍ଦୀ ମଧ୍ୟରେ ବାସ କରୁଥିବା କୌଣସି ବ୍ୟକ୍ତିଙ୍କ ଉପରେ ସେ କୌଣସି ଆଦେଶ ପ୍ରଚାର କରି ପାରିବେ ନାହିଁ ।

ରାଜାଙ୍କ ଉପରେ ଏହି କଠୋର ଆଦେଶ ଜାରି ହେବାର ଏକ ମାସ ପରେ କେତେକ ପାଇକ ପିପିଲି ନିକଟରେ ଗୋଟିଏ ଗ୍ରାମରୁ ଗାଈ ଗୋରୁ ଇତ୍ୟାଦି କେତେକ ଚଳନ୍ତି ସମ୍ପତ୍ତି ଲୁଣ୍ଠନ କରିନେଲେ । ଏହାକୁ କେତେକ ଦୁଷ୍ଟ ପାଇକଙ୍କର ଡ଼କାଏତି ନ ଭାବି କମିଶନରମାନେ ଏହାକୁ ଖୋରଧା ରାଜାଙ୍କ ବିଦ୍ରୋହର ପୂର୍ବ ସୂଚନା ବୋଲି ଜ୍ଞାନ କଲେ । ସେମାନଙ୍କର ମଧ୍ୟ ଆହୁରି ସନ୍ଦେହ ହେଲା ଯେ ମରହଟ୍ଟାମାନେ ଗୋପନରେ ଏହି ବିଦ୍ରୋହରେ ମୁକୁନ୍ଦଦେବଙ୍କୁ ମଧ୍ୟ ସାହାଯ୍ୟ ଦେଇଥିଲେ । ସୁତରାଂ, ଏହିରୂପେ ନାନା ସନ୍ଦେହ କରି ଇଂରେଜ ରାଜତ୍ୱ ନିରାପଦ କରିବା ନିମନ୍ତେ ପିପିଲି ଅତ୍ୟାଚାରର ପ୍ରତିଶୋଧ ନେବା ନିମନ୍ତେ ଖୋରଧା ବିରୁଦ୍ଧରେ ସୈନ୍ୟ ପଠାଇଲେ । କଟକରୁ ଏକ ଦଳ ଏବଂ ଗଞ୍ଜାମରୁ ଅନ୍ୟ ଏକ ଦଳ ସୈନ୍ୟ ଖୋରଧା ଆକ୍ରମଣ କଲେ । ଦୁଷ୍ଟ ପାଇକମାନେ ଏଥିମଧ୍ୟରେ ପିପିଲି ଛାଡ଼ି ଖୋରଧା ଦିଗରେ ପଳାଇ ଥିଲେ । ଇଂରେଜସୈନ୍ୟ ଖୋରଧା ରାଜଦୁର୍ଗ ଅବରୋଧ କଲେ । ପୂର୍ବେ କୁହାଯାଇଛି ବରୁଣେଇ ଘାଟି ପାଖରେ ନୂତନ ଦୁର୍ଗରେ ରାଜଧାନୀ ହୋଇଥିଲା । ଦୁର୍ଗର ଦକ୍ଷିଣ ଦିଗରେ ବରୁଣାଇ ପାହାଡ଼; ପଥ କେବଳ ଗୋଟିଏ ଘାଟି । ବାସ୍ତବିକ ପୂର୍ବରୁ ରାଜାଙ୍କର ଯେପରି ଯୁଦ୍ଧକଳୁଷା ଥିଲେ, କି ମରହଟ୍ଟାମାନଙ୍କ ସାହାଯ୍ୟ ଥିଲେ ରାଜା ସେହି ଘାଟି ସୁରକ୍ଷଣ ନିମନ୍ତେ କିଛି ବ୍ୟବସ୍ଥା କରିଥାନ୍ତେ; ଏବଂ ଇଂରେଜ ସୈନ୍ୟଙ୍କ ସଙ୍ଗେ

ତାହା ପାର ହେବା ସହଜସାଧ୍ୟ ହୋଇ ନ ଥାନ୍ତା । ତେବେ ଘାଟିରେ ସାଧାରଣ ରକ୍ଷକମାନେ ଯେ ଥିଲେ ସେମାନଙ୍କୁ ପରାସ୍ତ କରି ଘାଟିପାର ହେବା ବିଶେଷ କଷ୍ଟକର ନ ଥିଲା । ଘାଟିପାର ହୋଇ ଇଂରେଜ ସୈନ୍ୟ ୩ ସପ୍ତାହ କାଳ ଦୁର୍ଗ ଅବରୋଧ କଲେ । ଘନଘନ ଗୋଳା ବର୍ଷଣରେ ଦୁର୍ଗର ପାଚେରି ଭାଙ୍ଗିଗଲା , ଏବଂ ରାଜା ମୁକୁନ୍ଦଦେବ କେତେକ ପାତ୍ର ମନ୍ତ୍ରୀଙ୍କ ସହ ଧନ୍ୟରେ ଦୁର୍ଗମଧ୍ୟରୁ ପଳାଇ ଗଲେ; ମାତ୍ର ଦିନ କେତେକ ପରେ ରାଜା ନିଜେ ଇଂରେଜଙ୍କ ହସ୍ତରେ ଆତ୍ମସମର୍ପଣ କଲେ। ମୁକୁନ୍ଦଦେବ ବନ୍ଦୀହୋଇ କଟକ ବାରବାଟି ମଧ୍ୟରେ ରହିଲେ , ଏବଂ ଓଡ଼ିଶା ମଧ୍ୟରେ ତାଙ୍କୁ ବନ୍ଦୀ କରି ରଖିବା ନିରାପଦ ନୁହେଁ ଭାବି , ମେଦିନୀପୁରକୁ ପଠାଗଲା । ବୀରହରେକୃଷ୍ଣପୁର ଶାସନର ପ୍ରତିଷ୍ଠାତା ଗଦାଧର ରାଜଗୁରୁଙ୍କ ବଂଶ ପୁରୁଷାନୁକ୍ରମେ ଖୋରଧା ରାଜାଙ୍କର ମନ୍ତ୍ରୀତ୍ୱ କରି ଆସୁଥିଲେ । ଗଦାଧରଙ୍କର ନାତି ରାଜମନ୍ତ୍ରୀ ଜୟକୃଷ୍ଣ ମହାପାତ୍ର ରାଜଗୁରୁ ରାଜାଙ୍କୁ ବିଦ୍ରୋହରେ ପ୍ରବର୍ତ୍ତାଇ ଥିବା ଅପରାଧରେ ଅନ୍ୟାନ୍ୟ ଅପରାଧୀମାନଙ୍କ ସହ ଫାଶିରେ ପ୍ରାଣଦଣ୍ଡ ପାଇଲେ । ଏହି ବିଦ୍ରୋହର ଅପରାଧରେ ଖୋରଧା ରାଜବଂଶର ବିଗତ ଛଅଶହ ବର୍ଷର ରାଜତ୍ୱ ଲୋପ ପାଇଲା । ସମସ୍ତ ଖୋରଧା ଇଂରେଜ ସରକାରଙ୍କର ଖାସମହାଲ ହେଲା। ମୁକୁନ୍ଦଦେବ ଏବଂ ତାହାଙ୍କ ବଂଶଧରମାନେ ନାନକାର ବା ମାଲିକାନାସ୍ୱତ୍ୱେ ଖୋରଧା ଜିମନ୍ତେ ମାସିକ ୨୧୩୩ଟଙ୍କା ୮ ଅଣା ୪ ପାହୁଲା ପାଇବାର ଧାର୍ଯ୍ୟ ହେଲା। ଜଗନ୍ନାଥମନ୍ଦିରର ରସକଳ ପରିଚାଳନା ଭାର ତାହାଙ୍କ ହସ୍ତରେ ଅର୍ପିତ ହେଲା।

ପୁରୀର ରାଜବଂଶ—୧୮୦୭ ଖ୍ରୀଷ୍ଟାବ୍ଦରେ ମୁକୁନ୍ଦଦେବ ବନ୍ଦୀଶାଳରୁ ମୁକ୍ତି ପାଇଲେ । ମରହଟ୍ଟାମାନଙ୍କଦ୍ୱାରା ଅପହୃତ ପ୍ରଗଣା କେତୋଟି ପାଇ ପାରି, ଶେଷରେ ସେ ସମସ୍ତ ଖୋରଧା ରାଜତ୍ୱ ଏବଂ ରାଜନଅର ହରାଇ ପୁରୀରେ ଆସି ବାସ କଲେ । ବରୁଣାଇ ସାହି ନିକଟରେ ପଞ୍ଚତୀର୍ଥ-ମାଳାର ପାଦଦେଶରେ ସେହି ବିସ୍ତୃତ ରାଜନଅରର ଅବଶେଷ ପରିଷ୍କାର

ବର୍ତ୍ତମାନ ରହିଅଛି । ପୁଣିର ବାଲିସାହିରେ ଥିବା ରାଜ ନଅରରେ ମୁକୁନ୍ଦ-ଦେବ ବାସ କରିବାକୁ ଆଦିଷ୍ଟ ହେଲେ । ବାଲିସାହି ନଅର ବର୍ତ୍ତମାନ ଭାଙ୍ଗି ଯାଇଅଛି, ତଥାପି ତାହା ଅଦ୍ୟାପି 'ପୁରୁଣା ନଅର' ନାମରେ ପରିଚିତ ; ଏବଂ ରାଜାମାନଙ୍କର ଅଭିଷେକ ଅଦ୍ୟାପି ସେହି ପୁରୁଣା ନଅରରେ ହେଉଅଛି ।

ମୁକୁନ୍ଦଦେବ ବନ୍ଦୀଶାଳାରୁ ମୁକ୍ତ ହେବାର ୧୦ ବର୍ଷ ପରେ ପରବର୍ତ୍ତୀ ଖୋର୍ଦ୍ଧା ପାଇକ-ବିଦ୍ରୋହରେ ଲିପ୍ତ ଥିବା ଅପରାଧରେ ମୃତ୍ୟୁ ପର୍ଯ୍ୟନ୍ତ ବନ୍ଦୀ ହୋଇ ରହିଲେ । ତାହାଙ୍କ ମୃତ୍ୟୁ ପରେ ପୁତ୍ର ଦ୍ୱିତୀୟ ରାମଚନ୍ଦ୍ର ଦେବ ୧୮୧୭ ରୁ ୧୮୫୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜା ହେଲେ । ବାରବାଟୀ ଦୁର୍ଗମଧ୍ୟରେ ତାହାଙ୍କର ଅଭିଷେକ ହୋଇଥିଲା । ରାମଚନ୍ଦ୍ର ବିଶେଷ ମିତବ୍ୟୟୀ ଥିଲେ , ଏବଂ ବହୁଧନ ସଞ୍ଚୟ କରିଥିଲେ । ଜଗନ୍ନାଥ ମନ୍ଦିର କାର୍ଯ୍ୟ ସୁଚାରୁରୂପେ ପରିଚାଳନା କରୁଥିଲେ । ସେ ଏକଲକ୍ଷ 'ରାମାଭିଷେକ ମୋହର' ସଞ୍ଚୟ କରି ଥିବାର କଥିତ ଅଛି । ମନ୍ଦିର ଆୟ ବୃଦ୍ଧି ଓ ଉନ୍ନତି ଦିଗରେ ତାହାଙ୍କର ବିଶେଷ ଦୃଷ୍ଟି ଥିଲା । ବାଲିସାହିରୁ ଉଠି ଆସି ସେ ପୁରୀ ବଡଦାଣ୍ଡରେ ନୂତନ ନଅର ନିର୍ମାଣ କରି ବାସ କଲେ ।

ରାମଚନ୍ଦ୍ରଙ୍କ ପରେ ତାହାଙ୍କ ପୁତ୍ର ଦ୍ୱିତୀୟ ବୀରକିଶୋର ଦେବ ୧୮୫୬ ରୁ ୧୮୭୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜା ହେଲେ । ବୀରକିଶୋର ବୀର ପୁରୁଷ ମାତ୍ର ମଦ୍ୟାସକ୍ତ ଥିଲେ । ସେ ଅପୁତ୍ରିକ ଥିବାରୁ ବଡ଼ଖେମୁଣ୍ଡି ରାଜ-ବଂଶରୁ, ଦ୍ୱିତୀୟ ଦିବ୍ୟସିଂହ ଦେବ ପୋଷ୍ୟପୁତ୍ର ହୋଇ ଆସି ରାଜା ହେଲେ । ଦିବ୍ୟସିଂହ ବିଶେଷ ବିଦ୍ୱାନ୍ ଓ ମଲ୍ଲବିଦ୍ୟାରେ ସୁଦକ୍ଷ ଥିଲେ । ଶେଷକୁ ତାହାଙ୍କର ମତିଭ୍ରମ ହେଲା । ସେହି ଅବସ୍ଥାରେ ସେ ଜଣେ ବାବାଜିର ପ୍ରାଣନାଶ କରିଥିବା ଅପରାଧରେ ୧୮୭୭ ଖ୍ରୀଷ୍ଟାବ୍ଦରେ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ପାଇଲେ । ତାହାଙ୍କ ପରେ, ପୁରୀର ବର୍ତ୍ତମାନ ରାଜା ଶ୍ରୀର

ଶ୍ରୀ ଗଜପତି ମୁକୁନ୍ଦ ଦେବ ଗଙ୍ଗ ଓ ସୂର୍ଯ୍ୟବଂଶର ସକଳ ରାଜୋପାଧିରେ ଭୂଷିତ ହୋଇ, 'ସ୍ୱରାଜା ଦେବରାଜ' ବା 'ଚଳନ୍ତି ବିଷ୍ଣୁ' ଆଖ୍ୟାରେ ସମଗ୍ର ହିନ୍ଦୁ ଜଗତରେ ସମ୍ମାନିତ ହୋଇ ଜଗନ୍ନାଥ ମନ୍ଦିରର 'ସ୍ଥପତିଶ୍ରେଷ୍ଠ' ବା ତତ୍ତ୍ୱାବଧାରକ ହୋଇ ଅଛନ୍ତି *।

## ପାଇକ ବିଦ୍ରୋହ

ପାଇକ — ପୂର୍ବରୁ କୁହା ଯାଇଛି, ଓଡ୍ରମାନେ ପ୍ରଥମରୁ ସମର-କୁଶଳ ଜାତି ଥିଲେ। ସେମାନେ କ୍ଷତ୍ରିୟ, ମାତ୍ର ପତିତ କ୍ଷତ୍ରିୟ ଥିଲେ। ଯୁଦ୍ଧ ସେମାନଙ୍କର ପ୍ରଧାନ ବ୍ୟବସାୟ ଥିଲା। ଗଙ୍ଗବଂଶର ରାଜତ୍ୱ-କାଳରେ ଓଡ୍ରମାନେ ସେମାନଙ୍କ ସୈନ୍ୟଶ୍ରେଣୀଭୁକ୍ତ ଥିଲେ, ଏବଂ ସେମାନଙ୍କ ନାମାନୁସାରେ ମୁସଲମାନମାନେ ଦେଶକୁ ଓଡ଼ିଶା ନାମ ଦେଲେ। ଗଙ୍ଗ ଓ ସୂର୍ଯ୍ୟବଂଶର ରାଜତ୍ୱବେଳେ ଓଡ୍ରମାନେ ଦେଶର ନାନା ସ୍ଥାନରେ ଜାଗିର ଜମି ପାଇ ବସତି କଲେ। ପରେ ଖୋର୍ଦ୍ଧାରେ ଭୋଇବଂଶ ରାଜତ୍ୱ ଆରମ୍ଭ ହେବାରୁ ସେମାନେ ଅଧିକ ସଂଖ୍ୟାରେ ଖୋର୍ଦ୍ଧାମଧ୍ୟରେ ଜାଗିର ପାଇ ବାସ କଲେ। ସେମାନଙ୍କ ବସତି ଯୋଗେ ଖୋର୍ଦ୍ଧା ମଧ୍ୟ ଅଦ୍ୟାପି ଲୋକରେ 'ଓଡ଼ିଶା' ନାମରେ କଥିତ। ସେହି ଓଡ୍ରମାନେ ସାଧାରଣତଃ ପଦାତିକ ସୈନ୍ୟ ଥିଲେ। ଉତ୍କଳର ଅନ୍ୟମାନେ ମଧ୍ୟ ଓଡ୍ରମାନଙ୍କ ସଙ୍ଗେ ମିଶି ପଦାତିକ ହୋଇଥିଲେ, ସୁତରାଂ ସମସ୍ତ ପଦାତିକ ଦଳ କାଳକ୍ରମେ ପାଇକ ନାମରେ ପରିଚିତ ହେଲେ।

ଖୋର୍ଦ୍ଧାରେ ବସତି କରିବା ପରେ ସେମାନେ ପାରମ୍ପରିକ ଯୁଦ୍ଧ ଓ କୃଷି ବ୍ୟବସାୟ ଧରିଥିଲେ। ରାଜାଙ୍କଠାରୁ ପାଇଥିବା ଜାଗିର ଜମି

* ଷ୍ଟର୍ଲିଙ୍ଗଙ୍କର ସନ ୧୮୧୭ ଫେବୃଆରୀ ମାସ ୧୨ ତାରିଖ ପରଲୋକ ହୋଇ ଯିବାର ୨ ଦିନ ପରେ ଫେବୃଆରୀ ୧୪ ତାରିଖ ରାଜା ମୁକୁନ୍ଦଦେବଙ୍କର ବସନ୍ତ ରୋଗରେ ସ୍ୱର୍ଗପ୍ରାପ୍ତି ହେଲା। ତାଙ୍କ ଅନ୍ତେ ଶ୍ରୀମାନ୍ ଚତୁର୍ଥ ରାମଚନ୍ଦ୍ରଦେବ ରାଜା ହୋଇଛନ୍ତି—ଷ୍ଟର୍ଲିଙ୍ଗ।

ନିଷ୍କରଭାବରେ ଭୋଗ କରି କୃଷି କାର୍ଯ୍ୟରେ ଥାନ୍ତି ; ମାତ୍ର ଯୁଦ୍ଧବେଳେ ରାଜାଙ୍କ ଆଦେଶରେ ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ହୁଅନ୍ତି । ସେମାନଙ୍କ ସାମରିକ ଶିକ୍ଷା ଓ ଶୃଙ୍ଖଳା ବିଚକ୍ଷଣ, ଏବଂ ରାଜା ଓ ସେନାପତିଙ୍କ-ଠାରେ ଭକ୍ତି ଅଟଳ ଓ ବିଶ୍ୱାସ ଅଚଳ ଥିଲା । ଇଂରେଜ ସିପାହୀମାନଙ୍କ ତୁଳନାରେ ସେମାନେ ବନ୍ୟ ଓ ଅସଭ୍ୟ ପରି ଦେଖାଯାଉ ଥିଲେ, ମାତ୍ର ଯୁଦ୍ଧକ୍ଷେତ୍ରରେ ସେମାନଙ୍କ ସାହସ ଓ ଶୃଙ୍ଖଳା ଉନଶତ ବର୍ଷର ପରାଧୀନତା ପରେ ଇଂରେଜ ସେନାପତିମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରାଇଥିଲା ।

ଅସ୍ତ୍ରଶସ୍ତ୍ର ଓ ବ୍ୟବସାୟ ଭେଦରେ ପାଇକମାନେ ସାଧାରଣତଃ ତିନି-ଶ୍ରେଣୀରେ ବିଭକ୍ତ । (୧) 'ପହରୀ' ପାଇକ, ସେମାନଙ୍କର ପ୍ରଧାନ ଅସ୍ତ୍ର ଲମ୍ବା ଓ ସିଧା ତରବାରୀ, ଏବଂ କାଠରେ ଚମ ଛାଉଣି ଓ ଲୁହା ଗୋବ ଥିବା ଢାଲ । ଏହି ପହରୀ ପାଇକମାନେ ଦୁର୍ଗ ଓ ରାଜନଅର ରକ୍ଷାରେ ନିଯୁକ୍ତ ଥିଲେ । ( ୨ ) ଦ୍ୱିତୀୟ ଶ୍ରେଣୀ ପାଇକଙ୍କୁ ବାଣୁଆ ପାଇକ କହନ୍ତି । ପ୍ରଥମେ ଧନୁଶର ଏମାନଙ୍କର ପ୍ରଧାନ ଅସ୍ତ୍ର ଥିଲା । ପରେ ପୁଣି ବନ୍ଧୁକ ବ୍ୟବହାର କଲେ । ଯୁଦ୍ଧ ଅଭିଯାନରେ ଦୂର ଦେଶକୁ ଯିବା ପ୍ରଧାନତଃ ଏହିମାନଙ୍କର କାର୍ଯ୍ୟ ଥିଲା । ( ୩ ) ତୃତୀୟ ଶ୍ରେଣୀ ପାଇକ 'ଢେଙ୍କିଆ' ନାମରେ ପରିଚିତ । ଧନୁଶର ଓ ଖଣ୍ଡା ଏମାନଙ୍କର ପ୍ରଧାନ ଅସ୍ତ୍ର ଶସ୍ତ୍ର । ରାଜାଙ୍କ ଆଦେଶ ଅନୁସାରେ ରାଜ୍ୟମଧ୍ୟରେ ସାଧାରଣ ଶାନ୍ତି ରକ୍ଷାଠାରୁ ଆରମ୍ଭ କରି ଶତ୍ରୁ ସଙ୍ଗେ ଯୁଦ୍ଧ କରିବା ପର୍ଯ୍ୟନ୍ତ ସକଳ କାର୍ଯ୍ୟ ପାଇଁ ଏମାନେ ପ୍ରସ୍ତୁତ ଥିଲେ । ଯୁଦ୍ଧ ପରିଚ୍ଛଦମଧ୍ୟରେ ସେମାନଙ୍କ ମସ୍ତକରେ ଟୋପି, ଏବଂ ଶରୀରର ସର୍ବାଙ୍ଗ ବ୍ୟାଘ୍ର ଚର୍ମରେ ଆବୃତ । ସର୍ବାଙ୍ଗ ହଳଦିତେଲରେ ରଞ୍ଜିତ । ମସ୍ତକର ସିନ୍ଦୂର ଟୋପା ଯୋଗେ ଅଦ୍ଭୁତ ଭୀଷଣ ଦେଖାଯାଏ । ଆଧୁନିକ ସଭ୍ୟତା ଦୃଷ୍ଟିରେ ପାଇକଙ୍କ ଅଦ୍ଭୁତ ବନ୍ୟ ବୋଧ ହେଲେହେଁ, ଯୁଦ୍ଧ କ୍ଷେତ୍ରରେ ସେମାନଙ୍କ ସାହସ ଓ କୌଶଳ ପ୍ରଶଂସନୀୟ ଥିଲା । ସେହି

ଦେଶରେ ସେମାନେ ଛଅଶତ ବର୍ଷ ପର୍ଯ୍ୟନ୍ତ ପ୍ରବଳ ମୁସଲମାନ ବାଦ୍‌ଶା-ବିରୁଦ୍ଧରେ ଦେଶ ରକ୍ଷା କରି, ତାହା ପୁଣି ବଞ୍ଚାଇ ଥିଲେ; ଏବଂ ଶତ ଶତ ବର୍ଷ ବ୍ୟାପୀ ସ୍ୱାଧୀନତା ସତ୍ତ୍ୱେ ମରହଟ୍ଟା ଅଶ୍ୱାରୋହମାନଙ୍କର ସମକକ୍ଷ ଯୋଦ୍ଧା ଥିଲେ । କେହି କେହି ଇଂରେଜ ଲେଖକ ଯେପରି କହୁଛନ୍ତି, ଇଂରେଜ ସରକାର ପ୍ରଥମରୁ ସେମାନଙ୍କ ପ୍ରତି ଉଦାର ଓ ସହାନୁଭୂତି ଧରି ଥିଲେ, ଏବଂ ସେମାନଙ୍କର ବଂଶଗତ ଅଧିକାର ରକ୍ଷା କରି ଆଧୁନିକ ଯୁଦ୍ଧବିଦ୍ୟାରେ ସେମାନଙ୍କୁ ଶିକ୍ଷିତ କରାଇ ଥିଲେ, ଭାରତରେ ଅନ୍ୟତ୍ର ଶିଖ, ଗୁର୍ଖାଙ୍କ ପରି ଓଡ଼ିଶାର ପାଇକ ଦଳ ଆଧୁନିକ ଅସ୍ତ୍ର ଶସ୍ତ୍ର ସାହାଯ୍ୟରେ ଏବଂ ଅଳ୍ପ ବ୍ୟୟରେ ଇଂରେଜ ସରକାରଙ୍କର ପ୍ରଧାନ ସୈନ୍ୟବଳ ହୋଇଥାନ୍ତେ ।

ପାଇକ-ବିଦ୍ରୋହର କାରଣ— ମାତ୍ର ସେ ଉଦାରତା ପରିବର୍ତ୍ତରେ ଇଂରେଜ ଶାସନନୀତି ପାଇକମାନଙ୍କର ସର୍ବନାଶର କାରଣ ହେଲା । ଖୋରଧା ରାଜବିଦ୍ରୋହ ପରେ ଖୋରଧା ଇଂରେଜ ସରକାରଙ୍କର ଖାସମାହାଲ ହୋଇ ରହିଲା । ମେଜର ଫ୍ଲେଚର ଖୋରଧା ଶାସନ କାର୍ଯ୍ୟରେ ନିଯୁକ୍ତ ହେଲେ, ଏବଂ ଖୋରଧାରେ ସରକାରୀ କଚେରୀ ପ୍ରଥମେ ନିର୍ମାଣ କଲେ । ପାଇକମାନଙ୍କ ପ୍ରତି ତାହାଙ୍କ ବ୍ୟବହାର ବଡ଼ କଠୋର ଥିଲା । ପାଇକମାନେ ଅବହମାନ କାଳରୁ ଯେଉଁ ନିଷ୍କର ଜାଗିରୀ ଭୋଗ କରି ଆସୁଥିଲେ, ଫ୍ଲେଚର ସେ ସମସ୍ତ ଜାଗିରୀ ପାଇକମାନଙ୍କଠାରୁ ଛଡାଇ ନେଇ ସରକାରଙ୍କ ଖାସ ମାହାଲ ମଧ୍ୟରେ ରଖିଲେ, ଏବଂ ସେହି ଜମିଉପରେ ଜମା ଧାର୍ଯ୍ୟ କଲେ । ରାଜସ୍ୱ ଆଦାୟ ନିମନ୍ତେ ଯେଉଁ ସରବରାକାରମାନେ ନିଯୁକ୍ତ ରହିଲେ, ସେମାନେ କଠୋରଭାବରେ କର ଆଦାୟ କରି ପାଇକମାନଙ୍କ ଉପରେ ଅତ୍ୟାଚାର କଲେ । ତାହାର ପରେ ପୁଣି ସାପାନ୍ତର ପ୍ରଜାସ କର୍ମଚାରୀମାନଙ୍କ ଅତ୍ୟାଚାର ଅତ୍ୟନ୍ତ ଅସହନୀୟ ହୋଇ ଉଠିଲା । ସେତେବେଳେ ବଙ୍ଗାଳୀମାନେ ସରକାରଙ୍କର ପ୍ରଧାନ ପ୍ରଧାନ କର୍ମଚାରୀ ଥିଲେ । ନିଜ ନିଜର ସ୍ୱାର୍ଥସିଦ୍ଧି ନିମନ୍ତେ ସେମାନେ ଯେ ଦୁର୍ଦ୍ଦମ୍ୟ ଅଚରଣ

କରୁଥିଲେ, ତାହା ପାଇକମାନଙ୍କୁ ବିଶେଷ ଉତ୍ତେଜିତ କରୁଥିଲା । ଏହା ଉପରେ ପୁଣି ସରକାରଙ୍କର କର ଅଦାୟ ନୀତିର କଠୋରତା । ଅବହମାନ କାଳରୁ ଭୂମିରାଜସ୍ୱ ଶସ୍ୟ କିମ୍ବା କଉଡ଼ି ଆକାରରେ ଦିଆହୋଇ ଆସୁଥିଲା । ମାତ୍ର ଇଂରେଜ ସରକାର କଉଡ଼ି ପରିବର୍ତ୍ତରେ କେବଳ ଟଙ୍କାରେ ରାଜସ୍ୱ ଦାବି କଲେ, ଏବଂ କଉଡ଼ିର ମୂଲ୍ୟ ୧ ଟଙ୍କାରେ ୫୧୨୦ କଉଡ଼ି ସ୍ଥିର କରି ଦେଲେ । କିନ୍ତୁ ପ୍ରକୃତରେ ଗ୍ରାମ ମହାଜନମାନଙ୍କଠାରେ କଉଡ଼ି ବଦଳାଇ ଟଙ୍କା କଲା ବେଳକୁ ପ୍ରଜାମାନଙ୍କୁ ଟଙ୍କା ପ୍ରତି ୭୬୮୦ କଉଡ଼ି ଦେବାକୁ ପଡୁଥିଲା । ଅର୍ଥାତ୍ ରାଜସ୍ୱ ୧ ଟଙ୍କା ସ୍ଥଳେ ସେମାନଙ୍କୁ ଦେଢ଼ଟଙ୍କା ଦେବାକୁ ପଡୁଥିଲା । ଏହା ଉପରେ ସରବରାକାର ଏବଂ ସେମାନଙ୍କ ରାଜସ୍ୱ-ଅଦାୟକାରୀ କର୍ମଚାରୀମାନଙ୍କର ଅଯଥା ଦାବି ମଧ୍ୟ ଥିଲା । ଅବହମାନ କାଳରୁ ନିଷ୍କର-ବୃତ୍ତି-ଭୋଗୀ ପାଇକମାନେ ଏହିରୂପେ ରାଜସ୍ୱ ଅଦାୟ ଦେବାକୁ ଘୋର ଯନ୍ତ୍ରଣା ମଣୁଥିଲେ ।

ଏହି ସବୁ ଯନ୍ତ୍ରଣା ଓ ଅତ୍ୟାଚାର ଉପରେ ସରକାରଙ୍କର ଲୁଣ କର ପାଇକମାନଙ୍କୁ ଅଧିକ ବାଧିଲା (ପରେ ଲୁଣ କର ବିଷୟ କୁହାଯିବ) । ସରକାରର କଠୋର ଲୁଣକର ନୀତିରେ ଓଡ଼ିଶାରୁ ଲୁଣ ବ୍ୟବସାୟ ଉଠିଗଲା । ଚିଲିକାକୂଳବର୍ତ୍ତୀ ଯେଉଁ ପାଇକ ଓ ପ୍ରଜାମାନେ ବର୍ଷମଧ୍ୟରୁ ଛମାସ ହଳ ଲାଗି ଚାଷବାସ କରି ଏବଂ ଅନ୍ୟ ଛମାସ ଲୁଣ ବ୍ୟବସାୟ କରି ଜୀବିକାର୍ଜନ କରୁଥିଲେ, ଲୁଣ ବ୍ୟବସାୟ ବନ୍ଦ ହେବାରୁ ସେମାନେ ଅବହମାନ କାଳର ପୈତୃକ ଜୀବିକାରୁ ବଞ୍ଚିତ ହୋଇ ପଡ଼ିଲେ । ଏହିପରି ଅସହାୟ ବେଳେ ଇଂରେଜ ଶାସନରେ ଦୟା ଓ ନ୍ୟାୟ ବିଚାରର କୌଣସି ଆଶା ନ ଦେଖି ଆପଣାର ପ୍ରାଚୀନ ଖୋରଧା ରାଜାଙ୍କ ରାଜତ୍ୱର ପୁନଃ ପ୍ରତିଷ୍ଠା କରାଇବା ସମ୍ପୂର୍ଣ୍ଣ ମନସ୍ଥ କଲେ । ଏହି ଘୋର ବିଦ୍ରୋହାନଳରେ ପୂର୍ଣ୍ଣ ଆହୁତି ଦେବାପାଇଁ ଅଭାବ ରହିଲା କେବଳ ଜଣେ ଉପଯୁକ୍ତ ପୁରୋଧା, ସୁଦକ୍ଷ ଓ ବିଶ୍ୱାସଭାଜନ ନାୟକ ।

ବକ୍ସି ଜଗବନ୍ଧୁ ବିଦ୍ୟାଧର—ପଞ୍ଚଣାବର୍ତ୍ତରେ ସେହି ଉପଯୁକ୍ତ ନାୟକ ମଧ୍ୟ ବାହାରି ପଡିଲେ । ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ ବଂଶପରମ୍ପରାକ୍ରମେ ଖୋରଧା ରାଜବଂଶର "ବକ୍ସି" ବା ପ୍ରଧାନ ସେନାପତିର କାର୍ଯ୍ୟ କରି ଆସୁଥିଲେ । ବଂଶପରମ୍ପରାକ୍ରମେ ବକ୍ସିମାନଙ୍କୁ ପାଇକମାନେ ଆପଣାର ଉପଯୁକ୍ତ ସେନାପତି ବୋଲି ଭକ୍ତି ଓ ବିଶ୍ୱାସ କରୁଥିଲେ, ଏବଂ ରାଜାଙ୍କ ବ୍ୟତୀତ ବକ୍ସିହିଁ ସମସ୍ତ ଦେଶ ତଥା ପାଇକ ସମାଜର ସର୍ବୋଚ୍ଚ ସମ୍ମାନ-ପାତ୍ର ଥିଲେ । ପାଇକମାନଙ୍କର ଉପସ୍ଥିତ ଘୋର ଅସନ୍ତୋଷ ଓ ନିରାଶା ଅବସ୍ଥାରେ ବକ୍ସି ଅଗ୍ରସର ହୋଇ ବାହାରିବାରୁ କେବଳ ବିଦ୍ରୋହରେହିଁ ସେମାନଙ୍କର ସକଳ ଆଶା ଓ ବିଶ୍ୱାସ ଜାଗ୍ରତ ଓ ଦୃଢ଼ୀଭୂତ ହେଲା ।

ଖୋରଧା ରାଜବଂଶ ସୃଷ୍ଟିକାଳରୁ ଜଗବନ୍ଧୁଙ୍କ ବଂଶ ପୁରୁଷାନୁକ୍ରମେ ଖୋରଧା ମହାରାଜାଙ୍କର ବକ୍ସି ଥାଇ ନିଷ୍କର ଜାଗିରି ଓ ଅନ୍ୟାନ୍ୟ ଉପସ୍ୱତ୍ୱ ବ୍ୟତୀତ, ରୋଡଙ୍ଗ କିଲ୍ଲା ଅତି ସାମାନ୍ୟ ଜମାରେ ଭୋଗକରି ଆସୁଥିଲେ । ଖୋରଧା ରାଜା ମରହଟ୍ଟାମାନଙ୍କୁ ରହାଙ୍ଗ, ଚବିଶକୁଦ ପ୍ରଭୃତି ପ୍ରଗଣାମାନ ବନ୍ଧକ ଦେବାରୁ ଜଗବନ୍ଧୁଙ୍କ ପୂର୍ବପୁରୁଷ ତହିଁମଧ୍ୟରୁ ରୋଡଙ୍ଗ କିଲ୍ଲା ମରହଟ୍ଟାମାନଙ୍କଠାରୁ କ୍ରୟକରି ଭୋଗକରୁଥିଲେ । ଇଂରେଜମାନେ ଓଡିଶା ଅଧିକାର କରିବାବେଳେ ଜଗବନ୍ଧୁ ରୋଡଙ୍ଗର ଅଧିକାରୀ ଥିଲେ ; ଏବଂ କର୍ଣ୍ଣେଲ ହାର୍କୋର୍ଟ ସେହି ବାଟେ ପୁରୀ ଆସିବା ବେଳେ ଜଗବନ୍ଧୁ ତାଙ୍କର ବଶ୍ୟତା ସ୍ୱୀକାର କରିଥିଲେ । ସୁତରାଂ ଓଡିଶା ଅଧିକାର ପରେ ୧୮୦୪ ସାଲରେ ରୋଡ଼ଙ୍ଗ କିଲ୍ଲା ନିମନ୍ତେ ବକ୍ସି ଜଗବନ୍ଧୁଙ୍କ ସଙ୍ଗେ ଇଂରେଜ ସରକାରଙ୍କର ବନ୍ଦୋବସ୍ତ ହୋଇଥିଲା । ପୁଣି ୧୮୦୫-୬ ଖ୍ରୀଷ୍ଟାବ୍ଦର ବନ୍ଦୋବସ୍ତରେ ବକ୍ସିଙ୍କ ସଙ୍ଗେ ନୂତନ ବନ୍ଦୋବସ୍ତ ୩ ବର୍ଷ ନିମନ୍ତେ ଧାର୍ଯ୍ୟ କରାଗଲା । ଏଥିମଧ୍ୟରେ କୃଷ୍ଣଚନ୍ଦ୍ରସିଂହ ନାମକ କଲିକତା ନିକଟବର୍ତ୍ତୀ ପାଇକପଡ଼ାର ଜଣେ ବଙ୍ଗାଳୀ ପ୍ରଥମେ

କଲେକ୍ଟରଙ୍କର ଦେବାନ ଥିଲେ । ଖୋର୍ଦ୍ଧା ରାଜାଙ୍କଠାରୁ ମରହଟ୍ଟାମାନେ ପାଇଥିବା କେତେକ ପ୍ରଗନ୍ନାର ତହସିଲଦାରରୂପେ କୃଷ୍ଣଚନ୍ଦ୍ରଙ୍କର ଜଣେ ଭାଇ ଗୌରହରି ସିଂହ ନିଯୁକ୍ତ ଥିଲେ । ଇଂରେଜ ଅଧିକାର ସଙ୍ଗେ ଉକ୍ତ ପ୍ରଗନ୍ନାମାନ ସରକାରଙ୍କ ଖାସଦଖଲରେ ରହିଲା ; ଏବଂ ରାଜସ୍ୱ ଆଦାୟ ନିମନ୍ତେ ତହିଁରେ ଜଣେ ଅଧିକାରୀ ନିଯୁକ୍ତ ହେଲେ । ଏହି ସୂତ୍ରରେ ଦେବାନ କୃଷ୍ଣଚନ୍ଦ୍ର ସିଂହ ରାହାଙ୍ଗ ପ୍ରଗନ୍ନାଟି ଆପଣାର ଜଣେ ବିଶ୍ୱାସୀ ଆତ୍ମୀୟ ଲକ୍ଷ୍ମୀନାରାୟଣ ନାମକ ଅନ୍ୟ ଜଣେ ବଙ୍ଗାଳୀଙ୍କ ନାମରେ ୧୮୦୯ ଖ୍ରୀଷ୍ଟାବ୍ଦରେ ବନ୍ଦୋବସ୍ତ କରାଇନେଲେ । ରାହାଙ୍ଗ ଓ ବୋଡଙ୍ଗର ଜମିଦାରୀ ଆତ୍ମସାତ୍ କରିବା ନିମନ୍ତେ କୃଷ୍ଣଚନ୍ଦ୍ରଙ୍କର ଘୋର ଅଭିଳାଷ ଥିଲା, ଏବଂ ନିଜେ ଦେବାନ ବିଶେଷ କୌଶଳୀ ଓ ବିଚକ୍ଷଣ ମତିମାନ୍ ଥିବାରୁ ସେ ଅଭିଳାଷ ସାଧନରେ ଯଥେଷ୍ଟ ସୁବିଧା ହେଲା । ରାହାଙ୍ଗ ପ୍ରଗନ୍ନା ବେନାମୀ ସ୍ୱରୂପ ସେ ଲକ୍ଷ୍ମୀନାରାୟଣଙ୍କ ନାମରେ ଧରାଇଥିଲେ । ବାଘ ଜଗବନ୍ଧୁଙ୍କ ଅଧିକାର ଉଚ୍ଛେଦ କରି ସେ ବୋଡ଼ଙ୍ଗ ମଧ୍ୟ ଆତ୍ମସାତ୍ କରିବାର କଳ୍ପନାରେ ରହିଲେ ।

ଇଂରେଜ ଅଧିକାର କାଳରୁ ଜଗବନ୍ଧୁ ବୋଡଙ୍ଗର ରାଜସ୍ୱ ସ୍ୱୟଂ କଲେକ୍ଟରଙ୍କଠାରେ ଜମା ଦେଇଆସୁଥିଲେ । ବର୍ତ୍ତମାନ କୃଷ୍ଣଚନ୍ଦ୍ରଙ୍କ ଆଦେଶ ଓ ପରାମର୍ଶ ଅନୁସାରେ ସେ ପୂର୍ବୋକ୍ତ ତହସିଲଦାର ଗୌରହରିଙ୍କ ଠାରେ ରାଜସ୍ୱ ଜମାଦେଲେ । କୃଷ୍ଣଚନ୍ଦ୍ରଙ୍କ ଇଙ୍ଗିତ ଅନୁସାରେ ଗୌରହରି ବକ୍ସିଙ୍କ ରାଜସ୍ୱ ବୋଡଙ୍ଗ କିଲାର ବୋଲି ସ୍ୱତନ୍ତ୍ର ହିସାବରେ ନ ଦେଖାଇ, ରାହାଙ୍ଗ ପ୍ରଗନାର ଅନ୍ତର୍ଭୁକ୍ତ କରି ଦେଖାଇଲେ । ଏହି-ରୂପେ କାଳକ୍ରମେ ବୋଡ଼ଙ୍ଗ ସ୍ୱତ୍ୱ ରାହାଙ୍ଗ ଅନ୍ତର୍ଭୁକ୍ତ ହୋଇଗଲା; ଏବଂ ସରକାର କାଗଜପତ୍ରରେ ବୋଡଙ୍ଗ ରାହାଙ୍ଗରୁ ପୃଥକ୍ ଥିବାର ପ୍ରକାଶ ରହିଲା ନାହିଁ । ଲକ୍ଷ୍ମୀନାରାୟଣ ୧୮୦୯ ଖ୍ରୀଷ୍ଟାବ୍ଦରେ 'ରାହାଙ୍ଗ ଓଗେର' ପ୍ରଗନା ସ୍ୱତ୍ୱ ନୀଲାମରେ ବର୍ଦ୍ଧକ ପରେ ପୁଣି ବିକ୍ରୟ ବିଜ୍ଞାପନ ପ୍ରଚାର

ଥିଲେ । ନେତା ସ୍ୱରୂପ ସ୍ୱୟଂ କୃଷ୍ଣଚନ୍ଦ୍ର ଉପସ୍ଥିତ । ସୁତରାଂ ସେ ନ୍ୟସ୍ତ-ସୂତ୍ରରେ 'ରୋହାଙ୍ଗ ଓଗେର' ପ୍ରଗନ୍ନାର ଜମିଦାର ହୋଇ ବସିଲେ । କୃଷ୍ଣଚନ୍ଦ୍ର ରୋହଙ୍ଗ ଦଖଲ କରିବାର ଚେଷ୍ଟା କରନ୍ତେ ଜଗବନ୍ଧୁ ବାଧା ଦେଲେ । ବନ୍ଦୋବସ୍ତ କମିଶନର ବ୍ଲେର୍ ସାହେବଙ୍କଠାରେ କୃଷ୍ଣଚନ୍ଦ୍ର ଆପଣାର ରୋଡ଼ଙ୍ଗ ଦଖଲ ଦାବି କଲେ । ତାହାପୂର୍ବରୁ ଦୁଇ ବନ୍ଦୋବସ୍ତରେ ରୋହଙ୍ଗ କିଲାର ବନ୍ଦୋବସ୍ତ ଜଗବନ୍ଧୁଙ୍କ ନାମରେ ହୋଇଥିଲେ ସୁଦ୍ଧା, ବ୍ଲେର ସାହେବଙ୍କ ବିଚାରରେ ଜଗବନ୍ଧୁଙ୍କର ମୌଳିକ ଅଧିକାର ସନ୍ଦେହଜନକ ବୋଧହେଲା, ଏବଂ ଉପଯୁକ୍ତ ଅଦାଲତରେ ଆପଣାର ସ୍ୱତ୍ୱ ସାବ୍ୟସ୍ତ ନ କରିବା ପର୍ଯ୍ୟନ୍ତ ଜଗବନ୍ଧୁ ରୋହଙ୍ଗ କିଲାରୁ ବେଦଖଲ ହେଲେ । ପରେ ଅଦାଲତରେ ତାଙ୍କର ସ୍ୱତ୍ୱ ସାବ୍ୟସ୍ତ ହେଲେ ଜଗବନ୍ଧୁଙ୍କ ସଙ୍ଗେ ସରକାର ସ୍ୱତନ୍ତ୍ର ବନ୍ଦୋବସ୍ତ କରିବାର ଆଦେଶ ହେଲା । ଖୋରଧା ଗଜପତି ମହାରାଜାଙ୍କର ପ୍ରଧାନ ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ ଆପଣାର ଶତାଧିକବର୍ଷବ୍ୟାପୀ ମୌରସୀ ସ୍ୱତ୍ୱରୁ ବିଚ୍ୟୁତ ହୋଇ ବର୍ତ୍ତମାନ ପଥର ଭିକ୍ଷୁକ ହୋଇବସିଲେ । ଦୁଇବର୍ଷକାଳ ଖୋରଧାବାସୀ ପ୍ରଭୁଭକ୍ତି ଦେଖାଇ ସ୍ୱେଚ୍ଛାଦାନରେ ଜଗବନ୍ଧୁଙ୍କ ଭରଣ ପୋଷଣ ଚଳାଇଲେ । ସେତେବେଳର ଇଂରେଜ ଅଦାଲତରେ ଜଣେ ବଙ୍ଗାଳୀ ମାମଲତକାର ସଙ୍ଗେ ମୋକଦ୍ଦମା କରିବାକୁ ଜଗବନ୍ଧୁ ସାତିଶୟ ଘୃଣାକଲେ । ପୁଣି ମୋକଦ୍ଦମା ପାଇଁ ଅର୍ଥ ବା କାହିଁ ପାଆନ୍ତେ ? ଖୋରଧା ଗଜପତିଙ୍କ ବକ୍ସି ଯେ 'ପପର୍' ହୋଇ ମକଦ୍ଦମା କରିବେ ଏହା ତାଙ୍କୁ ଘୋର ଲଜ୍ଜାଜନକ ବୋଧ ହେଲା । ପୁଣି କଲେ ମଧ୍ୟ ଜଣେ କ୍ଷମତାଶାଳୀ ବଙ୍ଗାଳୀ ମାମଲତକାରର କୌଶଳରୁ କୌଣସି ଅଦାଲତ ଯେ ମୁକ୍ତ ହୋଇ ଓଡ଼ିଆ ଜଣଙ୍କୁ ମୋକଦ୍ଦମା ଡିଗ୍ରୀଦେବେ, ତାହା ତାଙ୍କୁ ସମ୍ଭବ ବୋଧହେଲା ନାହିଁ । ୧୮୧୭ ଖ୍ରୀଷ୍ଟାବ୍ଦ ମାର୍ଚ୍ଚମାସରେ ଏହାହିଁ ଜଗବନ୍ଧୁଙ୍କ ଅବସ୍ଥା । ଆଉ କେତେବେଳ ବା ସେ ପ୍ରଭୁଭକ୍ତ ପ୍ରଜାଙ୍କ

ଦାନରେ ଜୀବିକା ଚଳାନ୍ତେ ? ଖୋରଧାର ରାଜବଂଶର ରାଜତ୍ୱ ଲୋପ ପରେ ତାହାଙ୍କର ସକଳ ଉପସ୍ୱତ୍ୱ ଯାଇ, ବାକୀ କେବଳ ରୋଡଙ୍ଗ କଲ୍ଲାହ ତାହାଙ୍କର ସର୍ବସ୍ୱ ଥିଲା । ବର୍ତ୍ତମାନ ଇଂରେଜ ରାଜତ୍ୱରେ ସେଥିରୁ ସୁଦ୍ଧା ସେ ବଞ୍ଚିତ ହେବାରୁ କୌଣସି ଅନ୍ୟ କିଛି ଅଶା ଅଶ୍ରୟ ନ ଦେଖି ସେ ମନେ ମନେ ସ୍ଥିରକଲେ ଯେ ଆପଣାର ମହାରାଜାଙ୍କୁ ପୂର୍ବପର ଖୋରଧା ରାଜସିଂହାସନରେ ନ ବସାଇବା ପର୍ଯ୍ୟନ୍ତ ତାହାଙ୍କ ଦୁର୍ଦ୍ଦଶା ଫେରିବାର ଅନ୍ୟ ସମ୍ଭାବନା ନାହିଁ ।

ପାଇକ ବିଦ୍ରୋହ—ଜଗବନ୍ଧୁଙ୍କ ମନମଧ୍ୟରେ ଏହିରୂପ ବିଦ୍ରୋହଭାବ ଜନ୍ମିବା ବେଳକୁ ୧୮୧୭ ଖ୍ରୀଷ୍ଟାବ୍ଦର ମାର୍ଚ୍ଚମାସରେ ଘୁମସରରୁ ୪୦୦ କନ୍ଧ ଖୋରଧାରାଜ୍ୟମଧ୍ୟରେ ପଶି ବିଦ୍ରୋହ ଆରମ୍ଭ କଲେ । ଖୋରଧା ପାଇକଙ୍କ-ମଧ୍ୟରେ ବିଦ୍ରୋହ ବହ୍ନି ବହୁକାଳର ଅତ୍ୟାଚାର ମଧ୍ୟରେ ଲୁହୁଲୁ ଥିଲା । ଏହି କନ୍ଧ ବିଦ୍ରୋହରେ ତାହା ହଠାତ୍ ଜଳି ଉଠିଲା , ଏବଂ ପାଇକ-ନାୟକ ବକ୍ସି ଜଗବନ୍ଧୁ ଏହାକୁ ପରମ ସୁଯୋଗ ଜ୍ଞାନକରି ଜୀବନର ଶେଷପରୀକ୍ଷା ସ୍ୱରୂପ ଏହି ବିଦ୍ରୋହବହ୍ନିରେ ଅପଣାକୁ ଝାସ ଦେଲେ । ବିଗତ ତିନି ଶତ ବର୍ଷର ପରାଧୀନତା ଓ ନାନା ଅତ୍ୟାଚାରମଧ୍ୟରେ ପାଇକମାନେ ବହୁ ହୀନବଳ ହୋଇଥିଲେ ସୁଦ୍ଧା, ପ୍ରାଚୀନ ସମରକୌଶଳ, ସାହସ ଓ ରଣକୌଶଳ ସେମାନଙ୍କମଧ୍ୟରୁ ସମ୍ପୂର୍ଣ୍ଣ ଲୋପ ପାଇ ନ ଥିଲା । ଅବଶ୍ୟ ଅଧୁନିକ ରଣକୌଶଳୀ ଇଂରେଜ ସୈନ୍ୟଙ୍କର ସମକକ୍ଷ ହେବା ସେମାନଙ୍କଠାରୁ ଆଶା କରାଯାଏ ନାହିଁ ; ମାତ୍ର ନିଜ ଦେଶମଧ୍ୟରେ ସୁପରିଚିତ ପଥ ଓ ବନ ପର୍ବତର ସୁବିଧାଯୋଗେ, ସେମାନେ ଇଂରେଜ ସେନା ସଙ୍ଗେ ସମ୍ମୁଖସମର ନିମନ୍ତେ ସମର୍ଥ ହୋଇଥିଲେ ।

ପାଇକମାନେ ବିଦ୍ରୋହୀ କନ୍ଧମାନଙ୍କ ସଙ୍ଗେ ଯୋଗଦେଇ ବାଣପୁର ଆକ୍ରମଣ କଲେ , ଏବଂ ପୁଲିସଥାନା ଅନ୍ୟାନ୍ୟ ସରକାରୀ ଘର ଓ କଚେରୀ ଲୁଣ୍ଠନ କରି ବହୁଲୋକଙ୍କୁ ମାରି ପ୍ରାୟ ୧୫୦୦୦ ଟଙ୍କା ମୂଲ୍ୟର ଧନ ହସ୍ତଗତ କଲେ । ଚିଲିକାମଧ୍ୟରେ ଲୁଣ ହାକିମଙ୍କ ନୌକା ମଧ୍ୟ ଏହି

ଲୁଣ୍ଠନମଧ୍ୟରେ ପଡ଼ିଲା । ସେଠାରୁ ବିଦ୍ରୋହୀମାନେ ଖୋରଧା ଅଭିମୁଖେ ଅଗ୍ରସର ହେଲେ, ଏବଂ ପଥ ମଧ୍ୟରେ ସେମାନଙ୍କର ସଂଖ୍ୟା ଗ୍ରାମକୁ ଗ୍ରାମ ବଢ଼ୁଥାଏ । ବାଣପୁର ବିଜୟ ପ୍ରଭାବରେ ସମଗ୍ର ଖୋରଧା ବିଦ୍ରୋହ ବହ୍ନିରେ ଜଳିଉଠିଲା । ବିଦ୍ରୋହୀମାନଙ୍କ ଆକ୍ରମଣ ଆଶଙ୍କାରେ ଖୋରଧାର ସକଳ ସରକାରୀ କର୍ମଚାରୀମାନେ ପଳାୟନ କଲେ । ବିଦ୍ରୋହୀମାନେ ସକଳ କଚେରୀ ଓ ସରକାରୀ ଗୃହମାନ ଭାଙ୍ଗିଦେଇ, ଖଜଣାଖାନା ଲୁଣ୍ଠନ କରି ନେଲେ । ଅଭି ଏକଦଳ ପାଇକ ଲେମ୍ବାଇ ଆକ୍ରମଣ କଲେ । ଚରଣ ପଟ୍ଟନାୟକ ନାମରେ ଜଣେ ଅତ୍ୟାଚାରୀ ସରକାରୀ ତହସିଲଦାର ବିଦ୍ରୋହୀମାନଙ୍କ ହସ୍ତରେ ପ୍ରାଣତ୍ୟାଗ କଲେ ।

କଟକରେ ଏହି ବିଦ୍ରୋହ ସମ୍ବାଦ ପହଞ୍ଚିବା ମାତ୍ରେ ଦୁଇଦଳ ସୈନ୍ୟ ଖୋରଧା ଓ ଲେମ୍ବାଇ ରକ୍ଷା କରିବା ନିମନ୍ତେ ପ୍ରେରିତ ହେଲେ । ନିଜ ଉପସ୍ଥିତି ବିଦ୍ରୋହଶାନ୍ତିରେ ସାହାଯ୍ୟ କରିବା ଭାବି ନିଜେ ମାଜିଷ୍ଟ୍ରେଟ ଇମ୍ପି ସାହେବ ୬୦ ଜଣ ସିପାହୀଙ୍କ ସଙ୍ଗେ ଏପ୍ରିଲ ସପ୍ତମ ଦିନ ଖୋରଧା ଯାତ୍ରାକଲେ, ଏବଂ ପରଦିନ ସନ୍ଧ୍ୟାକୁ ଖୋରଧାର ୭ ମାଇଲ୍ ଦୂରବର୍ତ୍ତୀ ଗାଙ୍ଗପଡ଼ାରେ ପହଞ୍ଚିଲେ । ପାଇକମାନେ ସେଠାରେ ଏକ ପ୍ରାଚୀର ନିର୍ମାଣ କରି ଗୋଲାଗୁଳି ଧରି ଖୋରଧା ପଥ ଅବରୋଧ କରି ରହିଥିଲେ । ହଠାତ୍ ଇଂରେଜ ସିପାହୀମାନଙ୍କୁ ଦେଖି ସେମାନେ ଗୁଳିବର୍ଷଣ କଲେ । ମାଜିଷ୍ଟ୍ରେଟଙ୍କର ବହୁର ଥିଲା ଖୋରଧାର ସିପାହୀଦଳ ପଛଆଡ଼ୁ ଆସି ଆକ୍ରମଣ କଲେ, ଅଗ ଓ ପଛ ଉଭୟ ଆଡୁ ଗୁଳିବର୍ଷଣରେ ପାଇକମାନେ ଛତ୍ରଭଙ୍ଗ ଦେବେ । ମାତ୍ର ଖୋରଧାର ସଂବାଦ ମିଳିଲା ଖୋରଧା ସଂପୂର୍ଣ୍ଣ ଧ୍ୱସ୍ତ, ସୈନ୍ୟ କେହି ସେଠାରେ ନ ଥିବେ । ଏଥିମଧ୍ୟରେ କ୍ରମେ ପାଇକ ମାନଙ୍କ ସଂଖ୍ୟା ବଢ଼ି ୩ ହଜାର ହେଲା । ମାଜିଷ୍ଟ୍ରେଟ ଅଗତ୍ୟା ଦ୍ରୁତ ଗତିରେ ସଦଳବଳରେ ପଳାଇ ଆସି ବାଲକାଟିରେ ଆଶ୍ରୟ ନେଲେ ।

ଅବସ୍ଥା କ୍ରମେ ଘୋର ସଙ୍କଟମୟ ହୋଇ ଉଠିଲା । ବାଲକାଟି-ଠାରେ ମଧ୍ୟ ମାଜିଷ୍ଟ୍ରେଟଙ୍କ ଦଳବଳ ନିଶ୍ଚିନ୍ତ ହୋଇପାରିଲେ ନାହିଁ । ବିଦ୍ରୋ-

ମଧ୍ୟରେ ପଳାଇ ଯିବାବେଳକୁ ପାଇକ ଦଳେ ସିପାହୀମାନଙ୍କୁ ଆକ୍ରମଣ କଲେ । ସିପାହିମାନେ ହାତୀ ତମ୍ବୁ ପ୍ରଭୃତି ଯୁଦ୍ଧୋପକରଣ ସବୁ ହରାଇ ଦ୍ରୁତଗତିରେ କଟକ ପଳାଇ ଗଲେ । ମାକଫ୍ରେଟ ଗଭର୍ଣ୍ଣମେଣ୍ଟଙ୍କୁ ଲେଖିଲେ ସମସ୍ତ ଖୋରଧା ବିଦ୍ରୋହାନଳରେ ଜଳୁଛି । ଜଗବନ୍ଧୁ ନିଜ ନାମରେ ଆଦେଶ ଜାରି କରି ବିଦ୍ରୋହ ପରିଚାଳନା କରୁଛନ୍ତି । ପୁରୀରୁ ଖୋରଧା ରାଜାଙ୍କୁ ଆଣି ପୁଣି ଖୋରଧା ଗାଦିରେ ବସାଇବା, ବିଦ୍ରୋହୀମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ।

ଯେଉଁ ସୈନ୍ୟଦଳ ଦୁଇଟି ଖୋରଧା ଓ ପିପିଲିକୁ ଯାଇଥିଲେ, ସେମାନଙ୍କ ଦୁର୍ଦ୍ଦଶା ମଧ୍ୟ ମାକଫ୍ରେଟଙ୍କ ଦଳ ଅପେକ୍ଷା କିଛି ଅଳ୍ପ ନ ଥିଲା । ପିପିଲି ସୈନ୍ୟଦଳର ସେନାପତି ଖୋରଧା ସୈନ୍ୟଙ୍କ ସହ ମିଶିବା ଉଦ୍ଦେଶ୍ୟରେ ଗଙ୍ଗପଡ଼ା ବିଦ୍ରୋହୀମାନଙ୍କ ସଙ୍ଗେ ଯୁଦ୍ଧ କରୁ କରୁ ନିହତ ହେଲେ । ସିପାହିମାନେ ସକଳ ସାଜସମ୍ଭାର ହରାଇ ପିପିଲି ବାଟେ କଟକ ପଳାୟନ କଲେ । ପାଇକମାନେ ପିପିଲି ଅଧିକାର କରି ଥାନାଘର ପୋଡ଼ିଦେଲେ ।

ଖୋରଧା ଓ ପିପିଲିକୁ ସୈନ୍ୟ ପଠାହେବା ସଙ୍ଗେ ଏକଦଳ ସୈନ୍ୟ ପୁରୀ ରକ୍ଷାକରିବା ନିମନ୍ତେ ପଠା ହୋଇଥିଲେ । ପୁରୀ ପହଞ୍ଚିବା ମାତ୍ରେ ସେମାନଙ୍କ ମଧ୍ୟରୁ ୬୦ ଜଣ ସୈନ୍ୟ ଓ ସକଳ ଯୁଦ୍ଧୋପକରଣ ନେଇ ଜଣେ ସେନାପତି ଏପ୍ରିଲ ତା ୯ ରିଖ ମଧ୍ୟରେ ଖୋରଧା ଯାତ୍ରାକଲେ । ସେ ପହଞ୍ଚିବା ମାତ୍ରେ ୧୨ ତାରିଖ ଦିନ ଖୋରଧା ମଧ୍ୟରେ ସାମରିକ ଆଇନ ଜାରିକଲେ ।

ସେହି ୧୨ ତାରିଖ ବେଳକୁ ବହୁସଂଖ୍ୟକ ପାଇକ ପୁରୀନିକଟସ୍ଥ ସୁକଳ ଗ୍ରାମରେ ଏକତ୍ରିତ ହୋଇଥିଲେ । ସେଠାରୁ ସେମାନେ ଲୋକନାଥ-ଘାଟ ବାଟେ ପୁରୀରେ ପଶି ସରକାରୀ କଚେରୀ ଓ କୋଠାମାନ ବହୁତ କ୍ଷତିପାତ କରିଦେଲେ । ଦେଶୀ ସରକାର କର୍ମଚାରୀମାନେ ସାହେବମାନଙ୍କ ସହେ

ଅଗ୍ରସର ହେଲେ । ପରଦିନ ସକାଳେ ( ଏପ୍ରିଲ ୧୭ ) ସହରର ପୂର୍ବଦିଗ ଜଙ୍ଗଲମଧ୍ୟରୁ ବିଦ୍ରୋହୀମାନେ ବାହାରି ଇଂରେଜ ସୈନ୍ୟଙ୍କୁ ଆକ୍ରମଣ କଲେ । ୨ ଘଣ୍ଟା କାଳ ଘୋର ଯୁଦ୍ଧ ପରେ ଇଂରେଜ ସୈନ୍ୟ ବିଦ୍ରୋହୀ-ମାନଙ୍କୁ ସହର ମଧ୍ୟରୁ ତଡ଼ିଦେଲେ । ମାତ୍ର ଏହି ବିଜୟ ବହୁକ୍ଷଣ ସ୍ଥାୟୀ ହୋଇ ନ ଥିଲା । ସହର କର୍ମଚାରୀ ଏବଂ ସହରବାସୀ କେତେକ ବିଦ୍ରୋହୀଙ୍କ ସଙ୍ଗେ ମିଶିଗଲେ । ଇଂରେଜ ରାଜତ୍ୱ ଲୋପ ଏବଂ ଖୋର୍ଦ୍ଧା ମହାରାଜାଙ୍କ ରାଜତ୍ୱ ପ୍ରତିଷ୍ଠିତ ହେଲା ବୋଲି ପଣ୍ଡାମାନେ ଘୋଷଣା କଲେ । ବିଦ୍ରୋହୀ-ମାନେ ବିଶେଷ ଉତ୍ସାହିତ ହୋଇ ଇଂରେଜ ସୈନ୍ୟଙ୍କୁ ଆକ୍ରମଣ କରିବାକୁ ବାହାରିବାରୁ, ଇଂରେଜ ସେନାପତି ଅନନ୍ୟୋପାୟ ହୋଇ ସକଳ ସୈନ୍ୟ ଓ କର୍ମଚାରୀ ମାନଙ୍କୁ ଘେନି କଟକ ପଳାଇ ଗଲେ (ଏପ୍ରିଲ୧୮) ।

ପୁରୀ, ଖୋର୍ଦ୍ଧା ଏବଂ କଟକ ମଧ୍ୟରେ ସମ୍ବାଦ ଯିବା ଆସିବା ବନ୍ଦ ହୋଇଗଲା । ସୁତରାଂ ଏପ୍ରିଲ ୯ ତାରିଖ ଦିନ ଖୋର୍ଦ୍ଧାରୁ ଯେଉଁ ସୈନ୍ୟମାନେ ପୁରୀରୁ ଯାଇଥିଲେ, ସେମାନଙ୍କର କିଛି ସମ୍ବାଦ କଟକରେ ପହଞ୍ଚିଲା ନାହିଁ । ସେମାନେ ଖୋର୍ଦ୍ଧା ପହଞ୍ଚି ବିଦ୍ରୋହୀମାନଙ୍କର ପଛେ ପଛେ ଆସି ପଥମଧ୍ୟରେ ସକଳ ପାଇକ ଗ୍ରାମ ଭସ୍ମସାତ୍ କରି ପୁରୀରେ ପହଞ୍ଚିଲେ । ଏକହଜାର ପାଇକ ପୁରୀ ନିକଟରେ ଏକତ୍ରିତ ହୋଇଥିଲେ; ଇଂରେଜ ସୈନ୍ୟଙ୍କ ଅଗ୍ନେୟାସ୍ତ୍ର ଗୋଳା ବର୍ଷଣରେ ସେମାନେ ଛତ୍ରଭଙ୍ଗ ହୋଇ ପଳାୟନ କଲେ ଇଂରେଜ ସେନାପତି ପୁରୀମଧ୍ୟରେ ଉଣା ରାଜା ମୁକୁନ୍ଦଦେବଙ୍କୁ ପଳାଇ ଯିବାବେଳକୁ ହସ୍ତଗତ କଲେ । ଏହାପରେ ପାଇକ ଓ ଇଂରେଜଙ୍କ ମଧ୍ୟରେ ବହୁବାର ଯୁଦ୍ଧ ଚାଲିଲା । ସାରଙ୍ଗ-ଗଡଠାରେ ସୁବିଧା ଦେଖି ପାଇକମାନେ ଖାଦ୍ୟ ଓ ଯୁଦ୍ଧ ସାମଗ୍ରୀ ବହୁତ ଜମା କରିଥିଲେ । ହାମିଲଟନ ସାହେବ ସାରଙ୍ଗଗଡରୁ ପାଇକମାନଙ୍କୁ ଦୂରୀଭୂତ କରି ଦୁର୍ଗ ଅଧିକାର କଲେ । ବହୁକାଳ ପର୍ଯ୍ୟନ୍ତ ସେଠାରେ ଶୃଙ୍ଖଳ ଖଣ୍ଡ ହୋଇଯାଇଥିବାର ଦେଖା ଯାଉଥିଲା ।

ପୁରୀ ରଜା ବନ୍ଦୀ ହେବାପରେ ଖୋରଧାର ପାଇକ ବିଦ୍ରୋହ ବହୁତ ଶାନ୍ତ ହେଲା । ମାତ୍ର ବିଦ୍ରୋହ କେବଳ ପୁରୀଜିଲ୍ଲାରେ ଆବଦ୍ଧ ନ ଥିଲା । କଟକ ଜିଲ୍ଲା ମଧ୍ୟରେ ପାଇକମାନେ ମଧ୍ୟ ବିଦ୍ରୋହୀ ହୋଇଥିଲେ । କନିକା ଓ କୁଜଙ୍ଗର ରଜାମାନେ ପାଇକ ବିଦ୍ରୋହରେ ସାହାଯ୍ୟ କରୁଥିଲେ । ନାରାୟଣ ପରମଗୁରୁ ଏବଂ ବାମଦେବ ପଟ୍ଟଜୋଶୀ କୁଜଙ୍ଗ ଓ କନିକା ପାଇକମାନଙ୍କର ପ୍ରଧାନ ନାୟକ ଥିଲେ । ପାଇକମାନେ ଅମ୍ବରେଶ୍ୱର, ତିରଣ, ହରିହରପୁର, ଏବଂ ପୁରୀର ଗୋପ ଥାନାମାନ ପୋଡ଼ି ଦେଇ ଧନ ସଂପତ୍ତି ଯାହା ଲାଗିଥିଲା ସମସ୍ତ ଲୁଣ୍ଠନ କଲେ । ସେପ୍ଟେମ୍ବର ମାସରେ ଇଂରେଜ ସୈନ୍ୟ କୁଜଙ୍ଗ ଯାତ୍ରା କରି ପାରାଦ୍ୱୀପ ହସ୍ତଗତ କଲେ । ପାରାଦ୍ୱୀପରୁ ଇଂରେଜ ସୈନ୍ୟ କୁଆଗଡ଼ ଅଭିମୁଖେ ଯାତ୍ରା କଲେ । ସେଠାରେ ୨ ହଜାର ପାଇକ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ଥିଲେ । ପାଇକମାନେ ପରାସ୍ତ ହୋଇ ପଳାୟନ କଲେ । ୨ ହସ୍ତୀ ଓ ୮ ଅଶ୍ୱ ଇଂରେଜ ସୈନ୍ୟଙ୍କର ହସ୍ତଗତ ହେଲା । ବିଦ୍ରୋହୀ ନାୟକ ପରମଗୁରୁ ଓ ପାଟଜୋଶୀ ଧରା ହୋଇ ଦ୍ୱୀପାନ୍ତର ଦଣ୍ଡ ପାଇଲେ । କୁଜଙ୍ଗ-ରଜା ଆତ୍ମସମର୍ପଣ କରି ବାରବାଟୀମଧ୍ୟରେ ବର୍ଷେ କାଳ ବନ୍ଦୀ ରହିଲେ । ଗୋପଥାନା ବିଦ୍ରୋହ ଦମନ ନିମନ୍ତେ ପିପିଲିରୁ ୮୦ ଜଣ ସିପାହୀ ଯାଇ ଗୋପ ଶାନ୍ତ କଲେ ଏବଂ ବିଦ୍ରୋହୀ ନେତା କରୁଣାକର ସରଦାରଙ୍କୁ ବନ୍ଦୀ କଲେ ।

ଖୋରଧା ବ୍ୟତୀତ ଅନ୍ୟ ସବୁଠାରେ ଅକ୍ଟୋବର ମାସମଧ୍ୟରେ ଶାନ୍ତି ସ୍ଥାପିତ ହେଲା । ଖୋରଧାରେ କେବଳ ଦଳେ ଦଳେ ପାଇକ ସ୍ଥାନେ ସ୍ଥାନେ ଲୁଣ୍ଠନ କରୁଥିଲେ । ଖୋରଧାମଧ୍ୟରେ ଶାନ୍ତି ରକ୍ଷା ନିମନ୍ତେ ୧୮୨୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବିଦ୍ରୋହ କେନ୍ଦ୍ରମାନଙ୍କରେ ଦଳେ ଦଳେ ସିପାହୀ ରଖା ଯାଇଥିଲେ । ଭୁଇ ଜଣ ସାହେବ ଜଜ୍ ଧୃତ ବିଦ୍ରୋହୀମାନଙ୍କର ବିଚାର ନିମନ୍ତେ ୧୮୧୭ ମଇ ମାସରୁ ଖୋରଧାରେ ବସିଲେ । ବିଦ୍ରୋହୀ-ମାନଙ୍କ ମଧ୍ୟରୁ କେହି କେହି ପ୍ରାଣ ଦଣ୍ଡ, କେହି କେହି ଦ୍ୱୀପାନ୍ତର ଏବଂ

ଅନ୍ୟାନ୍ୟମାନେ କାରାଦଣ୍ଡ ପାଇଲେ । ପରେ ପୁଣି ବିଦ୍ରୋହର କାରଣ ଅନୁସନ୍ଧାନ କରିବା ନିମନ୍ତେ ଗୋଟିଏ କମିଶନ ବସିଲା । ପୂର୍ବୋକ୍ତ ବିଦ୍ରୋହ କାରଣମାନଙ୍କ ବ୍ୟତୀତ, କମିଶନ ଶେଷକାଳକୁ କହିଲେ ଯେ ଇଂରେଜମାନଙ୍କ ନୂତନ ପ୍ରବର୍ତ୍ତିତ ଶାସନ ଏହି ବିଦ୍ରୋହ ନିମନ୍ତେ ମୂଳତଃ ଦାୟୀ । ବାସ୍ତବିକ ଇଂରେଜମାନେ ଓଡ଼ିଶାର ନୂତନ ଅଧିକାର ପାଇ ଓଡ଼ିଶାର ସ୍ଥାୟୀ ବ୍ୟବସ୍ଥା ବିଷୟରେ ଅନଭିଜ୍ଞ ଥିଲେ । ଦାୟିତ୍ୱହୀନ କର୍ମଚାରୀମାନଙ୍କ ଉପରେ ଶାସନର ସଂପୂର୍ଣ୍ଣ ଭାର ରହିବାରୁ ଚିର ରାଜଭକ୍ତ ପାଇକମାନଙ୍କର ଏତେ ଦୁର୍ଦ୍ଦଶା ଘଟିଲା ।

ଖୋରଧା ବର୍ତ୍ତମାନ ଇଂରେଜ ଗଭର୍ଣ୍ମେଣ୍ଟଙ୍କର ଗୋଟିଏ ଲାଭ-ଜନକ ଜମିଦାରୀ । ପ୍ରଜାମାନେ ନିଶସ୍ତ୍ର ହୋଇ ବର୍ତ୍ତମାନ କୃଷିକୁ ପ୍ରଧାନ ଅବଲମ୍ବନ କରିଅଛନ୍ତି ।



# ସପ୍ତମ ଅଧ୍ୟାୟ

## ଇଂରେଜ ଶାସନ

ଶାସନ ବ୍ୟବସ୍ଥା—ଇଂରେଜମାନେ ଓଡ଼ିଶା ଅଧିକାର କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ଶାସନ ବ୍ୟବସ୍ଥା କରିବା ନିମନ୍ତେ ଦୁଇଜଣ କମିଶନର ନିଯୁକ୍ତ ହେଲେ । ଦୁଇବର୍ଷମଧ୍ୟରେ ଶାସନର ଏକ ପ୍ରକାର ଶୃଙ୍ଖଳା ହେଲା । ମରହଟ୍ଟା ପ୍ରଚଳିତ ଶାସନ ବିଧାନ କେତେକ ପ୍ରଥମାବସ୍ଥାରେ ରକ୍ଷା କରାଯାଇଥିଲା । ଓଡ଼ିଶା ମହାନଦୀର ଉତ୍ତର ଓ ଦକ୍ଷିଣରେ ଦୁଇ ଜିଲାରେ ବିଭକ୍ତ ହେଲା ; ଏବଂ ଜଣେ ଜଣେ କଲେକ୍ଟର ଜଜ ଓ ମାଜିଷ୍ଟ୍ରେଟ କ୍ଷମତା ପାଇ ଦୁଇ ଜିଲାରେ ରହିଲେ । ବଙ୍ଗୀୟ ଫୌଜଦାରୀ ଓ ପୁଲିସ ସଂକ୍ରାନ୍ତ ସକଳ ଆଇନ ଓଡ଼ିଶାରେ ଜାରି ହେଲା । ୧୮୦୫ ଖ୍ରୀଷ୍ଟାବ୍ଦରେ ବୋର୍ଡ ଅଫ କମିଶନର ପଦ ଓଡ଼ିଶାରୁ ଉଠିଗଲା, ଏବଂ କଲିକତାର ବୋର୍ଡ ଅଫ କମିଶନର ଅଧୀନରେ ଓଡ଼ିଶା ରହିଲା । ଦୁଇ ଜିଲା ପରବର୍ତ୍ତିରେ ଓଡ଼ିଶା ଏକ ଜିଲାରେ ପରିଣତ ହେଲା, ଏବଂ କେବଳ ଜଣେ କଲେକ୍ଟର ଜଜ ଓ ମାଜିଷ୍ଟ୍ରେଟ କ୍ଷମତା ପାଇ ରହିଲେ । ସେ ମଧ୍ୟ ଓଡ଼ିଶା ଗଡ଼ଜାତମାନଙ୍କର ତତ୍ତ୍ୱାବଧାରକ ନିଯୁକ୍ତ ହେଲେ । ପୁରୀ ଶାସନର କେନ୍ଦ୍ର ରହିଲା । ସେହି ବର୍ଷ ବଙ୍ଗୀୟ ସକଳ ଦେୱାନୀ ଆଇନ ଓଡ଼ିଶାରେ ଚଳିଲା । ବାଲେଶ୍ୱର, ଯାଜପୁର ଓ ଖୋରଧାରେ ରାଜସ୍ୱ ଆଦାୟ ନିମନ୍ତେ ଜଣେ ଜଣେ ତହସିଲଦାର ରହିଲେ ; ଏବଂ ଅନ୍ୟ ଜଣେ ତହସିଲଦାରଙ୍କ ହାତରେ ସବୁ ଖାସ ମାହାଲର ରାଜସ୍ୱ ଭାର ରହିଲା । ଶାନ୍ତିରକ୍ଷା ନିମନ୍ତେ ଦେଶର ନାନା ସ୍ଥାନରେ ଥାନା ବସି ପ୍ରତି ଥାନାରେ ଜଣେ ଜଣେ ଦାରୋଗା, ମୋହରିର, ଜମାଦାର ଏବଂ ହାରାହାରି ୧୦ ଜଣ ଲେଖାଏଁ

ବରକନ୍ଦାଜ ନିଯୁକ୍ତ ହେଲେ । ପୂର୍ବପର ମଧ୍ୟ ଚୌକିଦାରୀ ପ୍ରଥା ରହିଲା । ପୂର୍ବେ ଜମିଦାରମାନଙ୍କ ହସ୍ତରେ ଫୌଜଦାରୀ ଓ ପୁଲିସ କ୍ଷମତା ଯାହା ଥିଲା ତାହା ରହିତ ହେଲା । ପୁରୀ, କଟକ, ବାଲେଶ୍ୱରରେ ଥାନା ବା ସଦର-ପୁଲିସ ନିଯୁକ୍ତ ହେଲେ ।

କେତେକାଳ ଶାସନ ଏହିପରି ଚାଲିବାପରେ ୧୮୧୭ ଖ୍ରୀଷ୍ଟାବ୍ଦରେ ପୁରୀ ପରିବର୍ତ୍ତେ କଟକ ଶାସନ କେନ୍ଦ୍ର ହେଲା, ଏବଂ କଲେକ୍ଟର କଟକରେ ରହିଲେ । ୨ ବର୍ଷ ପରେ ପାଇକ ବିଦ୍ରୋହ ଫଳରେ ଓଡ଼ିଶାରେ ଦାୟିତ୍ୱ ଜ୍ଞାନପୂର୍ଣ୍ଣ ଶାସକ ସ୍ୱରୂପ ଜଣେ କମିଶନର ନିଯୁକ୍ତ ହେଲେ, ଏବଂ କଟକ ତାହାଙ୍କ ରାଜଧାନୀ ହେଲା । କଲେକ୍ଟର ପରିବର୍ତ୍ତେ କମିଶନର ଗଡ଼ଜାତ ମାନଙ୍କର ସୁପରିଣ୍ଟେଣ୍ଡେଣ୍ଟ ବା ତତ୍ତ୍ୱାବଧାରକ ହେଲେ । ଜଣେ ସ୍ୱତନ୍ତ୍ର ଜଜ ନିଯୁକ୍ତହେଲେ ।

ଓଡ଼ିଶା ଏକ ଜିଲା ହୋଇ ବହୁକାଳ ଶାସନ ଚାଲିବାପରେ ୧୮୨୯ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ପୁଣି ପୁରୀ, କଟକ ଓ ବାଲେଶ୍ୱର ତିନି ଜିଲାରେ ବିଭକ୍ତ ହୋଇ, ଜଣେ ଜଣେ କଲେକ୍ଟରଙ୍କ ଅଧୀନରେ ରହିଲା, ଏବଂ କଲେକ୍ଟରମାନେ ମାଜିଷ୍ଟ୍ରେଟ କ୍ଷମତା ପାଇଲେ । କଲେକ୍ଟରମାନେ କମିଶନରଙ୍କ ଅଧୀନରେ ଏବଂ କମିଶନର ବଙ୍ଗର ଲେଫ୍ଟେନେଣ୍ଟ ଗଭର୍ଣ୍ଣରଙ୍କ ଅଧୀନରେ ଓଡ଼ିଶା ଶାସନ ଚଳାଇଲେ ।

ଜିଲାମାନଙ୍କର ସଂଗଠନ—ଓଡ଼ିଶା ତିନି ଜିଲାରେ ବିଭକ୍ତ ହେଲେ ମଧ୍ୟ ଜିଲାମାନଙ୍କର ସୀମା ସବୁବେଳେ ସ୍ଥିର ନ ଥିଲା । ଯାଜପୁର ପ୍ରଥମେ ବାଲେଶ୍ୱର ଜିଲାରେ ଥିଲା; ପରେ ପୁଣି ଯାଜପୁର କଟକ ଜିଲାକୁ ଆସି ସଦର, କେନ୍ଦ୍ରାପଡ଼ା ଓ ଯାଜପୁର ତିନ ସବ୍‌ଡିଭିଜନରେ କଟକ ଜିଲା ବିଭକ୍ତ ହେଲା । ଅନ୍ୟାନ୍ୟ ଗଡ଼ଜାତ ରାଜ୍ୟମାନଙ୍କ ପରି ବାଙ୍କି ଗୋଟିଏ କରଦ ଗଡ଼ଜାତ ରାଜ୍ୟଥିଲା । ମାତ୍ର ୧୮୪୦ ଖ୍ରୀଷ୍ଟାବ୍ଦରେ ବାଙ୍କିର ଅତ୍ୟାଚାରୀ ରାଜା ଜଣେ ବ୍ରାହ୍ମଣ ପ୍ରଜାର ସମସ୍ତ ପରିବାର ହତ୍ୟା କଲେ ।

କମିଶନର ମିଲସ୍ ସାହେବ ରାଜାଙ୍କୁ ବନ୍ଦୀ ଓ ବାଙ୍କି ଖାସ କରି କଟକଜିଲ୍ଲା ମଧ୍ୟରେ ମିଶାଇଲେ । ବାଙ୍କି ଶାସନ ନିମନ୍ତେ ଜଣେ ତହସିଲଦାର ନିଯୁକ୍ତ ହୋଇଅଛନ୍ତି ।

ବସ୍ତାଠାରୁ ବାଲେଶ୍ୱର ଜିଲାର ଉତ୍ତରାଞ୍ଚଳ ମେଦିନୀପୁର ଜିଲ୍ଲା ମଧ୍ୟରେ ରହି ବାଲେଶ୍ୱରରୁ ପୃଥକ୍ ଥିଲା । ଜଳେଶ୍ୱର ପ୍ରଭୃତି କେତେ-ବେଳେ ମେଦିନୀପୁର ଜିଲ୍ଲାମଧ୍ୟରେ , ଏବଂ କେତେବେଳେ ପୁଣି ବାଲେଶ୍ୱର ମଧ୍ୟରେ ରହୁଥିଲା । ଏହିପରି ପରିବର୍ତ୍ତନ ତିନିଥର ହେଲାପରେ ୧୮୭୦ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱର ଜିଲ୍ଲା ବର୍ତ୍ତମାନ ଆକାର ଧାରଣ କଲା ।

ବୋଦ ଅନ୍ତର୍ଗତ କନ୍ଧମାଳରେ କନ୍ଧମାନେ ହଳଦୀ ବିଲରେ ମେରିଆ ନାମରେ ନରବଳୀ ଦେଉଥିଲେ । ଏହି ନୃଶଂସପ୍ରଥା ରହିତ କରିବା ଚେଷ୍ଟାରେ କମିସନର ମିଲସ୍ ସାହେବ ବୋଦ ରାଜଦରବାରରେ ଜଣେ ଇଂରେଜ ଏଜେଣ୍ଟ ରଖିବାର ସ୍ଥିର କଲେ । ବୋଦରାଜା କନ୍ଧମାଳକୁ ଶାସନ କରି ନପାରି କନ୍ଧମାଳ ଇଂରେଜ ଶାସନକୁ ଛାଡି ଦେଲେ । ମିଲସ୍ଙ୍କ ପରବର୍ତ୍ତୀ କମିଶନର ଗୋଲଡ୍ ସବର୍ଣ୍ଣଙ୍କ ଶାସନକାଳରେ ଅନୁଗୁଳ ରାଜା ବିଦ୍ରୋହାଚରଣ କରିବାରୁ ଅନୁଗୁଳ ୧୮୪୭ ଖ୍ରୀଷ୍ଟାବ୍ଦରେ ଖାସ ହୋଇ ବାଙ୍କି ପରି ଜଣେ ତହସିଲଦାରଙ୍କ ଅଧୀନରେ ରହିଲା । ଅନୁଗୁଳ ଓ କନ୍ଧମାଳ ମିଶି ଏକ ଜିଲ୍ଲା ଗଠିତ ହେଲା ଏବଂ ଜଣେ ଡେପୁଟି କମିଶନର ଜିଲ୍ଲାର ଶାସନକର୍ତ୍ତା ହେଲେ ।

ସମ୍ବଲପୁର ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ସହିତ ଇଂରେଜ ଅଧିକାରରେ ଆସିଥିଲେ ସୁଦ୍ଧା ଦୁଇବର୍ଷପରେ ଇଂରେଜମାନେ ପାଟଣା ରାଜ୍ୟ ସହିତ ସମ୍ବଲପୁର ନାଗପୁରର ଭୋଁସଲଙ୍କୁ ଫେରାଇଦେଲେ । ୧୮୧୭ ଖ୍ରୀଷ୍ଟାବ୍ଦରେ ଶେଷ ମରହଟ୍ଟା ଯୁଦ୍ଧରେ ଭୋଁସଲ ସମ୍ପୂର୍ଣ୍ଣ ପରାସ୍ତ ହେବାରୁ ଇଂରେଜମାନେ ସମ୍ବଲପୁର ଅଧିକାର କଲେ । ୧୮୨୬ ଖ୍ରୀଷ୍ଟାବ୍ଦରେ ମରହଟ୍ଟାମାନଙ୍କ ସଙ୍ଗେ ଯେଉଁ ସନ୍ଧି ହେଲା, ତହିଁରେ ଇଂରେଜମାନଙ୍କର ସମ୍ବଲପୁର ଅଧିକାର

ସ୍ୱୀକୃତ ହେଲା । ମାତ୍ର ସମ୍ବଲପୁର ଗୋଟିଏ ଗଡଜାତ ରାଜ୍ୟ ଥିଲା ଏବଂ ଚୌହାନ ବଂଶୀୟ ରାଜା ସେଠାରେ ରାଜତ୍ୱ କରୁଥିଲେ । କେବଳ ଜଣେ ଇଂରେଜ ଏଜେଣ୍ଟ ସମ୍ବଲପୁର ରାଜଦରବାରରେ ରହୁଥିଲେ । ୧୮୪୯ ଖ୍ରୀଷ୍ଟାବ୍ଦରେ ଶେଷ ରାଜା ନାରାୟଣ ସିଂହଙ୍କର ମୃତ୍ୟୁ ହେବାରୁ ଉତ୍ତରାଧିକାରୀ ଅଭାବରେ ଗଭର୍ଣ୍ଣର ଜେନେରଲ ଲର୍ଡ ଡେଲହାଉସିଙ୍କ 'ରାଜ୍ୟ-ଗ୍ରାସ' ନୀତି ଅନୁସାରେ ସମ୍ବଲପୁର ଇଂରେଜଙ୍କ ଖାସ ଦଖଲରେ ଆସିଲା । ସେତେବେଳେ ସମ୍ବଲପୁର ଓ ସନ୍ନିହିତ ଗଡଜାତମାନ ଛୋଟନାଗପୁରର ଅନ୍ତର୍ଗତ ଥିଲା । ୧୮୬୦ ଖ୍ରୀଷ୍ଟାବ୍ଦରେ ଏହା ପୁଣି ଓଡ଼ିଶାର ଅନ୍ତର୍ଭୁକ୍ତ ହୋଇ ୧୮୬୨ ଖ୍ରୀଷ୍ଟାବ୍ଦରେ ମଧ୍ୟପ୍ରଦେଶକୁ ପରିବର୍ତ୍ତିତ ହେଲା । ପୁଣି ୧୯୦୫ ଖ୍ରୀଷ୍ଟାବ୍ଦରେ ସମ୍ବଲପୁର ଓ ତାହାର ଗଡଜାତମାନ ଓଡ଼ିଶାକୁ ଆସିଲା । ଜଣେ ଡେପୁଟି କମିଶନର ପଦ୍ୟରୁ ସମ୍ବଲପୁରର ଶାସନକର୍ତ୍ତା ହୋଇଅଛନ୍ତି ।

ବନ୍ଦୋବସ୍ତ—ବୋର୍ଡ ଅଫ୍ କମିଶନରଙ୍କ ଆଦେଶରେ ୧୮୦୪ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ବନ୍ଦୋବସ୍ତ ଆରମ୍ଭ ହୋଇ ପରବର୍ଷ ଶେଷ ହେଲା । ପ୍ରଥମ ବନ୍ଦୋବସ୍ତରେ ଇଂରେଜମାନେ ମରହଟ୍ଟା ପଦ୍ଧତି ଅନୁସାରେ ଚାଲିତ ହୋଇଥିଲେ । ଏହି ବନ୍ଦୋବସ୍ତ ବର୍ଷକପାଇଁ ହୋଇଥିଲା । ତାହାପରେ ପୁଣି ୧୮୦୫ ଖ୍ରୀଷ୍ଟାବ୍ଦରେ ୩ ବର୍ଷପାଇଁ ନୂତନ ବନ୍ଦୋବସ୍ତ ହେଲା । ଦ୍ୱିତୀୟ ବନ୍ଦୋବସ୍ତର କାଳ ୧୮୦୮ ରେ ପୂରିଯିବାରୁ, ତୃତୀୟ ବନ୍ଦୋବସ୍ତ ଏକବର୍ଷ ପାଇଁ ଏବଂ ଚତୁର୍ଥ ୩ ବର୍ଷ ସକାଶେ ହେଲା । ପରେ ପୁଣି ୫ମ ବନ୍ଦୋବସ୍ତ ଏକ ବର୍ଷ ପାଇଁ ୧୮୧୨-୧୩ ରେ, ୧୮୧୩—୧୪ ରେ ୬ଷ୍ଠ ବନ୍ଦୋବସ୍ତ ୨ବର୍ଷ ପାଇଁ, ୧୮୧୫—୧୬ରେ ୭ମ ୧ବର୍ଷ ପାଇଁ, ୧୮୧୬-୧୭ ରେ ଅଷ୍ଟମ ୩ବର୍ଷପାଇଁ, ୧୮୧୯-୨୦ରେ ନବମ ୩ବର୍ଷ ଏବଂ ୧୮୨୨—୨୩ରେ ଦଶମ ବନ୍ଦୋବସ୍ତ ୫ବର୍ଷ ପାଇଁ; ଏହିରୂପେ ଏକଶାଲା, ଦୋଶାଲା, ତିଶାଲା, ଇତ୍ୟାଦି ବନ୍ଦୋବସ୍ତ ୧୮୨୮

ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସନ ସନ ଅବନ୍ତ ବଢ଼ାଗଲା । ପ୍ରଥମେ ପ୍ରଥମେ ଦେଶ-
ବାସୀ ଏହି ସନ ସନ ବନ୍ଦୋବସ୍ତ ପସନ୍ଦ କରୁଥିଲେ , କାରଣ ଗଭର୍ଣ୍ଣର-
ଜେନେରଲ ଲର୍ଡ ଓ୍ୱେଲେସଲି ୧୮୦୪ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସରେ
ଘୋଷଣା କରିଥିଲେ ଯେ ଏହିରୂପେ ସନ ସନ ବନ୍ଦୋବସ୍ତ କରାଯାଇ-
ଶେଷରେ ୧୮୧୫ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ବଙ୍ଗଦେଶ ପରି ଚିରସ୍ଥାୟୀ
ବନ୍ଦୋବସ୍ତ କରାଯିବ । ମାତ୍ର ୧୮୧୫ ଖ୍ରୀଷ୍ଟାବ୍ଦ ଅତୀତ ହେଲା ଅଥଚ
ସ୍ଥାନୀୟ ଅଫିସର ମାନଙ୍କ ମନ୍ତବ୍ୟ ଅନୁସାରେ ଓଡ଼ିଶା ଚିରସ୍ଥାୟୀ
ବନ୍ଦୋବସ୍ତର ଉପଯୁକ୍ତ ହୋଇ ନ ପାରି , ଏକଶାଲା , ତିନିଶାଲା
ଆଦି ସନ ସନ ବନ୍ଦୋବସ୍ତ ଭୋଗିଲା । ପ୍ରଥମ ବନ୍ଦୋବସ୍ତରେ ଓଡ଼ିଶାର
ଜମା ସ୍ଥିର ହୋଇଥିଲା ୪ ଲକ୍ଷ ୪୩ହଜାର ଟଙ୍କା , ମାତ୍ର ପ୍ରତି
ବନ୍ଦୋବସ୍ତରେ ବଢ଼ି ବଢ଼ି ୧୮୧୮ ଖ୍ରୀଷ୍ଟାବ୍ଦରେ ଜମା ହେଲା ୧୨,୪୨,୯୨୫
ଟଙ୍କା । ୧୮୧୮ ଖ୍ରୀଷ୍ଟାବ୍ଦର ବନ୍ଦୋବସ୍ତଠାରୁ ଓଡ଼ିଶାର ପ୍ରଥମ ଜରୀପ
ବା ମାପ ଆରମ୍ଭ କରାଗଲା ।

ଏହି ସବୁ ସନ ସନ ବନ୍ଦୋବସ୍ତଦ୍ୱାରା ପ୍ରଜାମାନେ ବିଶେଷ
ପ୍ରପୀଡ଼ିତ ହେଉଥିଲେ । ପୁଣି ବଙ୍ଗ ଆଇନ ଅନୁସାରେ ଓଡ଼ିଶା ବନ୍ଦୋବସ୍ତ
ହେଉଥିବାରୁ ପ୍ରଜାମାନଙ୍କୁ ବିଶେଷ ବାଧୁଥିଲା । ବଙ୍ଗଦେଶ
ଅର୍ଦ୍ଧ ଶତାବ୍ଦି ପୂର୍ବରୁ ଇଂରେଜ ଶାସନରେ ଅଭ୍ୟସ୍ତ ହୋଇ ଚିରସ୍ଥାୟୀ
ବନ୍ଦୋବସ୍ତ ପାଇଥିଲା । ଓଡ଼ିଶା କେବଳ ପ୍ରତି ଶାଳରେ ବନ୍ଦୋବସ୍ତ
ଭୋଗି, ଚିରସ୍ଥାୟୀ ବନ୍ଦୋବସ୍ତ ଆଇନରେ ଶାସିତ ହେଲା । ଓଡ଼ିଶାର
ଅବସ୍ଥା, ଜମିର ସ୍ୱତ୍ତ୍ୱାସତ୍ତ୍ୱ ଓ ଉତ୍ପାଦିକାଶକ୍ତି ବିଷୟରେ ଇଂରେଜ
ଶାସକମାନେ ସେତେ ଅଭିଜ୍ଞ ନ ଥିଲେ । ପୂର୍ବବର୍ତ୍ତୀ ରାଜତ୍ୱମାନଙ୍କରେ
ରାଜକର୍ମଚାରୀମାନେ ଜମିର ଅବସ୍ଥା ଅନୁସାରେ ଜମା ଧାର୍ଯ୍ୟ କରୁଥିଲେ ।
ସ୍ୱତନ୍ତ୍ର କୃଷିହାନ, ଘୋର, ମରୁଡ଼ିରେ ପ୍ରଜାମାନେ କର ଛାଡ଼ ପାଉଥିଲେ ।
ପୂର୍ବ ରାଜତ୍ୱମାନଙ୍କରେ ବନ୍ଦୋବସ୍ତ ପ୍ରଜାମାନଙ୍କ ସଙ୍ଗେ ହେଉ ଥିବାରୁ
ରାଜା ଓ ରାଜକର୍ମଚାରୀମାନେ ପ୍ରଜାମାନଙ୍କର ସାକ୍ଷାତ୍ ସମ୍ପର୍କରେ ଆସି

ସେମାନଙ୍କର ଭାବାଭାବ ସହଜରେ ବୁଝି ପାରୁଥିଲେ । ମାତ୍ର ଇଂରେଜ ଶାସନରେ ବନ୍ଦୋବସ୍ତ ଜମିଦାରମାନଙ୍କ ସଙ୍ଗେ ହେଲା । ଜମିଦାରମାନେ ରାଜସ୍ୱ ଆଦାୟ ନିମନ୍ତେ ଦାୟୀ ରହିଲେ । ସୁତରାଂ ରାଜକର୍ମଚାରୀମାନେ ପ୍ରଜାଙ୍କର ସୁଖଦୁଃଖ ବୁଝିବାର ଅବକାଶ ପାଇଲେ ନାହିଁ, କି ଚେଷ୍ଟା ମଧ୍ୟ କଲେ ନାହିଁ । ପୁଣି ଜମିଦାରମାନଙ୍କ ସଙ୍ଗେ ବନ୍ଦୋବସ୍ତ ହୋଇ ସନସନ ଜମାବୃଦ୍ଧି ହେବାରୁ ଆଦାୟର ସମସ୍ତ କଠୋରତା ସତ୍ତ୍ୱେ ବହୁତ ରାଜସ୍ୱ ଅନାଦାୟ ରହିଲା । ସୁତରାଂ ଅନାଦାୟ ରାଜସ୍ୱ ସକାଶେ ବଙ୍ଗ ଆଇନ ଅନୁସାରେ ଓଡ଼ିଶାର ଜମିଦାରମାନ ନିଲାମରେ ଉଠିଲା । ୧୮୦୬ ଖ୍ରୀଷ୍ଟାବ୍ଦରେ ସେହି ନିଲାମ ପ୍ରଥା ପ୍ରଥମେ ସୃଷ୍ଟି ହେଲା । ନିଲାମ ଓଡ଼ିଶାରେ ନ ହୋଇ କଲିକତାରେ ହେଉଥିଲା । କଲିକତାର ବଙ୍ଗାଳୀ-ମାନେ ଏହି ସୁବିଧା ପାଇ ଓଡ଼ିଶାର ବଡ଼ ବଡ଼ ଜମିଦାରୀମାନ ଅଳ୍ପ ମୂଲ୍ୟରେ ହସ୍ତଗତ କରି ବସିଲେ । ଏପରି ହେଲା ଯେ ୧,୧୬୯୫ ଟଙ୍କା ସଦର ଜମାର ୪୧ ତାଲୁକବିଶିଷ୍ଟ ଏକ ଜମିଦାରୀ ଅତି ସାମାନ୍ୟ ମୂଲ୍ୟରେ ୪୬୨୦୫ ଟଙ୍କାରେ ନିଲାମ ହୋଇଥିଲା । ଏହା ଫଳରେ ଓଡ଼ିଶାର କେତେ ପ୍ରାଚୀନ ସମ୍ଭ୍ରାନ୍ତ ପରିବାର ଧ୍ୱଂସ ହୋଇଗଲେ, ଏବଂ ସେମାନଙ୍କ ସ୍ଥଳରେ କେତେ ବିଦେଶୀ ବଙ୍ଗାଳୀ ଜମିଦାର ହୋଇ ବସିଲେ । ବିଦେଶରେ ରହି ଥିବାରୁ ସେମାନେ ସ୍ୱଳ୍ପ ବେତନଭୋଗୀ କର୍ମଚାରୀ-ମାନଙ୍କଦ୍ୱାରା ରାଜସ୍ୱ ଅଦାୟ କରାଇଲେ । ପ୍ରଜାମାନଙ୍କର ଦୁଃଖ ଯନ୍ତ୍ରଣା ପ୍ରତି ଭ୍ରୂକ୍ଷେପ ନ କରି ଦୁରନ୍ତ କର୍ମଚାରୀମାନେ ବଦ୍ଧା ରାଜସ୍ୱ ଉପରେ ଯଥେଚ୍ଛା ଜମା ଅଦାୟ କଲେ, ଏବଂ ବିଦେଶୀ ଜମିଦାରମାନେ ରାଜସ୍ୱ ପାଇ ନିଶ୍ଚିନ୍ତ ରହୁଥିଲେ । ଏଥି ଉପରେ ପୁଣି କଉଡ଼ି ପରିବର୍ତ୍ତେ ଟଙ୍କାରେ ରାଜସ୍ୱ ଦେବାକୁ ସରକାରଙ୍କର ଆଦେଶ ହେବାରୁ ରାଜସ୍ୱ ଏକ ଟଙ୍କା ସ୍ଥଳେ ପ୍ରଜାମାନଙ୍କୁ ଦେଢ଼ଟଙ୍କା ଦେବାକୁ ହେଉଥିଲା ।

ପ୍ରଜାଙ୍କର ଏହି ଦୁରବସ୍ଥା ୧୮୧୭ ଖ୍ରୀଷ୍ଟାବ୍ଦର ପାଇକ-ବିଦ୍ରୋହରେ ପରିଣତ ହେଲା । ସେହି ବିଦ୍ରୋହଦ୍ୱାରା ସରକାରଙ୍କର ଚୈତନ୍ୟ ଅସିଲା,

ଏବଂ ବନ୍ଦୋବସ୍ତ-ତଦନ୍ତ-କମିଶନଙ୍କ ମନ୍ତବ୍ୟ ଅନୁସାରେ ପୂର୍ବ ଉଦାସୀନତା ଛାଡ଼ି ସକଳ ଶ୍ରେଣୀ ସ୍ୱତ୍ୱାଧିକାରୀଙ୍କ ସ୍ୱତ୍ୱ ନିର୍ଣ୍ଣୟପୂର୍ବକ ନୂତନ ଜମାବନ୍ଦି ବନ୍ଦୋବସ୍ତ କରିବା ନିମନ୍ତେ ସରକାର ଘୋଷଣା କଲେ । ତଦନୁସାରେ ୧୮୩୭ ସାଲରୁ ନୂତନ ବନ୍ଦୋବସ୍ତ ୩୦ ବର୍ଷ ନିମନ୍ତେ ଧାର୍ଯ୍ୟ ହେବାର ପ୍ରସ୍ତାବ କରାଗଲା । ସେହି ବନ୍ଦୋବସ୍ତ କାର୍ଯ୍ୟ ୧୮୩୦ରେ ଆରମ୍ଭ କରାଯାଇ ୧୮୪୫ ଖ୍ରୀଷ୍ଟାବ୍ଦରେ ଶେଷ କରାଗଲା । ତହିଁରେ ସକଳ ଶ୍ରେଣୀର ସ୍ୱତ୍ୱ ନିରୂପିତ ହେଲା । ଯେଉଁମାନେ ପୂର୍ବବର୍ତ୍ତୀ ରାଜା ବା ସୁବାଦାରଙ୍କଠାରୁ ବ୍ରହ୍ମୋତ୍ତର, ଦେବୋତ୍ତର, ପୀରୋତ୍ତର, ସେବାହେତା ପ୍ରଭୃତି ପାଇ ଭୋଗ ଦଖଲ କରି ଆସୁଥିଲେ, ସେମାନେ ନିଜ ନିଜ ସନନ୍ଦ ଅନୁସାରେ ଆପଣାର ସ୍ୱତ୍ୱ ନିଷ୍କର, ସ୍ୱଳ୍ପ-ବାହାଲି ବା ସ୍ଥାୟୀ ଜମାରେ ସାବ୍ୟସ୍ତ କରିଦେଲେ । ମାତ୍ର ନିଷ୍କର ବା ସ୍ୱଳ୍ପବାହାଲି ଜମାରେ ଯେଉଁ ବୃତ୍ତି-ଭୋଗିମାନେ ଉପଯୁକ୍ତ ସନନ୍ଦ ଦେଖାଇ ନ ପାରିଲେ, ସେହିମାନଙ୍କ ସ୍ୱତ୍ୱ ବାଜ୍ୟାପ୍ତ ବା ଖାସ ହୋଇ ପୂରା ବା ଅଧା ଜମାବନ୍ଦିରେ ଧାର୍ଯ୍ୟ ହେଲା ।

୩୦ ବର୍ଷ ପରେ ୧୮୬୭ ଖ୍ରୀଷ୍ଟାବ୍ଦରେ ସେହି ବନ୍ଦୋବସ୍ତର କାଳ ପୂରିଗଲା । ମାତ୍ର ସେତେବେଳକୁ 'ନଅଙ୍କ' ଦୁର୍ଭିକ୍ଷରେ ଦେଶ ଛାରଖାର; ସୁତରାଂ ନୂତନ ବନ୍ଦୋବସ୍ତ କରା ନ ଯାଇ ପୂର୍ବ ବନ୍ଦୋବସ୍ତ କାଳ ଆହୁରି ୩୦ ବର୍ଷ ନିମନ୍ତେ ୧୮୯୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବଢ଼ାଇ ଦିଆଗଲା । ୧୮୯୭ ଖ୍ରୀଷ୍ଟାବ୍ଦ ବନ୍ଦୋବସ୍ତ (୧୩୦୪ ସାଲ ବନ୍ଦୋବସ୍ତ) ରେ ନୂତନ ଜମାବନ୍ଦି ଓ ଜମାବୃଦ୍ଧି କରାଗଲା । ପୁଣି ତାହାର ଭ୍ରମ ସବୁ ସଂଶୋଧନ ନିମନ୍ତେ ୧୯୧୦ ଖ୍ରୀଷ୍ଟାବ୍ଦରେ ଏକ ରିଭିଜନ ବା ସଂଶୋଧନ ବନ୍ଦୋବସ୍ତ ହେଲା । ବର୍ତ୍ତମାନ ସେହି ବନ୍ଦୋବସ୍ତର କାଳ ପୂରି ଆସିବାରୁ ୧୯୨୫ ଖ୍ରୀଷ୍ଟାବ୍ଦରୁ ଓଡ଼ିଶାରେ ନୂତନ ବନ୍ଦୋବସ୍ତ ଓ ଜମାବୃଦ୍ଧି ଚାଲିଛି ।

**ଜମିଦାର ସୃଷ୍ଟି**—ପୂର୍ବରୁ କୁହାଗଲା ସରକାରଙ୍କ ବନ୍ଦୋବସ୍ତ ପ୍ରଜାମାନଙ୍କ ସଙ୍ଗେ ନ ହୋଇ ଜମିଦାରମାନଙ୍କ ସଙ୍ଗେ ହୋଇଥିଲା । ଜମିଦାର

ସୃଷ୍ଟି ଇଂରେଜ ଶାସନର ବିଶେଷ ଘଟଣା । ମାତ୍ର ଏହି ଜମିଦାରମାନେ କିଏ, ଏବଂ କିପରି ସ୍ୱତ୍ୱବାନ ହେଲେ ତାହା ବୁଝିବା ନିମନ୍ତେ ପ୍ରାଚୀନ ଗଜପତି ଓ ମୋଗଲ ରାଜତ୍ୱରେ ରାଜସ୍ୱସଂକ୍ରାନ୍ତ ଶାସନ ବିଧାନ ଦେଖିବାକୁ ହେବ ।

ଗଜପତିମାନଙ୍କ ଶାସନରେ ଦେଶରେ ଯେଉଁ ଶାସନ ବିଧାନ ଥିଲା, ରାଜା ତୋଡରମଲ୍ଲ ତାହା ସମ୍ପୂର୍ଣ୍ଣ ରକ୍ଷା କରି ବନ୍ଦୋବସ୍ତ କରିଥିଲେ । ଖଣ୍ଡ ଓ ବିଶିର ଅଧ୍ୟକ୍ଷମାନେ ନିଜ ନିଜ କର୍ମରେ ରହିଲେ, ମାତ୍ର ସେମାନଙ୍କ ନାମ 'ଖଣ୍ଡପତି', ଓ 'ଭୋଇମୂଳ' ପରିବର୍ତ୍ତେ 'ଚୌଧୁରୀ' ଓ 'କାନୁନଗୋ ହିଇଲମୂର୍ତ୍ତି' ହୋଇଥିଲା । ଗ୍ରାମପତି ବା ପ୍ରଧାନଙ୍କ ନାମ ମକଦମ ହୋଇଥିଲା । ମାତ୍ର ଯେଉଁଠାରେ ମକଦମ ବା ପ୍ରଧାନଙ୍କର କୌଣସି ଉତ୍ତରାଧିକାରୀ ନ ଥିଲେ କିମ୍ବା ଯେଉଁ ସ୍ଥାନରେ ପଧାନ କାର୍ଯ୍ୟଚ୍ୟୁତ ହୋଇଥିଲେ, ସେଠାରେ ରାଜସ୍ୱ ଆଦାୟ ନିମନ୍ତେ ଜଣେ ଜଣେ କଜ୍ଜ ବା ସରବରାକାର ବା ମୁସ୍ତାକର ତାଲୁକଦାରଙ୍କଦ୍ୱାରା ନିଯୁକ୍ତ ହେଉଥିଲେ । ଏମାନେ ସମସ୍ତେ ଜାଗିର ବା ନାନକର ପାଇ ନିଜ ନିଜ କାର୍ଯ୍ୟ କରୁଥିଲେ । ଏମାନେ ନିଜ ଜୀବନ ସଂକାଶେ କର୍ମଚ୍ୟୁତ ଥିଲେ ସୁଦ୍ଧା ଅକବରଙ୍କ ପରେ ଚିରନ୍ତନ ଅଶାନ୍ତ ଅବସ୍ଥାରେ ଏମାନେ କ୍ରମେ ପୁରୁଷାନୁକ୍ରମେ ନିଜ ନିଜ ରାଜକାର୍ଯ୍ୟ କରି ଜାଗିରର ଅଧିକାରୀ ହୋଇ ବସିଲେ ।

ମରହଟ୍ଟାମାନେ ମୋଗଲ ଶାସନ ପ୍ରାୟ ରକ୍ଷା କରିଥିଲେ; ମାତ୍ର ସେମାନେ ହିନ୍ଦୁ ଥିବାରୁ ପ୍ରାଚୀନ ହିନ୍ଦୁବିଧାନ ଅନୁସାରେ ରାଜା ଓ ପ୍ରଜା ମଧ୍ୟରେ ସାକ୍ଷାତ ସମ୍ପର୍କର ପକ୍ଷପାତୀ ଥିଲେ । ସୁତରାଂ ମୋଗଲ ଶାସନରେ ଯେତେ ମଧ୍ୟବର୍ତ୍ତୀ ଜମିଦାର ବା ତାଲୁକଦାର ହୋଇ ଉଠିଥିଲେ, ସେମାନଙ୍କ ଅଧିକାର ମରହଟ୍ଟା ଶାସନରେ ହ୍ରାସ ପାଇଲା । ମରହଟ୍ଟା ଅମିଲମାନେ ରାଜସ୍ୱ ଆଦାୟ ନିମନ୍ତେ ଗ୍ରାମ ମକଦମମାନଙ୍କ ସଙ୍ଗେ ସାକ୍ଷାତ ସମ୍ପର୍କ ରଖିବାରୁ ଅମିଲମାନଙ୍କର ଗୁମାସ୍ତା, କାନୁନଗୋ ପ୍ରଭୃତି କ୍ରମେ

ମୋଗଲ ଶାସନର ତାଲୁକଦାର କାର୍ଯ୍ୟ କରି ବସିଲେ । ମୋଗଲଶାସନରେ ଚୌଧୁରୀ, କାନୁନ୍‌ଗୋମାନେ ନିଜ ନିଜ ଇଲାକାରେ ଏକ ପ୍ରକାର ମୌରସୀ ସ୍ୱତ୍ୱ ଜନ୍ମାଇ ପାରିଥିଲେ । ମରହଟ୍ଟା ଶାସନରେ ଗ୍ରାମ ମକଦ୍ଦମମାନେ ଗ୍ରାମର ଜମିଦାରସ୍ୱରୂପ ହୋଇ ଉଠିଥିଲେ ।

ଇଂରେଜମାନେ ଓଡ଼ିଶାର ରାଜସ୍ୱ ବନ୍ଦୋବସ୍ତ କରିବା ନିମନ୍ତେ ମୋଗଲମାନଙ୍କ ପରି ମଧ୍ୟସ୍ୱତ୍ୱାଧିକାରୀ ଖୋଜିଲେ । ଉପରୋକ୍ତ ଚୌଧୁରୀ କାନୁନଗୋ, ସରବରାକାର, ମକଦ୍ଦମ ଏବଂ ଗୁମାସ୍ତାମାନେ ନିଜ ନିଜର ଅଧିକାର ଦାବୀ କଲେ । ସେମାନଙ୍କ ମଧ୍ୟରୁ ଯେଉଁମାନେ ପ୍ରକୃତରେ ନିଜ ନିଜ ଇଲାକାର ଦଖଲରେ ଥାଇ କାର୍ଯ୍ୟ କରୁଥିବାର ପ୍ରମାଣ ମିଳିଲା; ଇଂରେଜ ଶାସନକର୍ତ୍ତାମାନେ ସେହିମାନଙ୍କ ସ୍ୱତ୍ୱ ସ୍ଥାୟୀଭାବରେ ସାବ୍ୟସ୍ତ କରି ସେହି ସେହି ଇଲାକାର ରାଜସ୍ୱ ନିମନ୍ତେ ସେମାନଙ୍କ ସଙ୍ଗେ ବନ୍ଦୋବସ୍ତ କଲେ । ସେହିମାନେ ଇଂରେଜ ଶାସନରେ ପ୍ରକୃତ ଜମିଦାର ହେଲେ । ପୂର୍ବବର୍ତ୍ତୀ ରାଜାଙ୍କ ପରିବର୍ତ୍ତରେ ଇଂରେଜ ଶାସନରେ ଜମିଦାରମାନେ ଜମିର ପ୍ରକୃତ ସ୍ୱତ୍ୱାଧିକାରୀ ହେଲେ । ସରକାର ଜମିଦାରଙ୍କ ଉପରେ କେବଳ ରାଜସ୍ୱ ବଢ଼ାଇବାର ଅଧିକାର ରଖିଲେ; କାରଣ ଓଡ଼ିଶା ବନ୍ଦୋବସ୍ତ ବଙ୍ଗଦେଶ ପରି ଚିରସ୍ଥାୟୀ ହେଲା ନାହିଁ ।

ମୋଗଲବନ୍ଦୀରେ ଚିରସ୍ଥାୟୀ ବନ୍ଦୋବସ୍ତ—ମାତ୍ର ଉପରୋକ୍ତ ଜମିଦାରମାନଙ୍କର ଅସ୍ଥାୟୀ ବନ୍ଦୋବସ୍ତ ହେଲେ ମଧ୍ୟ, ମୋଗଲବନ୍ଦୀର କେତେକ କିଲ୍ଲାଦାର ଭୂୟାଁ ବା ରାଜାଙ୍କ ସଙ୍ଗେ ଚିରସ୍ଥାୟୀବନ୍ଦୋବସ୍ତ ହେଲା । ପୁରୀରେ ଖୋର୍ଦ୍ଧା ମରିଚପୁର ରାଜାମାନଙ୍କ ସଙ୍ଗେ ଚିରସ୍ଥାୟୀ ବନ୍ଦୋବସ୍ତ ହେଲା ଏବଂ ସେମାନଙ୍କ ପେସ୍‌କସ୍ ନିର୍ଦ୍ଦିଷ୍ଟ ରହିଲା । କଟକ ଜିଲ୍ଲାରେ କନିକା, କୁଜଙ୍ଗ, ଆଳି, ପଟିଆ ରାଜାମାନେ ତୋଡ଼ରମଲ୍ଲଙ୍କ ବନ୍ଦୋବସ୍ତରେ ଜମିଦାର ବୋଲି ସମ୍ମାନିତ ଥିଲେ । ସେମାନଙ୍କ ସଙ୍ଗେ ଇଂରେଜମାନଙ୍କର ମଧ୍ୟ ସ୍ଥାୟୀ ବନ୍ଦୋବସ୍ତ ହେଲା । ବିଷ୍ଣୁପୁର ଓ ହରିଶପୁରର କିଲ୍ଲାଦାରମାନେ

ରାଜବଂଶୀୟ ନ ଥିଲେ, କେବଳ ସାମରିକ ସାହାଯ୍ୟ ଯୋଗେ ସେମାନେ ପୂର୍ବବର୍ତ୍ତୀ ରାଜତ୍ୱରେ ଜମିଦାର ଥିଲେ । ସୁତରାଂ ଇଂରେଜମାନେ ସେମାନଙ୍କୁ ନୂତନ ସନନ୍ଦ ଦେଇ ସେମାନଙ୍କ ଜମା ବନ୍ଦୋବସ୍ତ ସ୍ଥାୟୀ କଲେ । ଦର୍ପଣ, ସୁକିନ୍ଦା ଓ ମଧୁପୁର ପ୍ରଭୃତି ରାଜାମାନଙ୍କୁ ଜମିଦାର ବୋଲି ସ୍ୱୀକାର କରାଯାଇ ସେମାନଙ୍କ ସଙ୍ଗେ ସ୍ଥାୟୀ ବନ୍ଦୋବସ୍ତ କରାଗଲା ; ଏବଂ ସେମାନଙ୍କଠାରୁ 'କବୁଲିୟତ' ନିଆଗଲା । ମାତ୍ର କନିକା, କୁଜଙ୍ଗ, ଅଳି, ପଟ୍ଟିଆ, ବିଷ୍ଣୁପୁର, ହରିଶପୁରର ରାଜା ଓ ଜମିଦାରମାନେ ଇଂରେଜ ସରକାରଙ୍କୁ କବୁଲିୟତ ନ ଦେଇ ଚୁକ୍ତିପତ୍ର ବା 'ଏଗ୍ରିମେଣ୍ଟ' ଲେଖିଦେଲେ । ଏହିରୂପେ ମୋଗଲବନ୍ଦୀ ମଧ୍ୟରେ ୨୪ ଟି ଜମିଦାରୀ ଚିରସ୍ଥାୟୀ ବନ୍ଦୋବସ୍ତ ପାଇ ରହିଲା ।

ଏ ସବୁ ବ୍ୟତୀତ, କଟକ ଜିଲାରେ କେତେଗୁଡ଼ିଏ 'କିଲାଜାତ' ଜମିଦାରୀ ମଧ୍ୟ ଅଛି ; ଯଥା—ଡ଼ମପଡ଼ା, କଲ୍ୟାଣପୁର, ଓଗି, ଚହୁଷଠିପାଡ଼ା, ଏବଂ କଣ୍ଡାଝର । ଭୋଉରମାନେ ଏହି ରାଜ୍ୟମାନ ରାଜାବର ଇଲାକା ମଧ୍ୟରେ ଧରି କେବଳ ସାମାନ୍ୟ ପେସ୍କସରେ ଛାଡ଼ି ଦେଇଥିଲେ, ମାତ୍ର ମରହଟ୍ଟା-ମାନେ କେବଳ ଡମପଡ଼ା ବ୍ୟତୀତ ଅନ୍ୟ ଗୁଡ଼ିକ ଖାସକରି ନେଇ ନିଜେ ନିଜେ ସେହି ରାଜ୍ୟମାନଙ୍କରୁ ରାଜସ୍ୱ ଆଦାୟ କରୁଥିଲେ ; ମାତ୍ର ସେହି ରାଜାମାନଙ୍କୁ ରାଜ୍ୟ ଅଧିକାରରୁ ବଞ୍ଚିତ କରି ନ ଥିଲେ । ଇଂରେଜ-ମାନେ ସେହି ରାଜାମାନଙ୍କ ସଙ୍ଗେ ଅସ୍ଥାୟୀ ବନ୍ଦୋବସ୍ତ କଲେ । ୧୮୬୯ ଖ୍ରୀଷ୍ଟାବ୍ଦରେ ଡ଼ମପଡ଼ା କେବଳ ଚିରସ୍ଥାୟୀ ବନ୍ଦୋବସ୍ତ ପାଇଲା, ମାତ୍ର ରାଜ୍ୟ ହସ୍ତାନ୍ତରିତ ହେବାବେଳେ ରାଜସ୍ୱ ବଢ଼ାଇବାର କ୍ଷମତା ସରକାର ରଖିଲେ । ଏହି ରାଜାମାନେ ପ୍ରାଚୀନ ଗଡ଼ଜାତ ରାଜାମାନଙ୍କର ବଂଶଧର ବୋଲି ସ୍ଥାୟୀ ପେସ୍କସ୍ ଯୋଗ୍ୟ ଥିବାର ବାରମ୍ବାର ଦାବୀ କରିବାରୁ ୧୮୯୭ ଖ୍ରୀଷ୍ଟାବ୍ଦ ବନ୍ଦୋବସ୍ତରେ ସେମାନଙ୍କ ସଙ୍ଗେ ଚିରସ୍ଥାୟୀ ବନ୍ଦୋବସ୍ତ କରାଗଲା । ମାତ୍ର ଡମପଡ଼ା ପରି ରାଜ୍ୟ ହସ୍ତାନ୍ତର ବେଳେ ରାଜସ୍ୱ ବୃଦ୍ଧିର କ୍ଷମତା ସରକାରଙ୍କ ହାତେ ରହିଲା ।

ବାଲେଶ୍ୱର ଜିଲ୍ଲାରେ ୧୨୩୨ ଜମିଦାରୀ ମଧ୍ୟରୁ ୧୨୦ ଟି ଚିରସ୍ଥାୟୀ ବନ୍ଦୋବସ୍ତ ପାଇଅଛି । ଏହି ଜମିଦାରୀମାନ ପ୍ରଥମେ ମେଦନୀପୁର ମଧ୍ୟରେ ଥିବାରୁ ବଙ୍ଗଦେଶର ଚିରସ୍ଥାୟୀ ବନ୍ଦୋବସ୍ତ ପାଇଥିଲା; ପରେ ୧୮୨୮ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱର ଓ ମେଦିନୀପୁରର ସୀମା ନିର୍ଦ୍ଧାରଣ ବେଳେ ଏଗୁଡିକ ବାଲେଶ୍ୱର ଜିଲ୍ଲା ମଧ୍ୟରେ ରହି ଚିରସ୍ଥାୟୀ ବନ୍ଦୋବସ୍ତ ଭୋଗ କରି ଆସୁଛି ।

ଗଡଜାତ—ଗଡ଼ଜାତ ରାଜାମାନେ ମୋଗଲ ଓ ମରହଟ୍ଟା ରାଜତ୍ୱରେ ଗଜପତିମାନଙ୍କ ଶାସନ କାଳ ପରି, ନିଜ ନିଜ ରାଜ୍ୟ ସ୍ୱାଧୀନଭାବରେ ଶାସନ କରି ସ୍ୱଳ୍ପମାତ୍ର ପେସ୍‌କସ୍ ଯେପରି ଦେଇ ଆସୁଥିଲେ, ଇଂରେଜ-ମାନେ ସେମାନଙ୍କର ଶାସନ ସ୍ୱାତନ୍ତ୍ର୍ୟ ରକ୍ଷା କରି ନୂତନ ପେସ୍‌କସ୍ ଧାର୍ଯ୍ୟ କଲେ । ମୟୂରଭଞ୍ଜ ବ୍ୟତୀତ ସକଳ ରାଜାମାନେ ଇଂରେଜ ସରକାରଙ୍କୁ ଏକରାରନାମା ବା ଏଗ୍ରିମେଣ୍ଟ ଲେଖି-ଦେଇ ପେସକସ୍ ଧାର୍ଯ୍ୟକରି ନେଲେ । ମୟୂରଭଞ୍ଜ ପ୍ରଥମେ ଏକରାରନାମା ଦେଇ ନ ଥିଲେ ; ମାତ୍ର ୧୮୨୯ ଖ୍ରୀଷ୍ଟାବ୍ଦରେ ଅତ୍ୟଳ୍ପ ପେସକସ୍‌ରେ ଅନ୍ୟାନ୍ୟ ରାଜାଙ୍କ ପରି ମୟୂରଭଞ୍ଜ ମଧ୍ୟ ଏକରାରନାମା ଲେଖିଦେଲେ । ପାଲଲହଡ଼ା ପ୍ରଥମେ କେନ୍ଦୁଝରର ଅନ୍ତର୍ଭୁକ୍ତ ଥିବାରୁ ପାଲଲହଡାର ପେସକସ୍ କେନ୍ଦୁଝରଠାରୁ ମିଳୁଥିଲା । ମାତ୍ର ପରେ କଥିତ ଅଛି, କେନ୍ଦୁଝର ରାଜା ପାଲଲହଡ଼ା ରାଜାଙ୍କୁ ତାହାଙ୍କ ସମ୍ମୁଖରେ ସ୍ତ୍ରୀ-ବେଶରେ ନାଚିବାକୁ ଆଦେଶ ଦେବାରୁ ପାଲଲହଡା ବିଦ୍ରୋହୀ ହୋଇ କେନ୍ଦୁଝରରୁ ପୃଥକ୍ ହେଲା । ପୂର୍ବେ କୁହାଯାଇଛି ଅନୁଗୁଳ ରାଜା ଅବାଧ୍ୟ ଓ ବିଦ୍ରୋହୀ ହେବାରୁ ଏବଂ ବାଙ୍କିରାଜା ନରହତ୍ୟା ଅପରାଧରେ ଆଜୀବନ ବନ୍ଦୀ ରହିବାରୁ ଉକ୍ତ ରାଜ୍ୟଦ୍ୱୟ ଯଥାକ୍ରମେ ୧୮୪୭ ଏବଂ ୧୮୪୦ ଖ୍ରୀଷ୍ଟାବ୍ଦରେ ଇଂରେଜ ଶାସନରେ ରହିଲା । ବୋଦରାଜା କନ୍ଧମାଳ ଛାଡିଦେବାରୁ, କନ୍ଧମାଳ ଅନୁଗୁଳ ସଙ୍ଗେ ମିଶି ଏକ ଜିଲ୍ଲା ହେଲା । ୧୮୦୪ ଖ୍ରୀଷ୍ଟାବ୍ଦରେ ବୋଦ ଓ

ଅଠମଲ୍ଲିକ ଏକରାଜ୍ୟ ଥିଲା । ପରେ ୧୮୧୯ ଖ୍ରୀଷ୍ଟାବ୍ଦରେ ବୌଦ ରାଜ-
ଦରବାର ମଧ୍ୟରେ ରାଜ୍ୟହିସ୍ସ ବିଭକ୍ତ ହୋଇ ଦୁଇ ସ୍ୱତନ୍ତ୍ର ରାଜ୍ୟରେ ପରିଣତ
ହେଲା । ଶତ୍ରୁ ଆକ୍ରମଣରୋଧ ସକାଶେ ବଡ଼ମୂଳ ଘାଟିର ରକ୍ଷକ ଥିବାରୁ ଦଶପଲ୍ଲା
ରାଜା ବିନା ପେସକସ୍‌ରେ ରାଜ୍ୟ ଭୋଗ କଲେ । ମାତ୍ର ଦଶପଲ୍ଲା ରାଜା
ଅନୁଗୁଳର ଯୋଡ଼ାମୁହିଁ ରାଜ୍ୟାଂଶ ଅଧିକାର କରିଥିବାରୁ, କେବଳ ସେହି
ଅଧିକୃତ ରାଜ୍ୟ ସକାଶେ ପେସକସରେ ଦାୟୀ ହେଲେ । ପେସ୍‌କସ
ଅନାଦାୟ ଯୋଗେ ଦଶପଲ୍ଲା, କେନ୍ଦୁଝର, ନୂଆଗଡ଼, ନରସିଂହପୁର,
ତିଗିରିଆ, ହିନ୍ଦୋଳ ରାଜ୍ୟମାନ ନିଲାମ ହେଲା, ଏବଂ ସରକାର ନିଲାମ
ଧରିଲେ, ମାତ୍ର ୧୮୧୮ ଖ୍ରୀଷ୍ଟାବ୍ଦରେ ସେ ନିଲାମ ରହିତ ହୋଇ ରାଜ୍ୟ-
ମାନ ରାଜାମାନଙ୍କୁ ଫେରସ୍ତ ଦିଆଗଲା । ଗଡ଼ଜାତ ରାଜ୍ୟମାନଙ୍କର
ତତ୍ତ୍ୱାବଧାରକ ସ୍ୱରୂପ ପ୍ରଥମେ କଲେକ୍ଟର ୧୮୧୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏବଂ
ତତ୍ପରେ କମିଶନର ଅଧିକାର ପାଇଥିଲେ । ୧୯୦୫ ଖ୍ରୀଷ୍ଟାବ୍ଦରେ ସମ୍ବଲପୁର
ଓ ସନ୍ନିହିତ ଗଡ଼ଜାତମାନ ଓଡ଼ିଶାର ଅନ୍ତର୍ଭୁକ୍ତ ହେବାରୁ, ସମଗ୍ର
ଗଡ଼ଜାତ ଅଞ୍ଚଳର ତତ୍ତ୍ୱାବଧାରଣ ନିମନ୍ତେ ସମ୍ବଲପୁରରେ ଜଣେ
ପଲିଟିକାଲ ଏଜେଣ୍ଟ ରହିଲେ ।

ଜଗନ୍ନାଥ ମନ୍ଦିର—ମୋଗଲ ରାଜତ୍ୱରେ ଖୋରଧା ରାଜା ଜଗନ୍ନାଥ
ମନ୍ଦିରର ସମ୍ପୂର୍ଣ୍ଣ ଅଧିକାରୀ ଥିଲେ, ଏବଂ ମୋଗଲମାନେ ଯାତ୍ରୀକର
୯ ଲକ୍ଷ ଟଙ୍କା ପାଉଥିଲେ । ମରହଟ୍ଟାମାନେ ଯାତ୍ରୀ କର ନେଉଥିଲେ, ମାତ୍ର
ତହିଁରୁ ମନ୍ଦିରର ବ୍ୟୟ ନିର୍ବାହ କରୁଥିଲେ ଏବଂ ଖୋରଧା ରାଜାଙ୍କ-
ଠାରୁ ଯେଉଁ ପ୍ରଗଣାମାନ ମରହଟ୍ଟାମାନେ ନେଇଥିଲେ, ତହିଁର ରାଜସ୍ୱରୁ
କେତେକ ମଧ୍ୟ ମରହଟ୍ଟାମାନେ ମନ୍ଦିର ପରିଚାଳନାରେ ବ୍ୟୟ କରୁଥିଲେ ।
ତାହାକୁ ବର୍ତ୍ତମାନ 'ସତାଇଶ ହଜାରୀ ଜମା' ବୋଲି କୁହାଯାଏ । ଇଂରେଜ-
ମାନେ ଓଡ଼ିଶା ଅଧିକାର କରିବା ସଙ୍ଗେ ମନ୍ଦିରପରିଚାଳନା ନିଜ ହାତରେ
ରଖିଲେ । ୧୮୦୬ ଖ୍ରୀଷ୍ଟାବ୍ଦରେ ଗଭର୍ଣ୍ଣମେଣ୍ଟ ୩ଜଣ ପଣ୍ଡିତଙ୍କର ଗୋଟିଏ

କମିଟି ନିଯୁକ୍ତ କରି ସେମାନଙ୍କ ହସ୍ତରେ ମନ୍ଦିର ପରିଚାଳନା ଭାର ଦେଲେ। ୧୮୦୯ ଖ୍ରୀଷ୍ଟାବ୍ଦରେ ପୁଣି ପଣ୍ଡିତ କମିଟି ଉଠିଗଲା ; ଏବଂ ପୁଣି ରାଜାଙ୍କ ଉପରେ ପରିଚାଳନା ଭାର ରଖାଗଲା। ରାଜା କିନ୍ତୁ ସଂପୂର୍ଣ୍ଣ ଅଧିକାର ପାଇଲେ ନାହିଁ ; ମନ୍ଦିରର ୩ ଜଣ ପ୍ରଧାନ କର୍ମଚାରୀଙ୍କ ସାହାଯ୍ୟ ଓ ପରାମର୍ଶ ଅନୁସାରେ କାର୍ଯ୍ୟ ଚଳାଇବା ପାଇଁ ରାଜା ଆଦିଷ୍ଟ ହେଲେ। ଗଭର୍ଣ୍ଣମେଣ୍ଟଙ୍କ ବିନାନୁମତିରେ ରାଜା ସେ କର୍ମଚାରୀମାନଙ୍କୁ ଦଣ୍ଡ ଦେବା ବା କାର୍ଯ୍ୟଚ୍ୟୁତ କରିବା କ୍ଷମତା ପାଇଲେ ନାହିଁ। ମନ୍ଦିର ବ୍ୟୟ ନିର୍ବାହ ନିମନ୍ତେ ଗଭର୍ଣ୍ଣମେଣ୍ଟ ବାର୍ଷିକ ନିର୍ଦ୍ଦିଷ୍ଟ ଖର୍ଚ୍ଚା ପ୍ରାୟ ୫୩ ହଜାର ଟଙ୍କା ଦେଉଥାନ୍ତି। ଯାତ୍ରୀ କର ପ୍ରଥମରୁ ଆଦାୟ କରି ଯାଉଥିଲା, ମାତ୍ର କେତେ କାଳ ପରେ ୧୮୪୦ ଖ୍ରୀଷ୍ଟାବ୍ଦରେ ଯାତ୍ରୀକର ଉଠାଇ ଦିଆଗଲା ; ଏବଂ ପୁରୀ ରାଜାଙ୍କ ହସ୍ତରେ ମନ୍ଦିରର ସମ୍ପୂର୍ଣ୍ଣ ଓ ସବିଶେଷ ଅଧିକାର ଦିଆଗଲା; ମାତ୍ର ସରକାରଙ୍କ ବାର୍ଷିକ ୫୩ ହଜାର ଟଙ୍କା ଦେୟ ରାଜାଙ୍କୁ ଦିଆ ଯାଉଥିଲା। ୧୮୪୩ ଖ୍ରୀଷ୍ଟାବ୍ଦରେ ମନ୍ଦିର ବ୍ୟୟ ନିମନ୍ତେ ବାର୍ଷିକ ନିର୍ଦ୍ଦିଷ୍ଟ ଜମା ନ ଦେଇ ସରକାର 'ସତେଇଶ ହଜାରୀ ମହାଲ' ରାଜାଙ୍କ ହସ୍ତରେ ଦେଲେ। ଏହାର ରାଜସ୍ୱ ଅଦ୍ୟାବସ୍ଥାରେ ୨୭ ହଜାର ଟଙ୍କା ଥିଲେ ସୁଦ୍ଧା ଇଂରେଜମାନେ ରାଜାଙ୍କୁ ଛାଡ଼ି ଦେଲା ବେଳେ ବାର୍ଷିକ ରାଜସ୍ୱ ୧୭୪୨୦ ଟଙ୍କା ଥିଲା। ସତାଇଶ ହଜାରୀ ମହାଲ ମଧ୍ୟରେ ପୁରୀ ଜିଲାରେ (୧) ରାହାଙ୍ଗ, ସିରେଇ, ଚବିଶକୁଦ ଓ ପଞ୍ଚିମଣ୍ଡାହ ପ୍ରଗଣା ମଧ୍ୟରେ ଥିବା ୧୨ ଗୋଟି ହସ୍ତବୁଜ ମୌଜା, ଏବଂ ରହାଙ୍ଗ ପ୍ରଗଣା ମଧ୍ୟରେ ଥିବା (୨) ୫୦ ଟଙ୍କି ବାହାଲ ମୌଜା, (୩) ୮ ଟଙ୍କି ବାହାଲ ମୌଜା, ୧୦ ଟଙ୍କି ବାଯ୍ୟାପ୍ତି ମୌଜା, ଏବଂ ୮ ସରବରାକାରୀ ଓ ମୁସ୍ତାଜରୀ ମୌଜାର ରାଜସ୍ୱର କେତେକାଂଶ। କଟକ ଜିଲାରେ ଡ଼ାଲିଯୋଡାରେ ୨ ମଙ୍ଗଳମୀ ମୌଜା, ଏବଂ ଅସ୍ତରେଶ୍ୱରରେ ୧ ମୌଜା। ଏହା ବାଦ୍, ଦଶପଲାର ରଥ କାଠ ଯୋଗାଇବା ଅଛିଲ।

ସତାଇଶ ହଜାର ମାହାଲ ରାଜାଙ୍କୁ ଦେବା ପରେ ସରକାର ଅଂଶର ବାର୍ଷିକ ଦେୟ ୩୫୭୩୮ ଟଙ୍କାରେ ରଖିଲେ । ୧୮୪୫ ଖ୍ରୀଷ୍ଟାବ୍ଦରେ ଏହା ପୁଣି ଅହୁରି କମ୍ କରାଯାଇ ୨୩୩୨୧ ଟଙ୍କାରେ ରହିଲା । ମନ୍ଦିରରେ ଶାନ୍ତିରକ୍ଷା ନିମନ୍ତେ ପୁଲିସ ସାହାଯ୍ୟ ଦେଉ ଥିବାରୁ ସେଥି ନିମନ୍ତେ ବାର୍ଷିକ ୬୮୦୪ ଟଙ୍କା ୧୮୫୭ ଖ୍ରୀଷ୍ଟାବ୍ଦରୁ ସରକାର ନିଜ ଦେୟରୁ କାଟି ରଖିଲେ । ଦୁଇବର୍ଷ ପରେ ପୁଣି ସରକାର ଏହି ରୂପେ ଟଙ୍କା ସାହାଯ୍ୟ ବନ୍ଦ କରି ଖୋର୍ଦ୍ଧା ଖାସମହାଲର ୧୬୮୨୭ ଟଙ୍କା ରାଜସ୍ୱର ମାହାଲ ମନ୍ଦିର ବ୍ୟୟ ନିମନ୍ତେ ଖଞ୍ଜି ଦେଲେ । କେତେକ ବର୍ଷରେ ରାଜା ନିଜେ ବରକନ୍ଦାଜ ନିଯୁକ୍ତ କରି ମନ୍ଦିର ମଧ୍ୟରେ ଶାନ୍ତି ରକ୍ଷା ନିମନ୍ତେ ଦାୟୀ ହେବାରୁ ଗଭର୍ଣ୍ଣମେଣ୍ଟ ୧୮୬୩ ଖ୍ରୀଷ୍ଟାବ୍ଦରେ ୬୮୮୯ ଟଙ୍କା ବାର୍ଷିକ ଜମାର କେତୋଟି ମୌଜାରୁ ଖୋର୍ଦ୍ଧା ଖାସମହାଲ ରାଜାଙ୍କୁ ଛାଡ଼ିଦେଲେ ।

ଏହିରୂପେ ୧୮୧୮ ଓ ୧୮୬୩ ଖ୍ରୀଷ୍ଟାବ୍ଦରେ ଯେ ମୌଜାମାନ ସରକାର ରାଜାଙ୍କୁ ଦେଲେ ତାହା 'ଏଲାଖରାଜାତ ଖର୍ଚ୍ଚମହାଲ' ନାମରେ ପରିଚିତ । ଏଥିରେ ୧୨୪ ମୌଜା ଏବଂ ୬୭,୫୨୦ ଏକର ଭୂମି ଥାଏ । ସମୁଦାୟ ତାପଙ୍ଗ କିଲ୍ଲା, ଏବଂ ରମେଣ୍ଡର କିଲ୍ଲାମଧ୍ୟରୁ ୫୧ ମୌଜା ଏହି ମାହାଲରେ ଯାଏ ।

ପୁରୀରାଜା ଉପରୋକ୍ତ ମାହାଲମାନ ପାଇ ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ହୋଇ ୧୮୭୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ କାର୍ଯ୍ୟ ଚଳାଇଲେ । ସେହି ବର୍ଷ ଦିବ୍ୟସିଂହ ଦେବ ଦ୍ୱୀପାନ୍ତରିତ ହେବାରୁ ପୁରୀରାଜାଙ୍କଠାରୁ ମନ୍ଦିର ପରିଚାଳନା ବାହାର କରିନେବା ପାଇଁ ସରକାର ମୋକଦ୍ଦମା କଲେ । ଏଥିରେ ଯେ ରଫା ହେଲା ତଦ୍ୱାରା ବର୍ତ୍ତମାନ ରାଜାଙ୍କ ନାବାଳକ ଅବସ୍ଥାରେ ଜଣେ ମାନେଜର ରହିବାର ବ୍ୟବସ୍ଥା ହେଲା । ୧୮୯୭ ଖ୍ରୀଷ୍ଟାବ୍ଦରେ ରାଜା ପ୍ରାପ୍ତବୟସ୍କ ହେବାରୁ ମାନେଜରର ପଦ ଉଠିଗଲା । ମାତ୍ର ପରେ ପୁଣି ମନ୍ଦିର କାର୍ଯ୍ୟ ପରିଚାଳନାରେ ବିଶୃଙ୍ଖଳା ଘଟିବାରୁ ରାଜାଙ୍କ ଅନୁମତି କ୍ରମେ ଜଣେ ଜଣେ

ଡେପୁଟି ମାଜିଷ୍ଟ୍ରେଟ ୧୯୦୨ ଖ୍ରୀଷ୍ଟାବ୍ଦରୁ ୪ ବର୍ଷ ସକାଶେ ମୟୂରଭଞ୍ଜର ମ୍ୟାନେଜର ହୋଇ ଅଛନ୍ତି ।

ଶିକ୍ଷାବ୍ୟବସ୍ଥା—ପୂର୍ବବର୍ତ୍ତୀ ରାଜତ୍ୱମାନଙ୍କରେ ଶିକ୍ଷା ରାଜ୍ୟଶାସନର ଅନ୍ତର୍ଭୁକ୍ତ ନ ଥିଲା । ରାଜା ବା ରାଜକର୍ମଚାରୀମାନେ ଶିକ୍ଷା ଉଦ୍ଦେଶ୍ୟରେ ଗ୍ରାମ ବା ମୌଜାମାନଙ୍କର ରାଜସ୍ୱ ବୃତ୍ତି ସ୍ୱରୂପ ଛାଡ଼ି ଦେଉଥିଲେ । ମାତ୍ର ଶାସନତନ୍ତ୍ରର କୌଣସି କର୍ତ୍ତୃତ୍ୱରେ ଶିକ୍ଷା ପରିଚାଳିତ ହେଉ ନ ଥିଲା । ମାତ୍ର ଇଂରେଜ ଶାସନରେ ଶିକ୍ଷା ଶାସନର ଅଙ୍ଗୀଭୂତ ହେଲା, ଏବଂ ଶାସନର ଉଦ୍ଦେଶ୍ୟ ଓ ଆବଶ୍ୟକତା ଅନୁସାରେ ଶିକ୍ଷାର ଗତି ଓ ପ୍ରକୃତି ନିୟମିତ ହେଲା । ଓଡ଼ିଶାରେ ସରକାରଙ୍କର ଶିକ୍ଷା ବିଭାଗରେ କିଛି ଉଦ୍ୟମ ହେବା ପୂର୍ବରୁ ଖ୍ରୀଷ୍ଟିଆନ ପାଦ୍ରୀମାନେ ୧୮୨୨ ଖ୍ରୀଷ୍ଟାବ୍ଦରୁ ଆସି ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ପ୍ରଚାରରେ ବହୁତ ସାହାଯ୍ୟ କରିଥିଲେ । ସେମାନେ ପ୍ରଥମେ ଓଡ଼ିଶାକୁ ମୁଦ୍ରାଯନ୍ତ୍ର ଆଣି ଉତ୍କଳ ଅକ୍ଷରରେ ପୁସ୍ତକ ମୁଦ୍ରଣ ଆରମ୍ଭ କରିଥିଲେ । ସରକାରଙ୍କର ଶିକ୍ଷାର ପ୍ରଥମ ଉଦ୍ୟମ ସ୍ୱରୂପ ପୁରୀରେ ୧୮୩୮ ଖ୍ରୀଷ୍ଟାବ୍ଦରେ ଏକ ଇଂରେଜୀ ଓ ଏକ ସଂସ୍କୃତ ସ୍କୁଲ ଏବଂ ୩ ବର୍ଷ ପରେ କଟକରେ ଏକ ଇଂରେଜୀ ସ୍କୁଲ ବସିଲା । ମାତୃଭାଷା ଓ ସାହିତ୍ୟର ଶିକ୍ଷା ନିମନ୍ତେ ୧୮୪୫ ରୁ ୧୮୪୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ୩ ଗୋଟି ଭର୍ଣ୍ଣାକ୍ୟୁଲର ସ୍କୁଲ ବସିଲା । ଇଂରେଜୀ ଶିକ୍ଷା ପ୍ରତି ଅନାଦର ଓ ଘୃଣା ଦେଶବାସୀଙ୍କ ମଧ୍ୟରେ ପ୍ରଥମରୁ ଥିବାରୁ ଏହି ସବୁ ସ୍କୁଲରେ ଛାତ୍ର ସଂଖ୍ୟା ବିଶେଷ ହେଉ ନଥିଲେ, ଏବଂ ପୁରୀ ସ୍କୁଲ ଉଠିଯିବା ଅବସ୍ଥାକୁ ଆସିଲା । ୧୮୫୩ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରରେ ଇଂରେଜୀ ସ୍କୁଲ ବସିଲା ଏବଂ ପୁରୀ ସ୍କୁଲର ପୁନରୁଦ୍ଧାର କରାଗଲା । ୧୮୫୪ ଖ୍ରୀଷ୍ଟାବ୍ଦରେ ଗଭର୍ଣ୍ଣର-ଜେନେରାଲ ଲର୍ଡ ଡ଼େଲହାଉସୀଙ୍କ ଶାସନ କାଳରେ ଗଭର୍ଣ୍ଣମେଣ୍ଟଙ୍କର ଶିକ୍ଷା ବିଷୟକ ନୂତନ ନିୟମ ପ୍ରବର୍ତ୍ତିତ ହେଲା । ଭାରତର ପ୍ରଧାନ ପ୍ରଧାନ ପ୍ରାଦେଶିକ ରାଜଧାନୀମାନଙ୍କରେ ବିଶ୍ୱବିଦ୍ୟାଳୟ ବସିଲା ଏବଂ ଓଡ଼ିଶାର ସ୍କୁଲମାନ କଲିକତା ବିଶ୍ୱବିଦ୍ୟାଳୟର ଅନ୍ତର୍ଭୁକ୍ତ ହେଲା ।

ସେହି ଶିକ୍ଷା ନିୟମ ଅନୁସାରେ ଓଡ଼ିଶାର ଶାସମାହାଲ ଓ ଅନ୍ୟତ୍ର ୬୯ ପ୍ରାଇମେରୀ ସ୍କୁଲ ଆରମ୍ଭ ହେଲା । ଶିକ୍ଷକମାନଙ୍କୁ ଉପଯୁକ୍ତ କରାଇବା ନିମନ୍ତେ କଟକରେ ୧୮୬୯ ଖ୍ରୀଷ୍ଟାବ୍ଦରେ ନର୍ମାଲସ୍କୁଲ ବସିଲା । ୧୮୭୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ସମଗ୍ର ଓଡ଼ିଶାର ପ୍ରାଇମେରୀ ସ୍କୁଲ ସଂଖ୍ୟା ୫୮ ହେଲା । ସେହି ସମୟରେ କଟକ ମିସନପ୍ରେସ ଓ ପ୍ରିଣ୍ଟିଂକୋମ୍ପାନୀ ସ୍ଥାପିତ ହେଲ ଏବଂ ଓଡ଼ିଆ ସମ୍ବାଦ ପତ୍ର ଓ ପୁସ୍ତକମାନ ପ୍ରକାଶିତ ହୋଇ ଶିକ୍ଷା ବିସ୍ତାରରେ ବହୁ ସାହାଯ୍ୟ କଲା ।

୧୮୬୬ ଖ୍ରୀଷ୍ଟାବ୍ଦର ଦୁର୍ଭିକ୍ଷ ପରେ ଖ୍ରୀଷ୍ଟିୟାନ ପାଦ୍ରୀମାନେ ବହୁ ପିତୃମାତୃ-ଶୂନ୍ୟ ଅସହାୟ ଶିଶୁମାନଙ୍କ ନିମନ୍ତେ ଅନାଥାଶ୍ରମମାନ କଟକ ଓ ବାଲେଶ୍ୱରରେ ସ୍ଥାପନ କରି ସେମାନଙ୍କ ଶିକ୍ଷାର ବ୍ୟବସ୍ଥା କଲେ । ସାର ଜର୍ଜ କାମ୍ବେଲ ୧୮୭୨ ଖ୍ରୀଷ୍ଟାବ୍ଦରେ ଏକ ନୂତନ ଶିକ୍ଷା ସଂସ୍କାର ପଦ୍ଧତି ପ୍ରଣୟନ କଲେ । ତାହାଦ୍ୱାରା ସ୍କୁଲମାନଙ୍କୁ ସାହାଯ୍ୟ ବା ଗ୍ରାଣ୍ଟ ଇନ୍ ଏଡ୍ ଦିଆଯିବାର ବ୍ୟବସ୍ଥା ହେଲା ଏବଂ ସବୁ ପ୍ରକାର ସ୍କୁଲ ଶିକ୍ଷା ବିଭାଗର ଅଧୀନରେ ରହିଲା । ସ୍କୁଲସଂଖ୍ୟା କ୍ରମେ ବଢିଲା । ୧୮୭୫ ଖ୍ରୀଷ୍ଟାବ୍ଦ ବେଳକୁ ଓଡ଼ିଶାରେ ୫୩୯ ସ୍କୁଲରେ ୧୦୧୯୬ ଛାତ୍ର ଶିକ୍ଷା ପାଇଲେ । ପରବର୍ତ୍ତୀ ୧୦ ବର୍ଷରେ ୬୫ ହଜାରରୁ ଅଧିକ ଛାତ୍ର ୪୭୩୬ ସ୍କୁଲରେ ପଢୁଥିବାର ଦେଖାଗଲା । କ୍ରମେ ସାଧାରଣ ଶିକ୍ଷା ଦେଶରେ ବଢ଼ିଲା । କମିଶନର ରେଭେନ୍‌ସା ସାହେବ (୧୮୭୫—୧୮୭୭) ଶିକ୍ଷା ପ୍ରତି ବିଶେଷ ମନଯୋଗ ଦେଇଥିଲେ । ତାହାଙ୍କ ଦ୍ୱାରା କଟକର ଇଂରେଜୀ ସ୍କୁଲ ୧୮୬୮ ଖ୍ରୀଷ୍ଟାବ୍ଦରେ ହାଇସ୍କୁଲ ହୋଇ ୧୮୭୫ ଖ୍ରୀଷ୍ଟାବ୍ଦରେ କଲେଜରେ ପରିଣତ ହେଲା । କଟକରେ ବାଳିକା ସ୍କୁଲ ତାହାଙ୍କ ନାମ ଓ ଉଦ୍ୟମରେ ସ୍ଥାପିତ ହେଲା, ଏବଂ ତାହାଙ୍କ ଚେଷ୍ଟା ଓ ମୟୂରଭଞ୍ଜ ମହାରାଜାଙ୍କ ଦାନରେ କଟକରେ ମେଡିକାଲ ସ୍କୁଲ ବସିଲା । କ୍ରମେ ଶିକ୍ଷା ବିସ୍ତାରିତ ହୋଇ ଓଡ଼ିଶା ବର୍ତ୍ତମାନ ଭାରତର ଅନ୍ୟାନ୍ୟ ପ୍ରଦେଶ ସଙ୍ଗେ ସମକକ୍ଷ ହେବା ଦିଗରେ ଅଗ୍ରସର ହେଉଛି ।

**ଓଡ଼ିଆ ଭାଷା ଓ ସମ୍ବାଦପତ୍ର**—ଶିକ୍ଷା ବିସ୍ତାର ସଙ୍ଗେ ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ଦିଗରେ ଦେଶବାସୀଙ୍କ ମଧ୍ୟରେ ଚେଷ୍ଟା ଚାଲିଲା। କଟକ ମିଶନ ପ୍ରେସରୁ ଓଡ଼ିଆ ପୁସ୍ତକମାନ ପ୍ରକାଶିତ ହେଉଥିଲା । ୧୮୫୮ ଖ୍ରୀଷ୍ଟାବ୍ଦରେ 'ଜ୍ଞାନାରୁଣ' ଓ 'ପ୍ରବୋଧଚନ୍ଦ୍ରିକା' ନାମକ ଦୁଇଟି ସାମୟିକ ପତ୍ରିକା ମିଶନପ୍ରେସରୁ ବାହାରିଲା । ୧୮୬୬ ଖ୍ରୀଷ୍ଟାବ୍ଦରେ କଟକ ପ୍ରିଣ୍ଟିଂକୋମ୍ପାନୀ ସ୍ଥାପିତ ହୋଇ ନୂତନ ଓ ପୁରାତନ ସାହିତ୍ୟ ପୁସ୍ତକ ମୁଦ୍ରଣ କଲା । 'ଉତ୍କଳଦୀପିକା' ପ୍ରଥମେ ପଥର କଳରେ ଛପା ହୋଇ ୧୮୬୬ ଖ୍ରୀଷ୍ଟାବ୍ଦରୁ ଅଦ୍ୟାବଧି ପ୍ରକାଶିତ ହୋଇ ଆସୁଅଛି । ଏହା ମଧ୍ୟରେ ଅନ୍ୟାନ୍ୟ କେତେକ ପତ୍ରିକା ପ୍ରକାଶିତ ହୋଇ କାଳକ୍ରମେ ଲୋପ ପାଇଛି । ୧୮୬୮ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରର 'ସମ୍ବାଦ ବାହିକା' ଏବଂ ପରେ ପୁଣି 'ଓଡ଼ିଆ ଓ ନବସମ୍ବାଦ' ପତ୍ରିକାମାନ ବାହାରିଲା । ସେହି ସମୟରେ ଓଡ଼ିଶାର ପ୍ରଚଳିତ ଭାଷା ସମ୍ବନ୍ଧରେ ଓଡ଼ିଆ ଓ ବଙ୍ଗାଳୀଙ୍କ ମଧ୍ୟରେ ଘୋର ବିବାଦ ଉପସ୍ଥିତ ହେଲା, ଏବଂ ଓଡ଼ିଆ ଭାଷା ପରିବର୍ତ୍ତରେ ବଙ୍ଗଭାଷା ଓଡ଼ିଶାରେ ଚଳିବାର ଆଶଙ୍କା ହେଲା । ସରକାରଙ୍କ ନ୍ୟାୟବିଚାର ବଳରେ ଓଡ଼ିଆ ଭାଷା ରକ୍ଷା ହେଲା । ଏହି ବିବାଦବେଳେ ସ୍ୱର୍ଗୀୟ ଗୌରୀଶଙ୍କର ରାୟ, ଫକୀରମୋହନ ସେନାପତି, ରାଧାନାଥ ରାୟ, ଗୌରୀଶଙ୍କର ରାୟ, ନନ୍ଦକିଶୋର ଦାସ ଓ ପ୍ୟାରୀମୋହନ ଆଚାର୍ଯ୍ୟ ପ୍ରଭୃତିଙ୍କ ଉଦ୍ୟମ ଇତିହାସରେ ସ୍ମରଣୀୟ ହୋଇଛି । ଏହି ଆନ୍ଦୋଳନ ଫଳରେ ଆଧୁନିକ ଓଡ଼ିଆ ସାହିତ୍ୟର ସମଧିକ ଉନ୍ନତି ହେଲା ଏବଂ ପ୍ରାଚୀନ ସାହିତ୍ୟ ପୁସ୍ତକମାନ ପ୍ରକାଶିତ ହୋଇ ଓଡ଼ିଶାରେ ନୂତନ ସାହିତ୍ୟ-ପ୍ରୀତି ଜାଗରୂକ ହେଲା ।

**ରାଜ ପରିବର୍ତ୍ତନ**— ୧୮୫୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଭାରତ ଶାସନ ଇଷ୍ଟ ଇଣ୍ଡିଆ କୋମ୍ପାନୀଙ୍କ ନାମରେ ଚାଲୁଥିଲା । ମାତ୍ର କୋମ୍ପାନୀଙ୍କ ଶାସନରେ ଭାରତବାସୀ ସିପାହୀ ଓ ନେତାମାନେ ଅସନ୍ତୁଷ୍ଟ ହୋଇ ୧୮୫୭ ଖ୍ରୀଷ୍ଟାବ୍ଦରେ ସିପାହୀ-ବିଦ୍ରୋହ ନାମରେ ଘୋର ବିଦ୍ରୋହ ଆରମ୍ଭ କଲେ । କେବଳ

ସମ୍ବଲପୁର ବ୍ୟତୀତ ସମଗ୍ର ଓଡ଼ିଶା ସେ ବିଦ୍ରୋହରୁ ମୁକ୍ତ ଥିଲା । ବିଦ୍ରୋହ ଶାନ୍ତ ହେବା ପରେ ୧୮୫୮ ଖ୍ରୀଷ୍ଟାବ୍ଦରେ ମହାରାଣୀ ଭିକ୍ଟୋରିଆ ଭାରତ ଶାସନ ନିଜ ହସ୍ତରେ ନେଲେ । ଗଭର୍ଣ୍ଣର-ଜେନେରାଲ ଭାଇସରୟ ବା ରାଜ-ପ୍ରତି-ନିଧି ମନୋନୀତ ହେଲେ । ଭାରତ ଶାସନ ନିମନ୍ତେ ଦାୟୀ ରହିବା ପାଇଁ ଇଂଲଣ୍ଡରେ ଜଣେ ସଚିବ ବା ସେକ୍ରେଟରୀ ଅଫ୍ ଷ୍ଟେଟ ନିଯୁକ୍ତ ହେଲେ । ଗୋଟିଏ କମ୍ପାନୀ ପରିବର୍ତ୍ତରେ ସମଗ୍ର ଇଂରେଜ ଜାତିର ପାର୍ଲିମେଣ୍ଟ ସଭା ଭାରତ ଶାସନ ପରିଚାଳନା କଲେ । ଭିକ୍ଟୋରିଆ ରାଜ୍ୟଭାର ନେଇ ଯେଉଁ ଉଦାରତାପୂର୍ଣ୍ଣ ଘୋଷଣା ଭାରତରେ ପ୍ରଚାର କରାଇଲେ ତହିଁରୁ ଭାରତ-ବାସୀ ସୁଶାସନ ଆଶା କରି ରହିଲେ ।

ବାଣିଜ୍ୟ ବ୍ୟବସାୟ— ପୂର୍ବବର୍ତ୍ତୀ ରାଜତ୍ୱମାନଙ୍କର ଓଡ଼ିଶାର ଶିଳ୍ପ ବାଣିଜ୍ୟର ଉତ୍ଥାନ ପତନର ବିବରଣ ଦିଆ ଯାଇଛି । ବିଗତ ତିନି ଶତାବ୍ଦି ମଧ୍ୟରେ ନାନା ରାଜନୈତିକ ଓ ପ୍ରାକୃତିକ ବିପାକ ମଧ୍ୟରେ ପଡି ବାଣିଜ୍ୟ କ୍ରମେ ବିଲୟ ଦଶା ଲଭିଥିଲା । ଇଂରେଜ ଶାସନ ବେଳକୁ ଓଡ଼ିଶା ବନ୍ଦରମାନ ପ୍ରାୟ ବନ୍ଦ ହୋଇଥିଲା ଏବଂ ବାଣିଜ୍ୟ କ୍ରମେ ଲୋପ ପାଇଲା । ବର୍ତ୍ତମାନ ଅବଶ୍ୟ ଓଡ଼ିଶା ବନ୍ଦରମାନଙ୍କରେ ଆମଦାନି ଓ ରପ୍ତାନି ଚାଲୁଛି; ମାତ୍ର ତାହା ସବୁ ବିଦେଶୀଙ୍କ ମୂଳଧନ ଏବଂ ଜଳ ଓ ସ୍ଥଳ ଯାନରେ ପରିଚାଳିତ । ଓଡ଼ିଶାବାସୀ ତହିଁରୁ ଲାଭ ପ୍ରାପ୍ତ ପ ଥନ୍ତି ନାହିଁ ।

ଖଣିଜ ପଦାର୍ଥ ମଧ୍ୟରେ ଓଡ଼ିଶା ମଧ୍ୟରେ ଯେ ସବୁ ଖଣି ବାହାରୁଛି ତହିଁରେ ଓଡ଼ିଶାର ଆର୍ଥିକ ଅବସ୍ଥାର କିଛି ପରିବର୍ତ୍ତନ ହେଉ ନାହିଁ । ୧୮୧୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସମ୍ବଲପୁରରୁ ହୀରା ଆମଦାନି ହେଉଥିଲା । ସେଥି ମଧ୍ୟରୁ ଖଣ୍ଡିଏ ୭୭୨ ଗ୍ରେନ ଓଜନ ଥିଲା ଏବଂ ପୃଥିବୀର ବୃହତ୍ତମ ହୀରା-ମାନଙ୍କ ମଧ୍ୟରେ ଗଣ୍ୟ ଥିଲା । ଅନ୍ତର ବି କେତେଖଣ୍ଡ ୨୮୮ ଓ ୩୦୮ ଗ୍ରେନ ଓଜନର ହୀରା ସମ୍ବଲପୁର ରାଣୀ ପାଇଥିଲେ । ୧୮୧୮ ଖ୍ରୀଷ୍ଟାବ୍ଦରେ ୮୪ ଗ୍ରେନର ଖଣ୍ଡେ ହୀରା ଗଭର୍ଣ୍ଣମେଣ୍ଟ ପାଇଥିଲେ । ତାହାର ମୂଲ୍ୟ ପାଞ୍ଚହଜାର

ଟଙ୍କା ହୋଇଥିଲା । ୧୮୬୭ ଖ୍ରୀଷ୍ଟାବ୍ଦରେ ଜଣେ ସାହେବ ହୀରା ବାହାର କରିବାକୁ ଅନୁମତି ପାଇଥିଲେ; ମାତ୍ର ଲାଭଜନକ ନ ହେବାରୁ ସେ ତାହା ଛାଡ଼ିଦେଲେ ଏବଂ ବିଶେଷ ମୂଳଧନ ନ ଖଟାଇଲେ ବ୍ୟବସାୟ ଲାଭଜନକ ହେବନାହିଁ ବୋଲି ପରିବ୍ୟକ୍ତ ହେଲା । ବର୍ତ୍ତମାନ ସମ୍ବଲପୁରର ହୀରାଖଣ୍ଡ କେବଳ ଯୁଗ ଯୁଗ ବ୍ୟାପୀ ପ୍ରାଚୀନ ସମ୍ପଦର ସ୍ମୃତି ମାତ୍ର ଧରି ରହିଛି ।

ଓଡ଼ିଶା ବସ୍ତ୍ର କୋଟରେ ଇଂରେଜ ବଣିକମାନେ ଓଡ଼ିଶାରେ ବାଣିଜ୍ୟ ଆରମ୍ଭ କରିଥିଲେ । ମାତ୍ର କ୍ରମେ ବିଦେଶୀ କଳବସ୍ତ୍ର ପ୍ରତିଯୋଗିତାରେ ଓଡ଼ିଶାର ବସ୍ତ୍ର ବ୍ୟବସାୟ ଲୋପ ପାଇଲା । ତେବେ ପ୍ରାଚୀନ ସ୍ମୃତି ଓଡ଼ିଶାର ବସ୍ତ୍ର ବ୍ୟବସାୟ କେନ୍ଦ୍ରମାନଙ୍କରେ ଅଦ୍ୟାପି ଜୀବିତ ଅଛି ।

ଲୁଣ—ଲୁଣ ମାରିବା ଓଡ଼ିଶା ଉପକୂଳବାସିଙ୍କର ଅନ୍ୟତମ ଜୀବିକା ଥିଲା । ଇଂରେଜ ରାଜତ୍ୱର ପ୍ରଥମାବସ୍ଥାରେ ଲକ୍ଷ ଲକ୍ଷ ଉପକୂଳବାସୀ ଲୁଣ ମାରି ଜୀବିକାର୍ଜନ କରୁଥିଲେ । ଓଡ଼ିଶାର ଲୁଣ ସମଗ୍ର ଓଡ଼ିଶାବାସିଙ୍କ ଅଭାବ ପୂରଣ କରି ଓଡ଼ିଶା ନଦୀମାନଙ୍କ ବାଟେ ସୁଦୂର ମଧ୍ୟପ୍ରଦେଶ ଓ ଛୋଟନାଗପୁରକୁ ରପ୍ତାନି ହେଉଥିଲା । ଓଡ଼ିଶା ଲୁଣ ସମଗ୍ର ଭାରତ ମଧ୍ୟରେ ସର୍ବାପେକ୍ଷା ଉତ୍କୃଷ୍ଟ ଓ ଆଦରଣୀୟ ବୋଲି ପ୍ରଶଂସିତ । ସୁତରାଂ ଭାରତର ଉତ୍ତର ଓ ମଧ୍ୟବର୍ତ୍ତୀ ଅଞ୍ଚଳମାନଙ୍କର ନାନାସ୍ଥାନରେ ଓଡ଼ିଶାର ଲୁଣ ବ୍ୟବହୃତ ହେଉଥିଲା । ଲୁଣ କେବଳ ମନୁଷ୍ୟର ଖାଦ୍ୟ ନ ଥିଲା, ଗାଈଗୋରୁଙ୍କ ଖାଦ୍ୟରେ ମଧ୍ୟ ଲୁଣ ବ୍ୟବହାର କରା ଯାଉଥିଲା । ଏହା ବ୍ୟତୀତ ଓଡ଼ିଶାର ସମୁଦ୍ରଉପକୂଳ, ଚିଲିକା ଓ ନଦୀମାନଙ୍କରୁ ଯେତେ ମାଛ ମରୁଥିଲା, ତହିଁରୁ ଅଧିକାଂଶ ଶୁଖୁଆ କରିବାରେ ପ୍ରଚୁର ଲୁଣ ଖର୍ଚ୍ଚ ହେଉଥିଲା । ଓଡ଼ିଶା ଶୁଖୁଆ ମହାନଦୀ ବାଟେ ମଧ୍ୟପ୍ରଦେଶକୁ ଏବଂ ସମୁଦ୍ର ବାଟେ ବିଦେଶକୁ ରପ୍ତାନି ହେଉଥିଲା । ଓଡ଼ିଶାବାସିଙ୍କର ଜଣ ପ୍ରତି ବାର୍ଷିକ ଲୁଣ ବ୍ୟୟ ପ୍ରାୟ ୮ସେର ଧରାଯାଏ ଏବଂ ଓଡ଼ିଶାବାସିଙ୍କ ଖାଦ୍ୟର ବହୁ ଗୁଣ ଲୁଣ ରପ୍ତାନି ଓ ଅନ୍ୟାନ୍ୟ ଦିଗରେ ବ୍ୟୟିତ ହେଉଥିଲା । ଏଥିରୁ ଓଡ଼ିଶାରେ ଆମଦାନି ଲୁଣର ପରିମାଣ ଅନୁମାନ କରାଯାଇ ପାରେ ।

ଓଡ଼ିଶା ଅଧିକାର ସଙ୍ଗେ ଇଷ୍ଟଇଣ୍ଡିଆ କୋମ୍ପାନୀ ଲୁଣ ମରାରେ ଏକଚାଟିଆ ନୀତି ଧରି ନିଜ କାରବାର ଚଳାଇଲେ । ଏଥି ପୂର୍ବରୁ ଜମିଦାରମାନେ ନିଜ ନିଜ ଇଲାକା ମଧ୍ୟରେ ଲୁଣ ମାରିପାରୁ ଥିଲେ, ତହିଁରୁ ସେମାନେ ମଧ ବଞ୍ଚିତ ହେଲେ । କୋମ୍ପାନୀଙ୍କର ଏକଚାଟିଆ ନୀତି ୧୮୬୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଚାଲିଲା । ତତ୍‌ପରେ ସରକାର ସାଧାରଣଙ୍କୁ ଲୁଣମରା ଅଧିକାର ନ ଦେଇ କେବଳ କେତେକଙ୍କୁ ପଟ୍ଟା ଦେଇ ଅଧିକାର ଦେଲେ । ସରକାର କେବଳ ମହଣ ପ୍ରତି ୩ଟଙ୍କା ୪ ଅଣା ହିସାବରେ କର ନେଉଥିଲେ । ଲୁଣ ମାରିବାରେ ଖର୍ଚ୍ଚ ମହଣ ପ୍ରତି ୪ ଅଣା ମାତ୍ର ପଡ଼ୁଥିଲା ଏବଂ ବଜାରରେ ମହଣ ପ୍ରତି ୩ଟଙ୍କା ୧୨ ଅଣା ଦରରେ ବିକ୍ରି ହେଉଥିଲା । ବଙ୍ଗ ଆଇନ ଅନୁସାରେ ଚିଲିକା ଉତ୍ତର ପାଖରେ ଲୁଣକର ୩ଟଙ୍କା ୪ ଅଣା ଥିବାବେଳେ, ତାହାର ଦକ୍ଷିଣ କୂଳରେ ମାନ୍ଦ୍ରାଜ ଆଇନ ଅନୁସାରେ ୧ ଟଙ୍କା ୧୨ ଅଣା ମାତ୍ର ଥିଲା । ଓଡ଼ିଶାରେ ଲୁଣ କର ବାସ୍ତବିକ ସମସ୍ତ ଭାରତ ମଧ୍ୟରେ ସର୍ବାପେକ୍ଷା ଅଧିକ ଥିଲା । ସୁତରାଂ ଉମ୍ବାର ବେପାରିମାନେ ମହଣ ୨୧ ଟଙ୍କାରେ ବିକି ୮ ଅଣା ଲାଭ କରୁଥିବା ସ୍ଥଳେ, ଓଡ଼ିଶା ବେପାରିମାନେ ୩ଟଙ୍କା ୧୨ ଅଣାରେ ବିକି ୪ଅଣା ମାତ୍ର ଲାଭ କରୁଥିଲେ । ମାନ୍ଦ୍ରାଜ ଲୁଣର ମୂଲ୍ୟ ଅତିଅଳ୍ପ ପଡ଼ୁଥିବାରୁ ମାନ୍ଦ୍ରାଜ ଲୁଣ ଚୋରାଭାବରେ ଆସି ଓଡ଼ିଶା ବଜାରରେ ପଶିଲା ଏବଂ ମଧ୍ୟପ୍ରଦେଶାଞ୍ଚଳବାସୀ ମଧ୍ୟ ଶସ୍ତା ପାଇଁ ମାନ୍ଦ୍ରାଜ ଲୁଣ ବ୍ୟବହାର କଲେ । ଏହିମଧ୍ୟରେ ଇଂଲଣ୍ଡରୁ ଲିଭରପୁର ଲୁଣ ଜାହାଜର ଓଜନ ଠିକ୍ ରଖିବା ନିମନ୍ତେ ବିନା ମାସୁଲରେ ବୋଝାଇ ହୋଇ ଆସିଲା । ତାହା ମଧ ଓଡ଼ିଶା ଲୁଣ ଅପେକ୍ଷା ଅଳ୍ପମୂଲ୍ୟରେ ବିକ୍ରିହେଲା । ସୁତରାଂ ଓଡ଼ିଶାର ଲୁଣମରା ବ୍ୟବସାୟ କ୍ରମେ ଲୋପ ପାଇ ୧୯୦୦ ଖ୍ରୀଷ୍ଟାବ୍ଦରେ ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା । ଏହାର ୩ ବର୍ଷ ମାତ୍ର ପୂର୍ବେ ଲୁଣମରା ମୃତପ୍ରାୟ ହୋଇଥିଲେ ସୁଦ୍ଧା କେବଳ ଚିଲିକା କୂଳରେ ୧୯୫୦୦୦ ମହଣ ଲୁଣ ମରାଯାଇଥିଲା । ଲୁଣ ମରାରୁ ଚିରକାଳ ନିମନ୍ତେ ବଞ୍ଚିତ ହୋଇ ଉପକୂଳବାସୀ କେବଳ ଅନାହାରରେ ବାରମ୍ବାର ଦୁର୍ଭିକ୍ଷକବଳରେ ପଡ଼ୁଥିଲେ

ନଅଙ୍କ ଦୁର୍ଭିକ୍ଷ— ଇଂରେଜ ଶାସନରେ ଦୁଇଟି ପ୍ରଧାନ ଘଟଣା ପାଇକ-ବିଦ୍ରୋହ ଓ ନଅଙ୍କ ଦୁର୍ଭିକ୍ଷ। ଏହି ଦୁଇ ଘଟଣା ଶାସନର ଅବହେଳା ଓ ଅନାସ୍ଥାର ପରିଣତି ଦେଖାଇ ଥିଲା। ଏହି ଦୁଇ ଘଟଣାରୁ ଶାସନର ପ୍ରମାଦ ଶାସନକର୍ତ୍ତାମାନେ ନିଜେ ନିଜେ ବୁଝିଥିଲେ। ଅତିବୃଷ୍ଟି ଓ ଅନାବୃଷ୍ଟି ଯୋଗେ ଓଡ଼ିଶାବାସୀ ବାରମ୍ବାର ଦୁର୍ଭିକ୍ଷରେ ପଡ଼ୁଥିଲେ; ବିଶେଷତଃ କୋମ୍ପାନୀଙ୍କ ଏକଚାଟିଆ ନୀତି ପ୍ରଭାବରେ ଲୁଣ ମାରିବାରୁ ବଞ୍ଚିତ ହେବା କାଳରୁ ଓଡ଼ିଶା ଉପକୂଳବାସୀ ଗୋଟିଏ ପ୍ରଧାନ ଜୀବିକା ହରାଇ ଦୁର୍ଭିକ୍ଷ ଭୋଗୁଥିଲେ। ଇଂରେଜ ଶାସନର ପ୍ରଥମାବସ୍ଥାରୁ ଦୁର୍ଭିକ୍ଷ ଆରମ୍ଭ। ୧୮୦୬, ୧୮୦୭, ୧୮୦୯ ଖ୍ରୀଷ୍ଟାବ୍ଦରୁ ଆରମ୍ଭକରି ବର୍ଷେ ଦୁଇ ବର୍ଷ ଓ ତିନିବର୍ଷ ଅନ୍ତରରେ ଦୁର୍ଭିକ୍ଷ ପଡ଼ିଥିଲା। ୧୮୩୬ ଖ୍ରୀଷ୍ଟାବ୍ଦରେ ଦୁର୍ଭିକ୍ଷ ଭୟଙ୍କର ହୋଇଥିଲା। ମାତ୍ର ଘନ ଘନ ଦୁର୍ଭିକ୍ଷ ମଧ୍ୟରେ ୧୮୬୬-୬୭ ଖ୍ରୀଷ୍ଟାବ୍ଦ ଦୁର୍ଭିକ୍ଷର ଭୀଷଣତା ଅକଥନୀୟ। ପୁରୀ ରାଜା ଦିବ୍ୟସିଂହ ଦେବଙ୍କ ୯ ଅଙ୍କରେ ଏହା ପଡ଼ିଥିବାରୁ ସାଧାରଣରେ ଏହା ନଅଙ୍କ ଦୁର୍ଭିକ୍ଷ ନାମରେ କଥିତ। ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ନିଜେ ସାକ୍ଷାତ ଏହି ଦୁର୍ଭିକ୍ଷର ଭୁକ୍ତଭୋଗୀ ଓ ସାକ୍ଷାତଦ୍ରଷ୍ଟା। ତାହାଙ୍କ ଲେଖନୀରୁ ଦୁର୍ଭିକ୍ଷର ବର୍ଣ୍ଣନା ନିମ୍ନରେ ଦିଆଗଲା—

"ସେ ସମୟରେ ଯେଉଁ ଭୀଷଣ ଲୋମହର୍ଷଣକାରୀ ବ୍ୟାପାରମାନ ଏହି ଉତ୍କଳ ଦେଶରେ ଅଭିନୀତ ହୋଇଥିଲା ତାହା ସ୍ମରଣ କଲେ ହୃଦୟ ସ୍ତବ୍ଧ ଓ ବିସ୍ମୟବିହ୍ୱଳ ହୋଇଯାଏ। କରାଳ-ମୃତ୍ୟୁ-ସମନ୍ୱିତ ଦୁର୍ଭିକ୍ଷ ଛବି ଚିତ୍ର କରିବା ମାନବ ଲେଖନୀର ଅସାଧ୍ୟ। ସେ ସମୟରେ ସହସ୍ର ସହସ୍ର କଙ୍କାଳ-ପରିଣତ ନରନାରୀମାନଙ୍କର ଆର୍ତ୍ତ ହାହାକାରରେ ନଗରମାନ ପରିପୂର୍ଣ୍ଣ ହୋଇଥିଲା। ନଗର ଓ ଗ୍ରାମମାନଙ୍କ ସମୀପସ୍ଥ ଶ୍ମଶାନମାନ ଅସଂଖ୍ୟ ନର-ଦେହରେ ପରିପୂରିତ ହୋଇଥିଲା ଏବଂ ଶକୁନ ଶୃଗାଳମାନେ ନରମାଂସ ଭକ୍ଷଣ କରି ଅସ୍ୱାଭାବିକ ରୂପେ ପରିତୃପ୍ତ ହୋଇଥିଲେ। କ୍ଷୁଧାର ପ୍ରଚଣ୍ଡ ଶାସନରେ ନରନାରୀମାନେ ସ୍ୱାଭାବିକ ହୃଦୟବୃତ୍ତିମାନଙ୍କୁ ବିସର୍ଜନ କରିଥିଲେ

କେତେକ ଜନନୀ ଅସହାୟ ଶିଶୁ ସନ୍ତାନମାନଙ୍କୁ ହିଂସ୍ର ଅରଣ୍ୟ ଶ୍ୱାପଦମାନଙ୍କ ନିକଟରେ ନିକ୍ଷେପ କରିଥିଲେ । କେହି କେହି କ୍ଷୁଧା-ଜର୍ଜରିତ ହୋଇ ରାକ୍ଷସବତ୍ ନିଜ ନିଜ ସନ୍ତାନମାନଙ୍କୁ ମଧ୍ୟ ଭକ୍ଷଣ କରିଥିଲେ । ସେ ସମୟରେ ନରହତ୍ୟା ଆତ୍ମହତ୍ୟା ଉନ୍ମାଦ ପ୍ରଭୃତି ସାମାଜିକ ଅନିଷ୍ଟକର ଅତ୍ୟନ୍ତ ପ୍ରବଳ ହୋଇଥିଲା । ଏକ ଏକ ଧନ ଟଙ୍କାକୁ ଏକସେର ଚାଉଳ ମିଳିବାର ଦୁର୍ଘଟ ହୋଇଥିଲା । ସୁବର୍ଣ୍ଣ ରୌପ୍ୟ ପ୍ରଭୃତି ଅତ୍ୟଳ୍ପ ମୂଲ୍ୟରେ ବିକ୍ରୀତ ହେଉଥିଲା । ଲୋକେ ଗେଣ୍ଡା, କନାହିର, ପାରୁନାଡ, ବୃକ୍ଷପତ୍ର ପ୍ରଭୃତି ଖାଇ ପ୍ରାଣ ବଞ୍ଚାଉଥିଲେ ।

ଏହି ଦୁର୍ଭିକ୍ଷରେ ଚତୁର୍ଥାଂଶ ଓଡ଼ିଶାବାସୀ ଅନାହାରରେ ପ୍ରାଣ ହରାଇ ଥିବାର ସରକାର ରିପୋର୍ଟ କରିଥିଲେ । ଓଡ଼ିଶା କମିଶନର ରେଭେନ୍ସା ସାହେବ ଓ ଅନ୍ୟାନ୍ୟ ହାକିମମାନେ ଯଥାସମୟରେ ଦୁର୍ଭିକ୍ଷ ନିବାରଣ ନିମନ୍ତେ କିଛି କରି ନ ଥିଲେ । ଏ ଦୁର୍ଭିକ୍ଷ ଉପରେ ଏକ କମିଶନ ବସିଲା । କମିଶନ ତଦନ୍ତ କରି ରିପୋର୍ଟ କଲେ ଯେ ସ୍ଥାନୀୟ ହାକିମମାନଙ୍କ ଅବହେଳାରୁ ଏ ଦୁର୍ଭିକ୍ଷ ଏପରି ଭୀଷଣ ଆକାର ଧାରଣ କଲା । ଏହାଛଡ଼ା ଦୁର୍ଭିକ୍ଷର ପ୍ରତିକାର ନିମନ୍ତେ କେନାଲ ଓ ରାସ୍ତା ଆଦି କରିବା ସକାଶେ ପ୍ରସ୍ତାବ କରିଥିଲେ । ସେହି କମିଶନଙ୍କ ରିପୋର୍ଟ ଅନୁସାରେ ଓଡ଼ିଶାରେ କେନାଲ କରିବା ସ୍ଥିର ହେଲା ଏବଂ ଖାଦ୍ୟଦ୍ରବ୍ୟ ସୁବିଧାରେ ବୋହିବା ନିମନ୍ତେ ରାସ୍ତା ପ୍ରସ୍ତୁତ କରିବାର ବ୍ୟବସ୍ଥା ହେଲା । ଏହି ନଅଙ୍କ ଦୁର୍ଭିକ୍ଷରେ ସରକାର ଓଡ଼ିଶା ବାହାରୁ ୧ଲକ୍ଷ ୭୫ହଜାର ହନ୍ଦର * ଚାଉଳ ଆଣି ଯୋଗାଇଥିଲେ । ସେତେବେଳେ ସରକାର ପକ୍ଷରୁ ଦୈନିକ ହାରାହାରି ୫୨୬୮୭ ଜଣଙ୍କୁ ସାହାଯ୍ୟ ଦିଆଯାଉଥିଲା । ଏଥିମଧ୍ୟରୁ ୧୫୧୪୫ ଜଣ-ଲଘୁକାମ କରି ମଜୁରି ପାଉଥିଲେ ।

* ଦୁର୍ଭିକ୍ଷ କମିଶନ ରିପୋର୍ଟରେ ଲେଖାଅଛି ଯେ ଚାଉଳ ସବୁ ଓଜନରେ କମ୍ ହୋଇଥିଲା । ତେଣୁ ପ୍ରତି୧୦ ହଜାର ଟନର ଅଷ୍ଟମାଂଶ ହିସାବରେ କମ୍ କରି ଧରିବାକୁ ହେବ ।

କେନାଲ—୧୮୬୮ ଖ୍ରୀଷ୍ଟାବ୍ଦରୁ ଇଷ୍ଟ ଇଣ୍ଡିଆ ଇରିଗେସନ କମ୍ପାନୀ ନାମରେ ଏକ କମ୍ପାନୀ ବାଣିଜ୍ୟର ସୁବିଧା ନିମନ୍ତେ ଓଡ଼ିଶାରେ କେନାଲ ଖୋଳାଇବା ଆରମ୍ଭ କରିଥିଲେ । ନଅଙ୍କ ଦୁର୍ଭିକ୍ଷ ପରେ ସରକାର କମ୍ପାନୀଠାରୁ ସମସ୍ତ କେନାଲ କଣିନେଇ ୧୮୭୧ ଖ୍ରୀଷ୍ଟାବ୍ଦ ମଧ୍ୟରେ କେନାଲ କାର୍ଯ୍ୟ ଶେଷ କଲେ । କେନାଲ ଦୁଇଟି ମହାନଦୀରୁ ଆଉ ଦୁଇଟି ବିରୂପାରୁ ବାହାରି କଟକ ଜିଲ୍ଲା ମଧ୍ୟରେ ବିସ୍ତୃତ । ୧—ହାଇ ଲେଭଲ କେନାଲ ଚଉଦ୍ୱାର ପାଖେ ବିରୂପାରୁ ବାହାରି କଟକ, ବାଲେଶ୍ୱର ଓ ମେଦିନୀପୁର ଜିଲ୍ଲା ଦେଇ ଉଲୁବାରିଆ ପାଖେ ହୁଗୁଳୀ ନଦୀରେ ପଡ଼ିଛି । ୨—କେନ୍ଦ୍ରାପଡ଼ା କେନାଲ, ୩—ତାଳଦଣ୍ଡା କେନାଲ, ୪-ମାଛଗାଁ କେନାଲ । ୧୮୭୧ ଖ୍ରୀଷ୍ଟାବ୍ଦ ମାର୍ଚ୍ଚମାସ ଯାଏ ସରକାରଙ୍କର କେନାଲ ଉପରରେ ମୋଟ ଖର୍ଚ୍ଚ ପଡ଼ିଥିଲା ୧୬ ଲକ୍ଷ ୭୪ ହଜାର ୮ ଶହ ୨୨ ପାଉଣ୍ଡ (୧ପାଉଣ୍ଡ=୧୦ଟଙ୍କା) ଏହି କେନାଲ ସବୁକୁ ଜଳ ଯୋଗାଇବା ପାଇଁ ତିନୋଟି ଆନିକଟ ତିଆରି ହେଲା । ଗୋଟିଏ ଯୋବରା ନିକଟରେ ମହାନଦୀରେ, ଅନ୍ୟ ଗୋଟିଏ ନରାଜଠାରେ କାଠଯୋଡ଼ୀର ଉତ୍ପତ୍ତି ସ୍ଥାନରେ, ଏବଂ ତୃତୀୟଟି ଚଉଦ୍ୱାର ନିକଟ ବିରୂପାରେ । ଏହି କେନାଲମାନଙ୍କଦ୍ୱାରା କଟକ ଓ ବାଲେଶ୍ୱର ଜିଲ୍ଲାବାସୀ ଗ୍ରୀଷ୍ମ ଓ ଶୀତକାଳରେ କୃଷି ନିମନ୍ତେ ବହୁତ ଉପକାର ପାଆନ୍ତି । ଏହି କେନାଲ ପାଣିଦ୍ୱାରା ଯେତେ ଜମି ଆବାଦ ହେଲା ସେଥିରୁ ୧୫ ଲକ୍ଷ ହନ୍ଦର ଧାନ ବା ୭ଲକ୍ଷ ୫୦ହଜାର ହନ୍ଦର ଚାଉଳ ଅମଦାନୀ କରାଯାଇ ପାରେ ।

ସ୍ୱାଧୀନଶାସନ ବ୍ୟବସ୍ଥା—ଭାରତରେ ସ୍ୱାଧୀନ ଶାସନର ବ୍ୟବସ୍ଥା କରାଇ ଭାରତବାସିଙ୍କ ହସ୍ତରେ ଅର୍ପଣ କରାଇବା ଏବଂ କ୍ରମେ ଭାରତବାସୀ ଉପଯୁକ୍ତ ହୋଇ ଉଠିଲେ ସମଗ୍ର ଭାରତ ସାମ୍ରାଜ୍ୟକୁ ସ୍ୱାଧୀନ ଶାସନ ଛାଡ଼ିଦେବା ଇଂରେଜ ସରକାରଙ୍କର ମୂଳ ନୀତି ବୋଲି ତ ଘୋଷଣା କରା ଯାଇଛି । ସେହି ନୀତି ଅନୁସାରେ ଗଭର୍ଣ୍ଣର ଜେନେରଲ ଲର୍ଡମେୟୋଙ୍କ ଶାସନ କାଳ ମଧ୍ୟରେ (୧୮୬୯-୧୮୭୨) ଭାରତର

ସହରମାନଙ୍କରେ ଜଲ୍ଲାବୋର୍ଡ ଓ ମ୍ୟୁନିସିପାଲିଟି ସୃଷ୍ଟି କରାଗଲା ଏବଂ ପରେ ପୁଣି ଗଭର୍ଣ୍ଣର ଜେନେରଲ ଲର୍ଡ ରିପନଙ୍କ ଶାସନ କାଳରେ (୧୮୮୦-୮୪) ଏହି ସ୍ଥାନୀୟ ସ୍ୱାୟତ୍ତ ଶାସନ ପ୍ରଣାଳୀରେ ବହୁ ଉନ୍ନତି କରାଯାଇ ସହର ଓ ଜିଲାବାସିଙ୍କୁ ଅଧିକ ଅଧିକାର ଦିଆଗଲା । ୧୮୬୯ରୁ ୧୮୮୧ ମଧ୍ୟରେ କଟକ ପୁରୀ ବାଲେଶ୍ୱର ଜିଲାରେ ଜିଲାବୋର୍ଡ ଓ ମ୍ୟୁନିସିପାଲିଟିମାନ ସୃଷ୍ଟି କରାଗଲା ଏବଂ ଏହା ପୂର୍ବରୁ ୧୮୬୯ରେ କେନ୍ଦ୍ରାପଡା ଓ ଯାଜପୁରରେ ମ୍ୟୁନିସିପାଲିଟି ଏବଂ ପରେ ପୁଣି ଲୋକାଲବୋର୍ଡ ବସିଥିଲା । ଏହିସବୁ ସ୍ୱାୟତ୍ତ ଶାସନ ଅନୁଷ୍ଠାନମାନଙ୍କରେ ଜିଲା ଓ ସହରବାସିଙ୍କର ପ୍ରାଥମିକ ଶିକ୍ଷା, ସ୍ୱାସ୍ଥ୍ୟ, ଚିକିତ୍ସା, ରାସ୍ତା, ଘାଟ ନିର୍ମାଣ ପ୍ରଭୃତି ଯାବତୀୟ ଭାର ରହିଲା । ପ୍ରଥମ ଅବସ୍ଥାରେ ଏହି ସବୁ ବୋର୍ଡମାନଙ୍କର ମେମ୍ବରମାନେ ସରକାରଙ୍କ ଦ୍ୱାରା ନିଯୁକ୍ତ ହେଉଥିଲେ । ମାତ୍ର ମ୍ୟୁନିସିପାଲିଟି ଟିକସଦାତାମାନେ ବହୁ କାଳରୁ ଭୋଟ ଦ୍ୱାରା କମିଶନର ନିଯୁକ୍ତ ଅଧିକାର ପାଇଥିଲେ । ବର୍ତ୍ତମାନ ୭ବର୍ଷ ହେଲା ଜିଲା-ବାସିଙ୍କୁ ଜିଲାବୋର୍ଡ ମେମ୍ବର ନିର୍ବାଚନ ଅଧିକାର ଦିଆଯାଇଛି । ପ୍ରଥମ ଅବସ୍ଥାରେ କଲେକ୍ଟରମାନେ ଏହି ସବୁ ବୋର୍ଡରେ ଚେୟାରମାନ ଥିଲେ; ବର୍ତ୍ତମାନ ନୂତନ ଆଇନ (୧୯୨୪) ଅନୁସାରେ ଚେୟାରମାନମାନେ ବୋର୍ଡ ମେମ୍ବରଙ୍କ ଦ୍ୱାରା ନିର୍ବାଚିତ ହେଉଛନ୍ତି ।

ଭାଷାସୂତ୍ରରେ ଓଡିଶା ପ୍ରଦେଶ ଗଠନ ପ୍ରସ୍ତାବ—ଓଡିଆଭାଷୀ ପ୍ରଦେଶର ଭିନ୍ନ ଭିନ୍ନ ଅଞ୍ଚଳ ଭିନ୍ନ ଭିନ୍ନ ସମୟରେ ଇଂରେଜ ଶାସନାଧୀନ ହୋଇଥିଲା । ତେଣୁ ତାହା ସବୁ ବିଭିନ୍ନ ପ୍ରଦେଶର ଅନ୍ତର୍ଗତ ହୋଇ ରହିଅଛି । ଏଥିରେ ଓଡିଆଭାଷା ଓ ଓଡିଆ ଜାତିର ବଳ କ୍ଷୀଣ ହେଉଛି । ଅନେକ ଦିନରୁ ଓଡିଆମାନେ ଏ ଅସୁବିଧା ବୁଝି ଆସୁଛନ୍ତି ଏବଂ ସରକାରଙ୍କଠାରେ ଓଡିଆଭାଷୀ ଅଞ୍ଚଳମାନଙ୍କୁ ଏକଶାସନାଧୀନ କରିବା ଲାଗି ଆବେଦନ ନିବେଦନ କରି ଆସୁଛନ୍ତି । ଓଡିଶା କମିଶନର

ଲୁକ୍ ସାହେବ୍ ଓ ଅନ୍ୟ କେତେକ ପଦସ୍ଥ ଇଂରେଜ ଓଡ଼ିଆମାନଙ୍କର ଏ ଅସୁବିଧା ବୁଝିଥିଲେ ଏବଂ ତହିଁର ନିବାରଣ ଲାଗି ପ୍ରସ୍ତାବ କରିଥିଲେ । ଏ ସବୁ ସ୍ଥାନୀୟ ବ୍ୟକ୍ତିବିଶେଷ କର୍ମଚାରୀଙ୍କ ପ୍ରସ୍ତାବ ପ୍ରାଦେଶିକ ବା ଭାରତ ସରକାର ଅନେକ ଦିନ ପର୍ଯ୍ୟନ୍ତ ତେତେ ଆସ୍ଥାର ସହିତ ବିଚାର କରି ନ ଥିଲେ । ୧୯୦୩ ସାଲରେ ବଡ଼ଲାଟ ଲର୍ଡ଼ କର୍ଜନଙ୍କ ଅମଳରେ ଭାରତ ସରକାରଙ୍କ ସେକ୍ରେଟେରୀ ରିଜଲି ସାହେବ ବଙ୍ଗବିଚ୍ଛେଦ ସମ୍ପର୍କରେ ଯେ ପ୍ରସ୍ତାବନା ପ୍ରକାଶ କଲେ ସେଥିରେ ସମୁଦାୟ ଓଡ଼ିଆଭାଷୀ ଅଞ୍ଚଳକୁ ଭାଷାସୂତ୍ରରେ ଏକଶାସନାଧୀନ କରିବାର ପ୍ରୟୋଜନୀୟତା ସର୍ବ ପ୍ରଥମେ ଭାରତ ସରକାର ସ୍ୱୀକାର କରନ୍ତି । ଏଥିରେ ଓଡ଼ିଆମାନଙ୍କ ମନରେ ନବ ଆଶା ଆସିଥିଲା; ମାତ୍ର ଶେଷରେ ସେ ଆଶା ଫଳବତୀ ହେଲା ନାହିଁ । ବଙ୍ଗଳା ଦୁଇ ଭାଗରେ ବିଭକ୍ତ ହେଲା । ପୂର୍ବବଙ୍ଗ ସଙ୍ଗେ ଆସାମ ମିଶି ଏକ ସ୍ୱତନ୍ତ୍ର ପ୍ରଦେଶ ହେଲା ଏବଂ ପଶ୍ଚିମ ବଙ୍ଗ, ବିହାର୍, ଓଡ଼ିଶା ଓ ଛୋଟନାଗପୁରକୁ ଅନ୍ୟ ଏକ ପ୍ରଦେଶ କରାଗଲା । ସମସ୍ତ ଓଡ଼ିଆଭାଷୀ ପ୍ରଦେଶକୁ ଏକତ୍ର କରା ନ ଯାଇ କେବଳ ସମ୍ବଲପୁର ଜିଲା ଓ ତତ୍‌ସଂଲଗ୍ନ ଗଡ଼ଜାତ ଦେଶୀୟ ରାଜ୍ୟମାନଙ୍କୁ ଓଡ଼ିଶା ସଙ୍ଗେ ମିଶାଇ ଦିଆଗଲା । ମାତ୍ର ସେ ଜିଲାର ଖଡ଼ିଆଳ, ପଦ୍ମପୁର, ଫୁଲଝର ପ୍ରଭୃତି ଓଡ଼ିଆଭାଷୀ ଅଞ୍ଚଳ କେତୋଟି ବଡ ବଡ଼ ଜମିଦାରୀ ଓଡ଼ିଶାରେ ନ ମିଶି ମଧ୍ୟପ୍ରଦେଶ ସଙ୍ଗେ ଅଦ୍ୟାପି ରଖାଯାଇଅଛି ।

ଉତ୍କଳ ସମ୍ମିଳନୀ—ରିଜଲି ସାହେବଙ୍କ ପ୍ରସ୍ତାବନା ଅନୁସାରେ ସମଗ୍ର ଓଡ଼ିଆଭାଷୀ ପ୍ରଦେଶ ଏକଶାସନାଧୀନ ହେଲା ନାହିଁ ସତ; କିନ୍ତୁ ଏଥିର ଫଳରେ ଓଡ଼ିଆମାନଙ୍କ ଦେଶମିଶ୍ରଣ ଆକାଙ୍କ୍ଷା ଅଧିକ ବଳବତୀ ହେଲା ଏବଂ ତାହା ଚରିତାର୍ଥ କରିବା ଲାଗି ସେମାନେ ଉଦ୍ୟମ ଆରମ୍ଭ କଲେ । ଇତିହାସ ମଧ୍ୟରେ ଯଥାସ୍ଥାନରେ କୁହାଯାଇଛି, କଟକ, ଗଞ୍ଜାମ, ମେଦିନୀପୁର ପ୍ରଭୃତି ଓଡ଼ିଆ ଅଞ୍ଚଳମାନେ ରାଜନୈତିକ ଘଟଣା କ୍ରମରେ

ଓଡ଼ିଶାରୁ ପୃଥକ ହୋଇ ଭିନ୍ନ ଭିନ୍ନ ଶାସନାଧୀନ ହୋଇ ରହିଥିଲା । ପ୍ରଥମେ ଦେଶମିଶ୍ରଣଭାବ ଗଞ୍ଜାମରେ ଆରମ୍ଭ ହେଲା । ବ୍ରହ୍ମପୁରରେ ସେଥିପାଇଁ ୧୯୦୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ପ୍ରତିନିଧିମାନଙ୍କୁ ନେଇ ଏକ ଜାତୀୟ ସମ୍ମିଳନୀ ବସିଲା । ସେଥିରେ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀ-କରଣ ଓଡ଼ିଆମାନଙ୍କ ଜାତୀୟ ଆକାଂକ୍ଷା ବୋଲି ପ୍ରସ୍ତାବ ଧାର୍ଯ୍ୟ ହେଲା । ପର ବର୍ଷ ଉତ୍କଳର ବରପୁତ୍ର ଶ୍ରୀଯୁକ୍ତ ମଧୁସୂଦନ ଦାସ ସି, ଆଇ, ଇ, କଟକରେ ଉତ୍କଳସମ୍ମିଳନୀ ସ୍ଥାପନ କଲେ । ଉତ୍କଳଭାଷୀ ଅଞ୍ଚଳମାନଙ୍କର ଏକତ୍ରୀକରଣ ଏହି ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ ବୋଲି ବିଧିବଦ୍ଧ ହେଲା । ଉତ୍କଳର ରାଜମୁକୁଟମଣି ମୟୂରଭଞ୍ଜ ମହାରାଜା ସ୍ୱର୍ଗୀୟ ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେବ ସମ୍ମିଳନୀର ପ୍ରଥମ ସଭାପତି ହୋଇ ଏହି ଜାତୀୟ ଆକାଂକ୍ଷା ପ୍ରକାଶ କଲେ । ବର୍ତ୍ତମାନ ଉତ୍କଳସମ୍ମିଳନୀ ନାନା ପରିବର୍ତ୍ତନ ମଧ୍ୟରେ ଅଦ୍ୟାପି ଉତ୍କଳପ୍ରାଦେଶିକ ସମ୍ମିଳନୀରୂପେ କଂଗ୍ରେସର ଅନ୍ତର୍ଭୁକ୍ତ ହୋଇ ଚାଲିଅଛି । ଉତ୍କଳ ଜାତିର ଦେଶମିଶ୍ରଣ ଆକାଂକ୍ଷା କଂଗ୍ରେସ ଗ୍ରହଣ କରିଛନ୍ତି ଏବଂ ଭାରତ ସରକାର ମଧ୍ୟ ଗଞ୍ଜାମ ଓଡ଼ିଶା ସଙ୍ଗେ ମିଶିବା ଲାଗି ସେଠା ଓଡ଼ିଆ ଲୋକଙ୍କ ମତାମତ ବୁଝିବା ସକାଶେ ତଦନ୍ତ କରାଇଛନ୍ତି । ବର୍ତ୍ତମାନ ଏ ବିଷୟ ଭାରତସରକାରଙ୍କ ବିଚାରାଧୀନ ।

ବିହାର ଓଡ଼ିଶା ପ୍ରଦେଶ ଗଠନ—ଲର୍ଡ କର୍ଜନଙ୍କ ଶାସନରେ ବଙ୍ଗ ଦେଶ ଯେ ଦୁଇ ଭାଗରେ ବିଭକ୍ତହୋଇଥିଲା, ତାହା ଅଧିକ ଦିନ ସ୍ଥାୟୀ ହୋଇ ନାହିଁ । ବଙ୍ଗାଳୀମାନେ ସେଥିରେ ଘୋର ଆନ୍ଦୋଳନ ଉଠାଇଲେ । ଭାରତର ରାଜନୀତିରେ ଏହା ସ୍ୱଦେଶୀ ଆନ୍ଦୋଳନ ବୋଲି ପ୍ରସିଦ୍ଧ । ଏ ଆନ୍ଦୋଳନ କେବଳ ବଙ୍ଗଳାରେ ଆବଦ୍ଧ ନଥିଲା । ଏକା ବଙ୍ଗଳାରେ ନୁହେଁ ସମସ୍ତ ଭାରତରେ ଉଣା ଅଧିକେ ଏହା ଫଳରେ ନୂତନ ଜାତୀୟଭାବ ଜାଗିଥିଲା ଏବଂ ଏହି ଆନ୍ଦୋଳନ ପ୍ରଭାବରେ ବଙ୍ଗ ବିଚ୍ଛେଦ ରଦ୍ଦ କରିବା ଲାଗି ସରକାର ବାଧ୍ୟ ହୋଇଥିଲେ । ୧୯୧୧ ଖ୍ରୀଷ୍ଟାବ୍ଦରେ ପୂର୍ବ ଓ ପଶ୍ଚିମ ବଙ୍ଗ

ମିଶି ଗୋଟିଏ ପ୍ରଦେଶ ହେଲା; ବହାର ଓଡ଼ିଶା ଓ ଛୋଟନାଗପୁରକୁ ବଙ୍ଗଳାରୁ ଅଲଗା କରାଯାଇ ବହାର ଓଡ଼ିଶା ପ୍ରଦେଶ ଗଠା ହେଲା ।

ସମ୍ରାଟ ପଞ୍ଚମଜର୍ଜ ଅଭିଷେକ ହେବା ସମୟରେ ଭାରତବର୍ଷର ସ୍ୱୟଂ ଅଭିଷେକ ଦୀଲ୍ଲୀରେ ହଧବାର ହେଲା । ଲର୍ଡ ହାର୍ଡିଞ୍ଜ ସେତେବେଳେ ଗଭର୍ଣ୍ଣର ଜେନେରାଲ ଓ ଭାଇସରୟ ଥିଲେ । ସେ ବଡ଼ ଉଦାରହୃଦୟ ଲାଟ ସାହେବ ଥିଲେ । ସେ ସମ୍ରାଟଙ୍କ ମୁଖରେ ଘୋଷଣା କରାଇଲେ ପୂର୍ବ ଓ ପଶ୍ଚିମ ବଙ୍ଗ ମିଶି ଜଣେ ଗଭର୍ଣ୍ଣରଙ୍କ ଶାସନରେ ରହିବ; ଆସାମ ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇ ଚିଫ କମିଶନରଙ୍କ ଅଧୀନରେ ରହିବ ଏବଂ ବହାର, ଛୋଟନାଗପୁର, ଓଡ଼ିଶା ମିଶି ବହାର ଓଡ଼ିଶା ପ୍ରଦେଶ ନାମରେ ଜଣେ ଲେଫ୍‌ଟେନେଣ୍ଟ ଗଭର୍ଣ୍ଣର ଓ ତାଙ୍କ କାଉନ୍‌ସିଲଙ୍କଦ୍ୱାରା ଶାସିତ ହେବ । ଶେଷରେ କଲିକତାରେ ଏତେକାଳ ଯାହା ଭାରତର ରାଜଧାନୀ ଥିଲା, ତାହା ଉଠିଯାଇ ମୋଗଲ ଓ ପଠାଣ ରାଜଧାନୀ ଦୀଲ୍ଲୀରେ ସ୍ଥାପିତ ହେଲା ।

ଶାସନ ସଂସ୍କାର—ବହାର ଓଡ଼ିଶା ପ୍ରଦେଶ ଅଜ କାଲି ଗଭର୍ଣ୍ଣରଙ୍କଦ୍ୱାରା ଶାସିତ ହେଉ ନାହିଁ । ଏ ପ୍ରଦେଶର ଶା... ଏବେ ଜଣେ ଗଭର୍ଣ୍ଣର । ଭାରତର ଅନ୍ୟାନ୍ୟ ସବୁ ପ୍ରଦେଶ ଶାସ... ଏହି ଗଭର୍ଣ୍ଣର ଆଖ୍ୟା ଦିଆ ଯାଇଛି । ଏହା ଶାସନ ସଂସ୍କାରର ଫଳ । ୧୯୧୯ ସାଲରେ ପାର୍ଲିଆମେଣ୍ଟରେ ଭାରତ ଶାସନ ବିଷୟରେ ଏକ ନୂତନ ବ୍ୟବସ୍ଥା ହେଲା । ଭାରତବାସିଙ୍କୁ କ୍ରମେ ଦାୟିତ୍ୱପୂର୍ଣ୍ଣ ଶାସନ ଅଧିକାର ଦେବା ଏ ବ୍ୟବସ୍ଥାର ଉଦ୍ଦେଶ୍ୟ । ପାର୍ଲିମେଣ୍ଟର ଏହି ଅଇନକୁ ଲୋକେ ସାଧାରଣରେ 'ଭାରତ ଶାସନସଂସ୍କାର ଅଇନ' କହୁଛନ୍ତି । ଏ ଅଇନ ବଳରେ ବ୍ୟବସ୍ଥାପକ ସଭାମାନଙ୍କ ସଭ୍ୟ ସଂଖ୍ୟା ଅନେକ ବଢ଼ିଗଲା । ଏଥିପୂର୍ବରୁ ଜଲାବୋର୍ଡ ଓ ମୁନିସିପାଲିଟିର ସଭ୍ୟମାନେ ଭୋଟ ବା ମତ ଦେଇ ଲାଟ ସଭାକୁ ମେମ୍ବର ପଠାଉ ଥିଲେ । ଶାସନ ସଂସ୍କାର ଅଇନ ଫଳରେ ପଲ୍ଲୀ ଗ୍ରାମ ଓ ସହରବାସୀ କରଦାତାମାନେ ମତ ଦେଇ ଅପଣା ଅପଣା ପ୍ରତିନିଧି ଲାଟସଭାକୁ ପଠାଉ

ଅଛନ୍ତି । ଲାଟସଭାର ନିର୍ବାଚିତ ସଭ୍ୟମାନଙ୍କ ମଧ୍ୟରୁ ପ୍ରତ୍ୟେକ ପ୍ରଦେଶରେ ଧର୍ମ୍ମାଧିକରଣତଃ ଦୁଇ ଜଣ ମନ୍ତ୍ରୀ ନିଯୁକ୍ତ ହେଉଛନ୍ତି । ବିହାର ଓଡ଼ିଶା ଲାଟ-ସଭାକୁ ଏଥିପୂର୍ବେ ଓଡ଼ିଶାରୁ ୩ ଜଣ ମାତ୍ର ସଭ୍ୟ ଯାଉଥିଲେ ; ବର୍ତ୍ତମାନ ୧୦ ଜଣ ଯାଉଛନ୍ତି । ବଡ଼ଲାଟସଭାକୁ ଓଡ଼ିଶାରୁ ଆଜିକାଲି ସାଧାରଣ-ଲୋକପ୍ରତିନିଧିରୂପେ ଦୁଇ ଜଣ ସଭ୍ୟ ନିର୍ବାଚିତ ହୋଇ ଯାଉଛନ୍ତି । ୧୯୨୦ ମସିହା ଜାନୁଆରି ପ୍ରଥମ ଦିନଠାରୁ ଏହି ସଂସ୍କାର ଆଇନ ଦେଶରେ ପ୍ରବର୍ତ୍ତିଲା । ଜଣେ ଭାରତୀୟ ଲର୍ଡ ସତ୍ୟେନ୍ଦ୍ରପ୍ରସନ୍ନ ସିଂହ ବିହାର ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ହେଲେ । ଅଳ୍ପ ସମୟ ପରେ ସେ ଇସ୍ତଫା ଦେବାରୁ ସାର ହେନେରି ହୁଇଲର ଲାଟ ହୋଇଛନ୍ତି ।



Printed by R. N. Rath, Satyabadi Press, Puri